# ଝରେ ଶ୍ରାବଣ ଝୁରେ ଫଗୁଣ

ଲେଖକ :

**ରାଧାମୋହନ ମହାପାତ୍ର,** ଏମ୍. ଏ.
ଓ. ଏଫ୍. ଏସ୍.

ଗ୍ରା: ଚର୍ଚ୍ଚିକା
ଡାକଘର—ବାଙ୍କୀ
ଜି:- କଟକ

ପ୍ରକାଶିକା : ସ୍ୱତ୍ୱାଧିକାରିଣୀ :

**ଶ୍ରୀମତୀ ପ୍ରତିଭା ମହାପାତ୍ର**
'ପ୍ରତିଭାଣୀ'
୨୧, ବାପୁଜୀନଗର, ଭୁବନେଶ୍ୱର—୯

ପ୍ରକାଶ କାଳ :

**ଫାଲ୍‌ଗୁନ ପୂର୍ଣ୍ଣିମା**
ତା ୩-୩-୮୮

ଲିପିକାର :

**ନଉ ଟାଉନ୍ ପ୍ରେସ,**
ପୋର୍ଟରୋଡ୍, ବାଲେଶ୍ୱର

ମୂଲ୍ୟ : **ଟ ୪୦** (ଚାଳିଶ ଟଙ୍କା)
ଶୋଭନ ମୂଲ୍ୟ : **ଟ ୪୫**
(ପଇଁଚାଳିଶ ଟଙ୍କା)

# JHARE SRABANA
# JHURE FAGUNA

*Written by :*

**Radhamohan Mohapatra,**
**M. A., O. F. S.**
At/P. O. Banki
Dist. Cuttack

*Published by :*

**Smt. Prativa Mohapatra**
**'PRATIVANI'**
21, Bapujinagar,
Bhubaneswar—9

*Published on :*

**Dola Purnima**
Dt. 3-3-1988

*Printed at :*

**New Town Press**
Port Road, Balasore

Price : **Rs. 40** (Popular)
**Rs. 45** (Deluxe)

Digitized by PPRACHIN, SOA

# ତୁମ ହାତରେ...

ଜୀବନର ଉଠାଣି ଗଡାଣି ଭିତରେ ଆଗେଇ ଚାଲିବା ପାଇଁ ମୋର ଯେଉଁ ଦୁରନ୍ତ ସଂଗ୍ରାମ, ସେପାଇଁ ତୁମେହିଁ କେବଳ ପ୍ରେରଣା । ତୁମେ ମୋପାଇଁ ଆଶାର ସର୍ବସ୍ୱ··· କାମନାର ପ୍ରଗଲ୍‌ଭ ଝରଣାଟିଏ ହୋଇ ମୋ ଜୀବନର ଶିଳା ବନ୍ଧୁର ଶଯ୍ୟାରେ ବହିଯାଇଛ— ଏ ସନ୍ତପ୍ତ ପ୍ରାଣକୁ ଶାନ୍ତ ଓ ପରିତୃପ୍ତି ଦେଇ ଆଣିଦେଇଛ କିଛିଟା ପ୍ରାଣପ୍ରାଚୁର୍ଯ୍ୟର ସମ୍ଭକ । ମୋର ଏ ଉତ୍ତର ଜୀବନାକାଶରେ ତୁମେ ସିନା ମୋପାଇଁ ହସ ଟୁକୁ ଟୁକୁ ଧ୍ରୁବତାରା ! ତୁମକୁ ବାଦ୍‌ଦେଇ ମୋ ଉତ୍‌ଥାନର ସତ୍ତା କଳିବସିବା ଧୃଷ୍ଟତା ହେବ ସିନା ! ତୁମେହିଁ ମୋ ଯତ୍‌ସାମାନ୍ୟ ସଫଳତାର ମାପକାଠି— ତୁମେ ଛାୟାପରି କାୟା ପଛରେ ଲାଖି ରହିନଥିଲେ ଏ ଦୀର୍ଘ ଉପନ୍ୟାସ ରଚନା କେବେ ମୋ ପକ୍ଷରେ ସମ୍ଭବ ହୋଇ ନଥାନ୍ତା । ପାଣ୍ଡୁଲିପି ପ୍ରସ୍ତୁତି ଠାରୁ ଆରମ୍ଭ କରି ମୁଦ୍ରଣ ଓ ପୁସ୍ତକ ଉନ୍ମୋଚନ ପର୍ଯ୍ୟନ୍ତ ସମସ୍ତ କିଛି କାମ ତୁମର ସେହି ନିଷ୍ଠାପର ଆତ୍ମୋତ୍ସର୍ଗର ଅନୁପମ ସ୍ୱାକ୍ଷର ବହନ କରିଛି । ଭାଙ୍ଗି ପଡିଥିବା ବେଳେ ତୁମେ ମୋତେ ଅଭଙ୍ଗା କଣ୍ଢେଇ ଦେଖାଇ ଦମ୍ଭ ଦେଇଛ, ଜୀବନର ଦାରୁଣ ଦୁଃସ୍ଥିତି ମୁହୂର୍ତ୍ତରେ ସ୍ୱସ୍ତିର ସ୍ୱର ଶୁଣାଇଛ । ଜନନୀ, ଭଗିନୀ ଓ ଜାୟାର ଭୂମିକାରେ ଅବତୀର୍ଣ୍ଣ ହୋଇ ମୋର ଜୀବନକୁ ଛନ୍ଦାୟିତ, ରଙ୍ଗାୟିତ ଆଉ ରସାୟିତ କରିଛ । ସ୍ୱପ୍ନକୁ ମୋର ସାର୍ଥକ ରୂପ ଦେଇପାରିଛ । ପତ୍ନୀ ତୁମେ—ତୁମକୁ କ'ଣ ଦେଇ ବା ସନ୍ତୁଷ୍ଟ କରିପାରିବି ? ଏ ଜଗତରେ ଫଳପୁଷ୍ପ ଉପଚାର ଆଦି ସବୁ କିଛି ଈଶ୍ୱରଙ୍କର ଦାନ ହୋଇଥିଲେହେଁ ତାକୁହିଁ ତାଙ୍କୁ ପୁଣି ଅର୍ପଣ କଲାଭଳି, ତୁମ ଦାନରେ ଗଢି ଉଠିଥିବା ମୋର ଏଇ ସୃଷ୍ଟିସମ୍ପଦକୁ ପୁଣି ଥରେ ତୁମରି ହାତରେ ସମର୍ପି ଦେଉଛି । ତୁମେ ପ୍ରକୃତରେ ପ୍ରଭାମୟୀ 'ପ୍ରତିଭା' । ତୁମର ଲୁହଭିଜା ଶ୍ରାବଣୀ ଆଖି ଭିତରେ ମୁଁ ଖୋଜି ପାଇଛି ମୋ ସ୍ମୃତିର ଫଗୁଣକୁ······ । ଏଣୁ ଏ 'ଝରେ ଶ୍ରାବଣ ଝୁରେ ଫଗୁଣ'ର ଗ୍ରହିତା ତୁମ ବିନା ଆଉ କିଏ ହୋଇପାରେ ?



Digitized by PPRACHIN, SOA

## ଏଇ ଲେଖକର ଅନ୍ୟ ରଚନା :

ପ୍ରଥମ ପ୍ରଭାତ (ଉପନ୍ୟାସ)

ସତ୍ୟମ୍ ଏବ (ଉପନ୍ୟାସ)

ଜୀଅନ୍ତା ଶବ (ଉପନ୍ୟାସ)
( ଧାରାବାହିକ ଭାବେ 'ଆବର୍ତ୍ତ'ରେ ପ୍ରକାଶ ପାଉଛି )

: ପ୍ରକାଶ ପ୍ରତୀକ୍ଷାରେ :

ଅସ୍ତ ଆକାଶ (ଉପନ୍ୟାସ)

ସ୍ୱର୍ଗ ସ୍ନାନ (ଉପନ୍ୟାସ)

ଏବଂ

ଲେଖ ତୁଛ (ଏକଶତ ଗପର ସମାହାର)

ବ୍ୟାଘ୍ର ନିନାଦ (ଶିକାର କାହାଣୀ)

Digitized by PPRACHIN, SOA

# ଆମୁଖ :

'Write the truest that you know.'

ବିଶ୍ୱବିଖ୍ୟାତ କଥାକାର ହେମିଙ୍ଗ୍‌ୱେଙ୍କ ଏହି ଉକ୍ତିଟି ଆଜି ମୋ ଉପନ୍ୟାସ ସମ୍ପର୍କରେ ମୋ ତରଫରୁ କିଛି କହିବାକୁ ଗଲା ବେଳେ ମନରେ ଗଭୀର ଆବେଦନ ସୃଷ୍ଟି କରିବସେ । କଲମକୁ ନିୟନ୍ତ୍ରଣ କରେ, କଳ୍ପନାକୁ ବାସ୍ତବାଭିମୁଖୀ କରାଇ ନିଏ । ମନରେ ସ୍ୱତଃ ପ୍ରଶ୍ନ ଆସେ, ମୁଁ କ'ଣ କରିଛି ? ଉପନ୍ୟାସ ଭିତରେ କ'ଣ କହିଛି ? କାହା କଥା କହିଛି ? ବାସ୍ତବ ନା ଅବାସ୍ତବ ? ଯାହା ବାସ୍ତବ, ଯାହା ସତ୍ୟ, ଯାହା ଏକାନ୍ତ ଭାବେ ନିଛକ ; ସେହି କଥା-କୁସୁମର ମାଳାକାର ଭାବେ ମୋର କୁସୁମ ଚୟନ ଓ ଗୁନ୍ଥନ କ୍ରିୟା ସମାହିତ କରିଛି ବୋଲି ମନରେ ଆତ୍ମଶାନ୍ତି ଆସେ । ଯେଉଁ କାହାଣୀରେ ବାସ୍ତବତାର ପ୍ରତିଛବି ନଥାଏ, ତାହା କେବେ ପ୍ରାଣସ୍ପର୍ଶୀ ହୋଇ ପାରେନା ବୋଲି ମୋର ବ୍ୟକ୍ତିଗତ ଧାରଣା । ସତ୍ୟକୁ ରୂପରଂଗ ଦେଇ ସୁନ୍ଦର ଛବିଟିଏ ଅଙ୍କା ଯାଇପାରେ । ପ୍ରତି ମୁହୂର୍ତ୍ତରେ ମଣିଷର ଲକ୍ଷ୍ୟ ଅଲକ୍ଷ୍ୟରେ ଘଟି ଯାଉଛି କେତେ କାହାଣୀ । ସମସ୍ତଙ୍କର ଆଖି ଦେଖୁଛି, କାନ ଶୁଣୁଛି, କିନ୍ତୁ ସମସ୍ତଙ୍କ ମନରେ ତାହା ରେଖାପାତ କରି ନଥାଏ । ଜଣେ ଅନ୍ତର୍ଦୃଷ୍ଟି ସମ୍ପନ୍ନ ତୀକ୍ଷ୍ଣ ସଚେତନ ଦ୍ରଷ୍ଟାର ଆଖିରେ ଏ ଘଟଣା କିନ୍ତୁ ଗୁରୁତ୍ୱପୂର୍ଣ୍ଣ । ପ୍ରତିଟି ଚରିତ୍ର ଭିନ୍ନ ... ନିତ୍ୟ ନୂତନ । ନିଜର ସେହି ତୀକ୍ଷ୍ଣ ଦୃଷ୍ଟି, ଅନ୍ତର୍ଦୃଷ୍ଟି ଅନୁଭୂତିର ପୁଟ ଦେଇ ସେ ସବୁକୁ ନୂତନ ରୂପରେଖ ପ୍ରଦାନ କରିବା, ନୂଆ କିଛି ବାର୍ତ୍ତାର ସନ୍ଦେଶ ଦେବା ଜଣେ ସଫଳ ଲେଖକର କଳାତ୍ମକ କାରସାଦି କହିଲେ ଅତ୍ୟୁକ୍ତି ହେବନି । ଜଣେ ସଫଳ ସ୍ରଷ୍ଟାର ଗୌରବ ମୁଁ କେବେ ଦାବୀ କରି ନାହିଁ, ତେବେ ଉଲ୍ଲିଖିତ ସତ୍ୟର ଅପଳାପ କରି କୌଣସି ବ୍ୟତିକ୍ରମ ଘଟାଇଛି ବୋଲି ମନେ କରୁନି । ଆମ ସମାଜର, ଆମ ପାରିବାରିକ ଜୀବନର ଚିରନ୍ତନ ସତ୍ୟର ଘଟଣାକୁହିଁ ମୁଁ ରୂପ ଦେଇଛି ମୋ ଲେଖନୀରେ ।

ମୋର ପ୍ରଥମ ଉପନ୍ୟାସ 'ପ୍ରଥମ ପ୍ରଭାତ' ପ୍ରକାଶିତ ହୁଏ ୧୯୮୨ ମସିହାରେ । ପ୍ରକୃତରେ ଏହା ଥିଲା ମୋ ଔପନ୍ୟାସିକ ଜୀବନର ପ୍ରଥମ

Digitized by PPRACHIN, SOA

ପ୍ରଭାତ । ସେ ଉପନ୍ୟାସଟି ଏବେ ପୁନଃମୁଦ୍ରିତ ହୋଇଛି ଓ ଚଳଚ୍ଚିତ୍ରର ରୂପ ନେବାକୁ ଯାଉଛି । ମୋ ପାଇଁ ଆଜି ଏହା ପ୍ରେରଣାର ବିଷୟ ନିଶ୍ଚୟ ! ସବୁ କିଛି ଇଚ୍ଛାମୟଙ୍କର ଇଚ୍ଛା । ପ୍ରଥମ ପ୍ରଭାତର ପ୍ରଥମ ପ୍ରକାଶନ ପରେ ଦୀର୍ଘ ବର୍ଷର ନୀରବତା ଏ ଲେଖକକୁ ଏକ ପ୍ରକାର ଘାଣ୍ଟି କରି ଦେଇଥିଲା । ନୂଆ କିଛି ସର୍ଜନାର ପରିକଳ୍ପନା ଅଦିନ କୁହୁଡ଼ି ଭଳି ମନ ଭିତରେ ଜମାଟ ବାନ୍ଧି ଅନେକବାର ଉଭେଇ ଯାଇଥିଲା । ଭର୍ତ୍ତିପଡ଼ି ଥିବା ମନରେ କିଛିଟା ଦମ୍ଭ, ପ୍ରେରଣା ତଥା ସାହିତ୍ୟିକ ଅନୁରାଗର ପରାଗ ବୋଳି ଦେଇ ଯେଉଁ ସାହିତ୍ୟିକ ବନ୍ଧୁ ( ଅନୁଜ ତୁଲ୍ୟ ) ମୋତେ ପୁଣି ଉପନ୍ୟାସର ସାଗର ଭିତରକୁ ପାଦ ବଢ଼ାଇ ମୁକ୍ତା-ସନ୍ଧାନୀ ହେବାକୁ ଅନୁପ୍ରାଣିତ କରିଥିଲେ, ସେ ହେଉଛନ୍ତି ସାହିତ୍ୟିକ ବୈକୁଣ୍ଠ ନାଥ ଶତପଥୀ ଯାହାଙ୍କର ପ୍ରେରଣା ମୁଁ କେବେ ଭୁଲି ପାରିବି ନାହିଁ । ତାଙ୍କର ଅନୁପ୍ରେରଣା, ତାଙ୍କର ସହଯୋଗ କ୍ରମେ ଦ୍ୱିତୀୟ ଉପନ୍ୟାସଟିର ପ୍ରକାଶ କରିବାର ବାସନା ପୁଣି ମନରେ ଜାଗିଲା ଓ ୧୯୮୪ ରେ 'ସତ୍ୟମ୍ ଏବ' ଆତ୍ମପ୍ରକାଶ କଲା ଓ ସେଇ ନିଷ୍ଠାପର ଉଦ୍ୟମ ଆଉ ପ୍ରେରଣାର ଫଳ ଆଜିର ଏଇ ତୃତୀୟ ଉପନ୍ୟାସ 'ଝରେ ଶ୍ରାବଣ ଝୁରେ ଫଗୁଣ' — ।

ଏଥର ଆସୁଛି ପୁସ୍ତକ ସମ୍ପର୍କରେ କିଛି କହିବାକୁ । ପୁଣି ଭାବୁଛି କ'ଣ ବା କହିବି ? ଲେଖକର ସମସ୍ତ ଅଭିବ୍ୟକ୍ତି ତା' ଲେଖନୀ ନିଃସୃତ ଅକ୍ଷର ଭିତରେ ହିଁ ଆବଦ୍ଧ । ତାହାହିଁ ତା' ପ୍ରତିଭାର ଯଥାର୍ଥ ମାପକାଠି । ସୁଧୀ ପାଠକବୃନ୍ଦଙ୍କ ବିଚାର ବିବେଚନାହିଁ ତା'ର ଯଥାର୍ଥ ମୂଲ୍ୟାୟନ । ଏଣୁ ନକହିବା ଭଲ, ଏହି ନ୍ୟାୟରେ ମୁଁ କିଛି କହିବାର ମୋହକୁ ଏଡ଼ାଇ ଦେଉଛି । କେବଳ ପୁସ୍ତକ ପ୍ରକାଶନ ଅବସରରେ ଏହି କଷ୍ଟକର କାର୍ଯ୍ୟ ସହ ସମ୍ପୃକ୍ତ, ଓତପ୍ରୋତ ଭାବେ ଜଡ଼ିତ କେତେ ଜଣ ବନ୍ଧୁଙ୍କୁ କୃତଜ୍ଞତା ଟିକିଏ ଜଣାଇବାର ଇଚ୍ଛାକୁ ଏଡ଼ାଇ ପାରୁନି । ସେତକ ନକଲେ କୃତଘ୍ନ ହୋଇଯିବି ।

'ଝରେ ଶ୍ରାବଣ, ଝୁରେ ଫଗୁଣ' ଉପନ୍ୟାସଟିର ଆଦ୍ୟ ରୂପ ଉପନ୍ୟାସ ନଥିଲା, ଥିଲା ବତିଶ ପୃଷ୍ଠା ବିଶିଷ୍ଟ ଗଳ୍ପଟିଏ । ୧୯୮୩ରେ ବାଲେଶ୍ୱରରୁ ଶ୍ରୀ ବୈକୁଣ୍ଠ ନାଥ ଶତପଥୀଙ୍କ ସମ୍ପାଦନାରେ ପ୍ରକାଶ

Digitized by PPRACHIN, SOA

ପାଉଥିବା 'ସ୍ୱାକ୍ଷର' ଗଳ୍ପ ସଙ୍କଳନରେ ଏହା ପ୍ରଥମ ଗଳ୍ପ ଭାବେ ପ୍ରକାଶିତ ହୋଇଥିଲା– ଯାହାର ନାମ ଥିଲା 'ଅଭିଳାଷର ଅନ୍ୟନାମ'। ଆଜିର ଉପନ୍ୟାସ ସେହି ଦୀର୍ଘ ଗଳ୍ପର ପରିବର୍ଦ୍ଧିତ, ପରିମାର୍ଜିତ ନୂତନ ରୂପ ମାତ୍ର। ସେହି ବତିଶ ପୃଷ୍ଠାର ଗଳ୍ପକୁ ଆଜି ଚାରିଶହ ଆଠ ପୃଷ୍ଠା ବିଶିଷ୍ଟ ଉପନ୍ୟାସକୁ ରୂପାନ୍ତରିତ କରିବା ନିମନ୍ତେ ମୋର ଆପ୍ରାଣ ଉଦ୍ୟମ ମୂଳରେ 'ସ୍ୱାକ୍ଷର' ପତ୍ରିକାର ସମ୍ପାଦକ ସେହି ବୈକୁଣ୍ଠ ବାବୁଙ୍କର ଅବଦାନହିଁ ନିହିତ। ସୁସାହିତ୍ୟିକ ସେ– କବି, ଗାଳ୍ପିକ, ପ୍ରାବନ୍ଧିକ, ସମୀକ୍ଷକ ହିସାବରେ ତାଙ୍କର ଯଥେଷ୍ଟ ଖ୍ୟାତି ରହିଛି। ମୋର ସାହିତ୍ୟ ଅନୁରାଗକୁ ସେ ଦୃଢ଼ କରିଛନ୍ତି। ତାଙ୍କର ଅସୀମ ପ୍ରେରଣା ମୋତେ ଏତେ ବାଟ ଟାଣି ଆଣି ପାରିଛି। ଯାନଟି ଅଚଳ ହୋଇ ପଡ଼ିଲା ବେଳେ ଜଣେ କୁଶଳୀ କାରିଗରର ଆବଶ୍ୟକତା ଯେପରି ଅନିବାର୍ଯ୍ୟ ହୋଇ ପଡ଼େ ବୈକୁଣ୍ଠ ବାବୁଙ୍କ ଅବଦାନ ମୋପାଇଁ ସେହିଭଳି। ପ୍ରତିକ୍ଷଣରେ, ପ୍ରତିସ୍ତରରେ, ପ୍ରତିଟି କ୍ଷେତ୍ରରେ ସେ ମୋ ପିଛା ଲାଗି ରହି ନଥିଲେ ଏ ଉପନ୍ୟାସର ଆତ୍ମପ୍ରକାଶ ଅସମ୍ଭବ ହୋଇ ପଡ଼ିଥାନ୍ତା। ତାଙ୍କର ପ୍ରେରଣା ଓ ସମ୍ବେଦନା ଏଇ ଲେଖକର ସାରସ୍ୱତ ଚିନ୍ତା ଚେତନାକୁ ଦୃଢ଼ୀଭୂତ କରିପାରିଛି– ଯାହା ମୋପାଇଁ ସମ୍ବଳ ହୋଇ ରହିବ। ଅନୁଜ ପ୍ରତିମ ସେ– ଏଣୁ କୃତଜ୍ଞତା ପରିବର୍ତ୍ତେ ମୋର କଲ୍ୟାଣ ଟିକକ ତାଙ୍କୁ ପ୍ରଦାନ କରୁଛି। ମୋର ଅନୁରୋଧ କ୍ରମେ ତାଙ୍କ ତରଫରୁ ପୁସ୍ତକ ସମ୍ପର୍କରେ ଅଭିମତଟିଏ ଦେଇଥିବାରୁ ନିଜକୁ ଭାଗ୍ୟବାନ ମନେ କରୁଛି।

ଆଉ ଯେଉଁ ପରମ ହିତୈଷୀ ବନ୍ଧୁମାନେ ଅନ୍ତରାଳରେ ରହିଗଲେ, ସେମାନେ ହେଲେ 'ପ୍ରତିଶ୍ରୁତି' ପ୍ରତିଷ୍ଠାନର ସମ୍ପାଦକ ସାହିତ୍ୟାଚାର୍ଯ୍ୟ ଶ୍ରୀଯୁକ୍ତ ଭଗବତ ପଣ୍ଡା ; ସାହିତ୍ୟ ସାଧକ, କବି, ଗାଳ୍ପିକ ଇଂଜିନିୟର, ସତ୍ୟବ୍ରତ ରଥ ; ଇଞ୍ଜିନିୟର ଭଗୀରଥି ପରିଡ଼ା, 'ବଡ଼ଭାଇ' ଧୁରନ୍ଧର ବିଶ୍ୱାଳ ଏବଂ ବାରିପଦାର ଅଗଣିତ ସାହିତ୍ୟପ୍ରେମୀ ବନ୍ଧୁ– ଯେଉଁମାନଙ୍କ ଅଶେଷ ଅନୁପ୍ରେରଣା ମନରୁ କେବେ ଲିଭିବ ନାହିଁ। ଏତିକି ବେଳେ ପୁଣି ମନେପଡୁଛି ମୋର ପୂଜ୍ୟ ବୃନ୍ଦାବନ ପାଣିଗ୍ରାହୀଙ୍କ ଅବଦାନ– ମୋ ଜୀବନ ନୌକାକୁ ଅନୁକୂଳ ପ୍ରବାହରେ ଚଳାଇ ନେବା ପାଇଁ ସେ ଅନେକ ସମୟରେ ଜଣେ ମଙ୍ଗୁଆଳର ଭୂମିକା ନେଇଛନ୍ତି। ତାଙ୍କର ଦେବୋପମ ଉପଦେଶ ଓ ପରାମର୍ଶ ଏ ଅକିଞ୍ଚନ ପ୍ରତି କମ୍ ସୌଭାଗ୍ୟର ବିଷୟ ନୁହେଁ।

Digitized by PPRACHIN, SOA

ଆଉ ଯେଉଁ ମଣିଷଟିର ଚିତ୍ର ଏ ଅବସରରେ ଚକ୍ଷୁ ସମ୍ମୁଖରେ ଉଦ୍‌ଭାସିତ ହୋଇ ଉଠୁଛି ସେ ହେଉଛନ୍ତି ଆମ ଟ୍ରେଜେରୀ ସଂସ୍ଥାର ଡାଇରେକ୍ଟର, ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପଟ୍ଟନାୟକ । ଜଣେ ସୁଦକ୍ଷ ଗାଳ୍ପିକ ତଥା ନାଟ୍ୟକାର ଭାବେ ସେ ପରିଚିତ । ତାଙ୍କର ମାନବୀୟ ଚେତନା ମୋତେ ଅଭିଭୂତ କରିଛି । କ୍ଷମତା, ଉଚ୍ଚ ପଦବୀର ମୋହଠାରୁ ଦୂରରେ ରହି ସାହିତ୍ୟ ସାଧନାର ମନ୍ତ୍ର ସେ ଉଚ୍ଚାରଣ କରିଚାଲିଛନ୍ତି । ତାଙ୍କର ପ୍ରୋତ୍ସାହନ ମୋତେ ମୁଗ୍ଧ କରିଛି ଏବଂ ମୋର ସାରସ୍ୱତ ଚଲାପଥକୁ କୁସୁମିତ କରିଛି । ଆଜିର ଏଇ ଶୁଭ ଅବସରରେ ସେଇ ବିମଳ ବ୍ୟକ୍ତିତ୍ୱକୁ ବଧାଇ ନ ଜଣାଇ ରହିପାରୁନି ।

ଆଉ ଜଣେ କୃତୀ କଳାକାର ରହିଗଲେ, ଯାହାଙ୍କ କଥା ନ କହିଲେ ଅସମ୍ପୂର୍ଣ୍ଣ ରହିଯିବ । ସେ ହେଉଛନ୍ତି ଶିଳ୍ପୀ ଦ୍ୱିଜନାଥ ଚଟାର୍ଜୀ । ଚାକିରୀ ଜୀବନରେ ମୋର କେନ୍ଦ୍ରାପଡ଼ା ଅବସ୍ଥାନ କାଳରେ ତାଙ୍କ ସହ ପରିଚୟ— ଯିଏକି ମୋ ଉପନ୍ୟାସର କାହାଣୀଟି ଶୁଣି ସଙ୍ଗେ ସଙ୍ଗେ ମୋ ସମ୍ମୁଖରେ ପ୍ରଚ୍ଛଦ ଚିତ୍ରଟି ଆଙ୍କି ଯାଇଥିଲେ । ଏହା ଭିତରେ କେତେକ ଅନିବାର୍ଯ୍ୟ କାରଣ ବଶତଃ ପୁସ୍ତକ ପ୍ରକାଶନରେ ବିଳମ୍ବ ଘଟିଛି । ଦୁଃଖ-ହାୟ, ସେ ଚିତ୍ରଶିଳ୍ପୀ ଆଜ ଇହ ଜଗତରେ ନାହାନ୍ତି । ଏ ଅବସରରେ ମୁଁ ସେହି ସ୍ୱର୍ଗତ ଶିଳ୍ପୀଙ୍କ ସ୍ମୃତିକୁହିଁ ରୋମନ୍ଥନ କରୁଛି ଓ ତାଙ୍କ ଆତ୍ମାର ଚିରଶାନ୍ତି କାମନା କରୁଛି ।

ମୋ ସାରସ୍ୱତ ଜୀବନଯାତ୍ରା ପଥରେ ବହୁ ହିତାକାଂକ୍ଷୀ ବନ୍ଧୁ । ସମସ୍ତଙ୍କୁ କୃତଜ୍ଞତା ଓ ବଧାଇ ଜଣାଇବାର ଥିଲା । ସମ୍ଭବ ନୁହେଁ । ଅରୁଚି ଲାଗିବ । ପୁସ୍ତକ ପୃଷ୍ଠାକୁ ଅବତରଣ କରିବାର ଧୈର୍ଯ୍ୟ ହୁଏତ ଭାଙ୍ଗି ପଡ଼ିବ । ଶେଷରେ ବାଲେଶ୍ୱର ନିଉ ଟାଉନ ପ୍ରେସ୍‌ର ପ୍ରୋପ୍ରାଇଟର ତଥା ଲିପିକାରମାନଙ୍କୁ ସାଧୁବାଦ ଜଣାଇ ରହୁଛି । ମୋର ଦୀର୍ଘ ଦିନର ଶ୍ରମ ଓ ସାଧନାର ସଫଳ ଏଇ ଉପନ୍ୟାସଟି ଯଦି ପାଠକ ପ୍ରାଣକୁ କିଛି ପରିମାଣରେ ସ୍ପର୍ଶ କରିପାରେ, କିଛିଟା ଆନନ୍ଦ ପ୍ରଦାନ କରିପାରେ, ତେବେ ତାହାହିଁ ହେବ ଏ ଲେଖକ ପ୍ରତି ଶ୍ରେଷ୍ଠ ସାଫଲ୍ୟ ! ଶ୍ରେଷ୍ଠ ଜୟମାଲ୍ୟ !

ବାରିପଦା,
ମାର୍ଚ୍ଚ ୧, ୧୯୮୮

ଶ୍ରୀରାଧାମୋହନ

Digitized by PPRACHIN, SOA

ଗାଁ ଦାଣ୍ଡର ଅପେକ୍ଷାକୃତ ଉଚ୍ଚ ମାଟି ପିଣ୍ଡା ଉପରେ ସପଟିଏ ବିଛାଇ ଦେବକାନ୍ତ ପୁରୁଣା ପତ୍ରିକାଟିଏ ଦୋହରଉଥିଲା । ଘର ଗୁହଳକୁ ସମ୍ଭାଳି ରଖିଥିବା ଦଉଡ଼ିଚିତ କାଠ ଖୁଣ୍ଟଟି ଦେହରେ ତା'ର ଚଉଡ଼ା ପିଠିକୁ ଆଉଜି ରଖି ସେ ବସିଥିଲା । ପତ୍ରିକା ପୃଷ୍ଠାରୁ ଜ୍ଞାନ ଆହରଣର କୌଣସି ଅଭୀପ୍‌ସା ନଥିଲା ତାର, ନଚେତ୍ ବା ସେଥିରେ ଥିଲା ଚିରଞ୍ଜନର ଅଭିପ୍ରାୟ । ବରଞ୍ଚ, ସକାଳର ଉଦାସିଆ ସମୟତକ କୌଣସିମତେ କଟାଇ ଦେବା ଥିଲା ତାର ଉଦ୍ଦେଶ୍ୟ ।

ପୂର୍ବାହ୍ନର ଶେଷାଂଶ ସମୟ– ମଧ୍ୟାହ୍ନ ଉପଗତ । ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିବାର ଉପକ୍ରମ କଲେଣି । ଖରାର ମାତ୍ରା ଅଧିକରୁ ଅଧିକ ଆଡ଼କୁ ଗତି କରୁଥିଲା । ଗାଁର ଓସାରିଆ ଦାଣ୍ଡରେ କୃଷକର ବାହୁଡ଼ା ପର୍ବ, ଗୋମହିଷାଦି ପଶୁମାନଙ୍କର ଝରଲିପି, ପଲ୍ଲୀର ଚିରଚରିତ ଦୃଶ୍ୟାବଳୀ, ତା'ର ସରଳ ଆଉ ନିର୍ଦ୍ଦୋଷାଳ ବିସ୍ତାରିତ କାୟା– ସେଠି ପ୍ରକୃତି ଟୋଳିଥିଲା ତା'ର ଶାନ୍ତ କମନୀୟତା... ଏ ସବୁ ତା ବାଲ୍ୟ ଦିନର ସହସାଥୀ ହୋଇ ଥିଲେହେଁ, ଦେବକାନ୍ତକୁ ନୂଆ ଦିଶୁଥିଲା । ଆଜିର ସହରଭ୍ୟସ୍ତ ପାଠୁଆ ଦେବକାନ୍ତ ମନରେ ପ୍ରସ୍ତୁତ କରୁଥିଲା ଦୁଇ ଜଗତ ମଧ୍ୟରେ ତୁଳନାର ଏକ ଲମ୍ବା ଖସଡ଼ା ।

ସେ ବେଳେ ବେଳେ ଅନ୍ୟମନସ୍କ ରହୁଥିଲା । ମନଟା ପତ୍ରିକା ଭିତରେ ଆବଦ୍ଧ ନରହି ଏଣେ ତେଣେ ଧାଉଁଥିଲା ।

ଦଲୁକାଏ ଚଇତାଳି ପବନ ଶୂନ୍ୟରୁ କୁଦାମାରି ଭୂଇଁରୁ ମେଞ୍ଚାଏ ଧୂଳି ଟୋକିନେଇ ପୁଣି ମହାଶୂନ୍ୟରେ ମିଳାଇଗଲା । କିଛିକ୍ଷଣ ପାଇଁ ଅଞ୍ଚଳର ଗଛବୃଛ ଚଞ୍ଚଳ ହୋଇ ଉଠିଥିଲେ । ତା'ର ଫୁଙ୍ଗୁଳା ତନୁଶ୍ରୀରେ କିଏ ଯେମିତି ଅଗୁରସିଞ୍ଚା ଜଳ ବୋଳି ଦେଲା ! ଦେବକାନ୍ତ ଉଲ୍ଲସିତ



Digitized by PPRACHIN, SOA

ହୋଇ ଉଠିଲା । ପୁନଶ୍ଚ ସେଇ ପୁରୁଣା ପର୍ତ୍ତିକାଟିକୁ ଲେଉଟାଇଲା– ଆଦ୍ୟରୁ ପ୍ରାନ୍ତଯାଏଁ, ପ୍ରାନ୍ତରୁ ଆଦ୍ୟଯାଏଁ । ନାଃ, ମନ ଆଦୌ ଲାଗୁନି । ଘର ଭିତରକୁ ଯିବାକୁ ହେବ ।

ସେଠି ଯାଇ କରିବ କ'ଣ ? ଶ୍ରାବଣୀତ ଘର କାମରେ ଲିପ୍ତ, ତାକୁ ଫୁରୁସତ୍ ନାହିଁ, ଥିଲେ ବି ଦିନ ବେଳରେ ଏଠି ବାର୍ତ୍ତାଳାପ ସମ୍ପୂର୍ଣ୍ଣ ନିଷିଦ୍ଧ– ମଫସଲରେ ଦିନବେଳେ ନବ ଦମ୍ପତିଙ୍କର ମିଳାମିଶା ସାମାଜିକ ପରମ୍ପରା ସମ୍ମତ ନୁହେଁ । ତାଙ୍କ ଘରେ ଏ ନିୟମଟି କଡ଼ା କଡ଼ି ଭାବେ ଧରାଯାଉ ନଥିଲେ ମଧ୍ୟ ସାଇ ପଡ଼ିଶା, ଜ୍ଞାତି କୁଟୁମ୍ବଙ୍କ ଆଖିରେ ଧର୍ତ୍ତବ୍ୟ । ସାଇଭାଇଙ୍କ ସଙ୍ଗେ ଚଳିବାକୁ ହେଲେ ସେମାନଙ୍କ ମନୋଭାବକୁ ପୁରାପୁରି ଏଡ଼ାଇ ଦେଇ ହେବନାହିଁ । ଏଠି ଘରେ ସୋରିଷଟିଏ ଫୁଟିଲେ ଅନ୍ୟଘରକୁ ନିଶ୍ଚିତ ଭାବେ ବାସେ । ବାହାଘରର ଧରାବନ୍ଧା ଆଇନ୍ ପ୍ରଥାରୁ ସାମାନ୍ୟ ବ୍ୟତିକ୍ରମ ହେଲେ, ପାନରୁ ସାମାନ୍ୟ ଚୂନ ଖସିଗଲେ, ତିଳକୁ ତାଳକରି କଥା ରଟେ । ଅତଏବ ଏ ସବୁରେ ସତର୍କତା ବାଞ୍ଛନୀୟ । ଦେବକାନ୍ତ ମୁହଁରୁ ଏସବୁ ଅଯଥା, ଅଭୁତ ପ୍ରଥା ବିରୁଦ୍ଧରେ ବିଦ୍ରୋହାତ୍ମକ ଆଭାସ ଫୁଟି ଉଠୁଥିଲେ ମଧ୍ୟ, ସେ ଥିଲା ନାଚାର । ମନୋଭାବକୁ ଗୁପ୍ତ ରଖୁଥିଲା । କନକନ ମନକୁ ବାନ୍ଧିରଖି ବାହାର ବାରଣ୍ଡାରେ ବସିବା ଛଡ଼ା ଅନ୍ୟ ଉପାୟ ନ ଥିଲା ତା'ର ।

ବିବାହିତା ପତ୍ନୀ, କେଉଁ ଅବା ଲୁଗ୍ସ ପ୍ରେମର କଥା ? ଦିନ ବେଳରେ ଟିକିଏ ଗପସପ କିମ୍ବା ଚେନାଏ ପ୍ରେମ ସ୍ନେହାଣୀର ଆଦାନ ପ୍ରଦାନ ହେଲେ କଉଁ ଅବା ଅପରାଧ ହୋଇ ଯାଉଛି ? ନା, ମନାନାହିଁ । ଏସବୁ ସମସ୍ତଙ୍କ ଅଲକ୍ଷ୍ୟରେ ଅଜଣାରେ ହେଲେ ଅସୁବିଧା ନାହିଁ, କାହାର କିଛି କହିବାର ନାହିଁ । ଚୁପ୍ ଚାପ କାମ କଲେ ମାଇପି ତୁଣ୍ଡରେ ଆପତ୍ତି ଅଭିଯୋଗର ପ୍ରଶ୍ନ ଉଠେନି । ସୁବିଧା ଉଣ୍ଡି କାମ ହାସଲ କଲେ, ଢ଼ିବି ଢ଼ିବି ଢେଙ୍ଗୁରା ପିଟିବାକୁ ସୁଯୋଗ ଦେବ ବା କାହିଁକି ? ବର୍ତ୍ତମାନ କିନ୍ତୁ ସେ ସୁବିଧା ଆସୁନି । ସଞ୍ଜବେଳ ପର୍ଯ୍ୟନ୍ତ, ବରଂ ହୁଏତ ରାତି ଆସିବା ପର୍ଯ୍ୟନ୍ତ ସେ ଏଇ ପରି ସମୟ କଟାଇବାକୁ ବାଧ୍ୟ ହେବ ...... ବଡ଼ କଷ୍ଟକର ।



Digitized by PPRACHIN, SOA

ଘଡି ଯାଇ କେତେବେଳେ ଆସିବ ? ବୁଢା ମାଷ୍ଟ ପାଖେ ଖଡି ଶିଖି-ନଥିବା ଅବୋଧ ଶିଶୁ ସ୍ଲେଟରେ ପ୍ରଥମାକ୍ଷର ଲେଖିଲା ଭଳି ଦେବକାନ୍ତର କ୍ଳିଷ୍ଟତା ବଢିଚାଲିଥିଲା ।

ଏଇମାତ୍ର ସନାତନ ବଡ଼ଜେନାର ପୁଅ ବାହାଘର ଶେଷ ହୋଇଛି । ବଡ଼ପୁଅ – ଗୋଟିଏ ବୋଲି ପୁଅ । ବିବାହ ଉତ୍ସବ ଧୁମ୍‌ଧାମ୍‌ରେ କରିଛନ୍ତି । ସବୁ ଲୋକଙ୍କୁ ଖୋଜି ଖୋଜି ଆଣିଛନ୍ତି । ଘରେ କୁଣିଆ, ମଇତ୍ର, ବନ୍ଧୁବାନ୍ଧବ ଭର୍ତ୍ତି ହୋଇଥିଲେ । ଦୂର ସମ୍ପର୍କୀୟ ବନ୍ଧୁମାନେ ଚଉଠି ପରଠୁଁ ଧୀରେ ଧୀରେ ବିଦା ହେଲେଣି । ଯେଉଁମାନେ ଅତି ନିଜର – ପିଉସା, ପିଉସୀ, ମଉସା, ମାଉସୀ, ମାମୁଁ ଆଦି ରକ୍ତ ସମ୍ପର୍କୀୟ ...... ସେମାନେ ଏଯାଏଁ ଯାଇ ନାହାନ୍ତି । ଏମାନେ ସବୁ ଯିବେ ଆଜି କିମ୍ବା କାଲି । ଏମାନଙ୍କର ମେଇଣି ପର୍ବ ଏଇମାତ୍ର ଆରମ୍ଭ ହୋଇଛି । ସମସ୍ତଙ୍କ ମନରୁ ବାହାଘରିଆ ନିଶା ଛାଡିନି । ବୋଉକୁ ଦଣ୍ଡେ ହେଲେ ତର ନାହିଁ । ତା ଗୋଡ଼ ତଳେ ଲାଗୁନାହିଁ । ଶାଶୁ ହେବାର ଅଖଣ୍ଡ ଗୌରବ ଫୁଟି ଉଠିଛି ତା' ମନରେ । ରୋଷେଇ ଶାଳରେ ସବୁବେଳେ ଗରମା ଗରମ । ବଡ଼ ପିତଳ ହଣ୍ଡାରେ ଭାତ ରନ୍ଧା ହେଉଛି, ଚୂଲିରୁ ନିଆଁ ଲିଭୁନି । ଖଲିପତ୍ର, କଦଳୀ ପତ୍ରରେ ପରସା ପରସି କାମ ଚାଲିଛି । ସାଇଭାଇଙ୍କଠୁ ସାମୟିକ ସୂତ୍ରରେ କିଛି ବାସନ ମାଗି ଆଣିଥିଲେ ମଧ୍ୟ ଅଣ୍ଟୁନି । ଏତେ ଲୋକଙ୍କୁ କଂସା ବାସନ ଅଣ୍ଟିବ ବା କେଉଁଠି ? ଘର କୋଳାହଳମୟ ।

ସକାଳର ଜଳଖିଆ – ଗାଉଁଲି ମୋଟା ଖାଦ୍ୟ ଚୂଡ଼ାଚକଟା, ତହିଁରେ ପାଚିଲା କଦଳୀ, ଗୁଡ଼, ନଡ଼ିଆ । ପେଟେ ଖାଇଥିଲା ଦେବକାନ୍ତ । ପେଟରୁ ଖାଦ୍ୟ ଝଡ଼ି ଆସିଲାଣି ; ଗୁରୁଖାଦ୍ୟ ପାକସ୍ଥଳୀ ଛାଡ଼ି ଏବେ ଅନ୍ତଃନଳୀ ଧରିବଣି ନିଶ୍ଚୟ । ଅବଶ୍ୟ ପୂରପୂରି ଭୋକ ଲାଗିନି । ଦାଣ୍ଡପିଣ୍ଡାରୁ ଉଠଉଠ ହେଲା ଦେବକାନ୍ତ । ଅଳସ ଭାଙ୍ଗିଲା । ଗାଁ ପୋଖରୀ ତୁଠରେ ଭଲକରି ଦେହକୁ ଧୋଇ ଆସି, ପୁଣି ଗରିଷ୍ଠ ଭୋଜନଟିଏ ପକାଇ, ବଉଳ ଗଛମୂଳ ଚାନ୍ଦେନୀ, କିମ୍ବା ଭଗବତ ଟୁଙ୍ଗୀ, ନହିଲେ ବାଟଘର କିମ୍ବା ଚଉପାଢ଼ୀରେ ବିଶ୍ରାମ ନେବ । ଦ୍ୱିପ୍ରହରଟି ବିତାଇବ ଏଇଭଳି ଏକ ସ୍ଥାନରେ ।



Digitized by PPRACHIN, SOA

ଏତିକିବେଳେ ମାନପୁର ଅଞ୍ଚଳ ଦାୟିତ୍ୱରେ ଥିବା ଡ଼ାକପିଅନ ତା ମାନ୍ଧାତା ଅମଳର ଦ୍ୱିଚକ୍ର ଯାନରୁ ଓହ୍ଲାଇ ବାହାନଟିକୁ ମଝିଦାଣ୍ଡରେ ବଉଳ ଗଛରେ ଡ଼େରି ରଖିଲା । ଯାନଟି ପରାଶ୍ରୟୀ, ଛିଡ଼ା ହେବାପାଇଁ ସ୍ୱଶକ୍ତି ନାହିଁ । ମାଲିକ ଏହାକୁ ଅବ୍ୟାହତି ଦେଲା ସମୟଠାରୁ ସେ ଏହିପରି ଅନ୍ୟାଶ୍ରୟୀ ହୋଇଥାଏ ।

ତା ସାଇକଲର ଆହୁରି ଏମିତି ଅନେକ ବିଶେଷତ୍ୱ ଅଛି । ତା'ର ବିଭିନ୍ନାଙ୍ଗ କଳଙ୍କି ଦ୍ୱାରା ସଜ୍ଜିତ । ସେଥିରେ କୌଣସି ଘଣ୍ଟ ବା ବେଲ୍ ନାହିଁ; ଅବଶ୍ୟ ମଫସଲ ଇଲାକାରେ ପୁରୁଣା ସାଇକଲ ଚାଲିଲାବେଳେ ଘଣ୍ଟିର ଆବଶ୍ୟକତା ନ ଥାଏ । ସଙ୍କୀର୍ଣ୍ଣ ଗାଉଁଲି ରାସ୍ତାରେ ଧାବିତା-ବସ୍ଥାରେ ଚେନ୍ ଏବଂ କ୍ରାଙ୍କ୍‌ର ସଂଘର୍ଷରୁ ଆପେ ଆପେ ଏକ ପ୍ରକାର କିମ୍ଭୂତ କିମାକାର ସ୍ୱର ପ୍ରକାଶ ପାଇଥାଏ ; ଯେମିତି ଏକ ଅନିଚ୍ଛୁକ ଭାରବାହୀ ପଶୁ ମାଲିକର ରୁକ୍ଷ ନିର୍ଦ୍ଦେଶ ବିରୁଦ୍ଧରେ ସ୍ୱରୋତ୍ତଳନ କରୁଛି । ପଥଚାରୀଙ୍କ ପାଇଁ ଦ୍ୱିଚକ୍ରଯାନର ଏମନ୍ତ ସ୍ୱର ଏଠା ଲୋକମାନଙ୍କର ଅତି ପରିଚିତ । ଡ଼ାକପିଅନ ଆଖିକୁ ଦୃଶ୍ୟ ହେବା ପୂର୍ବରୁ ତାର ଆବିର୍ଭାବ ସୂଚିତ ହୋଇଥାଏ ତା ଯାନର ଏଇ ଶବ୍ଦ ମାଧ୍ୟମରେ । ପୁଣି ଡ଼ାକପିଅନକୁ ଦେଖିଲେ ମନେହୁଏ, ସେ ଯେମିତି ସେଇ ପୁରୁଣା ଯୁଗର ପ୍ରତୀକଟିଏ - ଇଂରେଜ ଅମଳର ଡ଼ାଲହାଉସୀ ଯୁଗକୁ ଜାବୁଡ଼ି ଧରିଛି — ତାର କୌଣସି ପରିବର୍ତ୍ତନ ନାହିଁ । ମୋଟା ଖାକିପିନ୍ଧା ହାପ୍‌ପ୍ୟାଣ୍ଟ, ପୁରହାତ-ସାର୍ଟ ପ୍ୟାଣ୍ଟ ଭିତରେ ପ୍ରବେଶ କରିଛି । ସରକାରୀ ଛାପମରା ପୋଷାକରେ ତେଲିଆ ମଳି ସିଠା, ଜନ୍ମରୁ ବୋଧହୁଏ ପୋଷାକ ଧୋବାଘର ଦେଖିନି କିମ୍ବା ସୋଡ଼ା ସାବୁନର ସାହାଯ୍ୟ ଲୋଡ଼ିନି । ପାଦରେ ହଳେ ମୋଟା ଚମଡ଼ା ସାଣ୍ଡଲ୍ । ପାଦ ଗତି କଲାବେଳେ ସେଥିରେ ଝୁଲୁଥିବା କ୍ଷୁଦ୍ରକାୟ ଘୁଙ୍ଗୁର ଭଳି ରୁଣୁ ଝୁଣୁ ଶବ୍ଦ ସୃଷ୍ଟିକରି ପିନ୍ଧାଳିର ଉପସ୍ଥିତି ସୂଚାଇ ଦିଏ । ସେଇପରି ମଧ୍ୟ ତା'ର ଛତା । ଖରା ବରଷାସହା, ଶତଶୀର୍ଣ୍ଣ ଅଣିଆ କାଳର ମସିଆ ଛତାଟି ସାଇକଲର ହାଣ୍ଡେଲରୁ ତଳକୁ ଓହଳି-ଥାଏ; ମହାଦେବଙ୍କ ଦେହରୁ ନାଗ ଝୁଲିଲା ଭଳି । ତା ଗୋଳିଆ ଶୀର୍ଷାଂଶ ଏହିପରି ଭୂଇଁମୁହାଁ ଥାଏ । ମାତ୍ର ବ୍ୟବହାର ସମୟରେ ସେ ପୁଣି ବାଦୁଡ଼ି ଭଳି ଡ଼େଣା ମେଲି ଆକାଶକୁ ପିଠି କରେ ।



Digitized by PPRACHIN, SOA

ଡାକପିଅନ କାନ୍ଧରେ ମଧ୍ୟ ଝୁଲୁଛି ମରଚ୍ଚୀ ଯୁଗର ଚମଡ଼ାବ୍ୟାଗ୍ ; ଯାହାକି ତାର ସର୍ବୋତ୍‌କୃଷ୍ଟ ଚିହ୍ନ । ସେଥିରେ ସାଇତା ରହିଛି ଚିଠିପତ୍ର, ପାର୍ଶଲ, ମନିଅର୍ଡର ଟଙ୍କା ଆଦି ଅନେକ ସର୍ବସାଧାରଣର ସମ୍ପତ୍ତି । ସେଇ ସମ୍ପତ୍ତିକୁ ଠିକ୍ ଠିକଣାରେ ବାଣ୍ଟି ଡାକପିଅନ ଗର୍ବ ଅନୁଭବ କରେ । କାର୍ଯ୍ୟରତ ଥିବା ଅବସ୍ଥାରେ ତା ମୁହଁରୁ ଉକୁଟି ଉଠେ – ଜନତା ସେବା ମୋର ପରମ ଧର୍ମ ......

ପର୍ଭିକାଟିରୁ ଆଖି ଘୁଞ୍ଚାଇ କିଛି ସମୟ ହେଲା ଦେବକାନ୍ତ ଲକ୍ଷ୍ୟ-କରୁଥିଲା ଡାକ ପିଅନର ସେବା ମନୋବୃତ୍ତି, ତାର ଚିରଚରିତ ବ୍ୟବହାର୍ଯ୍ୟ ପଦାର୍ଥ ଗୁଡ଼ିକୁ ; ଚିନ୍ତା କରୁଥିଲା– ହୁଏତ ଆଉ କିଛିଦିନ ପରେ ସେଗୁଡ଼ିକ ସଂଗ୍ରହାଳୟର ସାମଗ୍ରୀ ହୋଇଯିବ । ସମୟର ବିବର୍ତ୍ତନରେ ସେଗୁଡ଼ିକ ହୋଇଯିବ ବିଲୁପ୍ତ, ବିଲୀନ ।

ମାନପୁର ଗାଁକୁ ସବୁଦିନିଆ ଡାକ ବ୍ୟବସ୍ଥା ନଥାଏ । ଡାକଘର ରହିଲା ଯାଇ ଚନ୍ଦ୍ରଗିରି ବ୍ଲକ ଅଞ୍ଚଳରେ – ଠିକ୍ ଗମ୍ଭାପଲ୍ଲୀ ଛକରେ ଯେଉଁ-ବାଟ ଦେଇ ଦୈନିକ ବସ୍ ଯାତାୟତ କରେ । ଏଠାରୁ ଅନ୍ତତଃ ଛ' ମାଇଲ ଖରଦିନିଆ ବଙ୍କା, ବୁଲା ରାସ୍ତା । ବର୍ଷା ଦିନେ ରାସ୍ତାଘାଟର ଦୁରବସ୍ଥା ଆହୁରି ଅଧିକ । ଗମ୍ଭାପଲ୍ଲୀ ଛକକୁ ଯିବାପାଇଁ ସହଜ ସୁବିଧା ରାସ୍ତା କମା ନଥାଏ । ନିହାତି ଦରକାର ପଡ଼ିଲେ ପାଣିପୂର୍ଣ୍ଣ ନଈନାଳ, ଜୋର, ହିଡ଼ବାଡ, ବୁଦା ବିଲ ପାରି ହେବାକୁ ପଡ଼େ । ଏମିତି ଶୁଖିଲା ପାଗ ଦିନମାନଙ୍କରେ ଡାକବାଲା ସପ୍ତାହକେ ଥରେ ଆସି ଡାକ ବାଣ୍ଟିଯାଏ ।

ଏ ଅଞ୍ଚଳରେ କେହି ଯଦି ଲୋକଙ୍କ ସହିତ ଖୁବ୍ ପରିଚିତ ଥାଏ, ସେ ହେଉଛି ଏଇ ଡାକବାଲା- କାମଦେବ । ପଞ୍ଚାବନ ବୟସ ପାରି ହୋଇଥିଲେହେଁ ସେ ଗତ ପଇଁତିରିଶ ବର୍ଷ ହେବ ତା ଦାୟିତ୍ୱ ନିଷ୍ଠାର ସହ ତୁଲାଇ ଆସୁଛି । ତା ଆସିବାକୁ ଲୋକେ ଉଣ୍ଡି ବସିଥାନ୍ତି । କିଏ ତା'ଠୁ ପୋଷ୍ଟକାର୍ଡ ଲଫାପାଦି ଖରିଦ କରେ । ସ୍ୱାମୀ ନଥିବା ଘରେ ଦର ଆଉଜା କବାଟ ପାଖେ କାମଦେବ ଛିଡ଼ାହୋଇ ଅଧାଲୁଗ୍, ଅଧାଦିଶା ଯୁବତୀ-ରମଣୀ ହାତରେ ବିଦେଶୀ ସ୍ୱାମୀର ଚିଠି ଧରାଇ ଦିଏ । ଆବଶ୍ୟକ



Digitized by PPRACHIN, SOA

ଘଳେ ପରାମର୍ଶ ଦାତା ମଧ୍ୟ ବନିଯାଏ । ସୁଖର ସମ୍ବାଦ ହୋଇଥିଲେ ସେଥିରୁ ଜାଣିଶୁଏ ଭାଗ ନେବାକୁ ଚେଷ୍ଟାକରେ । ଦୁଃଖଦ ଘଟଣାରେ ଆଶ୍ୱାସନା ଭରିବାକୁ ପଛାଏ ନାହିଁ । ସେ ଏ ଗଉଳର ସୁଖଦୁଃଖର ବାର୍ତ୍ତାବାହକ, ସେଥିପାଇଁ ଏ ଅଞ୍ଚଳରେ କାମଦେବର ଲୋକପ୍ରିୟତା ଅଧିକ ।

କିଛିକ୍ଷଣ ହେଇ ଦେବକାନ୍ତ ତା'ରି କଥାହିଁ ଭାବୁଥିଲା । ତା'ର ଏଇ ସେବାଭାବ ଦେବକାନ୍ତ ତା' ହେତୁ ପାଇଲା ଦିନରୁ ଦେଖି ଆସୁଛି । କାମଦେବର ରୂପରେ, ଚେହେରାରେ ସେମିତି କିଛି ପରିବର୍ତ୍ତନ ହେଲାପରି ମନେ ହେଉନାହିଁ । ଯୁଗ ବଦଳୁଛି, ସମୟର ପ୍ରବହମାନ ଚଳନ୍ତିକାରେ ସମାଜ ପେଷି ହେଉଛି, ସମସ୍ତେ ଘାଣ୍ଟି ହେଉଛନ୍ତି । କିନ୍ତୁ କାମଦେବ ଠାରେ ଯୁଗଟା ଯେମିତି ଥାଣୁ ପାଲଟି ଯାଇଛି । ତା'ର ସେଇ ପିତ୍ତଳ ତାରର ଗୋଲ କାଚ ଚଷମା ଏବେ ମଧ୍ୟ ଅପରିବର୍ତ୍ତିତ– କେବଳ ଚଷମାର ଗୋଟିଏ ବାହୁ ଛିଣ୍ଡିଯାଇ ସେଇ ମାପର କଳା ସୂତାଟିଏ ସ୍ଥାନ ପୂରଣ କରିଛି ।

କାମଦେବ ତା' ଆଡ଼କୁ ଆସୁଥିବାର ଦେଖି ଦେବକାନ୍ତ ଉତ୍‌ଫୁଲ୍ଲ ହୋଇ ଉଠିଲା । ଚିଠି ନିଶ୍ଚୟ । କେଉଁଠୁ ହୋଇପାରେ ?

"ଦେବବାବୁ, ଆଜି ରେଜିଷ୍ଟ୍ରି ଚିଠି"– କହିଲା ଡାକପିଅନ ତା'ର ସ୍ୱାଭାବିକ ସରଳ ଢଙ୍ଗରେ ।

ଦସ୍ତଖତ ଦେବା ଅବସରରେ ଦେବକାନ୍ତ ରୋମାଞ୍ଚିତ ହୋଇ ଆଖି ବୁଲାଇ ଆଣିଲା ପତ୍ରର ଖୋଳକ ଉପରେ–କଲିକତାର ଏକ ନାମଜାଦା କମ୍ପାନୀ–'ବ୍ରୁକ୍‌ବଣ୍ଡ ଇଣ୍ଡିଆ ଲିମିଟେଡ୍ ।'

ଚିଠିଟି ତା'ହେଲେ କ'ଣ ହୋଇପାରେ ? ଉତ୍ସାହୀ ହାତରେ ତର ତର ହୋଇ ଖୋଲି, ପଢ଼ିଲା ।

କ'ଣ ଦେବବାବୁ, ସବୁ ଭଲତ ? – କାମଦେବର ଉତ୍କଣ୍ଠା ।

କିଛି କହିବା ପୂର୍ବରୁ ଦେବକାନ୍ତ ମୁହଁରେ ନୈରାଶ୍ୟର ଆଭାସ । ଜିଜ୍ଞାସାର ସ୍ୱରକୁ ଦମନକରି, ଆଉ ଅଧିକ କିଛି ନ କହି କାମଦେବ ଅନ୍ୟତ୍ର



Digitized by PPRACHIN, SOA

ଯିବାକୁ ଉଦ୍ୟତ ହୁଅନ୍ତେ, ଦେବକାନ୍ତ ଘର ଭିତରକୁ ଗ୍ରହି ଡାକ ଛାଡ଼ିଲ– ଟିକିନୀ, ଟିକିନୀ; ବୋଉ, ବୋଉ; କିଏ ଅଛ ... କାମଦେବ ଆସିଛନ୍ତି, ତାଙ୍କ ପାଇଁ କିଛି ଖାଇବାକୁ ଆଣ ।

ଆଖିକୁ ପ୍ରସାରିତ କରି କାମଦେବ ଆନନ୍ଦିତ ହୋଇ କହିଲ– ଓ, ଆମ ଦେବବାବୁଙ୍କ ବାହାଘର ହୋଉଛି ପର !

କାମଦେବ ମୁହଁରୁ କୁଶଳ କାମନା ଝରିଲ– ଦୀର୍ଘଜୀବୀ ହୁଅ ବାବୁ, ବଡ଼ ଗ୍ରକିରୀ କର, ହାକିମ ହୁଅ, ସ୍ତ୍ରୀ ତୁମର ଅହିସ୍ଥଲକ୍ଷଣୀ ହୁଅନ୍ତୁ, ତାଙ୍କ ହାତ କାଚ ବଜର ହୋଇଥାଉ, ସୁଖର ସଂସାର ଗଢ, ଧନଜନ, ଗୋପଲକ୍ଷ୍ମୀରେ ସନାତନ ବଡ଼ଜେନାଙ୍କ ଘର ଭରପୁର ହୋଇ ଉଠୁ ... ...

କାମଦେବ ଅନ୍ୟପାଖ ବାରଣ୍ଡାରେ ଠୁଙ୍କା ହୋଇ ବସିଲ । ମୁହଁରେ ତା'ର ସନାତନ ବଡ଼ଜେନାଙ୍କୁ ପ୍ରଶଂସା । ଗ୍ରଷୀ ପୁଅକୁ ପାଠ ପଢାଇବା ପାଇଁ ତାଙ୍କର ଅକ୍ଲାନ୍ତ ଉଦ୍ୟମ, ଐକାନ୍ତିକ ଚେଷ୍ଟା ସଫଳ ହୋଇଛି । ଏ ଇଲକାର ସନାତନ ବଡ଼ଜେନାଙ୍କ ପୁଅ ପ୍ରଥମ ବି ଏ: ଏବଂ ପ୍ରଥମ ଏମ୍.ଏ: । ମୁଁ ଖବର କାଗଜରୁ ପଢି ପ୍ରଥମେ ଖବର ଦେଇଥିଲି ନା ? କଷ୍ଟକଲେ ଏମିତି କୃଷ୍ଣ ମିଳନ୍ତି ବାପା । ବଡ଼ ହାକିମ ବନି ମାଟିର ନାଁ ରଖ ବାପା । ହେଲେ ବାବୁ, ହାକିମ ହେଲେ ଆମକୁ ଆଉ ପଗ୍ରରିବ ନା ? ବାବୁ, ଆମ ବଡ଼ ଡାକଘରର ପୋଷ୍ଟ ମାଷ୍ଟରବାବୁ ରିଟାର୍ କରିବେ ଆସନ୍ତା ମାସରେ । ତମେ ତାଙ୍କ ଯାଗାକୁ ଆସନ୍ତକି ? ଏମିତି ଅନେକ କଥା କାମଦେବ ଏକତରଫା ଗପିଗ୍ଲିଥାଏ ।

ଟିକିନୀ କଂସା ଥାଳିରେ କିଛି ଚୂଡା, ଉଖୁଡା, ଦି'ଟା କଦଳୀ ଏବଂ ଆରିସାପିଠା, ଗୋଟିଏ ଜଳପୂର୍ଣ୍ଣ ଡାଳ ଏବଂ ଗୋଟିଏ ପିଢ଼ା ଆଣି ପିଣ୍ଡାରେ ରଖିଲ । କାମଦେବ କୃତଜ୍ଞତାର ସହ ସେଗୁଡ଼ିକୁ ଉଦରସ୍ଥ କଲ । ଗଲବେଳେ ପୁଣି ଅନେକ ଆଶୀର୍ବାଦ ଦେଇଗଲ ।

ଚିଠିଟି ପଢି ଦେବକାନ୍ତ ହତାଶ ହୋଇଥିଲ । ଏହା କୌଣସି ନିଯୁକ୍ତି ପତ୍ର ନୁହେଁ, କେବଳ ଇଣ୍ଟରଭ୍ୟୁ ପାଇଁ ଡାକରା । ନିଯୁକ୍ତି ପତ୍ର କାହିଁ ? ଖାଲି ଝର୍ଚ୍ଚାନ୍ତ ହୋଇ ଜିଲ୍ଲା ନିଯୁକ୍ତି ଅଫିସ, ବ୍ୟାଙ୍କ୍,



Digitized by PPRACHIN, SOA

କର୍ପୋରେସନ, କମ୍ପାନୀ ଆଦି କାର୍ଯ୍ୟାଳୟକୁ ଦୌଡ଼ି ଗୋଡ଼ରୁ ପାଣି ମରଣି, ଧୈର୍ଯ୍ୟ ଅତଡ଼ା । ଚାକିରୀର କିଛୁ ଦର୍ଶନ ନାହିଁ । ଖାଲି ଇଣ୍ଟରଭ୍ୟୁ ପାଇଁ ଡାକରା । ଧେ ତେରିକା...... ଚିଠିକୁ ନେଇ ଚମଡ଼ା ସୁଟ୍‌କେଶ ଭିତରେ ଫିଙ୍ଗିଦେଲେ ଅତି ନିସ୍ପୃହ ଭାବରେ ।

ଗୃହରେ ଲୋକ ରହନ୍ତି ସତ୍ତ୍ୱେ କାର୍ଯ୍ୟରତା କୁଳକାମିନୀ ଏସବୁ ଲକ୍ଷ୍ୟ କରୁଥିଲେ ତା ତୃତୀୟ ନୟନ ମାଧ୍ୟମରେ । ଦେବକାନ୍ତ ମୁହଁର ଅବସନ୍ନତା ଅନୁମାନ କରି ଚୁଟ୍‌କରି ଚାଲି ଆସିଲେ ତାଙ୍କ ଶୋଇବା ବଖରା ଭିତରକୁ । ଗୃହ ଜଞ୍ଜାଳରେ ମଜ୍ଜିରହି ସେ କିପରି ସ୍ୱାମୀର କାର୍ଯ୍ୟକଳାପ ଉପରେ ଆଖି ରଖିଥିଲା, ଆଶ୍ଚର୍ଯ୍ୟ ଲାଗିଲା ଦେବକାନ୍ତକୁ ।

ସାନ ଭଉଣୀ ଟିକିନୀ ଶିଳ ଉପରେ ମସଲା ସଜାଡ଼ି ରଖିଥିଲା । ଚିକ୍‌କଣ କରି ବାଟିବା ପାଇଁ ବୋଉର ନିର୍ଦ୍ଦେଶ । ଭାତ ରନ୍ଧାକାମ ଶେଷ ହେଲାଣି । ମୁଗଡାଲି ବଡ଼ ଡେକିଚିରେ ଗବ୍ ଗବ୍ ହୋଇ ଫୁଟୁଛି, ପବନରେ ତା ମହକ ବାଣ୍ଟୁଛି । ମସଲା ବଟା ସରିଲେ କଖାରୁ, ଖମ୍ବଆଳୁ, ପୋଇ ବାଇଗଣରେ ବଡ଼ି ପଡ଼ି ଗୋଳିଆ ଗୋଳି ଘାଣ୍ଟ ହେବ । ବାପାଙ୍କର ପେଟ ବେମାରୀ । ଗରିଷ୍ଠ ଖାଦ୍ୟ, ମସଲା ମସଲି, ରାଗ ତାଙ୍କ ଦେହରେ ଯାଏନା । ତାଙ୍କ ପାଇଁ ଲଘୁପାକ, ସାଦା ତିଅଣ– ପାଣିଆ ସନ୍ତୁଳା । ବୋଉ ଏ ସବୁ କାମ ବରାଦ କରି ଠାକୁର ଘର ଗମ୍ଭୀରି ଭିତରେ ଦିଅଁ ସେବାରେ ଲାଗିଛି । ଦିଅଁ ସେବା ତାର ନିତି ଦିନିଆ କାମ । ଆଜି ତିଥି ଅନୁଯାୟୀ, ଆମର୍ଦ୍ଦକୀ ଏକାଦଶୀ, ପୁଣି ରବିନାରାୟଣ ବ୍ରତ । ବାହାଘରିଆ ବ୍ୟସ୍ତତା ଭିତରେ ପୂଜାକାମ ବିଳମ୍ବ ହୋଇ ଗଲାଣି । ଦିଅଁ ଘରେ ଠାକୁର ଗାଧୁଆ କାମ, ଦିଅଁଙ୍କ ପୁଷ୍ପାଭିଷେକ ଆଦି ଅନେକ କାମସାରି ବୋଉ ଦିଅଁଘରୁ ସଅଳ ବାହାରିବାର ସମ୍ଭାବନା ନାହିଁ ।

ଦେବ ବାପା ବାରିପଟ ଗୁହାଳ ଗୋରୁ ମାନଙ୍କ ପିଛା ଲାଗି ରହିଥିଲେ ସକାଳ ପହରୁ । ଗୋରୁମାନଙ୍କ ଗୋଡ଼ରେ ଫାଟୁଆ ହୋଇଛି, କେତେକଙ୍କ ଖୁରାରେ ପୋକ ଲାଗିଲେଣି । କେଇଦିନ ହେବ ଏ ଅଞ୍ଚଳରେ



Digitized by PPRACHIN, SOA

ଗୋରୁମାନଙ୍କୁ ଏହି ସଂକ୍ରାମକ ରୋଗ ବ୍ୟାପିଛି, ଗୋ–ମଡ଼କ ପଡ଼ିଛି । ସେମାନେ ଆଜି ଗୁହାଳରୁ ଚରଭୂଇଁକୁ ଫିଟି ନାହାନ୍ତି । ସେମାନଙ୍କର ଦେଶୀ ଗାଉଁଲି ଚିକିତ୍ସା– ପବଚ୍ଛରୀ ପତ୍ର ସୋରିଷ ସହିତ ବାଟି ଗଡଡ଼ ସାହାଯ୍ୟରେ ସଂକ୍ରମିତ ଗୋରୁମାନଙ୍କ ମୁହଁରେ ଟେଣ୍ଡୁ ଥିଲ ଦେବ ବାପା। ଉଷୁମ ଲୁଣିଆ ପାଣିରେ ଫାଟ ଘା' ଧୁଆ ଗ୍ରଲିଥିଲି । ଅନ୍ୟ ସମୟରେ ମଧ୍ୟ ସନାତନ ଏହିପରି ଗୋ–ସେବାରେ ଲଗିଥାଏ । ଗୋ–ସେବା ପରମ ଧର୍ମକୁ ସେ ଆନ୍ତରିକତା ସହ ପାଳନ କରିଥାଏ । ଏହା ତାର ସହଜାତ ଗୁଣ । ଆଜି ଗୁହାଳରୁ ଏତେ ଟଞ୍ଚଳ ଅବ୍ୟାହତି ନାହିଁ ।

ଘରର ଅନ୍ୟ ଆମନ୍ତ୍ରିତ ବ୍ୟକ୍ତିମାନେ କିଏ କୁଆଡ଼େ ବ୍ୟସ୍ତ ଥିଲେ । ପିଉସୀ, ମାଉସୀ ସକାଳ ବେଳା ପଖାଳ ଖାଇ ସାଇ ବୁଲିଯାଇ ଥିଲେ । ବହୁଦିନ ପରେ ପିଉସୀଙ୍କୁ ନିଜ ବାପଘର ଗାଁ ବୁଲିବାର ସୁଯୋଗ ମିଳିଛି । ଦି' ପହର ଖିଆ ପୂର୍ବରୁ ସେମାନେ ଘରକୁ ଫେରିବା ଭଳି ଲଗୁନି । ଘରଟା ହଠାତ୍ ଯେମିତି ନିଃଶେଳା ପଡ଼ି ଯାଇଥିଲା । ଏ ସୁଯୋଗ ଛାଡୁଛି କିଏ ? ଗୁରିଆଡ଼କୁ ଗ୍ରହିଁ ଖୁବ୍ ସତର୍କତାର ସହିତ ଶ୍ରାବଣୀ ଖସି ଆସିଥିଲି ଦେବକାନ୍ତ ପାଖକୁ । କମ୍ ସାହସ ନୁହେଁ ତ ?

ଚଉଠି ଦିନବେଳର ଘଟଣା ହଏତ ତା' ମନରେ ଭୁଲ ଧାରଣା ସୃଷ୍ଟି କରିଥିଲ । ଏବେ ଦେବକାନ୍ତ ସେଇ କଥାକୁ ମନେ ପକାଇ ସରମରେ ଜୁଡୁ ବୁଡୁ ହୋଇ ପଡୁଛି, ଆପେ ଗୁଡ଼ାଏ ନ ହସି ରହିପାରୁନି ।

ଚତୁର୍ଥୀ ଦିନ ସକାଳ ବେଳର ଘଟଣା– ବୋହୂ ଘରକୁ ଆସିବାର ଠିକ୍ ଗ୍ରନିଦିନ । ବାହାଘରର ଅନେକ ବିଧି ବିଧାନ, ବୈଦିକ ରୀତିରେ ମନ୍ତ୍ରପାଠ । କାଉ କା କଲ ପୂର୍ବରୁ, ସିନ୍ଦୁର ଫାଟିବା ଆଗରୁ ଗାଁ ମୁଣ୍ଡ 'ମହାବାଳୀ' ପୋଖରୀ ତୁଠରେ ନବବଧୂର ଗାଧୁଆ ପାଧୁଆ କାମ ଶେଷ ହୋଇ ଯାଇଥାଏ । ବଡ଼ିଭୋରରୁ ସମସ୍ତେ ଧଡ଼ ପଡ଼ ହୋଇ କାମରେ ଲଗିଯାଇଥାନ୍ତି । ସଭିଙ୍କ ମନରେ ନାହିଁ ନ ଥିବା ଚଞ୍ଚଳତା, କର୍ମରେ ଅଧିକ ତତ୍ପରତା ଅନୁଭୂତ ହେଉଥିଲ । ସନାତନ ବଡ଼ଜେନାର ପାଠୁଆ ପୁଅର ବାହାଘର । ଦେବକାନ୍ତର ନିତ୍ୟକର୍ମ ଶେଷହେଲ ବେଳକୁ ଘରେ ସାଇ ମାଇକିନିଆଁ, ବନ୍ଧୁବାନ୍ଧବ ଜ୍ଞାତି କୁଟୁମ୍ବଙ୍କର ଭିଡ଼ ଜମି



Digitized by PPRACHIN, SOA

ଆସିଥାଏ । ବଡ଼ ପାଟିଆ କମୁମା' ଭଣ୍ଡାରୁଣୀ ପୂଜା ଉପଗାର, ହୋମ ସରଞ୍ଜାମ ବେଦୀ ଉପରେ ସଜାଡ଼ିବାରେ ଲାଗିଥାଏ । ଅଗଣାରେ ସୁନ୍ଦର ବେଦୀଟିଏ ସଯତ୍ନରେ ନିର୍ମିତ । ରଙ୍ଗମାଟିରେ ଲିପାଯାଇ ତା' ଉପରେ କେତେ ରକମର ଚିତା, ମୁରୁଜ । ଘରର ପ୍ରଥମ ବିବାହୋତ୍ସବ, ପୁଣି ପୁଅ ବାହାଘର । ଆନନ୍ଦ ଉତ୍ସାହରେ ଘର ଦୋଲୁକି ଉଠୁଛି । ଶାନ୍ତିପୁରୀ ବିବାହ ଯୋଡ଼ ପିନ୍ଧି ଦେବକାନ୍ତ ବେଦୀ ଉପରକୁ ଉତ୍ତୀର୍ଣ୍ଣ ହେଲା । ବୋହୂକୁ ଗାଢ଼ା ନାଲି ବନାରସୀ ପାଟ ପିନ୍ଧାଇ, ମୁଣ୍ଡରେ ଜରିପକା ନାଇଲନ୍ କପଡ଼ାର ଲମ୍ବା ଓଢ଼ଣା ଟାଣି, ଅଣ୍ଟାଠୁ ତାର ମାଂସଳ ଦେହକୁ ଧନୁପରି ବଙ୍କେଇ ଧୀରେ ଧୀରେ ଖୁବ୍ ସନ୍ତର୍ପଣରେ ମାଇପିମାନଙ୍କ ମେଳରେ ବେଦୀ ଉପରକୁ ଅଣାଗଲା । ଶଙ୍ଖ ହୁଳହୁଳି ନାଦରେ ଘର ଉଠୁଛି ପଡୁଛି । ବିବାହ ରୀତିର ପ୍ରାରମ୍ଭିକ କାର୍ଯ୍ୟକ୍ରମ ଚାଲୁରହିଲା । କୁଳ ପୁରୋହିତ ଗଳା ଫଟେଇ ବୈବାହିକ ମନ୍ତ୍ର ଉଚ୍ଚାରଣ କରୁଥିଲେ । ସର୍କସର ପୋଷା ମାନିଲା ଜୀବ ଭଳି ବର କନିଆଁ ସମାଜର ପ୍ରଚଳିତ ପ୍ରଥାଗୁଡ଼ିକୁ ନିର୍ଦ୍ଦେଶ ମତେ ପାଳନ କରୁଥିଲେ ଅକ୍ଷରେ ଅକ୍ଷରେ । ଏହା ଥିଲା ପୂର୍ବାହ୍ନର ଅଧିବେଶନ । ପୁଣି ବେଦୀ କାମ ଆରମ୍ଭ ହେବ ଉପରବେଳା । ପିତୃପୁରୁଷଙ୍କୁ ଶ୍ରାଦ୍ଧ, ପିଣ୍ଡଦାନ, ଇଚ୍ଛାହୋମ, ଏମିତି ଅନେକ ଆନୁଷଙ୍ଗିକ କର୍ମ । ତା' ପରେ ଯାଇ ବୋହୂ ଏ ବଂଶର ଯୁଗ ଯୁଗ ପାଇଁ କୁଳଲକ୍ଷ୍ମୀ ହେବ, ସାତ ପୁରୁଷଙ୍କୁ ପାଣିଦେବ । ଅପରାହ୍ନ ଅଧିବେଶନ ପୂର୍ବରୁ ଏବେ କିଛି ସମୟ ବିରତି......

କ୍ଷୁଦ୍ର କୁଟୀରଟି ଜନାରଣ୍ୟ । ଲୋକ ଭରପୂର, ସ୍ତ୍ରୀ ଲୋକ, ବଡ଼ପିଲା ଓ ଛୋଟ ଶିଶୁମାନଙ୍କର ଭିଡ଼...... ଖଞ୍ଜାର ମଝି ବଖରାଟି ବରକନ୍ୟାଙ୍କ ପାଇଁ ଉଦ୍ଦିଷ୍ଟ । ଘରଟି ସଫାସୁତୁରା; ସକ୍ଷାନୁଯାୟୀ ସଜଡ଼ା ଯାଇଛି । ମଝିର ବାଡ଼ା ପଲଙ୍କ ଉପରେ ନୂଆ ପତଳା ଜପା ଗଦିଟିଏ ଏବଂ ଉପରେ କାମ-କୁଟା ସୋଲାପୁରୀ ବିଛଣା ଚଦର ପାଗ ଯାଇଛି । ଏହିଠାରେ ପାଳିତ ହେବ ପୁଅ ବୋହୂଙ୍କର ପହିଲି ମଧୁଯାମିନୀ । ରାତିତ ବହୁତ ଦୂରରେ ଅଛି, ଏଇନେ ସମୟ ମାତ୍ର ଦିନ ଦଶ । ଦେବକାନ୍ତର ମନେ ହେଉଥିଲା, ଯେମିତି ଘଡ଼ିର କଣ୍ଟା ଧିମେଇ ଯାଇଛି, ଗତିରେ ମନ୍ଥରତା ଆସିଛି । ବାରମ୍ବାର ଲୁଚି ଲୁଚି ଚାହୁଁଥିଲା ତା ହାତବନ୍ଧା ପୁରୁଣା ଘଡ଼ିକୁ । ଖଗପ



Digitized by PPRACHIN, SOA

ହୋଇଗଲା ନା' କ'ଣ ଏତିକି ବେଳକୁ ? ବୋହୂର ରୂପ ଦେଖି ସେ ଲେଭେଇ ଯାଇଛି । ବେଦୀ ଉପରେ ହାତଗଣ୍ଠି ପଡ଼ିଲା ବେଳେ ବରକନ୍ୟାଙ୍କର ହାତ ଯୋଡ଼ି ଯାଇଥିଲା, ଦେବକାନ୍ତ ସେଥିରେ ଅନୁଭବ କରିଥିଲା ଅପୂର୍ବ ଶିହରଣ । ଦୁଇହାତର ସଂଯୋଗ ସମୟରେ ଅନୁଭବ କରିଥିଲା କ୍ଷୀଣ ବିଜୁଳି ସ୍ରୋତର ମନ୍ଦ୍ର ଉନ୍ମାଦ – ଗୋଟିଏ ମାଧ୍ୟମରୁ ଆଉ ଏକ ମାଧ୍ୟମକୁ...... ଏକ ନୂଆ ପୁଲକ, ଯାହା କାହାରି ଆଖିକୁ ଦିଶିନଥିଲା, ସେ କିନ୍ତୁ ଗଭୀର ଭାବେ ଅନୁଭବ କରିଥିଲା । ବସ୍ତ୍ର ଆବରଣ ଭିତରୁ ଭଣ୍ଡାରୁଣୀ ଯେତେବେଳେ କନିଆ ହାତକୁ ପ୍ରସାରିତ କରି ଆଣିଥିଲା, ଗୋରା ସୁନ୍ଦର ହାତଟିକୁ ଦେଖି ଦେବକାନ୍ତ ଆତ୍ମହରା ହୋଇ ବସି ଥିଲା । ହାତଗଣ୍ଠି ବେଳେ ବିଶି ଆଙ୍ଗୁଠିକୁ ଅଙ୍ଗୁଳି ଶୃଙ୍ଖଳରୁ ଆସ୍ତେ ଖସାଇ ନେଇ କନିଆଁର ପାପୁଲିରେ ବୟସ ସୁଲଭ ଦୁଷ୍ଟାମି ଆରମ୍ଭ କରି ଦେଇଥିଲା ଅତି ଗୁପ୍ତଭାବେ । ଉପସ୍ଥିତ ଆଖିଗୁଡ଼ିକୁ ଦୁଷ୍ଟାମିଟି ଗୋପନୀୟ ଥିଲା- ବୋଲି ଦେବକାନ୍ତ ନିଶ୍ଚିତ ଥିଲା ।

ସେତିକି ବେଳୁ ଦେବକାନ୍ତ ଆତୁର ହୋଇ ପଡ଼ିଲାଣି । ନିଶାର୍ଦ୍ଧର ନିଶୂନ ମୁହୂର୍ତ୍ତ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ତା'ର ଆଉ ଧୈର୍ଯ୍ୟ ନାହିଁ । ହଠାତ୍ ସୁଯୋଗଟାଏ ଯେମିତି ତା' ନିକଟକୁ ଉଡ଼ି ଆସିଲା । କନ୍ୟା କୋଠରୀରେ କେହି ନାହାନ୍ତି । ସ୍ତ୍ରୀ ଲୋକମାନେ ନିଜ ଧନ୍ଦା, ଖିଆପିଆ ଏବଂ ଛୁଆ ପିଲାମାନଙ୍କ କାମରେ ଲାଗିଛନ୍ତି । ଟିକିନୀ ମଧ୍ୟ ନାହିଁ, ନୂଆବୋଉ ପାଇଁ ସରବତ୍ ଯୋଗାଡ଼ କରୁଛି କେଉଁଠି । ବେଳ ଦେଖି, ଓର ଉଣ୍ଡି, ପୋଷାକ ପାଲଟିବା ବାହାନାରେ ଅଚାନକ କୋଠରୀ ଭିତରକୁ ପଶି ଯାଉଁଳି କବାଟକୁ ଭିତର ଆଡୁ ଆଉଜି ଦେଇଥିଲା ଦେବକାନ୍ତ । ପଲଙ୍କ ଉପରେ ନିଶ୍ଚଳ ଭାବେ ବସି ରହିଥିଲା ଶ୍ରାବଣୀ ଗୋଟିଏ ସଜ୍ଜିତ ଖେଳନା ଭଳି । ତା'ର ସୁଗୋଲ ମୁହଁଟି ଦେଖି ଦେବକାନ୍ତ ବିଭୋର ହୋଇ ପଡ଼ିଥିଲା, ଆତ୍ମହରା ହୋଇଥିଲା । ଭୁଲି ଯାଇଥିଲା ସ୍ଥାନ, କାଳ, ପାତ୍ର । ସ୍ତ୍ରୀ ମୁହଁର ସେ ମୁହୂର୍ତ୍ତର ସେ ସୌନ୍ଦର୍ଯ୍ୟକୁ ବର୍ଣ୍ଣନା କରିବା ପାଇଁ ଏ ପର୍ଯ୍ୟନ୍ତ କୌଣସି ଉପମା ଖୋଜି ପାଇନାହିଁ ଦେବକାନ୍ତ ।



Digitized by PPRACHIN, SOA

ଽରେ ଶ୍ରାବଣ

ସ୍ୱାମୀଙ୍କୁ ଆଗରୁ କେବେ ଦେଖିବାର ସୁଯୋଗ ପାଇନଥିଲା ଶ୍ରାବଣୀ। ତା'ର ପ୍ରଥମ ଦର୍ଶନ, ଦିବ୍ୟ ଦର୍ଶନ। ନାମାନୁଯାୟୀ ସ୍ୱାମୀଙ୍କର ସୌମ୍ୟକାନ୍ତି ଚେହେରା। ତାଙ୍କ ବିଷୟରେ କେବଳ ତା' ବୋଉ ମୁହଁରୁ ଯାହା ବହୁବାର ଶୁଣିଥିଲା। ବୋଉ କହୁଥିଲା– ଦୁଲଣା ମାଉସୀର ପଢୁଆ ପୁଅ ; ଭାରି ଗୁଣର। କାନ କାଟିଲେ ବଚନ ବାହାରିବ ନାହିଁ। ପୁଅକୁ ଶିକ୍ଷିତ କରାଇବାରେ ମାଉସୀ ସର୍ବସ୍ୱ ସାରିଛି। ସହରରେ ପାଠ ପଢାଇଛି। ସାତମାଣ ଜମି ତା ପିଛା ସାରିଲେଣି। ମାଉସୀ କହେ– ବିଲ ବିକି ସେ ଟଙ୍କାଗଛ ଲଗେଇଛି ; ଗଛ ବଢୁଛି। ଫଳ ଫଳିଲେ ଘରେ ଥୋଇବାକୁ ଯାଗା ଅଣ୍ଟିବନି।

ସେଇ କଳ୍ପବୃକ୍ଷକୁ ଏବେ ଶ୍ରାବଣୀ ସ୍ୱଚକ୍ଷୁରେ ଦେଖୁଛି, ଖୁବ୍ ନିକଟରେ। ସ୍ୱାମୀଭକ୍ତି ଏମିତି ଆପଣାର ନିଜ ସଂସାରରେ ଥାଉନାହିଁ। ତା ମନର ମଣିଷଟି ସମ୍ମୁଖରେ ଦଣ୍ଡାୟମାନ। କିନ୍ତୁ ଶ୍ରାବଣୀ ଚମକି ପଡ଼ିଲା। ହଠାତ୍ କାହିଁକି ତାଙ୍କର ଏଠି ଆବିର୍ଭାବ ? ଦୁଆରଟିକୁ ଏମିତି କାହିଁକି ବନ୍ଦ କରିଦେଲେ ? ଅବେଳରେ କାହିଁକି ସ୍ୱାମୀଙ୍କର ଏ ଘରେ ପ୍ରବେଶ ? ମନରେ ସଂଶୟ ସୃଷ୍ଟି ହେଲା। ତଥାପି ମନକୁ ବୁଝାଇ ନେଲା। ଛୋଟ ଘର। ଏ ଘରେ ଥିବା ଟ୍ରଙ୍କ୍ ସୁଟକେଶରେ ହୁଏତ ତାଙ୍କର କିଛି କାମ ଥାଇପାରେ। ଅଧିକ ସଂଯତ ଏବଂ ସଙ୍କୁଚିତ ହୋଇ, ଲୁଗା ଆବରଣ ଭିତରେ ନିଜକୁ ସଂପୂର୍ଣ୍ଣ ରୂପେ ଘୋଡ଼େଇ ରଖିଲା, ଯେମିତି କଇଁଛ ତାର ସର୍ବାଙ୍ଗକୁ ଖୋଳ ଭିତରେ ରଖିନିଏ।

ପଛଆଡୁ ସ୍ୱାମୀଙ୍କ ହସ୍ତସ୍ପର୍ଶ ଅନୁଭବ କଲା ଶ୍ରାବଣୀ। "ଏ ମା, ଏକି ନାହିଁ ନଥିବା କଥା। ସଂସାର ବାହାର ଘଟଣା !" ତା ଦେହ ଗୋଟାପଣେ ଥରିବାକୁ ଲାଗିଲା, ପାଟି ଅଠା ଧରିଲାଣି। ତୁଣ୍ଡରେ ଭାଷା ନାହିଁ। କ'ଣ କହିବ ? ପ୍ରତିରୋଧ କରିବ ??

: ଶ୍ରାବଣୀ, ମୋ ସ୍ୱପ୍ନ ସୁନ୍ଦରୀ, ଆଦୌ ସମୟ ନାହିଁ, ମୁଁ ଆସିବାର କେହି ଦେଖି ନାହାନ୍ତି, ସଙ୍ଗେ ସଙ୍ଗେ ବାହାରି ଯିବି। ଦେଖାଅ ତ ତୁମର ମୁହଁକୁ ଟିକିଏ .........



Digitized by PPRACHIN, SOA

ଶ୍ରାବଣୀ ମନେ ମନେ ଭବିବାକୁ ଲଗିଲ । ସ୍ୱାମୀ ବିକଳ ସ୍ୱରରେ ନିବେଦନ କରୁଛନ୍ତି, ଥୋକାଏ ସ୍ନେହ ଢାଳି ପୁଣି ପଳାଇଯିବେ ଚୁଟ୍‌କରି । ଏ ଦେହ ତାଙ୍କର ; ମନ-ପ୍ରାଣ-ଆତ୍ମା-ସବୁ ତାଙ୍କର । ସେ ତା'ର ଇହକାଳ ପରକାଳର ଦେବତା ; ତାଙ୍କ ସହିତ ସମ୍ପର୍କ ଦିନକ ପାଇଁ ନୁହେଁ, ଯୁଗ ଯୁଗ ପାଇଁ, ଜନ୍ମ ଜନ୍ମାନ୍ତର ପାଇଁ । କିନ୍ତୁ ସ୍ୱାମୀ ଏଡ଼େ ଅଧୈର୍ଯ୍ୟ କାହିଁକି ? ମଣିଷର ପୁଣି ଚକ୍ଷୁଲଜ୍ଜାତ ଅଛି ! ଶ୍ରାବଣୀର ଘଳେଣି । ଦେହ ଝାଳରେ ବୁଡ଼ି ଗଲଣି ।

ବହୁ କଷ୍ଟରେ ଖଣ୍ଡିତ ଗଳାରେ ମିନତି କଲ ଶ୍ରାବଣୀ— ତୁମ ଗୋଡ଼ ତଳେ ପଡ଼ୁଛି । ସେମାନେ ସବୁ କ'ଣ ଭବିବେ ? ଏବେ ନୁହେଁ......

ଟିକିନୀ ଗିଲସେ ଲେମ୍ବୁମିଶି ସରବତ ହାତରେ ଧରି ଦର ଆଉଜା କବାଟକୁ ଠେଲି ହୁଡ୍‌କିନି ପଶିଆସିଲ ଘର ଭିତରକୁ । ଭଇକୁ ଏମିତି ଅବସ୍ଥାରେ ଦେଖି ବୋକୀ ପରି ଠିଆ ହୋଇଗଲ । ଜିଭ କାମୁଡ଼ି ପକାଇଲ । ଏ କ'ଣ ? ଭଇ, ତୁମେ ଏଠି କ'ଣ କରୁଚ ? ତ ମୁହଁରେ ପରସ୍ତେ ଲ୍ୱପା ହସ ।

କିଛି ନକହି ଜଣେ ଅଭିଯୁକ୍ତ ଆସାମୀ ଭଳି ମୁହଁ ତଳକୁ କରି ଦେବକାନ୍ତ ବାହାରକୁ ଚ୍ଲଲି ଆସିଲ । ମୁହଁ ତା'ର ସରମରେ କଳା ପଡ଼ିଗଲଣି । ମୁହଁ ଉପରକୁ ଟେକିବାର ସାହସ ନାହିଁ । ନୁଙ୍ଗୁପୁଙ୍ଗୁ ଢଙ୍ଗ ପାଇଁ ସେ ଲଜ୍ଜିତ ।

ଭିତର ବାରଣ୍ଡାରେ ରୁଣ୍ଡ ହୋଇଛନ୍ତି ସାଇ ମାଇପିଏ— ସେମାନଙ୍କ ମଧ୍ୟରେ ରହସ୍ୟର ଗୁଞ୍ଜରଣ । ତୁଣ୍ଡରୁ ତୁଣ୍ଡକୁ କଥା ଡେଇଁଲ ମୁହୂର୍ତ୍ତକ ମଧ୍ୟରେ । ଚୁପ୍ ଚାପ୍, ଫୁଟ୍ ଫାଟ୍ ଏପରିକି ସଞ୍ଜବେଳର ମହାବାଳୀ ପୋଖରୀ କୂଳରେ ହାଟ ବସିବା ପର୍ଯ୍ୟନ୍ତ ଗୋଟିଏ ପରେ ଗୋଟିଏ ଅଧ୍ୟାୟ ଗଡ଼ି ଚ୍ଲଲିଲ......

"ମା' ଲୋ, ପାଠୁଆ ପୁଅର ଏକି ବେହେଇ ପଣ ଦିନ ବେଳଟାରେ, ହାତଗଣ୍ଠି ପଡ଼ୁ ପଡ଼ୁ ମାଇପ ସଙ୍ଗେ ଫୁସୁରୁ ଫାସର ।



Digitized by PPRACHIN, SOA

ଆଉ ବେଳ କାଳତ ଅଛି ! ଏ କି ଅଲକ୍ଷୁଣ କଥା !” “ବଡ଼ ମାଇପ ବୋଲକରା ହେବ । ଶିକ୍ଷିତ ହେଲେ ବି ପୁଣିତ ମଣିଷର ଲାଜ ସରମ ଅଛି ।”

ଗ୍ରାମ ସ୍ତ୍ରୀ ମାନଙ୍କର ଶାଣିତ ଟିପ୍‌ପଣୀ, ବ୍ୟଙ୍ଗ ମନ୍ତବ୍ୟରେ ଦେବକାନ୍ତ ଅସ୍ୱସ୍ତି ବୋଧ କରିଥିଲା । ସେହି ଦିନ ଠୁଁ ସେ ନିଜକୁ ସଂଯତ କରି ନେଇଛି । ଅଯଥାରେ ପଲ୍ଲୀ ସମାଜର ରୀତିଚଳନ, ପ୍ରଚଳିତ ପ୍ରଥାକୁ ସଭିଙ୍କ ସାମନାରେ ପଦାଘାତ କରିବାକୁ ଚାହିଁ ନାହିଁ, ଯଦି ଚ ଅନେକ କୁପ୍ରଥାର ଅର୍ଥ ଖୋଜି ସେ ପାଇନଥିଲା । ସେ ଗୁଡ଼ିକ ତା ମତରେ ଅବାନ୍ତର ହେଲେ ହେଁ, ଅଯଥାରେ ସ୍ୱଗେତ୍ତଜନ କରି ଲାଭ ବା କ’ଣ ?

ଆଜି ସେଇଥି ପାଇଁ ସକାଳ ପହରୁ ଦାଣ୍ଡ ବାରଣ୍ଡାରେ ସେ ସମୟ ଅତିବାହିତ କରୁଥିଲା । ଦିନବେଳେ ନବ ବିବାହିତା ସ୍ତ୍ରୀ ସହିତ ମିଳାମିଶା ଉପରେ ପ୍ରଚଳିତ ନିଷେଧାଜ୍ଞା ପାଳନ କରୁଥିଲା । କଲିକତାରୁ ପ୍ରେରିତ ‘ବ୍ରୁ୍ୟଇଡ୍ ଇଣ୍ଡିଆ ଲିମିଟେଡ୍’ କମ୍ପାନୀର ପତ୍ରକୁ ଟ୍ରଙ୍କରେ ଥୋଇବା ପାଇଁ ଶୋଇବା ଘରକୁ ଯିବା ଦରକାର ପଡ଼ିଥିଲା । ଅବଶ୍ୟ ଗାଧୁଆ ବେଳ ହୋଇଆସିଥିଲା ।

ଆଜି କିନ୍ତୁ ଶ୍ରାବଣୀ ବେପରୁଆ । କଟକଣା ନମାନି ଦେବକାନ୍ତ କାନ୍ଧରେ ଆସି ଝୁଲି ପଡ଼ିଲଣି । ଯେଉଁଠି ଦେବକାନ୍ତ ପୁରୁଷ ପିଲା ହୋଇ ଦ୍ୱିଧା ବୋଧ କରୁଥିଲା, ଗାଁ ମାଇପିଙ୍କ ଚୁପ୍ ଚାପ୍ ଆଖି ଠାରଠାରିକୁ ଭୟ କରୁଥିଲା, ଶ୍ରାବଣୀ ସାଧାରଣ ଗାଉଁଲି ଝିଅଟିଏ ହୋଇ ମଧ୍ୟ ଖୁବ୍ ସତର୍କ ଏବଂ ସାବଧାନତାର ସହିତ ଦୁଃସାହସିକ ପଦକ୍ଷେପ ନେଇଛି । ତା’ ମନରେ ଟିକେ ମାତ୍ର ଆଉ ସଂକୋଚ ନାହିଁ । ଦମ୍ଭର ମାତ୍ରା ବି କିଛି କମ୍ ନୁହେଁ । ଥରେ ଝିଅପିଲା ଏମିତି ଲାଇସେନସ ପ୍ରାପ୍ତ ହୋଇଗଲେ ତା’ ମନରେ ଏତେ ଦମ୍ଭ, ଦେହରେ ଏତେ ବଳ ଆସେ କେଉଁଠୁ ? ନାରୀ ଏମିତି ଥରେ ଅଧିକାର ପ୍ରାପ୍ତ ହେଲେ ମନେହୁଏ, ସବୁ ଲଜ୍ଜା, ସଂକୋଚ, ବାଧା ବନ୍ଧନକୁ ଭ୍ରୂକ୍ଷେପ ନକରି ସ୍ୱାମୀ-ସାନ୍ନିଧ୍ୟ ପାଇଁ ସେ ବ୍ୟାକୁଳିତ



Digitized by PPRACHIN, SOA

ହୋଇ ଉଠେ– ଯେମିତି ବର୍ଷାଜଳ ଭରକରି ପୂର୍ଣ୍ଣଗର୍ଭା ଗିରି ତଟିନୀ ସ୍ରୋତ ପ୍ରାଚୁର୍ଯ୍ୟରେ ଫୁଲିଉଠି ସାଗରଭିମୁଖୀ ହୋଇଉଠେ । ଏତ ନାରୀ ପୁରୁଷ, ସ୍ୱାମୀ-ସ୍ତ୍ରୀ, ପତି-ପତ୍ନୀର ଆଦିମ ସମ୍ପର୍କ- ଖୁବ୍ ନିବିଡ଼, ପବିତ୍ର ଆଉ ବନ୍ଧନମୟ । ସେଇ ସମ୍ପର୍କରେ ଥାଏ ମଣି ସହିତ କାଞ୍ଚନର, କ୍ଷୀର ସହିତ ନୀରର, ଗଗନ ସହିତ ପବନର ମିଳନ ଚିହ୍ନ !

ଆଜି, ଦିନ କେଇଟା ମଧ୍ୟରେ ଶ୍ରାବଣୀର ଏତାଦୃଶ ବୁଦ୍ଧି, ସାହସ, ପ୍ରତ୍ୟୁତ୍ପନ୍ନ ଚିନ୍ତାଧାର ଏବଂ ଦାମ୍ଭିକତା ପାଇଁ ଦେବକାନ୍ତ ମନେ ମନେ ତାରିଫ୍ କରୁଥିଲା ତାକୁ । ଗୁପ୍ତ ବିଦ୍ୟାକୁ ଏମିତି ଠିକ୍ ଭାବେ ନେଇ ଆଣି ଥୋଇ ପାରିଲେ ତାହା ଅଧିକ ମଧୁର ହୋଇଉଠେ । ସାବଧାନତାର ଏଇ ସୂକ୍ଷ୍ମ ବିଦ୍ୟା ଅନ୍ୟର କିଛି ଅନିଷ୍ଟ ନକଲେ ତାହା ସର୍ବାଦୃତ ଏବଂ ସର୍ବଶାସ୍ତ୍ରସମ୍ମତ ମନେହୁଏ । ଦେବକାନ୍ତ ତାର ପାଠୁଆ ମନରେ ଏଇକଥା ଚିନ୍ତା କରୁଥିଲା କିଛି ସମୟ ପର୍ଯ୍ୟନ୍ତ ।

ଶ୍ରାବଣୀ ଆସି ଗେହ୍ଲେଇ ହେଲାଣି । ଚଉଠି ଦିନର ଦିନବେଳା ଘଟଣା ଆଉ ଆଜି ମଧ୍ୟରେ ଦେବକାନ୍ତ ଅନୁଭବ କରୁଛି ଅନେକ ତଫାତ୍ । ଏଇ ଚାରିଟା ଦିନ ଭିତରେ ସେ ଅନୁଭବ କରୁଛି ସ୍ୱୀର ପ୍ରଗାଢ଼ ଅନୁରକ୍ତି । ପତି ପରମ ଦେବତା ଉକ୍ତିରେ ଶ୍ରାବଣୀର ରହିଛି ଗଭୀର ବିଶ୍ୱାସ । ଦେବକାନ୍ତ ଏହା ଉପଲବ୍ଧି କରୁଛି ।

ସେମାନଙ୍କର ଯୋଡ଼ି ବେଶ୍ ମାନୁଛି !

ଦେବକାନ୍ତ ନିରୁତ୍ସାହିତ ହୋଇ ବସିରହିଲା ପଲଙ୍କ ଉପରେ । ମୁହଁରେ ଉଦାସିଆ ଭାବ । ମନଟା ଫିକା ପଡ଼ିଛି । ମୁହଁକୁ ବିଷଣ୍ଣତାର ଘୋଡ଼ଣୀଟିଏ ଯେମିତି ଢାଙ୍କି ଦେଇଛି ।

କଅଁଳ ସ୍ୱରରେ ଗେହ୍ଲେଇ ହୋଇ ପଚାରିଲା ଶ୍ରାବଣୀ– ଚିଠି କେଉଁଠୁ ଆସିଛି ?

ରସହୀନ ମୁହଁରେ କହିଲା ଦେବକାନ୍ତ– "କଲିକତାରୁ" ।



Digitized by PPRACHIN, SOA

"ତା ହେଲେ ତୁମେ କଲିକତା ଯିବ ? କେବେ, କେଉଁ ଦିନ ?"— ଶ୍ରାବଣୀର ଜିଜ୍ଞାସା ଏବଂ ଉତ୍କଣ୍ଠା ବଢ଼ି ଥିଲା ।

ଦେବକାନ୍ତ କିଛି କହିଲା ପୂର୍ବରୁ ଶ୍ରାବଣୀ ତା ସୁଢ଼ଳ ତନୁଶ୍ରୀକୁ ସ୍ୱାମୀର ଶରୀର ସାମ୍ରାଜ୍ୟରେ ନିକ୍ଷେପକରି ସାରିଥିଲା ସମ୍ପୂର୍ଣ୍ଣ ଭାବେ । ଷୋଡ଼ଶୀ ସୁନ୍ଦରୀକୁ କୋଳାଗ୍ରତ ନ କରିବାକୁ ତାର ଉପାୟ ନ ଥିଲା । ଜଣେ କୁଶଳୀ କଳାକାର ଭଳି ସୁନ୍ଦରଭାବେ କୋଳ ଭିତରେ ପ୍ରତିଷ୍ଠା କରିନେଲା ସ୍ତ୍ରୀକୁ । ସୁନ୍ଦରୀର ଗୁନ୍ଦ ମୁହଁରେ ପୁରସ୍କାରଟିଏ ପ୍ରଦାନ କଲା ସମୟରେ ନିମୀଳିତ ନେତ୍ରରେ ଶ୍ରାବଣୀ କହିଲା—ମୁଁ ଜମାରୁ କଲିକତା ଦେଖିନି । ସମସ୍ତେ କହନ୍ତି, କଲିକତାଟା ଭାରି ବଡ଼ ସହର, କଟକ ଠୁଁ ବି ବଡ଼ । ସେଠି ରାସ୍ତାରେ ରେଳ ଚାଲେ ; ଦୋ ମହଲା ବସ୍ ଯା' ଆସ କରେ ; ଚିଡ଼ିଆଖାନା, ଯାଦୁଘର, ଆଉ କେତେ କଅଣ ଦେଖିବା ଜିନିଷ ଅଛି । ଆମ ଗାଁର କେତେ ଲୋକ କଲିକତା ଚଟକଳରେ ଚାକିରୀ କରନ୍ତି । ବର୍ଷକୁ ଥରେ ଗାଁକୁ ଆସନ୍ତି । ଆଣିଥାନ୍ତି ଅନେକ ଜିନିଷ, ଲୁଗାପଟା । ସେଠାରେ କୁଆଡ଼େ ଜିନିଷପତ୍ର ଖୁବ୍ ଶସ୍ତାରେ ମିଳେ, ଦେଖିଲେ ଲୋଭ ହୋଇଯିବ । ବାପା କଲିକତାରୁ ଆଣିଛନ୍ତି ବୋଲି କହି ସେମାନଙ୍କ ପିଲାମାନେ ଖୁସି ହୋଇଯାନ୍ତି ; ଗାଁ ସାରା ଦେଖେଇ ବୁଲନ୍ତି । ଆମେ କହୁ, କିରେ ମନୁଆ, କିଲୋ ଚେମୀ, ତମ ବାପା ଆଉ ସବୁ କ'ଣ ଆଣିଛନ୍ତି ?

କଲିକତି ମିଠେଇ, ସନ୍ଦେଶ, ବୋଉ ପାଇଁ ଶାଢ଼ୀ, ବ୍ଲାଉଜ, ସାୟା ଅତର, ସ୍ନୋ ସାବୁନ...... କେତେ ମନଖୁସିଆ ଦରବ ସତେ !

ହଁ, ସେମାନେ ଆମ ଭଳି ଦାନ୍ତ କାଠିରେ ଦାନ୍ତ ଘଷନ୍ତି ନାହିଁ, କଲିକତା ଖରିଦ ଜିନିଷ ବ୍ୟବହାର କରନ୍ତି । ପୁଣି ଜାଣିଛ ? ସେମାନେ ସକାଳୁ ଚା' ଖାଉଛନ୍ତି । ସହରୀ ବାପା ଠୁଁ ଚା' ଖିଆ ଶିଖି ଗଲେଣି । ଯେଉଁମାନେ ସହରରେ ରହନ୍ତି, ଚା' ଖାଆନ୍ତି ନା ? ଆମେ ହାଇଁ ପାଇଁ ହଉ ସେମାନଙ୍କ ଚାଲିଚଳନ ଦେଖିବା ପାଇଁ । ମନୁଆ ବୋଉର ଛାତି କୁଣ୍ଢେମୋଟ ହୋଇ ଫୁଲିଉଠେ । ଫୁଲେଇ ହୋଇ ନୂଆ ଶାଢୀପିନ୍ଧି



Digitized by PPRACHIN, SOA

ସାଇସାଗ ବୁଲେ । ରୋଜଗାରିଆ ସ୍ୱାମୀର ପାରିଲା ପଣିଆକୁ ସର୍ବ-ସାଧାରଣରେ ବିଜ୍ଞାପିତ କରି ଦମ୍ଭ ଓ ଗର୍ବରେ ଯେମିତି ଫାଟି ପଡ଼ୁଥାଏ ।

ସତରେ, କଲିକତା ଗୋଟେ ବଡ ଦର୍ଶନୀୟ ସ୍ଥାନ । ଦେଖିଲେ କୁଆଡ଼େ ଆଖି ପବିତ୍ର ହୋଇଯିବ । ମୋର ଦେଖିବାକୁ ଖୁବ୍ ଇଚ୍ଛା ହେଉଛି । ମତେ ଟିକିଏ ତମ ସାଙ୍ଗରେ କଲିକତା ବୁଲେଇ ନେବନି ?

ଶ୍ରାବଣୀ ଏମିତି ତା ପିଲଳିଆ ଢଙ୍ଗରେ ଗପି ଗ୍ଲିଥାଏ, ଦେବକାନ୍ତ ଚୁପ୍ ହୋଇ ଶୁଣିଯାଉ ଥାଏ । ଟିକିନୀର ମସଲବଟା ଶବ୍ଦ ଆଉ ଶୁଭିଲା ନାହିଁ । ସ୍ୱାମୀଙ୍କ ସହିତ ଆଳାପ ଏଇଠି ବନ୍ଦ ରଖି ଶ୍ରାବଣୀ ପୁନାପିଲା ଭଳି ନିଃଶବ୍ଦରେ ଯାଇ ରୋଷେଇ ଘରେ ଉପସ୍ଥିତ ହେଲା, ରନ୍ଧା କାମରେ ନିଜକୁ ନିୟୋଜିତ କଲା । କଲିକତାର ଚିତ୍ର ମନକୁ ଆଛନ୍ନ କରି ରଖିଥିଲା ।

ସଞ୍ଜ ଆସିଲା, ତା'ପରେ ରାତି । ବିବାହର ମାତ୍ର ଅଷ୍ଟମ ଦିନ । ବାସର ରାତିର ମାଦକତା ମନରୁ ଲିଭିନି । ନିଶାର୍ଦ୍ଧର ନିର୍ଜନ ବେଳାରେ ଶ୍ରାବଣୀ କଲିକତା ପ୍ରସଙ୍ଗ ବାରମ୍ବାର ଉତ୍‌ଥାପନ କରୁଥାଏ । ଦେବକାନ୍ତ ଶୁଣି ନ ଶୁଣିଲା ପରି ବାହାନା କରୁଥାଏ । ଆଡ଼ୁସାଡ଼ୁ କହି କଥାର ଖିଅ ବଦଳାଇବା ପାଇଁ ଚେଷ୍ଟା କରୁଥାଏ । ବାପାଙ୍କର ଆର୍ଥିକ ଅବସ୍ଥା ସେତେ ସ୍ୱଚ୍ଛଳ ନୁହେଁ । ପୁଅର ବିବାହ ପର୍ବକୁ ଧୁମ୍‌ଧାମ୍‌ରେ ପାଳିବାକୁ ଯାଇ ଗୁଡ଼ାଏ ଅର୍ଥ ଶ୍ରାଦ୍ଧ କରିଛନ୍ତି । କିଛିଟା କରଜ କରିବାକୁ ମଧ୍ୟ ପଛେଇ ନାହାନ୍ତି ।

ଶ୍ରାବଣୀ ସେଇଭଳି ସରଳ ମନରେ ଅଳିକରି ବସିଲା । ସେ ଗ୍ଲହୁଁଥିଲା ସ୍ୱାମୀଙ୍କ ଠାରୁ ପ୍ରତିଶ୍ରୁତି । ଅନନ୍ୟୋପାୟ ହୋଇ ଦେବକାନ୍ତ ବୁଝାଇବା ଢଙ୍ଗରେ କହିଲା—"କଲିକତା ଯିବାକୁ ହେଲେ ବହୁତ ଟଙ୍କା ଲାଗିବ ।"

"କେତେ ଟଙ୍କା ?"

"ଅତି କମ୍‌ରେ ତିନିଶହ ।"



Digitized by PPRACHIN, SOA

ଏବେ ଗୁଡ଼ାଏ ଟଙ୍କା ଲାଗିବ ଶୁଣି ଶ୍ରାବଣୀ ବିବାକେ ଦବିଗଲା । ମନ ମଉଳି ଗଲା । ମୁଁହ ମେଘୁଆ ଦିଶିଲା––ନିର୍ମଳ ଆକାଶରେ ତୋଫା ଜହ୍ନକୁ ଖଣ୍ଡେ କଳା-ମେଘ କବଳିତ କଲାପରି ।

ଦେବକାନ୍ତ ନିଜ ସକ୍ଷମତା ଉପରେ ଅନାସ୍ଥା ଅନୁଭବ କଲା । ସ୍ତ୍ରୀର ଏ ସାମାନ୍ୟ ଅଳିକୁ ପୂରଣ କରିବାକୁ ସେ ଅସମର୍ଥ, ଅଯୋଗ୍ୟ ! ତା ସ୍ୱାମୀତ୍ୱ ଉପରେ ଗ୍ଳାପ ଅନୁଭବ କଲା । ଏପରି ସୁନ୍ଦରତନ୍ୱୀ, ଯୌବନା-ବତୀ ପତ୍ନୀ ପାଇଁ କୌଣସି ପତି ସ୍ୱର୍ଗରୁ ପାରିଜାତ, ପାତାଳରୁ ନାଗମଣି ଖୋଜି ଆଣିବା ପାଇଁ ମଧ୍ୟ ପଶ୍ଚାତ୍‌ପଦ ହେବନି । କିନ୍ତୁ ସେ ? ?

ସାମାନ୍ୟ ଚିନ୍ତା କଲା ପରେ ଶଯ୍ୟା ସଙ୍ଗିନୀକୁ ଖୁସି କରିବାକୁ ଯାଇ ହସି ହସି କହିଲା ଦେବକାନ୍ତ–"ଓ, ଏଇକଥା ? କଲିକତା ଯିବାକୁ–ତ ଇଚ୍ଛା ? ତେବେ ମୋର ଯିବା ଡେରି ଅଛି, ସପ୍ତାହେ ପରେ । ଯିବି କି ନ ଯିବି କିଛି ଠିକ୍ କରିନି ; ଗଲେବି ଗ୍ଳକିରୀଟା ମିଳିବାର କେଉଁ ସଠିକତା ଅଛି ଯେ ?"

: ଗ୍ଳକିରୀ କଥା, ନ ଯିବ କିପରି ?

: କଥା ଦେଉଛି, ମୁଁ ଗଲେ ତୁମକୁ ସାଙ୍ଗରେ ନିଶ୍ଚୟ ନେବି ।

: ତୁମକୁ ତ ଯିବାକୁଇ ହେବ.....

ଅନ୍ଧାର ରାତିର ନିଭୃତ କୋଠରୀରେ ସଦ୍ୟ ବିବାହିତା, ଗୋରୀ ସୁନ୍ଦରୀର ଆହ୍ୱାନକୁ କୋଉ ଅବା ପୁରୁଷ ପ୍ରତ୍ୟାଖ୍ୟାନ କରିପାରିବ ? ଦେବକାନ୍ତର ପୁରୁଷାକାର ହଠାତ୍ ଫୁଲି ଉଠିଲା । ସେ ଖୁବ୍ ଓଜନିଆ ସ୍ୱରରେ କହିଲା––"ମୁଁ ତ ପ୍ରଥମରୁ ତୁମକୁ ସାଥିରେ ନେବାପାଇଁ ଚିନ୍ତା କରୁଥିଲି । ପ୍ରକୃତରେ ବାହାର ଜାଗାକୁ ଗଲେ, ସାଙ୍ଗରେ ସୋହାଗିନୀ ସ୍ତ୍ରୀ ନ ଥିଲେ ଉପଭୋଗର ମଜା ଆସେନା । ତୁମେ ନ ଯିବାର ପ୍ରଶ୍ନ ଉଠୁନି । କେବଳ ମୁଁ ଟିକିଏ ଟଙ୍କା କଥା ଚିନ୍ତା କରୁଥିଲି ନା ! ସେଇଥି-ପାଇଁ ମୋ ଆଡ଼ୁ ପ୍ରସ୍ତାବଟା ଦେଉ ନଥିଲି । ତେବେ ଆମେ ନିଶ୍ଚୟ ଯିବା....."



Digitized by PPRACHIN, SOA

ସ୍ୱାମୀଙ୍କ ଠାରୁ ନିର୍ଭର ପ୍ରତିଶ୍ରୁତି ହାସଲ କରିଥିବାରୁ ଶ୍ରାବଣୀର ମନ ଆନନ୍ଦରେ ଡେଇଁ ଉଠିଲା । ତା ମୁହଁରେ ସ୍ୱାମୀ ପ୍ରଶଂସାର ଦୀର୍ଘ ପତ୍ର । ଶ୍ୱଶୁରାଳୟ ତା'ର ସ୍ୱର୍ଗଭୂମି । ଏଠାକାର ସମସ୍ତେ ତା'ର ନମସ୍ୟ । ଏଠାରେ ସଭିଙ୍କୁ ତାର ଭୂରି ଭୂରି ପ୍ରଶଂସା । ଏପରିକି ଏଠା ଗାଁ, ଗଣ୍ଡା, ତୋଟା ଭୂଇଁର ଗୁଣଗାନ କରିଥିଲା ଶ୍ରାବଣୀ ।

"ସତ କହୁଛି, ଜୀବନ-ସାଥୀ ଭବେ ଜୀବନରେ ତୁମର ହାତ ଧରିବି ବୋଲି ମୁ ସ୍ୱପ୍ନରେ ସୁଦ୍ଧା ଆଶା କରି ନଥିଲି । ବାହାଘର ବେଳେ ଆମ ଗାଁରେ ଯେଉଁ ସବୁ କାଣ୍ଡ ଘଟି ଯାଇଥିଲା, ଅନୁଭବ କରୁଥିଲି ଝିଅ ଜନମ ହିଁ ଅଭିଶପ୍ତ, ଏମିତି ଜୀବନ ହତସନ୍ତ । ମତେ ଯିଏ ସୃଷ୍ଟି କରିଥିଲା, ମନେ ମନେ ତାକୁ ଅଭିଶାପ ଦେଉଥିଲି । ମାମୁଁଙ୍କ କୋଳକୁ ମୋତେ ଟେକି ଦେଇ ମୋର ବାପା ଆରପାରିକୁ ଗ୍ଲଲିଗଲେ । ମୋର ବୋଉ ମାମୁଁଙ୍କ ଉପରେ ଲଦି ହୋଇ ପଡ଼ିଲା । ମୁଁ ମଙ୍ଗୁଳା କନ୍ୟା ଥିଲି । ମୋ ପାଇଁ ବରପାତ୍ର ଖୋଜି ଖୋଜି ମାମୁଁ ନୟାନ୍ତ ହୋଇ ପଡ଼ୁଥାନ୍ତି । ଧୈର୍ଯ୍ୟ ତାଙ୍କର ଭଙ୍ଗି ପଡ଼ୁଥାଏ । ସେ ବ୍ୟସ୍ତ ହୋଇ ପଡ଼ୁଥାନ୍ତି । ମୁଁ ସେତେ-ବେଳେ ଗଳାପାଇଁ ଦଉଡ଼ି ଖୋଜୁଥିଲି । କିନ୍ତୁ ବିଧିର ବିଧାନ । କାହା-ପାଇଁ ସେ କ'ଣ ସାଇତି ରଖିଛନ୍ତି, ସେ କଥା ଭବି ବସିଲେ ଆଜି ଆଶ୍ଚର୍ଯ୍ୟ ଲାଗେ....''

ସେମାନଙ୍କର ସଂଯୋଗ ଥିଲା ଅତି ଅପ୍ରତ୍ୟାଶିତ, ଆକସ୍ମିକତାର ଫଳ ।

ଶ୍ରାବଣୀର ବାପଘର ଆଉ ଏକ ଦୂରନ୍ତ ପଲ୍ଲୀରେ—ସମସରପୁର । ମାମୁଲି ବାପ ମା'ଙ୍କର ସେ ଥିଲା ଏକମାତ୍ର ସନ୍ତାନ । ତେଣୁ ତା ନାଁ ପଛରେ କୌଣସି ଐତିହ୍ୟ ନ ଥିଲା । ତା ଜନ୍ମ, ତିଥି, ବାର କୌଣସି ପୁସ୍ତକ ପୃଷ୍ଠାରେ ଲିପିବଦ୍ଧ ନ ଥିଲା ସେଭଳି । ଉଚ୍ଚକୁଳ, ସମୃଦ୍ଧି ସମ୍ପନ୍ନ ପରିବାରରେ ମଧ୍ୟ ସେ ଜନ୍ମ ହୋଇ ନଥିଲା । ଗାଁ ଜଉତିଷଙ୍କ ଠାରୁ ପ୍ରସ୍ତୁତ କରାଯାଇଥିବା ତାର ଭୂତ ବର୍ତ୍ତମାନ ଭବିଷ୍ୟତର ସୂଚନାବାହୀ ଜନ୍ମ ଜାତକଟି ଦୈବାତ୍ ଘୁଣ ଆକ୍ରମଣରେ ନଷ୍ଟ ହୋଇ ଯାଇଥିଲା । ତା ଜନ୍ମ ବୃତ୍ତାନ୍ତ ନେଇ କେବଳ ଯାହା ତା ବୋଉ ମୁହଁରୁ ସେ ଶୁଣିଥିଲା ।



Digitized by PPRACHIN, SOA

ସେଦିନ କୁଆଡ଼େ ଆକାଶଟା ଥିଲା ମେଘମୟ । ଧାର ଶିରବଣର ଧାର ପ୍ରବାହକୁ ବୁକୁରେ ଧରି ଶୂନ୍ୟରୁ ଝରୁଥିଲା ଅବିଶ୍ରାନ୍ତ ବାରିଧାର...... ସର୍ବତ୍ର ବର୍ଷାର ତାଣ୍ଡବଲୀଳା, ରୁଦ୍ରମୟୀ ଶ୍ରାବଣୀ ପ୍ରକୃତି ଖୁବ୍ ଭୟାନକ ମନେହେଉ ଥିଲା । ଘଡ଼ଘଡ଼ିର ଗୁରୁଗମ୍ଭୀର ଗର୍ଜନରେ ମେଦିନୀ କମ୍ପୁଥିଲା । ଚତୁର୍ଦ୍ଦିଗ ଥିଲା ଜଳାର୍ଣ୍ଣବ । ସେଇ ବର୍ଷଣମୁଖର ଶ୍ରାବଣ ରଜନୀରେ ଭୂମିଷ୍ଠ ହୋଇଥିଲା ଶ୍ରାବଣୀ । ଘରେ କେହି ନ ଥିଲେ । ତା ବାପା କ୍ଷେତ ବାଡ଼ିର ତତ୍ତ୍ୱ ବୁଝିବାକୁ ଦୂର ଗହୀର ଅଞ୍ଚଳକୁ ଚାଲିଯାଇ ଥିଲେ । ଗାଁର ଅନ୍ୟ ଘରମାନଙ୍କ ଠାରୁ ତ୍ୟାଙ୍କ ଘରଥିଲା ବିଚ୍ଛିନ୍ନ––ଏକୁଟିଆ ଏବଂ ଗୋଟିକିଆ । ବାଉଁଶ ବୁଦା, ଡାଳଗଛ, ନଡ଼ିଆ ବୃକ୍ଷ ବେଷ୍ଟନୀ ମଧ୍ୟରେ ଅଳ୍ପ ଉଚ୍ଚକୁ ଉଠିଥିବା ଗୁଳଛପର ଘରଟି ନିଃଶବ୍ଦରେ ନିଶ୍ୱାସ ମାରୁଥିଲା । ଜନ୍ମ ପରେ ଶିଶୁଟି ବହୁ ସମୟ ଧରି କୁଆଁ କୁଆଁ କଲା, ରହା ଟେକିଲା ଏବଂ ପରେ ଥାଇଁଜିଆ ହୋଇ ମାଟି ଚଟାଣରେ ପଡ଼ି ରହିଲା । ପିଲାର ମା' ପ୍ରସବ ଯନ୍ତ୍ରଣାରେ ବହୁ କଷ୍ଟ ପାଇଥିଲା, ଜନ୍ମକ୍ଷଣରେ ସେ ଚେତା ହରାଇଥିଲା । ତା ବାପା ସନ୍ଧ୍ୟା ପରେ ବର୍ଷାରେ ତିନ୍ତି ତିନ୍ତି ଘରକୁ ଫେରି ଦେଖିଲା ସବୁ ନୀରବ, ନିସ୍ପନ୍ଦ । କାହାର ସ୍ୱର ଶବ୍ଦ ନାହିଁ । ଘର ଅନ୍ଧାର । ପାଟିକରି ଡାକିଲା,– ସାରିଆ, ସାରିଆ, କୁଆଡେ ଗଲୁ ? ଅନ୍ଧାରରେ ଦରଣ୍ଡି ଦରଣ୍ଡି ଚୂଲି ମୁଣ୍ଡ ଉପରୁ ଦିଅାସିଲି ଆଣିଲା । ଡ଼ିବିରି ଜାଳି ଏ ଆଖି ଖୋସା ଦୃଶ୍ୟ ଦେଖିଲା । ତା ବୁଦ୍ଧି ବଣା ହୋଇଗଲା । ମା' ପିଲା ଉଭୟେ ଚେତା ଶୂନ୍ୟ । ମାସତ ପୂରିନାହିଁ, ସମୟ ପୂର୍ବରୁ ପ୍ରସବ ! ଆଉ ଲୁଗା ପାଇଟିବ କ'ଣ ? ଚିନ୍ତା କରିବାକୁ ବେଳ ନ ଥିଲା । ଇନ୍ଧନ ଏବଂ ଛତା ଧରି ଉଦ୍‌ବେଗ ଆଉ ଉଦ୍‌ବେଳନ, ଆଶା ଆଉ ଆଶଙ୍କାକୁ ମୁଣ୍ଡେଇ ଏଠିକୁ ସେଠିକୁ ଦୌଡ଼ିଲା ସେ । ହେଲେ ଏତେ ବର୍ଷାରେ ଆସୁଛି ବା କିଏ ? କେତେ ଲୋକଙ୍କୁ ନେହୁରା ହେଲା, କାକୁତି ମିନତି କଲା । ପ୍ରଲୋଭନ ଦେଖାଇଲା । ଶେଷକୁ ବାଉରୀ ସାହିର ପାଲୁଣୀ ଆସିଲା । ପିଲାର ନାହି କାଟିଲା ଶାମୁକା ସାହାଯ୍ୟରେ । ଏରୁଡ଼ି ଜାଳି ପିଲାକୁ ଶେକିଲା । ସଦ୍ୟଜାତ ଶିଶୁର କଅଁଳ ସ୍ୱର ଶୂନ୍ୟ ଘରକୁ ପୂର୍ଣ୍ଣକଲା । ସେବା, ଶୁଶ୍ରୂଷା, ଘଷା, ଆଉଁସା ପାଇ ସାରିଆର ଚେତା ଫେରିଲା । ଜଗୁ ପ୍ରଧାନ ଦମ୍ଭ ଧରିଲା ।



Digitized by PPRACHIN, SOA

ଶ୍ରାବଣ ମାସରେ ଜନ୍ମ ହୋଇଥିବାରୁ ଝିଅର ନାଁ ରଖିଛନ୍ତି– ଶ୍ରାବଣୀ । ଗେହ୍ଲାରେ ଡ଼ାକନ୍ତି, ଶିର, ସାବି । ଷଠୀ ବୁଢ଼ୀ ଶ୍ରାବଣୀକୁ ଗଢ଼ିଥିଲେ ଅତି ନିପୁଣ ଭାବେ । ପଲ୍ଲୀଶ୍ରୀ ଶ୍ରାବଣୀର ତନୁତନିମାରେ ଖଞ୍ଜିଥିଲେ ରୂପର ସମ୍ଭାର । ରାଜକୁମାରୀ ଅର୍ଥ ଯଦି ସୁକୁମାରୀ ସୁନ୍ଦରୀ ବୋଲି ଗ୍ରହଣ କରଯାଏ, କେବଳ ବେଶଭୂଷା ବସ୍ତୁକୁ ବାଦ୍ ଦେଲେ, ଶ୍ରାବଣୀକୁ ରାଜକୁମାରୀର ଆଖ୍ୟା ଦେବାକୁ କେହି କେବେ ହେଲେ କୁଣ୍ଠା ପ୍ରକାଶ କରିବ ନାହିଁ । ଝିଅର ଆଗ୍ରର ବ୍ୟବହାର, ଗ୍ରଲିଚଳନ, ଭକ୍ତିଭବ, ଈଶ୍ୱର ଚେତନା ପିତା ମାତାଙ୍କ ମନରେ ଆଣିଥିଲା ଅଶେଷ ତୃପ୍ତି, ଅପାର ଆନନ୍ଦ । ମୁଣ୍ଡଝୋଳ ତୁଣ୍ଡମରା କୃଷକ ପରିବାରରେ ଜନ୍ମିଥିଲେ ମଧ୍ୟ ଶ୍ରାବଣୀ ଥିଲା ନିଜ ଘରେ ଅଲିଅଳୀ, ଯେମିତି ସବୁଝିଅ ବାପଘରେ ଗେଲ ବସରରେ ବଢନ୍ତି । ଝିଅର ଅଲିଅଳତା ନିକଟରେ ବଡ଼ଘର, ସାନଘର, ଧନୀ ଗରୀବର ବାଛ ବିଗ୍ଭର ନ ଥାଏ ।

ମଫସଲରେ ଶିକ୍ଷାଦାନର ଯେଉଁ ସୀମିତ ସୁବିଧା ଥାଏ, ସେଥିରୁ ଶ୍ରାବଣୀକୁ ଜଗୁ ବଞ୍ଚିତ କରି ନ ଥିଲା । ପ୍ରାଥମିକ ଶିକ୍ଷାଲଭ ପରେ ଅଧିକ ଶିକ୍ଷାର୍ଜନର ବ୍ୟବସ୍ଥା ଗାଁରେ ନ ଥିଲା । ସୁତରାଂ ସ୍କୁଲ ମାଧ୍ୟମରେ ପାଠପଢା ତା ଗାଁ ଚଟଶାଳୀରେ ହିଁ ସମାପ୍ତ ହୋଇଥିଲା । ଓଡ଼ିଆ ଭଷା ଲେଖାପଢା, ପୁରାଣ ପାଠ, ଓଷା ବ୍ରତ ପାଇଁ ଯେତିକି ବିଦ୍ୟା ଆବଶ୍ୟକ, ଶ୍ରାବଣୀ ତାହା ହାସଲ କରିଥିଲା । ତା ଛଡ଼ା କୃଶ୍ ଧରି ସୂତା ଆସନ ତିଆରି କରିବା, ଛୁଞ୍ଚ ସୂତା ବ୍ୟବହାର କରି କପଡ଼ାରେ ଫୁଲ ଆଙ୍କିବା, ସୁଇଟର ବୁଣିବା ଆଦି ଅନେକ ଘର କରଣା କାମରେ ଶ୍ରାବଣୀ ଧୁରନ୍ଧର ଥିଲା । ବାପା ମା'ଙ୍କ ସନ୍ତୋଷ କହିଲେ ନ ସରେ ।

ବଢିଲା ଝିଅ ଯେତେ ଚଞ୍ଚଳ ଶାଶୁଘର ଯାଇ ଘର ସଂସାର କରେ, ସେତେ ଶୀଘ୍ର ବାପ ମା'ଙ୍କ ଚିନ୍ତା ଶେଷ । ଶ୍ରାବଣୀ ପାଇଁ ଉପଯୁକ୍ତ ପାତ୍ରଟିଏ ଲୋଡ଼ା । ଜଗୁ ଚ୍ଚରିଆଡ଼କୁ ଆଖି ବୁଲାଇଲା, ନଜର ଗଭୀର କଲା । ସର୍ବକର୍ମନିପୁଣା, ରୂପବତୀ, ଗୁଣବତୀ କନ୍ୟା ପାଇଁ ମଧ୍ୟ ମନଲାଖି ବରଟିଏ ଖୋଜି ଠାବ କରିବା ସହଜସାଧ୍ୟ ହୋଇପାରିନି । ଜଗୁର



Digitized by PPRACHIN, SOA

କିଏ ଅଛି ବାର ଜାଗା ବୁଲି ବର ଅନ୍ୱେଷଣ କରିବାକୁ ? କିନ୍ତୁ ତା’ ଭିତିରି ମନର ଉଦ୍ଦେଶ୍ୟକୁ ସେ ମନ ଭିତରେ ଅହରହ ଲାଳନ ପାଳନ କରୁଥାଏ ।

ଫୁଲଟିଏ ସୁନ୍ଦର ହୋଇ ଗଛରେ ଫୁଟିଲେ ସୌନ୍ଦର୍ଯ୍ୟରେ ଗ୍ରାହକମାନେ ଆକୃଷ୍ଟ ହୁଅନ୍ତି ତା ପ୍ରତି । ଘ୍ରାଣଭରି ତାର ମହକକୁ ଆଘ୍ରାଣ କରିବାକୁ ମନ ବଳାନ୍ତି । ଶ୍ରାବଣୀର ମନଲୋଭା ରୂପରେ ଗାଁ ଏବଂ ଆଖପାଖ ମୌଜାର ଯୁବକ ଗୋଷ୍ଠୀ ହୋଇଥିଲେ ଆକୃଷ୍ଟ । ସେମାନଙ୍କ ମଧ୍ୟରେ ବାହାରକୁ ନ ଦିଶିଲା ଭଳି ଅଘୋଷିତ ପ୍ରତିଦ୍ୱନ୍ଦିତା, ଶୀତଳ ପ୍ରତିଯୋଗିତା । ଅଞ୍ଚଳର ବେକାର, ସକାର, ବେଠିପେଲା ; ସାକ୍ଷର, ନିରକ୍ଷର, ଟିପ ଚିହ୍ନବାଲା, ଅର୍ଦ୍ଧ ଶିକ୍ଷିତ ସମ୍ପ୍ରଦାୟ, ସମସ୍ତେ ସେଇ ଉଦ୍ଦେଶ୍ୟ ନେଇ ଆଶାୟୀ ହୋଇ ଉଠିଥିଲେ ।

ଗାଁ ଚଟଶାଳୀର ଶିକ୍ଷକ ମନୁ ମହାନ୍ତି । ଲୋକ ମୁହଁରେ––ମନୁ ମାଷ୍ଟେ । ସେ ଥିଲେ ଅଧିକ ପରିମାଣରେ ଆଶାୟୀ । ପତଳା ଲହ ଲହ ଲମ୍ବା ଦେହ, ଶରୀରଟି ସତେ ଯେମିତି କେଇଖଣ୍ଡ ହାଡ଼ର ସମଷ୍ଟି । ହୁଗୁଳା ଧଳା କାମିଜ, ସତେ ଯେମିତି ଲୁଗା ପରିଧାନ କରିଥିଲା ବେଳେ ମନେହୁଏ ଚଷାପୁଅ କ୍ଷେତରେ ହୁରୁଡ଼ା ବାନ୍ଧିଛି । ବେକ ମୂଳର କଣ୍ଠ ଯବଟି ଅପେକ୍ଷାକୃତ ବଡ଼, କଥା କହିଲାବେଳେ ବେଶ୍ ବାରି ହୋଇଯାଏ । ବାରମ୍ବାର ତଳ ଉପର ହୋଇ ବ୍ୟାୟାମ କଲାଭଳି ଦିଶେ । ପିଲାଦିନେ ବସନ୍ତ ରୋଗରେ ମନୁମାଷ୍ଟେ ବାମ ଆଖିଟି ହରାଇ ଥିଲେ । କିନ୍ତୁ ଗୋଟିଏ ଆଖିରେ କାମ କରିବାକୁ ବିଶେଷ ଅସୁବିଧା ଅନୁଭବ କରୁନଥିଲେ । ବିଭା ହେବା ବୟସ ଅତିକ୍ରମ କରିଥିଲା । ଝିଅ ମିଳୁ ନ ଥିଲେ । କୌଣସି ଆଳରେ ସେ ମଝିରେ ମଝିରେ ଜଗୁ ଘରକୁ ଆସନ୍ତି ଅସଲ ଉଦ୍ଦେଶ୍ୟକୁ ଲୁଚାଇ ରଖି ଭକ୍ତି ଗଦ୍ ଗଦ୍ କଣ୍ଠରେ ବଡ଼ ନମସ୍କାରଟିଏ ପକାନ୍ତି ଜଗୁକୁ । ଆକାଶରୁ ତୋଳି କଥା କହନ୍ତି– ଏଥର କୃଷି ହାଲଗୁଲ କ’ଣ ? କେଉ ସାଇ ହେବ ପାଣି ପାଗର କିଛି ଠିକ୍ ଠିକଣା ରହୁନି । ଭାଦ୍ରବ ମାସରେ ବୈଶାଖୀ ଖରା, ଚୈତ୍ର ମାସରେ ଶ୍ରାବଣ ଧାର ; ପ୍ରକୃତିର ବିପରୀତ ରୀତି,



Digitized by PPRACHIN, SOA

ଯେ କଳିଯୁଗ ମଉସା, ସବୁ ଓଲଟା । ସରକାର କହୁଛନ୍ତି, ଆଗୁଆ ବର୍ଷାକୁ ଶୀଘ୍ର ଲଘୁଧାନ ବୁଣାବୁଣି କଲେ ଯାଇ ମରୁଡ଼ିରୁ ରକ୍ଷା ମିଳିବ...

ଜଗୁ ପଧାନ ନିରୀହ, ସରଳ । ମାଷ୍ଟ୍ରଙ୍କ କଥାରେ ହୁଁ ହାଁ ମାରିଯାଉଛନ୍ତି । ତା ପରେ ମାଷ୍ଟର ମୁହଁରୁ ଛୁଟେ ରାଜନୀତି କଥା, ପଞ୍ଚାୟତ ନିର୍ବାଚନ, ଦେଶ ଶାସନ ଏବଂ ପରିଶେଷରେ ନୀତିଶିକ୍ଷା ଆଉ ଧର୍ମାଲୋଚନା । ହଠାତ୍ ମାଷ୍ଟର ମହାଶୟଙ୍କର ଅସଲ ରୂପଟା ପ୍ରକାଶ ପାଏ– ଶ୍ରାବଣୀ ପାଇଁ କେଉଁଠି ବ୍ୟବସ୍ଥା କରୁଛ ମଉସା ? ଗୁଣର ପିଲା ପାଇଁ ଗୁଣୀ ପାତ୍ରଟିଏ ମିଳା ହେଲେ ସୁନ୍ଦର ସାଜିବ......

ମାଷ୍ଟରଙ୍କ ଉପସ୍ଥିତି ବେଳେ କିନ୍ତୁ ଶ୍ରାବଣୀର ଛାଇ ପଡ଼େ ନାହିଁ ସେ ଇଲାକାରେ । କେବେ କେହି ଆଗନ୍ତୁକ ଘରକୁ ଆସିଲେ ସେ ହାଣ୍ଡିଶାଳରେ ନିଜକୁ ଲୁଚେଇ ରଖିଥାଏ । ମାଷ୍ଟରର ଉଚ୍ଚ ତୁଣ୍ଡ କାନରେ ଟାଇଁ ଟାଇଁ ବାଜେ । ଶ୍ରାବଣୀକୁ ଆଶ୍ଚର୍ଯ୍ୟ ମନେହୁଏ – ଏତେବେଳ ଯାଏଁ କ'ଣ ସବୁ ବାଜେ ଆଲୋଚନା ଚାଲିଛି ବାପାଙ୍କ ସହିତ ? ଯା ପାଇଁ କଣା ମାଷ୍ଟରର ମୁଣ୍ଡ କାହିଁକି ବଥଉଚି ? ବୋଉ ତେଣେ ଶଯ୍ୟାଶାୟୀ ପେଟମରା ରୋଗୀ । ପେଟକୁ ହାମୁଡ଼େଇ ବିଛଣାରେ ପଡ଼ିଛି । ସଞ୍ଜବେଳୁ ଘିଅଘଡ଼ି ଭିତରେ ଜଳନ୍ତା ସଳ ପୂରେଇ ନାହି ମୁଣ୍ଡାରେ ଥାପ ଦେଇଥିଲା । ତଥାପି ପେଟ ଯନ୍ତ୍ରଣା କମିନି । ବୋଉର ପେଟ ରୋଗଟା ତା'ର କେଉଁଠି ଥିଲା କେଜାଣି ଶ୍ରାବଣୀ ଜନ୍ମ ବେଳରୁହିଁ ତାକୁ ଯେମିତି ମାଡ଼ି ବସିଛି । ବାହାର ପାଇଟି ସବୁ ଏଯାଏ ବାକୀ ପଡ଼ିଛି । ଏ ମାଷ୍ଟର ଯାଉନି କାହିଁକି ଏଠୁ ? ତାର ବାହାପିଆ କଥାକୁ ବାପା କାହିଁକି ମନଧ୍ୟାନ ଦେଇ ଶୁଣୁଛନ୍ତି ? ଶ୍ରାବଣୀ ମୁହଁରେ ବିରକ୍ତିର ଚିହ୍ନ ।

ଘର ଭିତରେ ଅପେକ୍ଷା କରିବା ଶ୍ରେୟ । ଯାଉ ବାହାପଥ୍ୟା ମାଷ୍ଟର ।

ସେମାନଙ୍କ କଥୋପକଥନ ଶେଷ ହୁଏ, ସାରାଂଶ କିଛି ନ ଥାଏ । ସବୁ ଫାଲତୁ, ଆଜେ ବାଜେ ଚର୍ଚ୍ଚା । ଭିତିରି କଥା ବାପା ବୁଝି ନ ପାରିଲେ ବି, ଶ୍ରାବଣୀ ବେଶ୍ ଅନୁମାନ କରି ଜାଣି ପାରିଥାଏ । ତା'ର



Digitized by PPRACHIN, SOA

ବୁଝିବା ବୟସ ଆସିଯାଇଛି । ତେଣୁ ତାର ମନ କୁହେ – ତୁଇ ଯାଇ ପାଇଁ ଇସର ପସର, ସେକଥା ମୁଇଁ ଜାଣେ । ମୋ କଥା କେବଳ ହରି ଜାଣନ୍ତି, ତୋତେ ମୁଁ ହେୟ ମଣେ ।

ନିକଟବର୍ତ୍ତୀ ମୌଜା ପୋଡ଼ାଡ଼ିହି ମଙ୍ଗରାଜ ମହାଜନର ପୁଅ ନରି । ମୁକାମପଡ଼ା ହାଟରେ ତାଙ୍କର ସବୁଠୁଁ ବଡ଼ ବେପାର । ଏ ଖଣ୍ଡ ମଣ୍ଡଳରେ ଅଚଳାଚଳ ସମ୍ପତ୍ତି । ଟଙ୍କା ପଇସା, ଜମିବାଡ଼ିର ହିସାବ ନାହିଁ । ଶ୍ରାବଣୀକୁ ବୋହୂ କରିବା ପାଇଁ ମହାଜନ ଗୁମାସ୍ତା ହାତରେ କେତେଥର ଖବର ଦେଇଣି । ନରି କିନ୍ତୁ ଅଯୋଗ୍ୟ । ମଦ ମାଂସରେ ଦିନ କାଟୁଛି । ତାର ମହୁଲୀ ମାତ୍ରାଟା ବେଶୀ ହୋଇଗଲେ ପୂର୍ବପୁରୁଷଙ୍କ ସଙ୍ଗେ ଭେଟାଭେଟି ହୋଇଯାଏ । ପୁଅ ଏମିତି ଅଯୋଗ୍ୟ ହେଲେ ଧନ ସମ୍ପତ୍ତି ବା କେତେ ଦିନ ? ନରି କିନ୍ତୁ ଜିଦ୍ ଧରି ବସିଛି । ଜାଣି ଜାଣି ଶ୍ରାବଣୀ ପରି ନିରିମାଖି ଝିଅକୁ ଏପରି କୁଳାଙ୍ଗାର ହାତରେ ଛାଡି ଦେବାକୁ କୋଉ ବାପା ମା' ସାହସ କରିବ ? ବରଂ ଝିଅର ତଣ୍ଟି ଚିପି ମାରିଦେବା ଭଲ । ସେଥିପାଇଁ ଜଗୁ ମୂଳରୁ ଏ ପ୍ରସ୍ତାବକୁ ମନା କରି ଦେଇଛି । କିନ୍ତୁ ମଙ୍ଗରାଜ ମହାଜନ ମନରୁ ଆଶା ଲିଭିନି ।

ସମସରପୁର ଗାଁ ଟୋକା ମହଲରେ ବୋଲଉଥିବା ନେତା ନେତ୍ରାନନ୍ଦ ସିଂ । ପାଠ ପଢା ସେମିତି କିଛି ନୁହେଁ । ତୁଳସୀପୁର ସ୍କୁଲରେ ପଢୁଥିଲା, ମାଇନର ପାସ୍ କରିଛି, ମାଟ୍ରିକ୍ କ୍ଲାସକୁ କିଛି ଦିନ ଧାପ ଦେଉଛି । ଇଂରାଜୀରେ କେଇଟା ବଡ଼ ଶବ୍ଦ ମୁଖସ୍ଥ କରି କାଛ ଆଗରେ ମୂଳା ଗ୍ରେବାଏ । ମୂର୍ଖଙ୍କ ଆଗରେ ବାହୁସ୍ଫୋଟ ମାରେ, ଦର୍ଶନତତ୍ତ୍ୱ ଶୁଣାଏ, ଅନ୍ଧକୁ ଜଗତ ଦେଖାଏ । କାମ ଧନ୍ଦା ବୋଲି ତା'ର କିଛି ନାହିଁ । ବେକାର । ଗାଁ ଟାଉଟରୀ, ଫାନ୍ଦ, ଫିସାଦ, ଜମିବାଡ଼ି ଗଣ୍ଡଗୋଳରେ ଉତ୍ସାହୀ, ପଇସା ମାରଣ ନୀତିରେ ଏଇ ଯୁବ ବୟସରୁ ଧୁରନ୍ଧର ବନିଗଲଣି । ସେ ଏବେ କେତେ ଟୋକାଙ୍କୁ ମେଳ କରଇ ଯୁବକ ସଙ୍ଘଟିଏ ଗଢ଼ିଛି ସେଥିରେ ସେ କର୍ତ୍ତା, ସର୍ବେସର୍ବା । ଅଞ୍ଚଳର ବଡ଼ଲୋକ, ଗୁରୁଜନଙ୍କ ପ୍ରତି ଶ୍ରଦ୍ଧା ସମ୍ମାନ ନାହିଁ । ସ୍ୱେଚ୍ଛାସେବା ନାଁରେ ସ୍ୱସେବାରେ ଲାଗିଛି । ଗାଁ



Digitized by PPRACHIN, SOA

ସାଉକାର ସ୍ବର ପଧାନ ମଧ୍ୟ ତାକୁ ଡରୁଛନ୍ତି । କଳିଯୁଗର କାଳସର୍ପ ଏମାନେ । ବାଲୁଙ୍ଗା ବେକାର ଯୁବକର କାମଧନ୍ଦା ଆଉ କ'ଣ ? ଇଙ୍ଗକୁ ଧରିବାକୁ ସମ୍ମାନ ବାଧା ଦେଉଛି । ସେ ମଧ୍ୟ ଶ୍ରାବଣୀ ପାଇଁ ଲାଳାୟିତ ।

କହୁ କହୁ ନେତ୍ରାନନ୍ଦ ଜଗୁକୁ କହି ପକାଇଲା– ଗାଁ ଝିଅ ଗାଁରେ ରହିଲେ ଭଲ । ଝିଅ ପାଖରେ ରହିଲେ ବୁଢାକାଳରେ ତମ ଭଲମନ୍ଦ ବୁଝି ପାରିବ । ତମେ ରାଜି ହେଲେ ମା'କୁ କହି ଦିନବାର ଧାର୍ଯ୍ୟ କରିବି ।

ଜଗୁ କିଛି କହି ନ ଥିଲା । ମୁହଁ ବିକୃତ କରି ଭାବ ପ୍ରକାଶ କରୁଥିଲା ମାତ୍ର । ଆଜିକାଲି ଟୋକାଙ୍କ ଗୁଣ, ମୂର୍ଖତା, ବେହିଆ ପଣ ଦେଖି ମୁଣ୍ଡରେ ହାତ ଦେଇଥିଲା । କାହାକୁ କହିବ ? ସାରିଆ ଆଗରେ ସବୁ ଗପେ । ଏସବୁ ପ୍ରସ୍ତାବ ପସନ୍ଦଯୋଗ୍ୟ ନୁହେଁ, ଅବାନ୍ତର । ଏମାନଙ୍କୁ କିଏ ବା ପାସଙ୍ଗରେ ପକାଉଛି ? ଶ୍ରାବଣୀ ବଡ଼ ହେଲାଣି । ଭଗବାନ ଦୟା କରନ୍ତେ କି, ଝିଅକୁ ସୁନ୍ଦର ଶିକ୍ଷିତ ପିଲା ହାତରେ ସମର୍ପି ଦିଅନ୍ତି । ଈଶ୍ବର କ'ଣ ଦୟା କରିବେନି ?

ସାରିଆର ଆତୁର ସ୍ବର–ବେମାର ମତେ ଅଧା ଜୀବନ କଲାଣି । ଆଉ ବେଶିଦିନ ବଞ୍ଚିବା ପରି ଲାଗୁନି । ସତରେ କ'ଣ ଝିଅ ବାହାଘର ଆଖିରେ ଦେଖିବି ? ସାରିଆର ମିନତିରେ ଥିଲା ଆବେଗତା ।

ଯେତେ ସାବଧାନରେ ବାଟ ଚାଲିଲେ ମଧ୍ୟ, ମଣିଷ ବେଳେ ବେଳେ ବାଟ ଭୁଲେ । ଦୁର୍ଘଟଣାର ସମ୍ମୁଖୀନ ହୁଏ । ସେଇଭଳି ଏକ ଚକ୍ରାନ୍ତରେ ଆକ୍ରାନ୍ତ ହୋଇ ଜଗୁ ସର୍ବସ୍ବ ହରାଇଲା । ପଦନର ଫିସାଦିଆ କଥାରେ ସେ ସବୁ ଭୁଲିଗଲା ।

ପଦନ ସଂଲଗ୍ନ ପଞ୍ଚପଡ଼ା ଗାଁର ବାସିନ୍ଦା । ସମସରପୁର ଓ ପଞ୍ଚପଡ଼ା ଗୋଟିଏ ଗାଁ କହିଲେ ଚଳେ । ଗୋଟିଏ ବଡ଼ ଗାଁର ଦୁଇଟି



Digitized by PPRACHIN, SOA

ବସ୍ତି । ହିସାବରେ ଜଗୁର ଘର ଲେଖାହେବ, କିନ୍ତୁ ଘର ସମ୍ପର୍କୀୟ ନୁହେଁ । ମାଟିର ମାପ ବୃଦ୍ଧି କରିବା ପଦନ ଜୀବନର ଏକମାତ୍ର ଅନ୍ୱେଷଣ । ଅନ୍ୟର ତଣ୍ଟିକାଟି, ପର ଡିହ ବିକି, ନିଜ ଭୂସମ୍ପତ୍ତିର ସମ୍ପ୍ରସାରଣ କରିବା ତା'ର ଲକ୍ଷ୍ୟ । ହେଲେ, ଜଗୁକୁ ଏତେ ଭିତିରି କଥା ଜଣା ନ ଥାଏ । ଏତେ ଗହନ ଗହ୍ୱରରେ ପଶିବା ଲୋକ ସେ ନୁହେଁ । ବେଳ ପଡ଼ିଲେ ଜଗୁ ପଦନର ପରାମର୍ଶ ଲୋଡ଼େ । ତା' ସହିତ ଦୁଃଖ ସୁଖ ହୁଏ । ଏଣୁ ପଦନ ଥିଲା ତାର ବିଶ୍ୱାସଭାଜନ ।

ପଦନର ଭଣଜା ଦାମୋଦର ବୁର୍ଲାରେ ଡାକ୍ତରୀ ପଢୁଥିଲା ବୋଲି ପଦନ ଅନେକ ଥର କହିଛି । ଏବେ ଡାକ୍ତରୀ ପାଠ ଶେଷକରି ହାସପାତାଳରେ ସର୍ଜନ ହୋଇଛି ବୋଲି ପଦନ କହିଲା । ସର୍ଜନର ଅର୍ଥ ଜଗୁ ବୁଝି ନ ଥିଲା । ଏହାକୁ ଡାକ୍ତର କୁହାଯାଏ ବୋଲି ପଦନ ବୁଝାଇ ଦେଇଥିଲା । ଡାକ୍ତରୀ ଜୋଇଁ ପାଇଁ ଜଗୁର ମନ ଉଛନ୍ନ ହେଲା । ତାର ଧନ ନାହିଁ, ଜାନି ଯୌତୁକ ଦେବାପାଇଁ ଶକ୍ତି ନାହିଁ । କିନ୍ତୁ ଶ୍ରାବଣୀ ଥିଲା ତାର ଧନ ଆଉ ଯୌତୁକ । ତାକୁ ଯେକେହି ଲୋକ ଦେଖି ପସନ୍ଦ କରିବ ବୋଲି ତାର ବିଶ୍ୱାସ । ତେଣୁ ସେ ପଦନ ସଙ୍ଗେ ବାରମ୍ବାର ପ୍ରସ୍ତାବକୁ ଠେଲି ଥିଲା ।

ହଁ ଜଗୁଭାଇ, ଏ ପ୍ରସ୍ତାବରେ ମୁଁ ଅବଶ୍ୟ ଏକମତ । ତୁମେ ତ ଜାଣ, ଦାମୋଦରର ମୁଁ ମୁରବୀ କହିଲେ ଚଳେ, ତାର ବାପ ମା' ସବୁକିଛି । ତାକୁ ମୁଁ ପାଠ ପଢ଼ାଇଛି, ମଣିଷ କରିଛି । ମୋ କଥାରେ ସେ ଆଦୌ ଅରାଜି ହେବନି । ହେଲେ ଆଜିକାଲି ପାଠୁଆ ପିଲାଙ୍କ ବିଗ୍ଭର । ବିଶେଷ କରି ଭଣଜା ମୋର ଡାକ୍ତର । ପାଠୋଇ ଝିଅ ଖୋଜିବ ନିଷ୍ଚୟ । ଆମ ଶ୍ରାବଣୀତ ବିଶେଷ କିଛି ପଢ଼ିନି । ବାହାର ଦୁନିଆଁ ଦେଖିନି । ପୁଅର ସିନା ପସନ୍ଦ ହେଲେ ହେବ ?

କିନ୍ତୁ ପଦନ, ସାବୀତ ତୁମର ଝିଅ । ତା'ର ରୂପ, ଗୁଣ ତମେ ଭଲଭାବେ ଜାଣଛ, ମୁଁ କ'ଣ ଆଉ ଅଧିକ କହିବି ? ମୋ ଝିଅ କ'ଣ



Digitized by PPRACHIN, SOA

କୌଣସି ଡାକ୍ତର, ଅଫିସର, ହାକିମର ଘରଣୀ ହେବାପାଇଁ ଉପଯୁକ୍ତ ନୁହେଁ ?

: ସେ କଥା ଅବଶ୍ୟ ମାନୁଛି ଜଗୁଭାଇ । କିନ୍ତୁ ଖାଲି ଗୁଣକଥା କିଏ ଆଜିକାଲି ଶୁଣୁଛି, ବିଗ୍ଭର କରୁଛି ? ସବୁ ମୂଳରେ ଅର୍ଥ । ବାହାଘର ବଜାରରେ କେବଳ ନଗଦ ନାରାୟଣଙ୍କ କଥାବାର୍ତ୍ତା । ତମେ କ'ଣ କିଛି ବ୍ୟବସ୍ଥା କରି ପାରିବ ?

: ମୋର ଅବସ୍ଥା ତୁମକୁ କିଛି ଅଛପା ନୁହେଁ ପଦନ । ଘରଡିହ, ବାଡ଼ି, ତୋଟା ମିଶି ଦେଢ଼ ମାଣ । ଗ୍ଷଜମି ତିନି ଗ୍ଭରିମାଣ । ସାବୀ ମୋର ପୁଅ ଏବଂ ଝିଅ । ମୋ ସମ୍ପତ୍ତିକୁ ଆଉ କିଏ ଅଛି ଯେ ଭୋଗ କରିବ ? ମୋ ଅନ୍ତେ ସେ ସବୁ ତ ତା'ର । ନା କ'ଣ କହୁଛ ପଦନ ?

ତାତ ସତ, ମୁଁ ସ୍ୱୀକାର କରୁଛି । କିନ୍ତୁ ଜଗୁଭାଇ, ତମେ ଜାଣନି ଆଜିକାଲିର ନୂଆ ଆଇନ୍ । ତୁମ ସମ୍ପତ୍ତି ଉତ୍ତରାଧିକାର ସୂତ୍ରରେ ଶ୍ରାବଣୀର ହେବ ସ୍ତ୍ରୀ-ଧନ । ସ୍ୱାମୀର ସେଥିରେ ଅଧିକାର ନାହିଁ । କେଉଁ ଭରସାରେ ଦାମୋଦର ଏଥିରେ ରାଜି ହେବ ?

ତେବେ କ'ଣ କହୁଛ ଉପାୟ ଆଉ କିଛି ନାହିଁ ? ସାବୀ ପ୍ରତି ତମର କ'ଣ ସ୍ନେହ ନାହିଁ ? ଦରଦ ନାହିଁ ? ସେ ସୁଖରେ ରହିଲେ ତମେ କ'ଣ ଖୁସି ହେବନି ? ପଦନ ଗ୍ଭହିଁଲେ ସବୁ ହବ ।

ମାନୁଛି । ହେଲେ ମୋତେ ଟିକିଏ ଚିନ୍ତା କରିବାକୁ ସମୟ ଦିଅ ।

ଡେରି କରିବ ନାହିଁ, ଭାବି ଚିନ୍ତି କହିବ । ଜଗୁଭାଇ ତମ କଥାରୁ କେବେ ବାହାରି ଯିବ ନାହିଁ ବୋଲି ମୋର ବିଶ୍ୱାସ ।

ସାମାନ୍ୟ ଚିନ୍ତାକରି ଖିଲିପାନକୁ ପାଟିରେ ପୁରାଇବା ବେଳେ ପଦନ କହି ଉଠିଲା – ନିଶ୍ଚୟ ଉପାୟ ଅଛି । କେବଳ ଗୋଟିଏ ବାଟ । ତମେ ଯଦି ତମ ସମ୍ପତ୍ତିକୁ ଦାମୋଦରକୁ ଦାନପତ୍ର ଦଲିଲ କରିଦେଇ ପାରତ,



Digitized by PPRACHIN, SOA

ତା' ହେଲେ ଦାମ ଗଛି ହୋଇପାରେ । ତଥାପି ନିର୍ଭର ପ୍ରତିଶ୍ରୁତି ମୁଁ ବର୍ତ୍ତମାନ ଦେଇ ପାରୁନି ।

—ହଁ ପଦନ, ମୁଁ ଥରେ କହିଛି, ସାବୀ ମୋର ସର୍ବସ୍ୱ । ତା ସ୍ୱାମୀର ସମ୍ପତ୍ତି କ'ଣ ତା'ର ନୁହଁ, ନା ତା ଧନ ସ୍ୱାମୀର ନୁହଁ ? ସ୍ୱାମୀ ସ୍ତ୍ରୀ ଏକ, ଅଭିନ୍ନ । ତମେ କଥା ଦେଲେ ଏଇଲେ ଦାନପତ୍ର କରିଦେବି ।

: ନା ଜଗୁଭାଇ, ତମେ ସରଳ ଲୋକ । ଇଏ ପଞ୍ଚାୟତ କାମ ନୁହେଁ ଯେ ସଙ୍ଗେ ସଙ୍ଗେ ଫଇସଲ ହୋଇଯିବ ! କୋର୍ଟ କଚେରୀ ମାମଲା । ଏବେ କଚେରୀ ଛୁଟି ଅଛି, ଆଉ ପକ୍ଷେ ପରେ ସବୁ ଖୋଲିବ । ମୁଁ ଟିକିଏ ଭଣଜାର ମତ ନେଇ ବୁଲାଏ ଫେରି ଆସେ ।

ପୁଣି କହିଲା ପଦନ—ମୁଁ ମୁରବୀ ହେଲେହେଁ, ଯିଏ ବାହା ହେବ ତାକୁ ନିହାତି କମରେ ଥରେ ପଚାରି ଦେବା ଉଚିତ । ପାଠୁଆ ପିଲା ନା, ଥରେ ପଚାରି ଦେଲେ ଆମ ଦୋଷ କଟିଯିବ......

ତମକୁ ସାବୀ କଥା ଲଗିଲା । ଜଗୁର ଆନ୍ତରିକ ଆବେଦନ । ଶିକ୍ଷିତ ପାତ୍ର ପାଇଁ କେତେ ଅଭିଳାଷ !

ଶ୍ରାବଣୀର ବିବାହ ପ୍ରସ୍ତାବ ଆଗେଇ ଚାଲିଲା । ଜଗୁ ଡାକ୍ତର ଜୁଆଇଁ କରୁଛି ବୋଲି ଚାରିଆଡ଼େ ହଲା ହୋଇଗଲା । ଶ୍ରାବଣୀ ହେବ ଡାକ୍ତରର ସହଧର୍ମିଣୀ । ତା ଭାଗ୍ୟ ସତେ କେତେ ଉଚ୍ଚ ଆଉ ଉଜ୍ଜ୍ୱଳ ! ଅନେକଙ୍କ ଆଶା ଧୂଳିସାତ୍ ହେଲା ! ଆଉ କେତେକ ଈର୍ଷାରେ ଜଳିଲେ, କିନ୍ତୁ ପ୍ରଜାପତି ଘଟସୂତ୍ରରେ କାହାର କିଛି କରିବାର ନାହିଁ, କହିବାର ନାହିଁ । କାନମୁଣ୍ଡା ଆଉଁସି ରହିବା ଛଡ଼ା ଅନ୍ୟ ଗତି ନାହିଁ ।

ବିଶ୍ୱାସ ଅଛି ବୋଲି ବିଶ୍ୱ ଅଛି । ବିଶ୍ୱାସରେ ବ୍ରହ୍ମାଣ୍ଡ ଚଳୁଛି, ସଂସାର ତିଷ୍ଠିଛି, ମଣିଷ ବଞ୍ଚୁଛି । ପଦନ ଉପରେ ବିଶ୍ୱାସ ରଖି ଅଦାଲତର ସାମ୍ନାରେ ଜଗୁ ତାର ଘରବାଡ଼ି, ଡିହ, ତୋଟା ଏବଂ ଜମି



Digitized by PPRACHIN, SOA

ଦାମୋଦର ଗଉଡ ନାମରେ ଦାନପତ୍ର କରିଦେଲା । କାଗଜରେ କ'ଣ ଲେଖା ଥିଲା, ଜଗୁ ଦେଖି ନ ଥିଲା, ପଢ଼ି ବୁଝିବାର ଶକ୍ତି ମଧ୍ୟ ଭଗବାନ ତାକୁ ଦେଇ ନଥିଲେ, ଗୋଟିଏ ଶକ୍ତି ଭଗବାନ ଦେଇଥିଲେ– ସରଳତା । ସେଇ ସରଳ ବିଶ୍ୱାସରେ ଦସ୍ତଖତ କରି ଦଲିଲଟିକୁ ପଦନ ହାତକୁ ବଢ଼ାଇ ଦେଇଥିଲା । କେବଳ ସେତିକି ନୁହେଁ, ବାକୀ ଦୁଇମାଣ ଜମିକୁ ସେଇ ପଦନକୁ କମ୍ ମୂଲ୍ୟରେ ବିକ୍ରୀକଲା, ନହେଲେ ବାହାଘର ଖର୍ଚ୍ଚ ତୁଲାଇବ କିପରି ? ବଡ଼ ବଡ଼ିଆ, ବାବୁ ଭୟା ଶିକ୍ଷିତ ଲୋକମାନେ ବରଯାତ୍ରୀ ସାଜି ଆସିବେ ଏ ଗାଁକୁ । ସେମାନଙ୍କୁ ଉଚିତ ମୁତାବକ ଚର୍ଚ୍ଚା କରିବାକୁ ପଡ଼ିବ । ଡାକ୍ତର ଜ୍ୱାଇଁର ସମ୍ମାନକୁ ଜଗିରଖି ସବୁକାମ କରିବାକୁ ହେବ । ତାର ଆଉ ଜମିର ଆବଶ୍ୟକତା କ'ଣ ? ଝିଅ ଜ୍ୱାଇଁ ଗ୍ରହିଲେ ସେ ଏ ଘରେ ରହିବ ; ନ ଗ୍ରହିଁଲେ ବୁଢ଼ାବୁଢ଼ୀ ମଠରେ ଆଶ୍ରୟ ନେବେ କିମ୍ବା ବରଗଛ ମୂଳେ ରହି ଭଗଗ୍ରଷ ଧରି, ମୂଲଲଗି ପେଟ ପୋଷିବେ । ଏଇତକ ସାହସ ଓ ଆତ୍ମବିଶ୍ୱାସକୁ ସମ୍ବଳ କରି ସେ ସେଦିନ ଏଭଳି ଏକ ସିଦ୍ଧାନ୍ତକୁ ବରଣ କରି ନେଇଥିଲା ।

ବିଭଘରର ଶେଷକୁ ପ୍ରତୀକ୍ଷିତ ଦିନ ଆସି ପହଞ୍ଚିଲା । ଜଗୁ ତା ସାଧ୍ୟାନୁଯାୟୀ ସବୁ ଆୟୋଜନ କରିଛି । ବାଡ଼ୁଅ ପାଣି ଗାଧୁଆ ଉତ୍ସବରେ ସାଇର ସାତ ସଧବା ସ୍ତ୍ରୀ ଲୋକ ଯୋଗ ଦେଲେ । ଝିଅ ବାଡୁଅ ପାଣିରେ ଗାଧୋଇ ମଙ୍ଗୁଳୁତି ହେଲା । ତା ଅଭିଆଡ଼ୀ ଜୀବନର ପରିସମାପ୍ତି ଘୋଷିତ ହେଲା ।

ସମସରପୁରକୁ ସିଧାସଳଖ ବସ୍ ଯିବା ପାଇଁ ରାସ୍ତା ନ ଥିଲା । ବରଯାତ୍ରୀମାନେ ବସ୍‌ରେ ଆସିଥିଲେ ମୁକାମପଡ଼ା ଛକ ପର୍ଯ୍ୟନ୍ତ । ସେଠୁ ପୂର୍ବଦିଗ ଆଡ଼କୁ ସମସରପୁର । ତିନିମାଇଲ ପଦଯାତ୍ରା । ବର ଚାଲିକରି ଆସିଲେ ପଦମର୍ଯ୍ୟାଦା ହାନି ହେବ । ତେଣୁ ବର ଆସିଲା ମଫସଲର ଚିରଚରିତ ବାହାନ, ଶଗଡ଼ ଯାନରେ । ଅବଶ୍ୟ ଶଗଡ଼ଟି ବେଶ୍ ସଜା ଯାଇଥିଲା । ବଳଦ ହଳକ ଘାଗୁଡ଼ିମାଳ ପିନ୍ଧି ସଶବ୍ଦରେ ଗାଁ ଜ୍ୱାଇଁକୁ ପାଛୋଟି ଆଣିଥିଲେ । ସୂର୍ଯ୍ୟାସ୍ତ ପୂର୍ବରୁ ସେମାନେ ଗାଁ ଧରିଲେ ।



Digitized by PPRACHIN, SOA

ଗାଁ ସ୍କୁଲରେ ପ୍ରଥମେ ସେମାନଙ୍କର ବିଶ୍ରାମ । ଅତିଥି ସତ୍କାର ପାଇଁ ଥିଲେ ପଂଚେ ଗାଁ ଟୋକା-ଟିକା, ଗୋପାଳ, ଦୁଃଶା, ତ୍ରିଲୋଚନ, ନରିଆ ଏବଂ ନେତ୍ରାନନ୍ଦ ସିଂ, ଯେଉଁମାନେକି ଦିନେ ଶ୍ରାବଣୀକୁ ପାଇବା ପାଇଁ ଧାଡ଼ି ବାନ୍ଧିଥିଲେ । ଏବେ ସେମାନଙ୍କୁ ଅଙ୍ଗୁର କୋଳି ଖଟା ; ମନରେ ଶିଶୁପାଳର ଅବଶୋଷ ।

ଆଜିର ଆୟୋଜନରେ କୁଆଡ଼େ ଗାଁର ସମ୍ମାନ ଜଡ଼ିତ । ବାହାରୁ ଆସିଛନ୍ତି ଭଦ୍ରଲୋକ, ଶିକ୍ଷିତ ସୁଧୀଜନ ଏବଂ ବୁଦ୍ଧିମାନ ବ୍ୟକ୍ତିମାନେ । ଉତ୍ତମ ଅତିଥି ସତ୍କାର ଆବଶ୍ୟକ, ନୋହିଲେ ଗାଁର ମର୍ଯ୍ୟାଦା ହାନି ଘଟିବ ।

ନେତ୍ରାନନ୍ଦ ବଡ଼ କୁହାଳିଆ । ମୁହେଁ ମୁହେଁ ଜବାବ ଦେବା ଯୁବକ । ବରଯାତ୍ରୀମାନଙ୍କୁ ଦେଖି ତାର ପସନ୍ଦ ହେଲନାହିଁ । ବରକୁ ଦେଖି ନାକ ଟେକିଲ, କହିଲ – ଆରେ ଏଟା ଗୋଟାଏ କୋଉ ବର ଯେ ? ଶ୍ରାବଣୀ ପାଇଁ ଯେ କ'ଣ ଉପଯୁକ୍ତ ? ଦେଖା ଯାଉଛି ଗୋଟେ ଅର୍ଘାସୁର ଭଳି ; ଭୁଷୁଣ୍ଡା, କାଳିଆଭୁଆ । ଆମ ଶ୍ରାବଣୀତ ରୂପରେ ଲବଣ୍ୟ । ଗୁଣରେ ଦ୍ରୌପଦୀ...... ଜଗାଦାଦି ବାଛି ବାଛି ଶେଷକୁ ଝିଅପାଇଁ ବାଛିଲ ଗୋଟାଏ ହନୁମାଙ୍କଡ଼କୁ ! ତା' ଆଖି କ'ଣ ଫୁଟି ଯାଇଥିଲ କି ? ଦି' ଜଣକୁ ଏକାଠି ଠିଆ କଲେ ଗୋଟିଏ ହେବ ଡଉଲ ଡାଉଲ ଚିକ୍କଣ ଧଳା ଲେଟଣୀ ପାଗ, ଆଉ ଅନ୍ୟଟି ତ୍ରିପଣ୍ଡ କଳା ଡାମରା କାଉ । ଛିଃ, ଲୋକେ ପୁଣି ଗୁକିରୀଆ ଜୋଇଁ ପାଇଁ ଏମିତି ଅନ୍ଧ ହୁଅନ୍ତି ?

ନେତ୍ରାନନ୍ଦ ମତକୁ ସମ୍ପୂର୍ଣ୍ଣ ସମର୍ଥନ କରି ନରିଆ କହିଲ – ବରର ରୂପତ ବିକୃତ, ବିଚିକିଟିଆ, ଗୁଣ କଥା କିଏ ଜାଣେ ? ଲୋକେ କହୁଛନ୍ତି – ଡାକ୍ତର । ଆବେ ଡାକ୍ତର ନାଁ ମେହେନ୍ତର ? ଏ ଲୋକ ଗୁଡ଼ାକ ଦିଶୁଛନ୍ତି ନିପଟ ମଫସଲିଆ, କିଏ ଗୋଟେ ହେଲେ ବାବୁପରି ଜଣା ପଡ଼ୁନାହାନ୍ତି । କଥା କ'ଣ ?



Digitized by PPRACHIN, SOA

ଏ କଥା ଜଗୁ କାନରେ ବାଜିଲା । ଗାଁ ଛତର ଟୋକାଙ୍କ ଉପହାସକୁ ଭଏଁ ଭଏଁ ହସରେ ଉଡ଼ାଇ ଦେଲା ସେ । ପୁଅ ପାଠୁଆ, ରୋଜଗାରିଆ ହେଲେ ତା ଚେହେରାକୁ କିଏ ଧରିବସେ ? ଚେହେରାକୁ ବିକି କ'ଣ ପେଟ ପୋଷିବ ? ପୁରୁଷ ପିଲାର ପୁଣି ରୂପ, ହୀରା ମୁଦିର କ'ଣ ବଙ୍କା ତେଢ଼ା ? ତୀର୍ଥପାଣି ପୁଣି ଗୋଳିଆ ? ଜଣେ ହସିବେ, ଜଣେ ହସିବେ । ହଇଏ, ଆମ ଧର୍ମରେ ପରା ଲେଖା ଅଛି – ବଡ଼ ଠାକୁର ଜଗନ୍ନାଥ କାଳିଆ ; ସେ କ'ଣ ଲକ୍ଷ୍ମୀ ଠାକୁରାଣୀଙ୍କ ସ୍ୱାମୀ ନୁହଁନ୍ତି ? ଜଗନ୍ନାଥତ ଓଡ଼ିଆ ଜାତିର ସ୍ୱାମୀ । ଏଇ କଥାକୁ ନାଗରା ପିଟୁଛ ଏଠି ?

ଅଭିଯୋଗକାରୀମାନଙ୍କ ଅଲଣା କଥାକୁ କର୍ଣ୍ଣପାତ କଲାନାହିଁ ଜଗୁ । ଦାନ୍ତ ନେଫେଡ଼ି ଧଇଁ ସଇଁ ହୋଇ ବିବାହ କର୍ମରେ ଲାଗି ପଡ଼ିଲା ଅପୂର୍ବ ଉତ୍ସାହର ସହିତ । ସମସରପୁର ଗାଁ ମୁଣ୍ଡ ସ୍କୁଲ ଘରେ ଡାକ୍ତର ଜୋଇଁ ଉପଗତ । ଏ ଗାଁର କେତେଜଣ ଝିଅବାଲା ଏମିତି ବର କରିଛନ୍ତି ? କେତେ ଜଣଙ୍କ ଭାଗ୍ୟରେ ଏମିତି ସୁଯୋଗ ଜୁଟେ ! ହିଂସୁକୁଟିଆ ଗାଁ ଲୋକଙ୍କର ଚକ୍ଷୁଶୂଳ ହେବା ସ୍ୱାଭାବିକ । ଛାଡ଼, ଛାଡ଼ ଏମାନଙ୍କ କଥା । ସଜ ମାଛରେ ପୋକ ପକାଇବେ ଏମାନେ......

ଯୁବକମାନେ କିନ୍ତୁ ଥିଲେ ନଛୋଡ଼ବନ୍ଧା । ସେମାନଙ୍କ କୌତୂହଳ ଦମନ ହୋଇ ନଥିଲା । ସନ୍ଦେହର ସର୍ପ କୁଣ୍ଡଳୀ ଗାଁ ଭେଣ୍ଡିଆ ଯୁବକମାନଙ୍କୁ ଆକ୍ରାନ୍ତ କଲା ଅଧିକ ଜୋରରେ । ମକର ମତ ଦେଲା, ଚାଲୁନ ତା ହେଲେ ବର ସାଙ୍ଗେ କଥାଭାଷା ହେବ । ସବୁକଥା ଜଣା ପଡ଼ିଯିବନି ଆପେ ଆପେ ? ନଇ ନ ଦେଖି ଏବେଠୁ ନାଚିବା, ମାତିବା କ'ଣ ଠିକ୍ କଥା ? ଚାଲ ଆଗ ପଚାରି ବୁଝିବା ।

ସମସ୍ତେ ଏକ ମତ ହେଲେ । ଡାକ୍ତର ବର । ତା ସହିତ ବାର୍ତ୍ତାଳାପ କରିବାପାଇଁ ସମାସନ୍ଧ ଶିକ୍ଷିତ ଲୋକ ହେଲେ ଯାଇ ହେବ । ଇଂରେଜୀରେ ପଦେ ଦି'ପଦ ଭାବର ଆଦାନପ୍ରଦାନ ହୋଇଗଲେ କିଏ ସତ କିଏ ମିଛ ଜଣା ପଡ଼ିଯିବ । ଇଂରେଜୀ ଭାଷା ହେଉଛି ଆମ ଶିକ୍ଷିତ



Digitized by PPRACHIN, SOA

ସମ୍ପ୍ରଦାୟର ମାପକାଠି । କିଏ ଇଂରାଜୀରେ ବର ସହିତ ଭଲଭାବେ କଥାଭାଷା କରିପାରିବ ?

ସେମାନଙ୍କ ମଧ୍ୟରେ ବିଗଡ଼ି ବେକରେ ଘଣ୍ଟି ବାନ୍ଧିବା ସମସ୍ୟା ଉପୁଜିଥିଲା ।

ଅଛି ନେତ୍ରାନନ୍ଦ ସିଂ । ତା'ର ହୁଙ୍କାପିଟା, ହୁଣ୍ଡାଳିଆ କାମ ସମସ୍ତଙ୍କୁ ଗୋଚର । ପରିଣାମକୁ ତା'ର ଭୟ ନାହିଁ, ଖାତିର ନାହିଁ । କିନ୍ତୁ ସେତ ଇଂରାଜୀରେ କହି ପାରିବ ନାହିଁ, ଖାଲି କେତୁଟା ଶବ୍ଦ ଜାଣିଛ ନା ! ତେବେ ଉପାୟ କ'ଣ ?

: ଅଛି, ଉପାୟ ଅଛି, ବାଟ ଅଛି । ଚାଲ ଯିବା ମନୁ ମାଷ୍ଟ୍ରଙ୍କ ପାଖକୁ । ଗାଁ ଯୁବକମାନଙ୍କ ମଧ୍ୟରେ ଅଦମ୍ୟ ଉଦ୍‌ବେଗର ଆଲୋଡ଼ନ ।

ଆବେଗ ଧରି ସେମାନେ ଧାଇଁଲେ ମନୁମାଷ୍ଟରଙ୍କ ପାଖକୁ । ବହୁତ ଫୁସୁର ଫୁସୁରି କଲେ ତାଙ୍କୁ । ସେବି ଓର ଉଣ୍ଡିଥିଲା । କଙ୍କଡ଼ାକୁ ଗୋଳିପାଣି ସୁହାଇଲା ଭଳି ସୁଯୋଗଟିଏ ଉପସ୍ଥିତ ହେଲା ମନୁମାଷ୍ଟ ପାଇଁ । ନେତୃତ୍ୱର ବାହାଦୁରୀପଣ ନେଇ ସେ ଯୋଗ ଦେଲେ ଯୁବ ଗୋଷ୍ଠୀ ସହିତ ।

ସେମାନେ ଦଳ ବାନ୍ଧି ବରକୁ ଘେରି ବସିଲେ ପିଲଙ୍କ ରୁମାଲଗ୍ରେରୀ ଖେଳଭଳି – ଗାଁ ସ୍କୁଲ ଘରେ, ଯେଉଁଠି ବରଯାତ୍ରୀମାନେ ଶୋଭାଯାତ୍ରା ପାଇଁ ପ୍ରସ୍ତୁତ ହେଉଥିଲେ ।

ଆପଣ କେତେବେଳେ ବୁର୍ଲା ଛାଡ଼ିଲେ ? ମନୁମାଷ୍ଟ କଥା ଆରମ୍ଭ କଲେ ଭଦ୍ରାମି ସହକାରେ ।

ବର ଅସ୍ୱାଭାବିକ ଭାବେ ଚୁପ୍ ରହିଲା, ଯେମିତି ସେ କାହା କଥା ଶୁଣିନାହିଁ ! ଏମିତି ଚୁପ୍ ରହିବା ବୋଧହୁଏ ସବୁ ବରର ସ୍ୱଭାବ ।

ମନୁ ମାଷ୍ଟର ପୁଣ ଥରେ ପର୍ବ ପ୍ରଶ୍ନର ପୁନରାବୃତ୍ତି କଲେ । ବର ମଧ୍ୟ କିଛି ପ୍ରକାଶ କରିବାକୁ ଇଚ୍ଛା କରୁ ନଥିଲା । ମୁହଁରେ ହସଟିଏ ସୃଷ୍ଟି କରିବାକୁ ଚେଷ୍ଟା କରୁଥିଲା ।



Digitized by PPRACHIN, SOA

କ'ଣ ଆଜ୍ଞା, ଆମ କଥା ଶୁଭିଲା ନାହିଁକି ? ଟିକିଏ ଚଡ଼ା ସ୍ୱରରେ କହିଲା ମନୁ ମାଷ୍ଟର ।

ବର ଯେମିତି ମୂକ ! ମୁହଁରୁ କୌଣସି ବଚନ ସ୍ଫୁରିତ ହେଉନାହିଁ । ସମସ୍ତେ ତା ମୁହଁକୁ ଚାହିଁ ରହିଲେ । ବର ନିଜକୁ ଅପ୍ରସ୍ତୁତ ମନେକଲା ଏବଂ ବାଧ୍ୟତାର ଚାପରେ କହିଲା – ସ...ସକାଳୁ......

ଆରେ ଏ ଡାକ୍ତରବାବୁ ଖନା ନା କ'ଣ ? କିହୋ ମନୁ ମାଷ୍ଟେ, ଭଲଭବେ ପଚରାପଚରି କର ।

ବରଯାତ୍ରୀମାନେ ତଟସ୍ଥ ହୋଇଯାଇଥିଲେ ।

ଜଣେ ଅଭିଯୁକ୍ତ ଆସାମୀକୁ ଅଦାଲତର କାଠଗଡ଼ାରେ ଓକିଲ ଜେରା କଲାପରି ସେମାନେ ବରକୁ ଜେରା କରୁଥାନ୍ତି । ଘାଣ୍ଟଚକଟରୁ ଅସଲ ଗୁମର ଫିଟିଲା । କ୍ରମେ ଉଦ୍ଦେଶ୍ୟ ସ୍ପଷ୍ଟ ହୋଇଗଲା । ଏହା ଗୋଟେ ଠକାମି କାରବାର, ଜାଲ ଫିସାଦି, ଧପ୍ପାବାଜି ।

ବରଲୋକମାନେ ଭୟଭୀତ ହୋଇ ପଡୁଥାନ୍ତି । ଘଟଣା କ'ଣ ? ଗାଁ ବାଲାଙ୍କ ଉଦ୍ଦେଶ୍ୟ ସେମାନଙ୍କୁ ବୁଝାପଡୁ ନଥାଏ । ତମେ ସବୁ ଆମ ସରଳ ଗାଁ ବାଲାଙ୍କୁ ଠକିବାକୁ ବସିଛ ? ଝିଅ ଜୀବନ ସଙ୍ଗେ ଖେଳ ଖେଳୁଛ ? ଆମେ କ'ଣ ଏଠି ସବୁ ଭକୁଆ ଅଛୁ ? କହିଲା ନେତ୍ରାନନ୍ଦ ସ୍ୱରକୁ ପଞ୍ଚମ କରି ।

ଆପଣଙ୍କ ଉଦ୍ଦେଶ୍ୟ କିଛି ବୁଝି ହେଉନାହିଁ ଆଜ୍ଞା, ବିକଳ ଏବଂ ବିବ୍ରତ ସ୍ୱରରେ ହାତଯୋଡ଼ି କହିଲେ ବରପିତା ।

ଟାଣ ସ୍ୱରରେ ନେତ୍ରାନନ୍ଦ କହିଲା – ତମପୁଅ କେଉଁଠି ଡାକ୍ତର ଅଛି ? କେବେ ଡାକ୍ତରୀ ପାସ କଲା ?

ଡାକ୍ତର ! କିଏ କହିଲା ଡାକ୍ତର ବୋଲି ? ଏ କଥା ଆମେତ କେବେ କାହାକୁ କହିନାହୁଁ । ସେ ତ ଡାକଚେରରେ ଅଛି । ଡାକ୍ତର



Digitized by PPRACHIN, SOA

ନୁହେଁ, ଡାକ୍ତରଙ୍କ ହେଲପର । ଘା’ ଧୁଆଧୁଇ, ଅପରେସନ ଆଦିରେ ସେ ଡାକ୍ତରଙ୍କୁ ସାହାଯ୍ୟ କରେ । ତା ହାତ ଭରି ଭଲ । ମାସକୁ ତିନିଶହ ଟଙ୍କା ଦରମା ପାଏ, ତା ପରେ ମଧ୍ୟ ଅଛି କିଛି ହାତଗୁଞ୍ଜା ପଇସା···· ବୁର୍ଲାରେ ଗୁକିରୀ ଆରମ୍ଭ କରିଥିଲ, କୁହାବୋଲା କରି ବର୍ଷେ ହେବ ଗାଁ ପାଖକୁ ଆସିଛି ।

ମଧ୍ୟସ୍ଥିଙ୍କୁ ଖୋଜା ପଡ଼ିଲା । ପଞ୍ଚପଡ଼ାର ପଦ୍ମଲୋଚନ ଓରଫ ପଦନ ପରିଡ଼ା ବିବାହର ଯୋଗସୂତ୍ର ବାନ୍ଧିଥିଲେ । ଅନୁସନ୍ଧାନରୁ ଜଣାଗଲା, ସେ ବର ଘରର ଆଜିଆ ଲେଖାରେ ବାଳିଆ ବନ୍ଧୁ । ସେ ଏ ନାଟର ଗୋବର୍ଦ୍ଧନ । ତାଙ୍କର ଫିସାଦିଆ କାମ ଆଖପାଖ ଅଞ୍ଚଳରେ ଭଲଭବେ ପ୍ରଗ୍ୱରିତ । ଲୋକଙ୍କୁ ଗଛକୁ ଚଢ଼େଇ ଦେଇ ଗୋଛି କାଟିଦିଅନ୍ତି, ମୂଳ ଉପାଡ଼ି ଦିଅନ୍ତି । କଚେରୀ କୀଟ, ସାମାନ୍ୟ କଥାରେ ଲୋକଙ୍କୁ ହାଇକୋର୍ଟ ପଠାନ୍ତି । ତେବେ ଏପରି ସ୍ଥଳେ ସେ ଗଲେ କୁଆଡ଼େ ?

ପଦ୍ମଲୋଚନଙ୍କ ପତ୍ରଟିଏ ଅଣ୍ଟାରୁ ବାହାର କରି ବରବାପା ପ୍ରଶ୍ନକାରୀଙ୍କୁ ଦେଖାଇଲେ । ପଦ୍ମଲୋଚନଙ୍କର ଜଣେ କିଏ ଆତ୍ମୀୟ ସାଂଘାତିକ ବେମାରରେ ଆକ୍ରାନ୍ତ ହୋଇ କଟକ ବଡ଼ ଡାକ୍ତରଖାନାରେ ଚିକିତ୍ସାଧୀନ । ବଞ୍ଚିବାର ସମ୍ଭାବନା ନାହିଁ । ସେ ନଗଲେ ନଚଳେ । ହୁଏତ କଟକ ଯାଇ ବଡ଼ ଡାକ୍ତରଖାନାରେ କିଛି ବନ୍ଦୋବସ୍ତ କରି ପାରିଲେ ମୃତ୍ୟୁମୁଖୀ ରୋଗୀଟିଏ ବଞ୍ଚିଯାଇପାରେ । ଏହିପରି ପଦ୍ମଲୋଚନଙ୍କ ଅନୁପସ୍ଥିତିର କାରଣ ଚିଠିରେ ଦର୍ଶାଯାଇଛି ଏବଂ ଏଥି ସଙ୍ଗେ କଟକରୁ ଟେଲିଗ୍ରାମଟିଏ ମଧ୍ୟ ସଂଯୁକ୍ତ କରାଯାଇଛି, ଯେପରିକି ବରପକ୍ଷ ଏବଂ କନ୍ୟାପକ୍ଷ ତାଙ୍କର ଆଚରଣକୁ ଅବିଶ୍ୱାସ ନ କରନ୍ତି......

ମଧ୍ୟସ୍ଥି ଉପରେ ବୋମା ବର୍ଷିଲା ସମସ୍ତଙ୍କ ମୁହଁରୁ । ତା’ର ସାତପୁରୁଷ ଉଦ୍ଧାର କରାଗଲା । ସମବେତ ଅସନ୍ତୋଷର ସ୍ରୋତ ଛୁଟିଲା ଜଗୁ ଆଡ଼କୁ । ମୂର୍ଖ ଲୋକ । ବୁଝାନାହିଁ, ସୁଝାନାହିଁ । ମୁରବି ଲୋକଙ୍କ



Digitized by PPRACHIN, SOA

ପରାମର୍ଶ ନାହିଁ, ଗ୍ରାମମୁଖ୍ୟ ସୁରସାଉକାରଙ୍କୁ ଖାତିର ନାହିଁ । ଶିକ୍ଷିତ-ମାନଙ୍କୁ ପଚରା ନାହିଁ, ଫିସାଦିଆ ପଦନ କଥାରେ କୁହୁଡ଼ି ପହଁରୁ ଥିଲା । ନିଜ ମୂର୍ଖାମି ପାଇଁ ସମ୍ଭାଳୁ ଏଥର......

ଚଟ୍‌କିନି ଖବରଟା ଖେଳିଗଲା ପବନ ଭଳି । ଡାକ୍ତର ନୁହେଁ, ଗୋଟେ ମେଲେଛକୁ ଧରି ଆଣିଛନ୍ତି ଜଗୁ ଝିଅ ପାଇଁ । ବାପ ଆଖି କ'ଣ ପଡ଼ିଲେ ଫୁଟି ଯାଇଥିଲା ?

ପରବର୍ତ୍ତୀ ଘଟଣାସ୍ରୋତକୁ ମାଇପେ ମର୍ଦ୍ଦ ଉତ୍‌କଣ୍ଠାର ସହିତ ଗ୍ରହି ରହିଲେ ।

ଅନ୍ଧାର ଘନେଇ ଆସୁଥିଲା । ସମସରପୁର ଗାଁ ମୁଣ୍ଡ ଆମତୋଟା ସୁଲ ହଟା ଭିତରେ ରୋଷନୀ ସାମଗ୍ରୀ ସଜଡ଼ା ଗ୍ଲଳିଥିଲା । ବାହାରୁ ଆମଦାନୀ ଡେଲାଇଟଗୁଡ଼ିକ ତେଜରଶ୍ମି ବିକିରଣ କରୁଥାନ୍ତି । ଗାଁର କେଉଟା ଲଙ୍ଗଳା ପିଲା ନ ଦେଖିଲା ଚିଜଗୁଡ଼ିକୁ ଆଖିପୁରାଇ ଦେଖୁଥାନ୍ତି ଆଶ୍ଚର୍ଯ୍ୟର ସହିତ । ସେମାନଙ୍କ ପାଇଁ ସତେ ଯେମିତି ଏସବୁ ଦୁନିଆଁ-ବାହାର ଦୁର୍ଲଭ ବସ୍ତୁ ।

ଯୁବକମାନେ କୌତୁହଳ ଏବଂ ଉତ୍ତେଜନାରେ ଉତ୍ୟକ୍ତ ହୋଇ-ପଡ଼ିଲେ । ଗୋଠ ମାତିଲେ ହଡ଼ା ମାତିଲା ଭଳି ଗାଁ ଲେକେ ପିଲଠୁଁ ବୁଢ଼ା ପର୍ଯ୍ୟନ୍ତ ମାତି ଉଠିଲେ । ପ୍ରଥମେ ଆରମ୍ଭ ହେଲା ଧମକ୍‌ଧକ୍‌କା, ପରେ ଗୋଇଠା ବିଧା ଏବଂ ତା ପରେ 'ଠେଙ୍ଗାବାଡ଼ିରେ ପ୍ରହାର ବର-ଯାତ୍ରୀଙ୍କ ଉପରେ । ସେମାନେ ଖଣ୍ଡିଆ, ଖାବଡ଼ା ହୋଇ ପଡ଼ିଉଠି କିଏ କୁଆଡ଼େ ଧାଇଁଲେ ତାର ପତ୍ତା ମିଳିଲା ନାହିଁ । ପଳାୟନକାରୀମାନେ ଛତ୍ରଭଙ୍ଗ ହେଲାବେଳେ ବାଟ ଅବାଟ, ଖାଲ ଖୋଲ, ବାଡ଼ବିଲ କିଛି ମାନି ନଥିଲେ । ମାଡ଼କୁ କିଏ ନ ଡରେ ? ମଣିଷର ସବୁଠୁଁ ବଡ଼ ଶ୍ରଦ୍ଧା ନିଜ ଜୀବନ ପ୍ରତି ।



Digitized by PPRACHIN, SOA

ବିଚରା ବର । ମୁଖ୍ୟ ନାୟକର ପୋଷାକ ପିନ୍ଧି ବସିଥିଲା । ବଡ଼ ମନକରି ବାହା ହେବାପାଇଁ ଆସିଥିଲା । ଗାଁର ଟୋକାମାନେ ତାକୁ ଅପଦସ୍ତ କଲେ । ଖୁବ୍ ଯତ୍ନରେ ପିନ୍ଧିଥିବା ନୂଆ ପଞ୍ଜାବୀ, ଶାନ୍ତିପୁରୀ ବାହାଯୋଡ ତା ଦେହରୁ ଉତାରି ପକାଇଥିଲେ । କେବଳ ଭିତର ପିନ୍ଧା ଲଜ୍ଜା ନିବାରିଣୀ ଢଘିଆ ବ୍ୟତୀତ ତା ଦେହରେ ଆଉ କିଛି ନ ଥିଲା । ତା ଉପରେ ମଧ୍ୟ ବସିଲା କିଛି ଉତ୍ତମ ମଧ୍ୟମ, ଖାଲି ନାକଦଣ୍ଡି ଯାହା ଫାଟି ନ ଥିଲା । ତା ପୃଥୁଳ ଶରୀରର ଗୁରୁଭାରକୁ ଉଠାଇ, ଥନ୍ତଲ ପେଟକୁ ବୋହି ବୋହି ଅନ୍ଧାର ଭିତରେ ବିଚରା କୁଆଡେ ଲୁଚିଗଲା । ଠିକ୍ ମୁହୂର୍ତ୍ତକ ପୂର୍ବରୁ ତା ବରଯାତ୍ରୀ ଅଭିଭାବକମାନେ ଯେପରି ପ୍ରାଣକୁ ଧରି ଅନ୍ଧାରରେ ଅଦୃଶ୍ୟ ହୋଇ ଯାଇଥିଲେ ।

ଅତିଥି ଅଭ୍ୟାଗତଙ୍କ ସମ୍ବର୍ଦ୍ଧନା ଏଇପରି ପାଟିରେ ନ ହୋଇ ପାଞ୍ଚଣଦ୍ୱାରା ହୋଇଥିଲା । ଟୋକାଙ୍କ ମୁହଁରୁ ସେମାନଙ୍କ ପ୍ରତି ମେଲିଥିଲା ଅଶ୍ରାବ୍ୟ ଖଣ୍ଡପୁରାଣ, ଅଶ୍ଳୀଳ ବଚନ ।

ସୁଇ ହଟା ଭିତରୁ ଇତସ୍ତତଃ ପରିତ୍ୟକ୍ତ ଚପଲଗଡ଼ିକୁ ସାଉଁଟି ଟୋକାଏ ଗଣି ଦେଖିଲେ, ସଂଖ୍ୟା ହେଲା ଏକାନବେ । ଆଉ ପଟେ ଗଲା କୁଆଡ଼େ ? କୀର୍ତ୍ତିର ସଫଳତା ସ୍ୱରୂପ ସେମାନଙ୍କ ମୁହଁରେ ଉଛୁଟି ଉଠୁଥିଲା ହସର ଲହରୀ । ବିଜୟୋଲ୍ଲାସରେ ମନ ମାତି ଉଠୁଥିଲା, ଦେହ ତାତି ଉଠୁଥିଲା । ବରଦଳ ଛାଡ଼ି ଯାଇଥିଲେ ଆଲୁଅ, ରୋଷନୀ, ବାଣ ଇତ୍ୟାଦି । ସେ ସବୁକୁ ଯୁବକ ସଙ୍ଘଦ୍ୱାରା ବାଜ୍ୟାପ୍ତି ଘୋଷଣା କରାଗଲା । ତତ୍କ୍ଷଣାତ୍ ସେଗୁଡ଼ିକ ହୋଇଗଲା ସଙ୍ଘର ସମ୍ପତ୍ତି । ଦୋଷୀକୁ ଉପଯୁକ୍ତ ଶାସ୍ତି ଦିଆଯାଇ ଥିବାରୁ ଯୁବକଗୋଷ୍ଠୀ ହୋଇଥିଲେ ଉତ୍ଫୁଲ୍ଲିତ ।

କିନ୍ତୁ ନିରୀହ ଢଗୁ କଥା ଚିନ୍ତା କରୁଛି କିଏ ? ସେ ମୁଣ୍ଡରେ ହାତ ଦେଇ ବସିଗଲା । ମାତ୍ର କେଇଟା ମୁହୂର୍ତ୍ତ ଭିତରେ ସବୁ ଓଲଟ ପାଲଟ ହୋଇଗଲା । ହାୟ ତା'ର ଭାଗ୍ୟ ! ଭଲ କରିବ ବୋଲି ଆଶା



Digitized by PPRACHIN, SOA

ବାନ୍ଧିଥିଲା, ସବୁ ଭେଲ ହୋଇଗଲା । ଆଶାର ସ୍ୱେଧ୍ରି ଭୁଷୁଡ଼ି ମାଟିରେ ମିଶିଗଲା । ଏ ଦାରୁଣ ବିପତ୍ତି ତାର ଭାଗ୍ୟରେ କ'ଣ ଲେଖା ଥିଲା ? ତା'ର ସରଳତା, ତା'ର ନିଷ୍କପଟତା ଶେଷରେ କ'ଣ ସର୍ବନାଶର କାରଣ ହେଲା ?

ସେ ସର୍ବସ୍ୱାନ୍ତ ହୋଇ ସାରିଛି । ମୁଣ୍ଡ ଗୁଞ୍ଜିବାକୁ ଏଡ଼େ ବଡ଼ ଦୁନିଆଁରେ ତା ପାଇଁ କେଉଁଠି ଆଉ ଜାଗା ନାହିଁ । ପେଟ ପୋଷିବାକୁ ପନ୍ଥା ନାହିଁ । ଝିଅର ଭବିଷ୍ୟତ କ'ଣ ହେବ ? ମଙ୍ଗୁଳା କନ୍ୟା । ସେ ଆଉ ଏ ଘରେ ରହିପାରିବ ନାହିଁ । ତୁରନ୍ତ ବିବାହ ଆବଶ୍ୟକ । ସମସରପୁର ଗାଁର କ୍ଷୁଦ୍ର ଜୀବଟିଏ ଜଗୁ ପଧାନ । ବିଶେଷ ଭୂସମ୍ପତ୍ତି ନଥିଲା ତା'ର, ନାମମାତ୍ର ଗୁଣ୍ଠୀଟିଏ । କ୍ଷୁଦ୍ର ପରିବାରଟିର ଭରଣପୋଷଣ ତା'ର ସେଇ ଅଳ୍ପ ଜମି ଉପରେ ନିର୍ଭର କରୁଥିଲା । ଜମି ଗଲା, ବାଡ଼ି ଗଲା, ବଗିଚା ଗଲା, କିନ୍ତୁ ଆଶା ପୂରଣ ନୋହିଲା । ଅପମାନକୁ ମୁଣ୍ଡେଇବାର ଶକ୍ତି ତା'ର ନାହିଁ । ଅପବାଦର ବୋଝକୁ ବୋହିବା ପାଇଁ ତାର ଶକ୍ତି ନାହିଁ, ସାହସ ନାହିଁ, ବଳ ନାହିଁ, ହିମ୍ମତ ନାହିଁ । ମୁଣ୍ଡ ତା'ର ଘାଉଁରି ଯାଉଥିଲା । ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ ଏକତ୍ରିତ ହୋଇ ଯେମିତି ଘୂରୁଥିଲେ ତା ଆଖି ଆଗରେ । ତମସାଛନ୍ନ ରଜନୀ ତା'ର କଳାରୂପ ମେଲଇ ବସିଥିଲା । ଜଗୁ ପକ୍ଷେ ଏହାଥିଲା ଯେମିତି ଏକ କାଳଗର୍ଭ ।

ଗୋଟିଏ ଅନୁପ୍ରବେଶକାରୀ କୁକୁରକୁ ଗ୍ରାମଆଡ଼ୁ ଘେରିଯାଇ ସ୍ଥାନୀୟ ବଲୁଆ କୁକୁରମାନେ ଦଳବଦ୍ଧ ଭାବେ ଯେମିତି ଆକ୍ରମଣ କରନ୍ତି, ଏବଂ ଦୁର୍ବଳ କୁକୁରଟି ପ୍ରାଣବିକଳରେ ତାର ଲାଞ୍ଜକୁ ପଛ ଦୁଇଗୋଡ଼ ସନ୍ଧିରେ ଲୁଚାଇ, ବିକୃତ ମୁହଁରେ ହାତେ ଲମ୍ବ ଜିଭକୁ କାଢ଼ି, ଦାନ୍ତ ଖିଙ୍କାରି ଆତ୍ମରକ୍ଷା କରେ, ଗାଁ ଲୋକଙ୍କ ମେଳରେ ଜଗୁର ଥିଲା ସେଇ ଅବସ୍ଥା । ସେମାନଙ୍କ କଟୂକଥାଗୁଡ଼ିକ ତା ଦେହର ମାଂସକୁ ପୂଜାପୂଜା କରି ଓଟାରିଲା ଭଳି ମନେ ହେଉଥିଲା ।

: ଆମକଥା ଗନ୍ଧାଉ ଥିଲା ନା ? ଆମେ କେହି ତମ ଆଖିକୁ ଭଲ ଦିଶୁ ନ ଥିଲୁ । ହଇହୋ, ଗାଁ ଲୋକକୁ ପଚରା ନାହିଁ, ଉଚୁରା ନାହିଁ,



Digitized by PPRACHIN, SOA

ପରାମର୍ଶ ନାହିଁ, ମୂର୍ଖଆମାନେ ଗଲେ ଗାଧେଇ ! ଏଇଲେ କିଏ ପିଠିରେ ପଡ଼ିବ ? ପଛ ଭେଗୁଆ ଏଥର । ସୁବର୍ଣ୍ଣ ପ୍ରତିମା ଝିଅ ସହିତ ବର ବାଛିଛ ଗୋଟେ ମେହେନ୍ତର ସଙ୍ଗେ ? ବାପ ହୋଇ କିପରି ଏମିତି ଅନ୍ଧକାମ କରୁଥିଲ ? ଗାଁ ଝିଅ ପ୍ରତି ଆମର କ'ଣ କର୍ତ୍ତବ୍ୟ ନାହିଁ ?

: ତଥାପି ବେଳ ଅଛି, ଶୀଘ୍ର ଗୋଟାଏ ନିଷ୍ପତ୍ତି କରିନିଅ, ଏ ଗାଁରେ ବର କିଛି ଅଭାବ ନାହାନ୍ତି......

ଜଗୁ କିଛି ସିଦ୍ଧାନ୍ତ କରିବା ଅବସ୍ଥାରେ ନ ଥିଲ । ନିର୍ଜୀବ କାଠ-ଭଳି ମୂକ ପାଷାଣ ହୋଇ ବସିରହିଥିଲ ଗାଁମୁଣ୍ଡ ସ୍କୁଲ ପ୍ରାଙ୍ଗଣରେ, ଯେଉଁଠି ଅଳ୍ପ ସମୟ ପୂର୍ବରୁ ବରଦଳ ଅତି ବିକଳଭାବେ ଛତ୍ରଭଙ୍ଗ ଦେଇଥିଲେ । ଟୋକାମାନେ ତାଠୁଁ ଜବାବଟିଏ ଦାବୀ କରୁଥିଲେ ମଧ୍ୟ ସେ କୌଣସି ନିର୍ଦ୍ଦିଷ୍ଟ ଉତ୍ତର ଦେଇ ନଥିଲ । କିନ୍ତୁ ସେ ମନେ ମନେ ଠିକ୍ କରି ନେଇଥିଲ, ତା ଝିଅ ଅଭିଆଡ଼ୀ ରହୁ ପଛେ, ଗାଁ ଲୋକେ ଏକ-ଘରିଆ କରନ୍ତୁ ପଛେ, ନିଆଁ ପାଣି ବନ୍ଦ କରନ୍ତୁ ପଛେ, ସେ ତା ସୁବର୍ଣ୍ଣ ପ୍ରତିମାକୁ ଗାଁ ଲଫଙ୍ଗାଙ୍କ ହାତରେ କଦାପି ଟେକିଦେଇ ପାରିବ ନାହିଁ । ଏହାଥିଲ ତା ମନର ଦୃଢ଼ତା । ପରମ୍ପରା ଚୂଲିକୁ ଯାଉ......

ଶ୍ରାବଣୀର ଅବସ୍ଥା ମଧ୍ୟ ତଥୈବଚ । ଅନୁଭବୀ ନହେଲେ ତାର କରୁଣ ଅବସ୍ଥା ଠିକ୍ ରୂପେ ଅନୁଭବ କରିବା ଅସମ୍ଭବ ।

ସୃଷ୍ଟିରେ ସଜୀବ ଜଗତର ଦୁଇଟି ଅଙ୍ଗ–ନର ଏବଂ ନାରୀ । ଏହି ଦୁଇଟି ଅଙ୍ଗର ସହତି, ସମନ୍ୱୟ ଏବଂ ସମ୍ମିଶ୍ରଣରେ ସୃଷ୍ଟି ତିଷ୍ଠି ରହେ, ସମାଜ ବଞ୍ଚି ରହେ, ସକ୍ରିୟ ହୁଏ ଜୀବନ ପ୍ରକ୍ରିୟା । ମଣିଷ ସମାଜରେ, ବିଶେଷ କରି ଆମଦେଶରେ, ଏହି ଦୁଇଟି ଅଙ୍ଗ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । ବୈବାହିକ କ୍ଷେତ୍ରରେ ଏ ଦୁହିଁଙ୍କ ବ୍ୟବଧାନ ଏତେ ବେଶୀ ଯେ, ତାହା ପୃଥିବୀର ଅନ୍ୟତ୍ର କେଉଁଠି ଦେଖିବାକୁ ମିଳେ ନାହିଁ । ଏଠି ଯଦି ପୁରୁଷ ଜାତିଟି ହୁଏ ସର୍ବଗ୍ରାସୀ ଭୀମ, ସ୍ତ୍ରୀ ହୁଏ ସର୍ବଂସହା ଧରଣୀ ।



Digitized by PPRACHIN, SOA

ଗୋଟିଏ ଅତ୍ୟାଗ୍ରରୀ, ଅନ୍ୟଟି ଅତ୍ୟାଗ୍ରରିତ । ଗୋଟିଏ ଶାସକ, ଅନ୍ୟଟି ଶାସିତ । ଗୋଟିଏ ଶୋଷକ, ଅନ୍ୟଟି ଶୋଷିତ । ଝିଅ ରୂପ ଧରି ଜନ୍ମ ହୋଇଛି ବୋଲି ପୁରୁଷ ପାଇଁ ସେ ଏକ ଖେଳନା, ନିର୍ଜୀବ ବସ୍ତୁ । ତା'ର ସ୍ଥିତି ନାହିଁ, ଅସ୍ତିତ୍ୱ ନାହିଁ. ଚେତନା ନାହିଁ, ଅଛି କେବଳ ତା ପାଇଁ କୁସଂସ୍କାରର ଅନ୍ଧ ପୁଟୁଳି । ଝିଅ ହିସାବରେ ଶ୍ରାବଣୀର ପ୍ରାଣ ଆର୍ତ୍ତନାଦ କରୁଥିଲା । ତା'ର ଝିଅ ଜୀବନ ଯେମିତି ଜୀବନ ନୁହେଁ, ଏକ ଜ୍ୱଳନ, ଜୀବନ୍ତ ମରଣ । ବେଦୀ ଉପରୁ ବର ବାହୁଡ଼ି ଯାଇଛି । ଗାଁରେ ଗଣ୍ଡଗୋଳ ଲାଗିଛି । ଅଳ୍ପ ସମୟ ପୂର୍ବରୁ ସାଇମାଇପେଙ୍କ ହୁଳହୁଳି ନାଦରେ କ୍ଷୁଦ୍ର ଘରଟି କମ୍ପି ଉଠୁଥିଲା । ବିବାହସ୍ଥଳୀ ଉତ୍ସବମୁଖର ହୋଇ ଉଠିଥିଲା । ଦେହରେ ହଳଦୀ, ହାତରେ ମଞ୍ଜୁଆତି, ଗୋଡ଼ରେ ଅଳତା ଆଦି ବିବାହ ଉପଗ୍ରରରେ ତାର ଅଭିଆଡ଼ୀ ଜୀବନର ପରିସମାପ୍ତି ଘୋଷିତ ହୋଇଥିଲା । କିନ୍ତୁ ମୁହୂର୍ତ୍ତକ ମଧ୍ୟରେ ଏସବୁ ଏମିତି କ'ଣ ଘଟିଗଲା ? କି ଦୋଷ କରିଥିଲା ସେ ? କାହିଁକି ତା'ର ନିଷ୍ପାପ କଅଁଳ ଜୀବନରେ ଏମିତି କାଳିମାମୟ ଅଘଟଣ ଘଟିଲା ? ସତେ କ'ଣ ତାର ଏ ଘରେ ଆଉ ସ୍ଥାନ ନାହିଁ ? ଏପରି ଦୁଃସମୟରେ କୋଉଁଠୁ ତା'ର ଗରିବ ବାପା ବରଟାଏ ଖର୍ଦ୍ଦି କରି ମଙ୍ଗୁଳା କନ୍ୟାକୁ ଘରେ ରଖିବା ଦୋଷରୁ ମୁକ୍ତି ପାଇବ ? ସରଳତାର ସୁଯୋଗ ନେଇ ମନୁଷ୍ୟ ଏମିତି ପୁଣି ହୀନକାର୍ଯ୍ୟ କରିପାରେ ? ମଣିଷଗଢ଼ା ଚକ୍ରାନ୍ତର ଅନ୍ତ ନାହିଁ ଏ ସମାଜରେ ! କାହିଁପାଇଁ ମଣିଷ ଏମିତି କୂଟ କପଟ କରେ ? ସାମାନ୍ୟ ଅର୍ଥଲାଭ ? ସ୍ୱାର୍ଥସେବା ? ଶ୍ରାବଣୀ ଆଖିରୁ ଶ୍ରାବଣର ବାରିଧାର ଭଳି ଲୁହଧାର ଝରି ଯାଉଥିଲା । ଛାତି ଭିତରୁ ତତଲା ପବନ ଗ୍ଧ' କେଟ୍‌ଲିରୁ ଗରମ ବାମ୍ପ ଭଳି ବାହାରକୁ ଉଠି ଆସୁଥିଲା । ଅନୁଭବ କରୁଥିଲା ତୀବ୍ର ଯନ୍ତ୍ରଣା । କନ୍ୟା ନର୍କରୁ ନିଷ୍କୃତିର ଉପାୟ କ'ଣ ?

ପ୍ରାଣକୁ ପଥର କରି, ସମୟର ଧକ୍‌କାକୁ ସହିନେବା ବୋଧହୁଏ ଏକମାତ୍ର ଉପାୟ । ତା' ଛଡ଼ା ଆଉ କିଛି ପନ୍ଥା ନଥିଲା ଶ୍ରାବଣୀର । ତାର ସହିବା ଗୁଣଟିକୁ ମନେ ମନେ ଧୈର୍ଯ୍ୟ ସହ ଆହୁରି ମଜଭୁତ କରୁଥିଲା ସେ ।



Digitized by PPRACHIN, SOA

ଗାଁ ମାଇପିମାନେ ମୁହଁମୋଡ଼ି ସେମାନଙ୍କ ଘରକୁ ଚାଲି ଗଲେଣି । ପରବର୍ତ୍ତୀ ଘଟଣା ଦେଖିବାକୁ ସେମାନଙ୍କ ମନରେ ଉତ୍କଣ୍ଠା । ଜଗୁ ଘରେ କେବଳ କେତୋଟି ଆତ୍ମୀୟ ଲୋକ – ମାଉସୀ, ମାଉସୀ । ସେମାନେ ସମସ୍ତେ ମୂକ ହୋଇ ବସିଥିଲେ । କୋଳାହଳପୂର୍ଣ୍ଣ ଘରେ ହଠାତ୍ ନିର୍ଜନତା ଅନୁଭୂତ ହେଲା । ଘଡିର ନିର୍ଜନତା ଘଉଡ଼ାଇବା ପାଇଁ ବଗିଚ୍ଚ ଭିତରୁ କେଇଟା ଝିଙ୍କାରୀ ସ୍ୱର ମେଲିଥିଲେ । ମାଟିକାନ୍ଥର ଫାଟ ଭିତରୁ ମୁଣ୍ଡକାଢ଼ି ଝିଟିପିଟି କେତୋଟି ମଣିଷର ଆଶା ଆଶଙ୍କାକୁ ହୃଦୟଙ୍ଗମ କରି ମଝିରେ ମଝିରେ ସମର୍ଥନ ସ୍ୱର ସୃଷ୍ଟି କରୁଥିଲେ – ସତ୍ ସତ୍ । ଲୋତକର ଲହରୀ ଭିତରେ ଶ୍ରାବଣୀ ଧୀରେ ଧୀରେ ଦେହରୁ ସ୍ୱର୍ଣ୍ଣାଳଙ୍କାର, ରୂପାମାଳ, ମୁଣ୍ଡରୁ ସିନ୍ଥି ଆଦି ଉତାରିଲା । ଦେହ ଦିଶିଲା ନିରାଭରଣ । କନ୍ଥା ଭିତରେ ମୁହଁ ଲୁଚାଇ ଗୋପନରେ ଲୁହ ଢାଳିଲା ।

ଯୁବକମାନଙ୍କ ଆଶା ତଥାପି ମଉଳି ନଥିଲା । ଆଶା ପୂରଣ ଅବା ବିଲୁପ୍ତ ନହେବା ପର୍ଯ୍ୟନ୍ତ ମଣିଷ ତା'ରି ପିଛା ଧାଇଁଥାଏ ଅହରହ । ସେମାନେ ଛଳ, ବଳ, କୌଶଳ ପ୍ରୟୋଗ କରିଥିଲେ ; କିନ୍ତୁ ସଫଳ ହୋଇ ନଥିଲେ । ସେମାନଙ୍କର କୌଣସି ପ୍ରଲୋଭନ ବା ଚାପରେ ଜଗୁ ତରଳି ନ ଥିଲା, ଢଳି ନ ଥିଲା, ବରଂ ଦୃଢ଼ତାକୁ ବଜାୟ ରଖିଥିଲା ।

ପରିଶେଷରେ ଜଗୁକୁ ସନ୍ତୁଷ୍ଟ କରିବାକୁ ଯାଇ ଅନ୍ୟାୟର ବିଚାର ପାଇଁ ଗାଁ ପଞ୍ଚାୟତରେ କଥା ଉଠାଇଲେ ଯୁବକମାନେ । ତହିଁ ପରଦିନ ପଞ୍ଚାୟତର ଜରୁରୀ ଡାକରା ପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲେ । ଗାଁ ମୁଖିଆ ସ୍ୱର ପଧାନ ଯୁବ–ଦାବୀକୁ ସମର୍ଥନ କରିଥିଲେ ।

ପଞ୍ଚପଡ଼ାର ପବନ ଫେରାର ଅଛି । ସେ ଏପର୍ଯ୍ୟନ୍ତ ଫେରିନାହିଁ । ସେ ଅନ୍ୟପଡ଼ାର ଲୋକ । ଏଠି ଏକତରଫା ବିଚାର ହେବ କିପରି ? ସଭା ମୁଲତବୀ ରହିଲା ଆସାମୀ ଆସିବା ପର୍ଯ୍ୟନ୍ତ । ଧପ୍‌ପାବାଜୀର ଦଣ୍ଡବିଧାନ ପାଇଁ ଯୁବକଙ୍କ ମୁହଁରୁ କେବଳ ଗୁଡ଼ାଏ ବିକ୍ଷୋଭ୍‌ଗାର



Digitized by PPRACHIN, SOA

ହୋଇଥିଲ । ସେଥିରେ ଥିଲ ଜଗୁକୁ ଆକୃଷ୍ଟ କରିବାର ଅନ୍ତର୍ନିହିତ ହୀନଉଦ୍ଦେଶ୍ୟ, ତାକୁ ମଙ୍ଗେଇବାର ସମବେତ ଉଦ୍ୟମ ।

ପଦନ ପଞ୍ଚପଡ଼ାକୁ ଫେରିଲ ତିନିଦିନ ପରେ । ସେତେବେଳକୁ ଉତ୍ତେଜନା ଅନେକ ହ୍ରାସ ପାଇଲଣି । ସମୟ ଅତିକ୍ରାନ୍ତ ହେଲେ ଉତ୍କଣ୍ଠା, ଆଗ୍ରହ, ଉତ୍ତେଜନା ଏମିତି ଶିଥିଳ ହୋଇଆସେ । ଅବଶ୍ୟ ଗାଁରେ ସଭ ବସିଲ । ପଦନ ସେଠିକି ଆସିବାକୁ କୁଣ୍ଠା କରି ନଥିଲ । ମହା ଫାନ୍ଦ ଫିକରବାଲା ପଦନ ପରିଡ଼ା । ତା' ବାକ୍ଚତୁରୀ, ଅଖଣ୍ଡ ଯୁକ୍ତି ପାଣିରେ ସରପକା କଥାକୁ ଟପିଲା ଲୋକ ଏ ଅଞ୍ଚଳରେ କେହି ନଥିଲେ । ସେ ଯୁକ୍ତି କଲା – ଜଗୁଭଇ ତା ଆଡ଼ୁ ମୋ ସଙ୍ଗେ ବାରମ୍ବାର ଲଗେଇ ସ୍ୱଇଚ୍ଛାରେ ସମ୍ପତ୍ତି ହସ୍ତାନ୍ତର କରିଛି । ବର ଜଣକ ଡାକ୍ତର ବୋଲି ମୁଁ ଆଦୌ କହିନାହିଁ, ବରଂ ଡାକ୍ତରଖାନାରେ କାମକରେ ବୋଲି ସ୍ପଷ୍ଟ ଭବେ କହିଥିଲି । ଡାକ୍ତରଖାନାରେ କାମକଲେ କ'ଣ ଡାକ୍ତର ହୋଇଯାନ୍ତି ? ମୂର୍ଖ ଜଗୁ ଯଦି ନ ବୁଝି ପାରିଲା ମଧ୍ୟସ୍ଥିର ଭୁଲ ରହିଲା କେଉଁଠି ? ମଧ୍ୟସ୍ଥି କାମକରି ମୁଁ ଗୋଟାଏ ପ୍ରକାଣ୍ଡ ଭୁଲ କରିଛି । ସେଥିପାଇଁ ପଗ କଥାରେ ଅଛି ଅମିନି ଜାମିନି ମଧ୍ୟସ୍ଥି; ଯାକୁ ମନାକରିଛନ୍ତି ଅଗସ୍ତି ।

ଜଗୁର ପାଟି ଖନି ବାକି ଥିଲା । ପଦନ ତାହା ମିଛୁଆ, ସେ ମିଥ୍ୟାବାଦୀ, ମହାପାପୀ ।

କିନ୍ତୁ ସେ ମିଛ କହିଛି ବୋଲି ପ୍ରମାଣ କ'ଣ ? ଜଗୁ ହଲପ କରି ସତ କହୁଛି ବୋଲି ଚିତ୍କାର କରୁଥିଲେ ମଧ୍ୟ ସଭଜନେ ପ୍ରମାଣ ଅଭବରୁ କିଏ ସତୁଆ, କିଏ ମିଛୁଆ, ଏତେ ବଡ଼ ପ୍ରଶ୍ନ ବିଗ୍ଧର କରିବାକୁ ସମର୍ଥ ହୋଇ ନଥିଲେ । ଗ୍ଧେରର ମୁହଁ ଟାଣ, ଦାରୀ ସତୀ ବୋଲି ଢେଙ୍ଗୁରା ପିଟେ, ମୂର୍ଖମାନଙ୍କ ସଭରେ ପଣ୍ଡିତ ଗଜମୂର୍ଖ ବୋଲି ପ୍ରମାଣିତ ହୁଏ, ଏତ ଯୁଗ ଯୁଗର ସତ୍ୟ । ଯାହା ଆଖିକୁ ଦିଶେ, କାନକୁ ଶୁଭେ, ତାହା ପ୍ରକୃତ ସତ୍ୟ ନୁହେଁ, ରହସ୍ୟ ଲୁଚିଥାଏ ମନ ଭିତରେ, ହୃଦୟର



Digitized by PPRACHIN, SOA

ନିଭୃତ କନ୍ଦରରେ । ମଣିଷ କେବଳ ଖୋଳି ତାଡ଼ି କିୟଦଂଶ ଉଦ୍ଧାର କରେ, ସମ୍ପୂର୍ଣ୍ଣ ସତ୍ୟ ରହିଯାଏ ଅବ୍ୟକ୍ତତାର ଅତଳସ୍ପର୍ଶୀ ଗହ୍ୱର ଭିତରେ । ଫଳ ହେଲା, ଜଗୁର ମୂର୍ଖାମି ପାଇଁ । ତା'ର ଅପରିଣାମଦର୍ଶିତା ପାଇଁ ସେ ମୁଖିଆଙ୍କ ଦ୍ୱାରା ଭର୍ତ୍ସିତ ହୋଇଥିଲା । ସେ କୁଆଡ଼େ ଭଲଭାବେ ଜାଣିଶୁଣି ମଧ୍ୟ ବାହାଦୁରୀ ନେବାପାଇଁ ବରକୁ ଡାକ୍ତର ଜୋଇଁ ବୋଲି ପ୍ରଚାର କରିଥିଲା । କହୁଥିଲ, ସମସରପୁର ଗାଁରେ ଡାକ୍ତର ଜୋଇଁ କାହାର ଅଛି ? ଯେପରି କର୍ମକୁ ସେପରି ଫଳ ପାଇଛି । ପଦନର କିଛି ଦୋଷ ନାହିଁ । ପଞ୍ଚାୟତର କିଛି କରିବାର ନାହିଁ ।

କିଛିଦିନ ଅନ୍ତେ ଜଣାଗଲା – ଯେଉଁ ସମ୍ପତ୍ତିକୁ ଜଗୁ ଦାନପତ୍ର କରି-ଥିଲା ତାହା ପୁନଃ ବିକ୍ରୟ ହୋଇଛି । ଗାଁ ମୁଖିଆ ସୁର ପଧାନେ ଖରିଦ କରିଛନ୍ତି । ପଦନ ତାଙ୍କୁ ସହଯୋଗ କରିଥିଲା । ଦୟାର ଦେବତା ଭଳି ସୁର ପଧାନେ ଜଗୁକୁ ଡକାଇ କଥା ଦେଇଥିଲେ : ଜଗନ୍ନାଥ, ତୁମେ ବ୍ୟସ୍ତ ହୁଅନି, ତମ ସମ୍ପତ୍ତି ତୁମେ ଭୋଗ କରିବ, ଗାଁ ସମ୍ପତ୍ତି ଗାଁରେ ରହିଲା । ଶ୍ରାବଣୀ ପାଇଁ କ'ଣ ଆଉ ବ୍ୟବସ୍ଥା କରୁଛ ? ଭଗବାନ ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ । ଶ୍ରାବଣୀ ପରି ଝିଅକୁ କ'ଣ ବର ଅଭାବ ଅଛନ୍ତି ? ତେବେ ଶୀଘ୍ର ବ୍ୟବସ୍ଥା କଲେ ଭଲ । ବଢ଼ିଲା ଝିଅକୁ ଘରେ ରଖିଲେ ଅଡ଼ୁଆ ।

ଜୀବନର ଏତେବଡ଼ ଆଘାତକୁ ସମ୍ଭାଳିବାର ଶକ୍ତି ଜଗୁର ନଥିଲା । ଗରିବ ବାପର ବଳ ଆସିବ କୁଆଡ଼ୁ ? ତା'ର ଅଣ୍ଟା ଭାଙ୍ଗି ପଡ଼ିଥିଲା, ମୁଣ୍ଡ ନଇଁ ପଡ଼ିଥିଲା । ଭାଗ୍ୟଟା ଏଡ଼େ ମନ୍ଦ ଯେ ଶେଷକୁ ସବୁଦିନ ପାଇଁ ମହାନିଦ୍ରାରେ ଆଖି ବୁଜିଦେଲା । ସଂସାର ଯାକର ଯେତେ ଦୁଃଖ ଏକତ୍ରିତ ହୋଇ ଲଦିହୋଇ ପଡ଼ିଥିଲା ଶ୍ରାବଣୀ ଉପରେ । ଆକାଶ ଫଟାଇ ଶ୍ରାବଣର ବାରିଧାରା ଝରୁଥିଲା ତା' ଆଖିର ଆକାଶରୁ...... ସେଥିରୁ ସୃଷ୍ଟି ହେଉଥିଲା ଦୁଇ କୂଳ ଗ୍ରାସୀ ନଦୀର ପ୍ରବଳ ବନ୍ୟାସ୍ରୋତ । ଶ୍ରାବଣୀ ଯେମିତି ଭାସି ଯାଉଥିଲା ସେଥିରେ । କୂଳ କିନାରା କିଛି ଦିଶୁ ନଥିଲା, ଦିଶୁଥିଲା କେବଳ ଉତ୍ତାଳ ଜଳରାଶି, ଭୟଙ୍କର ଭଉଁରୀ, ଆଉ ତା'ର ଘୁଷୁରି ଗର୍ଜ୍ଜନ......



Digitized by PPRACHIN, SOA

ପିତୃହରା, ନିଃସହାୟ ଶ୍ରାବଣୀର ଆଉ କେହି ସାହା ଭରସା ନ ଥିଲେ ଏ ଗାଁରେ । ଜଗୁର ମରଣ ବେଳରେ ଶ୍ରାବଣୀର ମାମୁଁ ଉପସ୍ଥିତ ଥିଲା । ସେ ମଧ୍ୟ ବିବାହ ବେଳର ବିଷମ ପରିସ୍ଥିତି ସ୍ୱଚକ୍ଷୁରେ ଦେଖିଥିଲା । ଭଣେଜିର ଦୁଃଖ ସହି ପାରିନଥିଲା । ରକ୍ତ ସମ୍ପର୍କ । ଜାଣି ଜାଣି ନିରୀହ ନିରିମାଖି ଝିଅଟିକୁ ସ୍ୱଥ ମୁହଁକୁ ଠେଲି ଦେବ କେମିତି ? ଏ ଗାଁ ଟୋକାଙ୍କୁ, ଏଠିକାର ଲୋକଙ୍କୁ ତା'ର ବିଶ୍ୱାସ ନଥିଲା । ଲୋକେ ଯାହା କହନ୍ତୁ ପଛେ ମଙ୍ଗୁଳା କନ୍ୟାକୁ ସମସରପୁର ଗାଁରେ ଆଉ ବେଶୀଦିନ ନରଖି ନିଜ ଗାଁ କନ୍ଦରପୁରକୁ ନେଇ ଆସିଲା । ସାରିଆ ଘର ଡିହ ମାଟିକୁ କାମୁଡ଼ି ରହିଲା । ପରଲୋକାଗତ ସ୍ୱାମୀର ଚିହ୍ନ ସ୍ୱରୂପ ଗାଁର ସେଇ ମାଟି ଘର ଟିକକ । ଘର ଡିହର ଦାନପତ୍ରକୁ ସେ ଅସ୍ୱୀକାର କରିବ । ଗାଁ ମହାଜନ ସୁର ପଧାନଙ୍କୁ ମିନତି କରିବ ତା ଗେରସ୍ତ ଜାଗାକୁ ଫେରସ୍ତ କରିଦେବା ପାଇଁ । ସେ କଥା ଦେଇଥିଲେ ସମ୍ପତ୍ତି ଭୋଗ କରିବା ପାଇଁ ଦୁହିଁଙ୍କୁ ଯାକ । ସ୍ୱାମୀତ ଆଉ ବଞ୍ଚିଲେ ନାହିଁ । ଏବେ ଗାଁ ମାଟି ଛାଡ଼ି ସ୍ୱର୍ଗରେ ରହିଲେ । ଏ ଡ଼ିହରେ ବିଲୁଆ ଡେଇଁବ । ସେ କଥା ସେ କଦାପି କରିବାକୁ ଦେବନି । ପୂର୍ବପୁରୁଷ ଯେମିତି ପାଣି ପାଉଥିବେ......

ବାଡ଼ୁଅ ପାଣି ଗାଧୁଆ ମଙ୍ଗୁଳା କନ୍ୟା ଏମିତି ଅବିବାହିତ ରହିବ କେତେଦିନ ? ମାମୁଁ ଘର ଗାଁ । ଜାତିଭାଇ, ଜ୍ଞାତି କୁଟୁମ୍ବ, ସାଇ ପଡ଼ିଶାରେ ମାମୁଁଙ୍କ ତରଫରୁ କୈଫିୟତ ଦେବାକୁ କ'ଣ ବା ଅଛି ? କୁସଂସ୍କାର ବିଜଡ଼ିତ ଅନ୍ଧ ସମାଜ ପରିସ୍ଥିତିକୁ ବିଚାର କରେ ନାହିଁ । ମଣିଷର ଦୁଃଖ ଦୁର୍ଦ୍ଦଶା, ହାନି ଲାଭ ସହିତ ପରମ୍ପରାର କୌଣସି ସମ୍ପର୍କ ନାହିଁ; ସମ୍ବନ୍ଧ ନାହିଁ । ମଙ୍ଗୁଳା ଝିଅକୁ ଘରେ ରଖିବା ଅସଙ୍ଗତ, ବିଧି-ବିରୁଦ୍ଧ ଏବଂ ଅଶୁଭ ମଧ୍ୟ । ଏମିତି ଝିଅକୁ ତିନିପୁରରେ ସ୍ଥାନ ନାହିଁ । ସେ ବରଂ ଭିକାରୀର ହାତଧରୁ କିମ୍ବା ଛତରରେ ପଶୁ ଅବା ବାରଦ୍ୱାର ହେଉ, ଏମିତି ଅଲକ୍ଷଣୀ ଝିଅକୁ ଘରେ କିନ୍ତୁ ରଖିବାର ନାହିଁ । ମାମୁଁ ଆନନ୍ଦ ନାୟକଙ୍କ ମନରେ ଗୁରୁ ଭାବେଣି । ତା' ମୁହଁରେ କେହି କିଛି ନ କହିଲେ ମଧ୍ୟ ଅନେକ କଥା ପଛରେ ଗମୁରିଲାଣି । ବିଶେଷ କରି



Digitized by PPRACHIN, SOA

କନ୍ଦରପୁରର ଗାଁ ମାଇପିଙ୍କ ତୁଣ୍ଡରେ ନିନ୍ଦା – କେଉଁ ଅଶୁଭ ବେଳରେ ମା' ଏମିତି ଝିଅକୁ ଜନମ କରିଥିଲ କେଜାଣି ? ଗେରସ୍ତକୁ ବେଦି ଉପରୁ ଚଢ଼ିଇ, ବାପକୁ ଖାଇଲା । ଥୋବଗ ମୁହଁରେ ଆନନ୍ଦ ତାକୁ କନ୍ଦରପୁରରେ ଆଣି ସାଇତି ରଖିଛି । ଭଣେଜି ସରଗପଣକୁ ଲଜ ନାହିଁ ? ଏମିତି ଅନେକ ଅପନିନ୍ଦା, ଅପବାଦ ଆନନ୍ଦ ଶୁଣିଲଣି । କିନ୍ତୁ ତା'ର ହଠାତ୍ କିଛି କରିବାର ଉପାୟ ନାହିଁ । କର୍ତ୍ତବ୍ୟର ତାଡ଼ନାରେ ଭଣେଜିକୁ ଆଣି ଆଶ୍ରୟ ଦେଇଛି । ଶ୍ରାବଣୀକୁ କୌଣସି କୂଳରେ ଲଗାଇ ପାରିଲେ ପୁଣ୍ୟ ଅର୍ଜନ କରିବେ ବୋଲି ସ୍ତ୍ରୀ ରଙ୍ଗବତୀକୁ ବୁଝାଏ । ସ୍ୱ-ଜାତି ପରହିଂସ୍ରକ । ନାରୀ ଜାତି ହିଁ ନାରୀର ଅପନିନ୍ଦୁକା । ମାଇପି ମହଲର କୁତ୍ସା, ନାସିକା କୁଞ୍ଚନ, ମୁହିଁ ମୋଡ଼ାକୁ କାନ ନ ପାତି କର୍ମ କଲେ ଈଶ୍ୱର ଆଶୀର୍ବାଦ କରିବେ । ତେବେ ବ୍ୟବସ୍ଥାଟା ଶୀଘ୍ର ହୋଇଗଲେ ମହା-ଦାୟିତ୍ୱରୁ ମୁକ୍ତି ମିଳନ୍ତା । କିନ୍ତୁ ଏଭଳି ପରିସ୍ଥିତିରେ ବରଟିଏ ଏତେ ଚଞ୍ଚଳ ମିଳୁଛି କେଉଁଠୁ ? ଆନନ୍ଦର ମୁଣ୍ଡ ଭାରାକ୍ରାନ୍ତ ହୋଇ ପଡ଼ୁଥିଲା । ଭଣେଜିକୁ ଛାଡ଼ି ପାରୁନି କି ତା' ପାଇଁ ବରଟିଏ ଯୋଗାଡ଼ କରିପାରୁନି । ମହା ଅଡ଼ୁଆରେ ପଡ଼ିଛି । ମାନବିକତା ଦୃଷ୍ଟି କୋଣରୁ ବୋଝ ମୁଣ୍ଡେଇଛି, ହେଲେ ବୋଝଭାର ଲାଘବ ହେବାର ସୂଚନା ଦିଶୁନି । ବରଂ ଓଜନ ବଢ଼ୁଛି–ଲୋକାପବାଦର ଘନତା ବଢ଼ିବା ସଙ୍ଗେ ସଙ୍ଗେ ।

ଦେବବୋଉ କନ୍ଦରପୁର ଯାଇଥିଲା । ବାପଘର ଗାଁ ନାରୀ ମହଲରେ ତାଜା ଖବର ଖେଳୁଥିଲା । ଗାଁରେ ଗୋଡ଼ ଦେବା ମାତ୍ରେ ଶୁଣିଲା–"ଶୁଣିଲଣି ଦୁଲଣା ଅପା, ଆନନ୍ଦ ନାଆକ ମଙ୍ଗୁଳା ଜନିଆଁକୁ ଘରେ ଆଣି ପୂରେଇଛନ୍ତି !"

: "ଏ ମା, କାହିଁକି ? ଦୁଲଣା ମୁହଁରେ ଆଶ୍ଚର୍ଯ୍ୟର ଚିହ୍ନ ।

: ଆନନ୍ଦ ନାଆକର ଭଉଣୀ ମ...ସାରିଆ, ଯିଏ ସମସରପୁରରେ ବାହା ହୋଇଥିଲା, ତା' ଝିଅ-ବେଦୀ ଉପରୁ ବର ବାହୁଡ଼ି ଗଲା । ଗାଁରେ ବଡ଼ ଗଣ୍ଡଗୋଳ, ମାର୍‌ପିଟ୍, କେତେ କଥା ମ......



Digitized by PPRACHIN, SOA

: ବର କାହିଁକି ଲେଉଟି ଗଲ ? ବାହାଘର କାହିଁକି ଭଙ୍ଗିଗଲ ? ଦୁଲଣା ମନରେ ଜିଜ୍ଞାସାର ଅଦମ୍ୟ କୌତୂହଳ, ମନରେ ଦରଦ, ଦୟା, ଆଃ'ର ଚିହ୍ନ ।

: ଝୁଅର ବାପକୁ ଭଣ୍ଡେଇ, ଡାକ୍ତର ବୋଲି କହି, ମେହେନ୍ତର କି ଝାଡ଼ୁଦାରକୁ ବର କରି ଆଣିଥିଲେ । ସେ ପୁଣି କୁଆଡ଼େ ଖନା । ଗାଁ ଟୋକାଏ ମେଳି ହୋଇ କଥା ପଦାରେ ପକାଇଲେ । ସତକଥା ଧର ପଡ଼ିଗଲ, ପରେ ବର ଆଉ ଯାଏ କୁଆଡ଼େ ? ଗୁଲିଲ ଠେଙ୍ଗା ବାଡ଼ି କାରବାର । ହେଲଣି ଦିନା ପନ୍ଦର । ହେଲେ କହତ ଦୁଲଣା ଅପା, ମଙ୍ଗୁଳା କନିଆଁକୁ ଆଉ କ'ଣ ଘରେ ରଖିହୁଏ ? କି ଅଧର୍ମ କଥା !

ଦେବ ବୋଉର ସାରିଆ କଥା ମନେ ପଡ଼ିଲ । ତା ଠୁ ବର୍ଷେ ଅଧେ ସାନ । ଆଉ ମୁଣ୍ଡ ସାଇର ଝିଅ । କୁଆଁରୀ ଜୀବନରେ ସାଙ୍ଗହୋଇ କେତେ ମଜା କରୁଥିଲେ ; ରଜ ପାଳୁଥିଲେ ; ଖୁଦୁରୁକୁଣି ଓଷା, ପୁନେଇ ପରବ ପାଳୁଥିଲେ । କାଞ୍ଜିଅଁଳା, ଶୁଖୁଆ ବୋହୂ, ଦାଣ୍ଡ ପହଁଗ, ମାଣବସା, ବୁଧେଇ ଓଷା, ହରିଜନ୍ମ, ରାଧାଷ୍ଟମୀ ଆଦି ସବୁ ଓଷା, ବ୍ରତ ବାର ଗାଁର ମା' ବୋହୂ, ସାଙ୍ଗ ସାଥୀ ମେଳରେ ନିଷ୍ଠା, ଆନନ୍ଦ ଆଉ ଉନ୍ମାଦନାରେ ପାଳିତ ହେଉଥିଲ । ଅଶିଣ ମାସରେ ଚଉର ମୂଳରେ ଜହ୍ନି ଓଷା ଗୀତ – ଜହ୍ନି ଫୁଲ ଠୋ ଠା, କାକୁଡ଼ି ଫୁଲ ଠୋ ଠା, ଗୁଣ୍ଡୁଚି ମୂଷା କହି ଯାଇଛି, ଗୁଉଳ ମୁଠିଏ ଥୋଇଥା – ଏବେବି ଦୁଲଣା ମନରେ ପ୍ରତିଧ୍ୱନିତ ହୁଏ । ମନେ ପଡ଼େ କୁମାରୀ ବେଳର କଥା । ଏମିତି ପର୍ବ ପର୍ବାଣି ମାନଙ୍କରେ ସାରିଆ ବହୁତ କାମ କରେ । ଝିଅ ହେଲେ କ'ଣ ହେବ, ପୁଅ ପିଲର ବଳ ତା'ଠି । ଭରି ସାହସୀ । ଅନ୍ଧାରରୁ ଉଠି ପୋଖରୀ ମଝିକୁ ପହଁରି ଯାଏ; କଇଁ, ପଦ୍ମଫୁଲ ଛିଣ୍ଡେଇ ଆଣେ । ସାପ ବେଙ୍ଗକୁ ଭୟନାହିଁ, ଗଣ୍ଡପାଣିକୁ ଭ୍ରୂକ୍ଷେପ ନାହିଁ । କୁମାରୀ ଜୀବନ ଅତୀତ ହୋଇ ଯାଇଛି, ହେଲେ ତା'ର ରଙ୍ଗୀନ ସ୍ମୃତି ମନ ଭିତରେ ସାଇତା ହୋଇ ରହିଛି ।



Digitized by PPRACHIN, SOA

ସାରିଆର ଦୁଃଖ ଶୁଣି ଦୂଲଣା ଦୁଃଖିତ ହେଲା, କିନ୍ତୁ ଭଷାରେ ପ୍ରକାଶ କରି ପାରିଲାନି । ମନ ହାଇଁ ପାଇଁ ହେଲା ସାରିଆ ଝିଅକୁ ଥରେ ଦେଖିବା ପାଇଁ । ଏଇ ଗାଁରେ ସାରିଆ ଝିଅକୁ ସାତବର୍ଷ ତଳେ ଦେଖିଥିଲା । ବୟସ ନଅ କି ଦଶ ହୋଇଥିବ ସେତେବେଳେ ତାକୁ । ଗୋରୀ ପାତଳୀ ଝିଅଟିଏ । ଜାଣିଥିଲା, ପିଲା ହେଲେ ମଧ୍ୟ ଭରି ଗୁଣର । ସାରିଆ ମୁହଁରୁ ଶୁଣିଥିଲା – ପୋଖରି ଦିନରୁ ମୋର ପେଟ ବେମାରୀ, ବେମାର ମତେ ଅଧା ଜୀବନ କଲାଣି । ବେଳେ ବେଳେ କଙ୍କାଳକୁ ଚଗବାତ ଉଠିଯାଏ । ମୁଁ ପେଟ ମାଡ଼ି ବିଛଣାରେ ପଡ଼ି ରହେ । ମତେ ଆରପୁର ଦିଶେ । ସାବୀ ଘର ସମ୍ଭାଳେ, କଟାବଟା ଘସାମୋଡ଼ା, ପାଣି ଅଣା, ଢିଙ୍କି କୁଟା ଆଦି ହରେକ କାମ କରେ । ସଞ୍ଜ ହେଲେ, ଚଉରମୂଳେ ସଞ୍ଜବତୀ ଲଗାଏ । ଭଗବତ, ପୁରଣ, ରମାୟଣ, ବିଲଙ୍କା ରମାୟଣ ଆଦି ପଢ଼ି ଶୁଣାଏ ।

ଆଖି ଚିପି ଅନୁରୋଧ କଲା ଭଙ୍ଗୀରେ ସାରିଆ କହେ – ଆସିଲୁ ସାବୀ, ମାଉସୀକୁ ଟିକିଏ ଖୁଲଣା ସୁନ୍ଦରୀରୁ ଧାଡ଼ିଏ ଶୁଣେଇ ଦେବୁ । ତୋ କଣ୍ଠରୁ ପଦେ ଶୁଣିବାକୁ ସେ ଢିଗର କରୁଛନ୍ତି ।

ବାଧ୍ୟ ବାଳିକା ଭଳି ଶ୍ରାବଣୀ ଆସି ଦୁଆରବନ୍ଧ ପାଖେ ଛିଡ଼ା ହୁଏ, ମୁହଁ ତଳକୁ ପୋତେ ।

: କିଲୋ ଲାଜ କ'ଣ ? ତୋର ମାଉସୀ ପର ! ପିଲାବେଳେ ଆମେ ଏକ ଥିଲୁଁ । ଆମର ପ୍ରାଣ ଥିଲା ଏକ ଆଉ ଅଭିନ୍ନ । ଗୋଟିଏ ଥାଳିରେ ଖାଉ, ଗୋଟିଏ ଜଗାରେ ଶୋଉ । କେତେ ଓଷା, ପୁନେଇ ପରବ ସାଙ୍ଗ ହୋଇ କରିଛୁ । ଝିଅ ଜନମ ପର ଘରକୁ । ଥରେ ପରଘରୀ ହୋଇ ଗଲାପରେ ସବୁ ମିଠା ସରି ଯାଏ ଲୋ ଝିଅ......

ବାଲ୍ୟ ବାନ୍ଧବୀ ଦୁହେଁ ପରସ୍ପର ମୁହଁକୁ ଚୁହାଁ ଚୁହିଁ ହୋଇ କିଛିକ୍ଷଣ ରହିଯାନ୍ତି । ପିଛିଲା ସମୟ ଆଉ ଲେଉଟେ ନାହିଁ । ବଳ ଖସିଲେ,



Digitized by PPRACHIN, SOA

ବେଳ ଗଡ଼ିଲେ ସଂସାରଟା ଖାଲି ଯେମିତି ଦୁଃଖ, କଷ୍ଟ ଆଉ ଗୁଡ଼ାଏ ଦାୟିତ୍ୱରେ ପରିପୂର୍ଣ୍ଣ ବୋଲି ମନେ ହୁଏ ।

: ଚୁପ୍ ହୋଇ ଠିଆ ହୋଇ ରହିଲୁ ମା' କ'ଣ ?

କହିଲି ପଗ, ଦୁଲଣା ମାଉସୀ । ତାକୁ ଲାଜ କ'ଣ ? ଶ୍ରାବଣୀ ଲାଜ ଦୂର କଲା । 'କଳହଂସ କେଦାର' ବୃତ୍ତରେ କୋକିଳକଣ୍ଠୀ ଶ୍ରାବଣୀ ମୁହଁରୁ ଛୁଟେ ଖୁଲଣା ସୁନ୍ଦରୀର ମର୍ମାନ୍ତିକ ସ୍ୱର । ଖୁଲଣା ସୁନ୍ଦରୀର ଯାତନା, ନିର୍ଯ୍ୟାତନା ଯେମିତି ପ୍ରକଟିତ ହୁଏ ତରୁଣୀ ଶ୍ରାବଣୀର କଣ୍ଠରୁ । ଖୁଲଣାର ମର୍ମନ୍ତୁଦ କାହାଣୀ ମନରେ ଆଙ୍କି ହୋଇଯାଏ । ଭଉଣୀ– ସଉତୁଣୀ ନୟନା ଠାରୁ ଖୁଲଣା ସହ୍ୟ କରିଥିଲା ଅକଥନୀୟ ଯନ୍ତ୍ରଣା, ଅବର୍ଣ୍ଣନୀୟ ଅତ୍ୟାଚାର । ନାରୀ ପ୍ରତି ନାରୀର ବ୍ୟଭିଚାର । ଖୁଲଣାର ସତୀତ୍ୱରେ କଳା ବୋଳିବା ପାଇଁ ସଉତୁଣୀର ଷଡ଼ଯନ୍ତ୍ର । କିନ୍ତୁ ନିଷ୍ପାପୀ, ନିରୀହା ନାରୀ ଉପରୁ ସବୁ ନିର୍ଯ୍ୟାତନା ଅପସରି ଯାଏ ତା'ର ନିଷ୍ଠା ଯୋଗୁଁ, ଦେବୀ ଶକ୍ତି ଉପରେ ଐକାନ୍ତିକ ବିଶ୍ୱାସ ଯୋଗୁଁ । ଦେବ ବୋଉ ଦୁଲଣା ଅନୁଭବ କରେ, ସେଇ ଶକ୍ତିର ପ୍ରଚଣ୍ଡତା । ଧର୍ମ ସବୁ-ବେଳେ ସବୁ ଯୁଗରେ ତିଷ୍ଠି ରହେ ; ଅଧର୍ମ, ଅନ୍ୟାୟ ଲୋପ ପାଇଯାଏ । ଇଏତ ଆମର ଗ୍ରନ୍ଥବାଣୀ ।

ଯନ୍ତ୍ର ନାହିଁ, ବାଦ୍ୟ ନାହିଁ ଅଥଚ ସଙ୍ଗୀତର ସ୍ୱର ହୁଏ ହୃଦୟସ୍ପର୍ଶୀ । ଉଭୟ ଗାୟିକା ଏବଂ ଶ୍ରୋତାଙ୍କ ଆଖିରୁ ଲୁହ ନିଗିଡ଼ି ଆସେ । ଦେବ ବୋଉ ଚକିତ ହୁଏ । ଶ୍ରାବଣୀର ପିଠିକୁ, ମୁହଁକୁ ଆଉଁସି ତା ମୁଣ୍ଡରେ ଅଙ୍କାଡ଼ି ଦିଏ ମେଞ୍ଚାଏ କଲ୍ୟାଣ । ହିତାକାଙ୍କ୍ଷୀ ଆସନରେ ବସି ତା'ର ସୁଖମୟ ଭବିଷ୍ୟତ କାମନା କରେ ଦେବବୋଉ । ଏମିତି ସର୍ବଗୁଣ-ସମ୍ପନ୍ନା ଝିଅଟିଏ ଯା'ର ଅଛି, ତା'ର ଚିନ୍ତା ଆଉ କ'ଣ ?

ସେଦିନର ଶ୍ରାବଣୀ ଥିଲା ଚପଳମତି, ଚଞ୍ଚଳମତି ବାଳିକା । ଏବେ ସେ ବିବାହ ଯୋଗ୍ୟା । ରୂପ ରଙ୍ଗରେ ଆହୁରି ସୁନ୍ଦର ଦିଶୁଥିବ ।



Digitized by PPRACHIN, SOA

ତା' ଭଗ୍ୟାକାଶରେ ଏମିତି ବିଡ଼ମ୍ବନା ଘଟିଲା କାହିଁକି ? ଦେବବୋଉ ନିଜକୁ ଆଉ ସମ୍ଭାଳି ପାରିଲାନି । ମନରେ ପ୍ରବଳ ଅନୁକମ୍ପା ଏବଂ ଉତ୍କଣ୍ଠା କ୍ରମଶଃ ଉତ୍କଟରୁ ଉତ୍କଟତର ହେଲା । ହତଭାଗିନୀ ଶ୍ରାବଣୀକୁ ଟିକିଏ ଦେଖି ଆସିବା ପାଇଁ ମନ ଦାବୀ କଲା । ରୁକି ପାରିଲାନି ସେ—ଆନନ୍ଦ ଭାଇ ଘର ଆଡ଼କୁ ମୁହାଁଇଲା ଦେବବୋଉ ।

: ନୂଆବୋଉ, ନୂଆବୋଉ, ସାରିଆ ଝିଅକୁ ଟିକେ ମୋ ସାମ୍ନାକୁ ଡାକତ ! ତାକୁ ମୁଁ ଆଖି ପୁରାଇ ଦେଖେ । ବହୁଦିନ ତଳେ ଦେଖିଥିଲି ଯାହା । ଭରି ଭଲ ପିଲା – ଶାନ୍ତ, ଧୀର, ନମ୍ର । ମାଛିକୁ ମ କହିବନି । କେଉଡ଼ୁଟିଏ ହେଲଣି ?

ଆନନ୍ଦ ଭରିଯା ମୁହଁ ଶୁଖେଇ କହିଲା – କ'ଣ କହିବି ଭଉଣୀ, ହାନିକପାଳୀ ଝିଅଟା । ତା' ପାଇଁ ଏ ଗାଁରେ କେତେ ଟୁପ୍ ଟାପ୍, ଲୁଟ୍‌ଲାଟ୍ । ମାଇପିଙ୍କ ଦେଖେଇ ଶିଖେଇ କଥା, ଆଖି ଠାର ଠରି ଆଉ ସହି ହେଉନି । ତମେ କିଛି ଶୁଣିନ ?

: ହଁ ଶୁଣିଛି ସବୁ ।

: କ'ଣ କରିବି କହିଲ ଭଉଣୀ, ତମ ଭାଇଙ୍କ ଆଖିକୁ ନିଦ ନାହିଁ, ପେଟକୁ ଭୋକ ନାହିଁ, ପାଟିକୁ ଅନ୍ନ ରୁଚୁନି । ଚିନ୍ତା କରି କରି କେଇଟା ଦିନରେ ଦେହ ତାଙ୍କର ବିଗିଡ଼ି ଗଲାଣି । ବର ଖୋଜି ଖୋଜି ନୟାନ୍ତ । ଛତା ଧରି ଖରାରେ ଖରାରେ ଯାଉଛନ୍ତି ଡାଙ୍ଗିପିଟା, ଯୋଇକୂଳ, ପାଥପୁର, ବାଆଁଗ । ବର କ'ଣ ହାଟରେ ମିଳନ୍ତି ଯେ କେଉଁଠୁ ଗୋଟେ ଯାଇ ଖୋଜି ଆଣିବେ ? କହିଲେ ବୁଝୁ ନାହାନ୍ତି । କହୁଛନ୍ତି ଦାୟିତ୍ୱରୁ ପାର ପାଇଲେ ଯାଇ ତ୍ରାହି । କହିଲ ଭଉଣୀ, ଏଡ଼େ ଚଞ୍ଚଳ ବରଟାଏ କୋଉଠୁ ଯୋଗାଡ଼ କରିବୁ ? ଝିଅଟା ଦିହରେ ମଧ୍ୟ କଣ୍ଟା ରହିଲାଣି । ତୁନି, ତୁନି ଆଖି ପୋଛୁଚି । କ'ଣ ବୁଝେଇବି ? କହିଲି, ବାପ ନ ଥିଲେ କ'ଣ ହେଲା ? ମାମୁଁ ତ ଅଛନ୍ତି । ସେ ତୋର ବାପ ସମାନ । ତୁ ମନ ଖୁସି କର । କିଛି ପରବାୟ ନାହିଁ । ଦଇବ ଦେଇଛି ଦଣ୍ଡ । ଚେରଷ୍ଟାତ ଲୁଲିଛି......



Digitized by PPRACHIN, SOA

: ସେ କାହିଁ ? ଦେବବୋଉର ଖୋଜିଲା ଆଖି ନାଚିଲା ।

: ଯାଇଛି ସ୍ନାହାନ କରିବାକୁ, ଦୂର କାଙ୍କାବାଜିଣୀ ତୁଠକୁ । ଏଠି ଗାଁ ମାଇପିଙ୍କ ମେଳରେ ଗାଧେଇବାକୁ ତାକୁ ସୁଖ ଲାଗୁନି । ଲାଗିବ ବା କେମିତି ? ହିଂସୁକୁଡ଼ୀ, ବାରଗୁଉଳିଆ, ପୋଚରୀ ମାଇକିନିଆଁଙ୍କ ଲଗେଇ ଯୁଟେଇ କଥା ଶୁଣିବାକୁ ଯିବ କାହିଁକି ? ସେମାନଙ୍କଠୁଁ ଦୂରରେ ରହିଲେ ଭଲ । ସେଇଥିପାଇଁ ସୁକୁଟୀକୁ ସାଙ୍ଗରେ ନେଇ ଦୂର ତୁଠକୁ ଯାଇଛି । ଆସୁଥିବ......

ଆନନ୍ଦ ଭରିଯା ଢିଭ କାମୁଡ଼ିଲା ମାନ୍ୟାର୍ଥ ମୁହଁରେ । ଯେତେ-ହେଲେ ଗାଁର ନଣନ୍ଦ, କୁଣିଆ । ଏତେବେଳ ଯାଏଁ ଠିଆ କରି ପାଗଳୀଙ୍କ ଭଳି ଦୁଃଖ ଗପି ଗ୍ଲୁଲିଛି କ'ଣ ? ମାନ୍ୟ ଜଗି ଆଦରରେ ସଉପ ପାରିଲା ଖଞ୍ଜା ବାରଣ୍ଡାରେ ।

ବାରି ଦୁଆର ବାଟେ ଦେବବୋଉ ଦୂରରୁ ଦେଖୁଛି । କାଖରେ କଳସୀ ଧରି ହଂସ ପରି ପାଦ ଆଗକୁ ଚିପି ଚିପି, ସୁନ୍ଦର ସୁଠାମ ଦେହକୁ ନଗ୍ଇ ତରୁଣୀଟିଏ ଧୀର ଗତିରେ ଗୃହାଭିମୁଖୀ । ମନେ ହେଉଥିଲା ଛବି ଭଳି । ଶ୍ରାବଣୀ ବ୍ୟତୀତ ଆଉ କିଏ ହୋଇପାରେ ? ଦେବବୋଉ ଶିହରି ଉଠିଲା । ଆଖି ଲାଖି ରହିଲା ଅଠାଭଳି । ପଲକ ପଡୁ ନଥିଲା ତା'ର ।

ସୁନ୍ଦର ଠାଣିରେ ଶ୍ରାବଣୀ ଘରକୁ ଆସିଲା । ଆରେ, ଏତ ମାଉସୀ ! ଅନେକ ଦିନ ହେଲା ଦେଖି ନାହିଁ । ଜଳପୂର୍ଣ୍ଣ କୁମ୍ଭକୁ କାଖରୁ ଓହ୍ଲାଇ ଆସ୍ତେ ତଳେ ଥୋଇଲା ଏବଂ ମାଉସୀଙ୍କ ପାଦ ତଳେ ମୁଣ୍ଡ ରଖି ପ୍ରଣି-ପାତ କଲା । ଦେବବୋଉର ମନେହେଲା ଯେମିତି ବିପଦଗ୍ରସ୍ତା ସରଳା ଝିଅଟିଏ ସାମାଜିକ କଳଙ୍କରୁ ଉଦ୍ଧାର ପାଇବା ପାଇଁ ଆଶ୍ରାଦାତ୍ରୀଙ୍କ ପାଖେ ମିନତି କରୁଛି !

ବିନା ବିଳମ୍ବରେ ଦୁଇହାତ ବଢ଼ାଇ ଶ୍ରାବଣୀକୁ ଛିଡ଼ା କରଉଲା । ପ୍ରସାରିତ ପାପୁଲି ଦ୍ୱାରା କଅଁଳ ଗାଲରେ ସ୍ନେହ ବୋଳିଦେଲା । ଅନ୍ଧ



Digitized by PPRACHIN, SOA

ନିକଟରେ ଦେଖୁଥିଲା ତା' ଶରୀର ଗଠନର ଶିଳ୍ପ-ଚାତୁରୀ । ଦେବବୋଉ ଆଖିକୁ କିଏ କିମିଆ କଲାଭଳି ସବୁ ସୁନ୍ଦର ଦିଶୁଥିଲା । ଚନ୍ଦ୍ର ଉଦିଆ ମୁହଁ, ଗୋଲାପୀ ଓଠ, ଆୟତନ ଆଖି ଏବଂ ସର୍ଜିତ ଭ୍ରୂରେଖା, ଗୌର-ବର୍ଣ୍ଣା, ସୁତନ୍ବୀ – ସବୁ ଯେମିତି କିଏ ମାପି ଚୁପି ଗଢ଼ିଛି । ସେତେବେଳେ ସେ ଥିଲା ତନୁ ପାତଳୀ । ବୟସ ଲାଗିଲେ ଝିଅ ଦେହ ପୁଣି ଏମିତି ରୂପ, ରଙ୍ଗ, ରସରେ ଚହଟି ଉଠେ ? ଦେବବୋଉ ବିଶ୍ୱାସ କରିପାରୁ ନଥିଲା । ଶ୍ରାବଣୀର ସଦ୍ୟସ୍ନାତ କୋମଳ ଶରୀର କଅଁଳ ଓସ୍ତପତ୍ର ଭଳି ଲୋଭନୀୟ ଦିଶୁଥିଲା । ନଇଧୁଆ ଓଦା ଲୁଗା ମାଂସଳ ଦେହରେ ଚିପି ହୋଇ ମନଲୋଭା ସୌନ୍ଦର୍ଯ୍ୟର ଉଚ୍ଛଟତା ପ୍ରଚାର କରୁଥିଲା । ମୁଣ୍ଡର ଆଲୁଳାୟିତ ଆର୍ଦ୍ର କେଶ ପଶ୍ଚାତ୍‌ଭାଗ ପିଠି ଅତିକ୍ରମ କରି ନିତମ୍ବକୁ ସ୍ପର୍ଶ କରିଛି । ଅଙ୍ଗରେ ପଦ୍ମିନୀ ନାରୀର ଲକ୍ଷଣ । ଦେବବୋଉ ଭାବନା ସାଗରରେ ପହଁରୁଥିଲା । ଏମିତି କୁଳକନ୍ୟାର ପୁଣି ଦୁର୍ନାମ ! ବର ବାହୁଡ଼ାର କଳଙ୍କ ! ଲୋକାଚାର ହେଉଛି ଅନ୍ଧାର । ବିଦ୍ମ ଭିତରେ ଲୋକ କେବଳ ଅନ୍ଧାର ଦେଖେ, ସବୁ ଦିଶେ କଳା, ଘନକଳା ।

ବେକଭାଙ୍ଗି ମୁହଁ ତଳକୁ କରି ଶ୍ରାବଣୀ ଝାଉଁଳି ପଡ଼ିଥିଲା ଯେତେ-ବେଳେ, ମାଉସୀ ଲୋଭିଲା ଲୋଭିଲା ଆଖିରେ ତା ଅଙ୍ଗ ଶୋଭାକୁ ବାରମ୍ବାର ନିରୀକ୍ଷଣ କରୁଥିଲେ । ଲାଜରେ ସଢ଼ି ଯାଇଥିଲା ଶ୍ରାବଣୀ, ତାଠୁ ପ୍ରକାଶ ପାଉଥିଲା ତୁଳସୀ ବୃକ୍ଷର ନମ୍ରତା । ଆଖିର ଦୃଷ୍ଟି ସଙ୍କୁଚିତ । ଦୁର୍ଦ୍ଦଶାର ବୋଝ ମାଡ଼ି ବସିଥିଲା ତାକୁ । ଆଖି ଛଳ ଛଳ, ସତେକି ବନ୍ଧବାଡ଼ ଟପି ଲୋତକର ବନ୍ୟା ବହିଯିବ ମୁହୂର୍ତ୍ତକ ମଧ୍ୟରେ ।

ସେଇକ୍ଷଣି, ସେଇଠାରେ ଦେବବୋଉର କନ୍ୟା ପସନ୍ଦ ହୋଇ ଯାଇଥିଲା । ହରଷମନ ଏବଂ ଉଦାର ଚିତ୍ତରେ ଶ୍ରାବଣୀକୁ ବୋହୂ କରି-ନେବା ପାଇଁ ଘୋଷଣା କଲେ । ଏଣିକି ଦେବକାନ୍ତକୁ ପଟକା ପଟକି କରି ଶୁଭଦିନ, ବାର ଠିକ୍ କରିନେବ ।

ଏସବୁ କ'ଣ ଆଶ୍ଚର୍ଯ୍ୟ ଭାବେ ଶୁଣୁଛି ଶ୍ରାବଣୀ ! ଆକସ୍ମିକ ଘଟଣା-ପୁଞ୍ଜ ଇନ୍ଦ୍ରଜାଲ ବିସ୍ତାର କଲାପରି ମନେ ହେଉଥିଲା ତାକୁ । ବିଷାଦରେ



Digitized by PPRACHIN, SOA

ଆଖିରୁ ଲୁହ ଝରୁଥିଲା, ବର୍ତ୍ତମାନ ଆନନ୍ଦରେବି ଲୁହ ଝରୁଛି ! ବିଷାଦ ଏବଂ ଆନନ୍ଦ ସହିତ ଅଶ୍ରୁର କଅଣ ଏମିତି ନିବିଡ଼ ସମ୍ପର୍କ ରହିଛି, ତାହା ସେ ବୁଝିପାରୁ ନଥିଲା । ସତେ କ'ଣ ମାଉସୀଙ୍କ ବଚନ ସତ ହେବ ?

ଘରେ ବିବାହ ପ୍ରଶ୍ନ ଉଠିଲା ମାତ୍ରେ ଦେବକାନ୍ତ ଧରଛୁଆଁ ଦେଉନଥିଲା ଅନେକ ଦିନ ହେଲା । ତା ବାପା ବୋଉ ବୋହୂଟିଏ ପାଇଁ ବ୍ୟାକୁଳ ହେଉଥିଲେ । ପୁଅର ବିବାହ ବୟସ ହାଜର ହେଲେ ସବୁ ବାପ ମା' ଏମିତି ଉଦ୍‌ଗ୍ରୀବ ହୁଅନ୍ତି । ସନ୍ତାନକୁ ବିବାହ କରାଇବା ଏକ ସାଂସାରିକ ଦାୟିତ୍ୱ । ଏ କ୍ଷେତ୍ରରେ ଦେବକାନ୍ତ ଘରର ଏକମାତ୍ର କୁଳନନ୍ଦନ, ବଂଶରକ୍ଷକ । ଯେତେ ଚଞ୍ଚଳ ଏ ଘରକୁ ବୋହୂ ଆସିବ, ସେମାନେ ଦାୟିତ୍ୱରୁ ମୁକ୍ତ । କେବଳ ରହିବ ଟିକିନୀ । ସେତ ପିଲଟା । ବୟସ ଦଶ ମାତ୍ର । ତା'ର ବାହା ହେବା ସମୟ ବାକୀ ଅଛି ।

ଦେବକାନ୍ତର ଯୁକ୍ତି ଥିଲା, ସେ ବେକାର । ଘରକୁ ବୋହୂ ଆଣିଲେ ଦାୟିତ୍ୱ, ଝଞ୍ଝାଳ ବଢ଼ିବ ସିନା, କମିବ ନାହିଁ । ଯେବେ ସେ ନିଜ ଗୋଡ଼ରେ ଠିଆ ହେବ, ଆତ୍ମନିର୍ଭରଶୀଳ ହେବ, ରୋଜଗାର କରିବ, ପିତାମାତାଙ୍କ ଋଣ ଶୁଝିବ, ତା' ପରେ ବିବାହ ଓ ସୁଖସଂସାର କରିବ । ବିଭା ହେବା ବୟସ କୁଆଡ଼େ ପଳାଇ ଯାଉନି । ଆଜିକାଲି ଯୁଗରେ ଟଙ୍କାହିଁ ସୁଖ ସମୃଦ୍ଧି ପାଇଁ ଏକମାତ୍ର ଉପାଦାନ, ଚଳନ୍ତି ଦେବତା । ତା' ପାଠପଢ଼ାରେ ବାପା ଅନେକ ଅର୍ଥ ଖର୍ଚ୍ଚ କରିଛନ୍ତି, ଜମି ବିକ୍ରୀ କରିଛନ୍ତି, ବନ୍ଧକ ଦେଇଛନ୍ତି ମଧ୍ୟ । ଚାକିରୀ ନ ହେବା ପର୍ଯ୍ୟନ୍ତ ବିବାହ ତା' ପାଇଁ ବେଢ଼ି ଉପରେ କୋରଡ଼ା ଭଳି ।

ଦେବବୋଉର ଯୁକ୍ତି ହେଲା ଭିନ୍ନ – ଦେବର ସମବୟସ୍କ ଯୁବକମାନେ ଘର ସଂସାର କରି ପୁଅଝିଅର ବାପା ହେଲେଣି । ବାହା ହେବାର ଗୋଟାଏ ସମୟ ଓ ବୟସ ଥାଏ, ଯେଉଁଟା ଯେତେବେଳେ । ବାହାହୋଇ ଚାକିରୀ ଖୋଜିବାକୁ ମନା ନାହିଁ । ବିବାହ ଏବଂ ଚାକିରୀ ଦୁଇଟି ଅଲଗା ଜିନିଷ । ସମସ୍ତେ କ'ଣ ଚାକିରୀ କରିଛନ୍ତି ନା ବିନା ଚାକିରୀରେ କାହା ପେଟ ଅପୋଷା ରହୁଛି ? ଚାକିରୀ ମିଳିଲେ ଭଲ, ନ ମିଳିଲେ



Digitized by PPRACHIN, SOA

କିଛି ପରବାୟ ନାହିଁ । ପୁଷ୍ଟାଏ କି ପାଞ୍ଚୁଟା ନାହାନ୍ତି । ବାପର ଯେତିକି ଜମି ଅଛି, ତାକୁ ଭଣ୍ଡି ଖାଇଲେ ସରିବନି ।

ଅବୁଝା ବୋଉକୁ ଦେବକାନ୍ତର ଯୁକ୍ତି ପ୍ରଭାବିତ କରି ପାରିଲା ନାହିଁ । ସୁପାତ୍ରୀ, ଯୌବନାବତୀ, ବହୁଗୁଣସମ୍ପନ୍ନା କନ୍ୟାଟିଏ ତା'ର ପସନ୍ଦ ହୋଇଛି । ସେଦିନୁ ଦେଖିଲା ବେଳୁ ତା'ର ନଜର ବାନ୍ଧିଛି । ତା'ରି ପ୍ରଶଂସା ମେଲିଛି । ଯୌତୁକ ଦରକାର ନାହିଁ । ସେତ ନିଜେ ଗୋଟିଏ ସୁନା କଣ୍ଢେଇ......

ବିବାହ ଅନିବାର୍ଯ୍ୟ । ଅଧିକ ପ୍ରତିବାଦ କରିବାକୁ ଦେବକାନ୍ତର ଆଉ ଗର୍ଭ ନଥିଲା । ତୋଳା କନିଆଁ ପାଇଁ ଆପତ୍ତି ନଥିଲା । ହିତାକାଂକ୍ଷୀ ପିତାମାତାଙ୍କ ପସନ୍ଦକୁ ସାଦରରେ ଗ୍ରହଣ କରି ପରିବାରର ସୁଖ ସ୍ୱଅରେ ସେ ନିଜକୁ ହଜାଇ ଦେଇଥିଲା ।

ସମସରପୁର ଜଗନ୍ନାଥ ପଧାନର କନ୍ୟା ଆଜି ମାନପୁର ଗାଁର ସନାତନ ବଡ଼ଜେନାର କୁଳବଧୂ; ଶିକ୍ଷିତ ଦେବକାନ୍ତର ଘରଣୀ । ଅଦୃଶ୍ୟ ଭାଗ୍ୟଚକ୍ରର କୁହୁକ । ଏମିତି ଆକସ୍ମିକ ଭାବେ ଭାଗ୍ୟ ହସି ଉଠିବ ବୋଲି କିଏ ଜାଣିଥିଲା ? ମଣିଷ ଜୀବନ ଏମିତି ଆକସ୍ମିକତାର ସମଷ୍ଟି କେବଳ । ତା' ବାପା ଆଜି ଝିଅର ସୌଭାଗ୍ୟ ଦେଖିବାକୁ ବଞ୍ଚିଥାନ୍ତା ପର ! ବାପାକୁ ମନେ ପକାଇ ଶ୍ରାବଣୀ ଆଖି ପୋଛିଲା । ତା ଆଖିରେ ଶାଶୁ ଶ୍ୱଶୁରଙ୍କ ପ୍ରତି କୃତଜ୍ଞତାର ଗୋପନ ଛିଟା, ମୁହଁରେ ସ୍ୱାମୀଙ୍କ ପ୍ରତି କୃତ୍ୟ-କୃତ୍ୟ ଭାବ । ତା' ଆଖିରେ ଦେବକାନ୍ତ କେବଳ ସ୍ୱାମୀ ନୁହଁନ୍ତି । ସେ ଜଣେ ଦେବତା, ତା'ର ତ୍ରାଣକର୍ତ୍ତା । ସ୍ୱାମୀର ସୁନ୍ଦର ମୁହଁଟିକୁ ଦେଖିଲେ ତା ମନ ଆନନ୍ଦରେ ନାଚି ଉଠୁଛି । ସ୍ୱାମୀର ମୁଖଶ୍ରୀ ହାସ୍ୟୋଦ୍ଭାସିତ ଫୁଟନ୍ତା ଫୁଲଭଳି, ତୃପ୍ତିର ଏକ ନିର୍ଝରିଣୀ । ଏଇ କେତୋଟି ଦିନ ହେଲା ସେ ନିଜକୁ ଭସାଇ ଦେଇଛି ଶାଶୁଘରର ଆନନ୍ଦ ଉତ୍ସବରେ । ରତିସାଗ ନବଦମ୍ପତିକୁ ନିଦ ନାହିଁ । ନିଦ୍ରା ଦୁଇଜଣଙ୍କଠୁଁ ଛୁଟି ନେଇଛି । ଅପୂର୍ବ ଶିହରଣରେ ସମୟ ବିତୁଛି । ଉଭୟେ ମିଶି ନାରୀ-ପୁରୁଷର ଆଦିମ ସମ୍ପର୍କକୁ ଉନ୍ମୋଚନ କରିବାରେ ଲାଗିପଡ଼ିଛନ୍ତି । ● ● ●



Digitized by PPRACHIN, SOA

ସେଦିନ ରାତିରେ ସ୍ୱାମୀସ୍ତ୍ରୀଙ୍କ ଆଳାପ ଆଲୋଚନାର ମୁଖ୍ୟ ବିଷୟ-ଥିଲା ଆଗାମୀ କଲିକତା ଭ୍ରମଣ । ସ୍ୱାମୀର ସମ୍ମତି ଲାଭକରି ଥିବାରୁ ଆନନ୍ଦାତିଶଯ୍ୟରେ ଶ୍ରାବଣୀ ପେଣ୍ଡୁ ପରି ବିଛଣାରେ ଗଡ଼ି ଯାଉଥିଲା । ଲତାଟିଏ ଭଳି ସେ ସ୍ୱାମୀ ଦେହରେ ଲେଟି ପଡ଼ୁଥିଲା । ଦେବକାନ୍ତ ଅନୁଭବ କରୁଥିଲା, ତା ଫୁଙ୍ଗୁଳା ଦେହ ଉପରେ ବୃକ୍ଷର ପୁଷ୍ପଭରା କଅଁଳ ଡାଳଟିଏ ଆଶ୍ରିତ । ସେ ଆଘ୍ରାଣ କରି ନେଉଥିଲା ତା'ର ସବୁତକ ସୁବାସ...... ଶ୍ରାବଣୀ ଆଖି ପୂରାଇ ଦେଖୁଥିଲା ତା ସ୍ୱାମୀକୁ – ଶୌର୍ଯ୍ୟ ବୀର୍ଯ୍ୟଧାରୀ ସୁଶ୍ରୀ ଯୁବକଟିଏ, ଡେଙ୍ଗା, ବଳିଷ୍ଠ, ସୁନ୍ଦର ଶରୀରଯୁକ୍ତ ପୂରୁଷବନ୍ତ ଚେହେରା । ଏପରି ସ୍ୱାମୀକୁ ସାଥିରେ ଧରି କଲିକତା ଯିବା କେଡ଼େ ଭାଗ୍ୟର କଥା ! ଆକାଶ କୁସୁମ ଆଜି ତା ହାତ ପାହାନ୍ତାରେ ।

ଶଯ୍ୟାସଙ୍ଗିନୀର ଆଚରଣରେ ଆତ୍ମସନ୍ତୋଷର ଗଭୀର ଛାପ ଲକ୍ଷ୍ୟ କରୁଥିଲା ଦେବକାନ୍ତ ।

ପ୍ରତିଶ୍ରୁତି ଦେଇଦେଲା ଦେବକାନ୍ତ ଦମ୍ଭର ସହିତ । କିନ୍ତୁ ଅର୍ଥ ? ମୁଣ୍ଡରେ ତେନ୍ତୁଳିଆ ବିଛାର ନାହୁଡ଼ । ଉପାୟ କ'ଣ ? ଦୁହେଁ ଯୌତୁକ ପେଡ଼ି ଅଣ୍ଡାଳି ବସିଲେ । ଚମଡ଼ା ସୁଟ୍‌କେଶ୍‌ରୁ ପଞ୍ଚାନବେ ଟଙ୍କା ପାଇଲେ । କିଛିଟା ସାହସ ଆସିଲା, ଦେହରେ ଦମ୍ଭ ସଞ୍ଚରିତ ହେଲା । ଆଉ ଟିକିଏ ଉତ୍ସାହିତ ହୋଇ ଦେବକାନ୍ତ କହିଲା – ମୁଁ ଆଉ କିଛି ଯୋଗାଡ଼ କରୁଛି, ସାଙ୍ଗରେ କିଛି ମୁଢ଼ି, ଚୁଡ଼ା ନେଇଗଲେ ଚଳିଯିବ । ତା'ର ମନକୁ ଆସିଲା ସପନି ଗୁଡ଼ିଆ କଥା । ଲୋକଟି ଭଲ । ଅତୀତରେ କେତେଥର ତାଠୁ ଟଙ୍କା ଧାରଆଣି ଯଥା ସମୟରେ ଫେରସ୍ତ କରିଛି । ସୁଧ ପାଇଁ ଧରି ବସେନି । ଝିନ୍‌ଝଟ୍ କରେନି । ସୁଧ ବାବଦରେ



Digitized by PPRACHIN, SOA

ଯାହାଦେଲେ ପ୍ରତିବାଦ ନ କରି ନିଏ । ଆଉଥରେ କିଛି ଟଙ୍କା ପାଇଁ ମୁହଁଖୋଲି ଖାଲି ମାଗିବା କଥା । ଭାଗ୍ୟ ଯଦି ପ୍ରସନ୍ନ ହୁଏ, ଚାକିରୀଟା ଯଦି ମିଳିଯାଏ, ତେବେ ସବୁ ଧାର, ଉଧାର, ବାକୀବୁକା ଏକା ଥରକେ ପରିଶୋଧ କରିଦେବ ।

ବର୍ତ୍ତମାନର ପ୍ରଧାନ ସମସ୍ୟା ହେଲା ବାପାବୋଉଙ୍କର ଅନୁମତି ହାସଲ କରିବା । କଲିକତା ପ୍ରସଙ୍ଗ ଉପସ୍ଥାପନ କରିବ କିପରି ? କେଉଁ ରକ୍ଷଣଶୀଳ ପରିବାର ନବାଗତ କୁନି ନୂଆବୋହୂଟିକୁ ଶାଶୁଘରୁ ଗୋଡ଼ କାଢ଼ି ବାହାରକୁ ଯିବାପାଇଁ ଅନୁମତି ଦେବ ? ବାପା ଏ ବିଷୟରେ ବିଶେଷ ପ୍ରତିବନ୍ଧକ ହୋଇ ନ ପାରନ୍ତି, ଏମିତି କାରବାରରେ ସେ ମୁଣ୍ଡ ପୂରନ୍ତି ନାହିଁ । ଗ୍ରଷ ଭଲତ ସେ ଭଲ । ଗାଈଗୋରୁ ଧନ୍ଦା ବୁଝିବାକୁ ବି ତାଙ୍କୁ ବେଳ ନିଅଣ୍ଟ । ଅସଲ ହେଲା ବୋଉ । ବୋଉ ରାଜି ହୋଇଗଲେ ବାଟ ସଫା ।

ସୂକ୍ଷ୍ମ କଥାଟା ପ୍ରକାଶ କରିବା ପାଇଁ ଦେବକାନ୍ତକୁ ମାଡ଼ି ମାଡ଼ି ପଡ଼ୁଛି । ରତିସାଗ ସ୍ୱାମୀ ସ୍ତ୍ରୀଙ୍କ ଯୋଜନା ଗୁଲିଲା । ବିସ୍ତାରିତ ଆଲୋ-ଚନା କରି ବସିଲେ ଦୁହେଁ । ଅନେକ ଫାନ୍ଦ ଫିକର ପାଞ୍ଚିଲେ । ପରଦିନ ସେଗୁଡ଼ିକ ପ୍ରୟୋଗ କରିବାକୁ ଠିକ୍ କଲେ । ଏ ଘରେ ଶ୍ରାବଣୀର ସ୍ଥିତି ଗୋଟିଏ ବନ ହରିଣୀ ପରି । ଚିଡ଼ିଆଖାନାରେ ଯେମିତି ନୂଆ ଜୀବଟିଏ ଦେଖିବାକୁ ଦର୍ଶକମାନଙ୍କ ଭିଡ଼ ଜମେ, ଏଠି ସାଇ ସ୍ତ୍ରୀଲୋକମାନଙ୍କର ସେଇପରି ଭିଡ଼ । ଯୌତୁକ ବିନିମୟରେ ସନାତନ ଆଣିଛି ରୂପସୀ ବୋହୂଟିଏ; ଘର ଜଞ୍ଜାଳ ସମ୍ଭାଳିବା ପାଇଁ ଗୃହଲକ୍ଷ୍ମୀଟିଏ ; ଏ ଖଣ୍ଡମଣ୍ଡଳରେ ଗୋଟିଏ ନୂଆ କଥା । ମନମୁତାବକ କୁଳବଧୂଟିଏ ପାଇ-ଥିବାରୁ ସମସ୍ତେ ସନ୍ତୁଷ୍ଟ । ବୋହୂର ଆଗ୍ରର ବ୍ୟବହାର ସେମାନଙ୍କୁ କରିଥିଲା ମୁଗ୍‌ଧ । ଶ୍ରାବଣୀ ନିଜକୁ ସମର୍ପଣ କରିଦେଇଛି । ସୁଗୃହିଣୀର କର୍ତ୍ତବ୍ୟରେ ଯେମିତି ଟିକିଏ ହେଲେ ତ୍ରୁଟି ନ ରହେ, ସେଥିପ୍ରତି ତା'ର ଦୃଷ୍ଟି । ପୂର୍ବାକାଶରେ ସିନ୍ଦୁର ଫାଟିବା ପୂର୍ବରୁ ଶଯ୍ୟାତ୍ୟାଗ, କାଉ କା' କଲା ପୂର୍ବରୁ ସ୍ନାନ । ସକାଳୁ ଉଠି ସମସ୍ତେ ଦେଖନ୍ତି, ଚଉରମୂଳରେ ବୋହୂ



Digitized by PPRACHIN, SOA

ହାତର କାରୁକାର୍ଯ୍ୟ ବହୁରଙ୍ଗୀ ମୁରୁଜରେ ଚଉଗମୂଳ ଚିତ୍ରିତ – ବୃନ୍ଦାବତୀ-ଙ୍କର ନବବେଶ କଳସ ମୂଳେ ନିର୍ମଳାକ୍ଷରରେ ସତ୍ତମୂର୍ତ୍ତିଙ୍କ ଦ୍ୱାରା ଲିଖିତ – ଓଁ ନମଃ ସ୍ତୁତେ' –ଗୁରୁଜନମାନଙ୍କ ଉଦ୍ଦେଶ୍ୟରେ ଭକ୍ତି ସମ୍ଭାର ।

କେବଳ ଶାଶୁଶ୍ୱଶୁରଙ୍କ ପାଦପାଣି ଆଣି ତୁଣ୍ଡରେ ମାରିନି ଶ୍ରାବଣୀ । ଏହା ଏକ ମନ ଭୁଲଣିଆ, ଲୋକ ଦେଖାଣିଆ କାର୍ଯ୍ୟ । ପ୍ରକୃତ ପୂଜା ହେଉଛି ମନରେ, ବ୍ୟବହାରରେ ଆତ୍ମୋତ୍ସର୍ଗ କରିବାର ମନୋବୃତ୍ତିରେ ।

କେଇଟା ଦିନରେ ଘର ଅସମ୍ଭବ ଭବେ ପରିଷ୍କାର ପରିଚ୍ଛନ୍ନ । ଗୃହ ପରିବେଶରୁ ମଳିଧୂଳି ଅଳନ୍ଧୁର ବିକ୍ଷେପକରଣ, ମାଟି ଚଟାଣରେ ଗୋବରର ଚନ୍ଦନ ଆସ୍ତରଣ, ବାଡ଼ି ବଗିଚାରେ ଫଳ ପୁଷ୍ପ ବୃକ୍ଷର ରୋପଣ ଆଦି ଅନେକ ସଫେଇ କାର୍ଯ୍ୟକ୍ରମ । ଦେବକାନ୍ତର ମନେ ହେଉଥିଲା ଯେମିତି ଗୋଟାଏ ଉନ୍ନତିମୂଳକ ଯୋଜନା ହାତକୁ ନିଆ ଯାଇଛି । ଘର ହେଲା ମହକିତ – ଧୂପରେ ନୁହେଁ, ରୂପରେ ; ଧନରେ ନୁହେଁ ମନରେ । ବାପା ବୋଉ ଖୁବ୍ ପ୍ରୀତ । ପାଞ୍ଚ ତୁଣ୍ଡରୁ ବୋହୂର ପ୍ରଶଂସା ପଦେ ଶୁଣିବା ଭଳି ଆନନ୍ଦ ଆଉ କେଉଁଥିରେ ନ ଥାଏ । ଇଚ୍ଛା ମୁତାବକ ବୋହୂଟିଏ ମିଳିଥିବାରୁ ସେମାନେ ହୋଇଥିଲେ ଖୁବ୍ ଆନନ୍ଦିତ, ଖୁବ୍ ସନ୍ତୁଷ୍ଟ ।

ଦେବକାନ୍ତ ମନ ଭିତରେ କଲିକତା ପ୍ରସଙ୍ଗଟି ସେମିତି ହାବୁକା ମାରୁଥାଏ । ଏତିକିବେଳେ ବରଟାଏ ମାଗି ବସିଲେ ଭଲ । ଉପାୟ ଚିନ୍ତା କରୁଥିଲା । ଗୋଟାଏ କଥା ମନକୁ ଛୁଇଁଲା । ତିନିବର୍ଷ ହେଲା ବୁଢ଼ୀମା'ର ଅସ୍ଥି ଫରୁଆ ଭିତରେ ରହି ଈଶାଣଙ୍କ ପାଖେ ପୋତା ଯାଇଛି । ଅର୍ଥାଭାବ ଯୋଗୁଁ ତାହା ଗଙ୍ଗାରେ ବିସର୍ଜନ ହୋଇପାରୁ ନାହିଁ । ପୂର୍ବ ପୁରୁଷଙ୍କ ଅସ୍ଥି ଗଙ୍ଗାରେ ପଡ଼ିଲେ ଉତ୍ତରପୁରୁଷଙ୍କ ଧର୍ମ ହୁଏ । କୁଳ ଉଜ୍ଜଳ ହୁଏ । ଏହା ହିନ୍ଦୁ ସମାଜର ଏକ ପାରମ୍ପରିକ ବିଶ୍ୱାସ । ଏଥି-ପାଇଁ ସ୍ୱାମୀ ଏବଂ ସ୍ତ୍ରୀ ଉଭୟେ ପିଣ୍ଡଦାନ ଏବଂ ଶ୍ରାଦ୍ଧ ପାଇଁ ଗଙ୍ଗା ଯିବା ଆବଶ୍ୟକ ।



Digitized by PPRACHIN, SOA

୯ରେ ଶ୍ରାବଣ

କଥାଟିକୁ ବୋଉ କାନରେ ପକାଇଲେ ଦେବକାନ୍ତ । କଲିକତାରୁ ଇଣ୍ଟରଭ୍ୟୁ ଡାକରା ଆସିଛି । ସେଠି ଗଙ୍ଗା ଅଛନ୍ତି । ବୁଢ଼ୀମା'ର ବହୁଦିନର ଅସ୍ଥି ବିସର୍ଜନ କରି ଆସିଲେ ଗୋଟାଏ ଦାୟିତ୍ୱ ତୁଟିଯିବ । କଦଳୀ ବିକା ଆଉ ଦିଅଁ ଦର୍ଶନ ଏକାଥରକେ ଦି'ଟା କାମ ହୋଇଯିବ ।

: ଭଲକଥା– ମତ ଦେଲେ ଦେବବୋଉ ।

ଅସଲ କଥା ବୁଝି ପାରିଲନି ବୋଧହୁଏ ସେ । ଦେବକାନ୍ତ ପୁଣି କହିଲେ– ବୋଉ, ଶ୍ରାଦ୍ଧ ପକେଇବାକୁ ହେଲେ ସସ୍ତ୍ରିକ ବୁଆଡ଼େ ଦରକାର ହୁଏ ; ଖାଲି ମୁଁ ଗଲେ ଚଳିବ ନାହିଁ ?

ଆରେ ହଁ, ସ୍ତ୍ରୀ ନ ଥିଲେ ପିଣ୍ଡ ଟେକିବ କିଏ ?

: ମୁଁ ତ ସେଇଆ କହୁଛି । ଶ୍ରାବଣୀକୁ ଯିବାକୁ ପଡ଼ିପାରେ ।

ଦେବବୋଉ ଅତମତ ହେଲେ । ଶ୍ରାବଣୀ ପିଲାଲୋକ । ତାରିପାଇଁ କେତେଦିନ ହେଲା ଏ ଘର ମହକି ଉଠିଛି । ତାକୁ କିଛିଦିନ ପାଇଁ ହାତ-ଛଡ଼ା କରିବାକୁ ପ୍ରସ୍ତୁତ ନଥିଲେ । କିନ୍ତୁ ଏ ପରିସ୍ଥିତିରେ ହଁ ନଭରି ଅନ୍ୟ ଉପାୟ ନାହିଁ । କୁଣ୍ଠିତ ମନରେ କହିଲେ, ମୋର ଆପତ୍ତି ନାହିଁ ଯେ, ହେଲେ ଭଲରେ ଯାଇ ଭଲରେ ଫେରି ଆସିଲେ ହେଲା ।

ଏକାଥରକେ ପାସ୍ । ଫର୍ମୁଲା ଗୁଡ଼ିକ ଠିକ୍ କାମ କରିଛି । ଦୁହେଁ ଉଲ୍ଲସିତ ହୋଇ ଉଠିଥିଲେ ।

ଯାତ୍ରାଦିନ ପାଖେଇ ଆସୁଛି । କାମରେ ଅଧିକ ତତ୍ପରତା, ମନରେ ଚଞ୍ଚଳତା ପ୍ରକାଶ ପାଇଥିଲା ଶ୍ରାବଣୀର । ସେ କୁରୁଳି ଉଠିଲା । ବଡ଼ ଭାଗ୍ୟବତୀ । ବିବାହ ପରେ ପରେ ବିଦେଶ ଭ୍ରମଣ । ଶାଶୁ ଶ୍ୱଶୁରଙ୍କୁ ମନେ ମନେ ପ୍ରଣିପାତ କଲା । ସ୍ୱାମୀଙ୍କ ପୁରୁଷ ପଣକୁ ତାରିଫ କଲା ।



Digitized by PPRACHIN, SOA

ସ୍ୱର୍ଗତ ପିତାଙ୍କୁ ମନେ ପକାଇଲା ଶ୍ରାବଣୀ । ତାଙ୍କ ସରଳତାର ପୁରସ୍କାର ଭଗବାନ ତାଙ୍କୁ ଦେଇଛନ୍ତି ଆଜି । ପିତାମାତାଙ୍କ ସୁକୃତରୁ ସନ୍ତାନର ଉନ୍ନତି, ଏକଥା ଶ୍ରାବଣୀ ସ୍ୱୀକାର କରୁଥିଲା ମନେ ମନେ ।

କଲିକତା ଯିବାକୁ ହେବ ରେଳ ଯୋଗେ । ମାନପୁର ଗାଁର ନିକଟତମ ରେଳ ଷ୍ଟେସନ– ଜଟଣୀ । ପହିଲେ ପାଞ୍ଚ ମାଇଲ ପାଦ ଚଲା ଅଙ୍କାବଙ୍କା ଗହିର ରାସ୍ତା ଗମାପଲ୍ଲୀ ଛକ ପର୍ଯ୍ୟନ୍ତ । ତା' ପରେ ସେଠୁ ପଞ୍ଚାବନ ମାଇଲ ବସ୍‌ଯାତ୍ରା, ତା ପରେ ଯାଇଁ ଜଟଣୀ ।

ଅନ୍ଧାରୁ ବେଳାବେଳି ପ୍ରସ୍ତୁତ ହୋଇଗଲେ ସ୍ୱାମୀ ସ୍ତ୍ରୀ ଦିହେଁ । ଶ୍ରାବଣୀ ଶାଶୁ ଶ୍ୱଶୁରଙ୍କୁ ଜୁହାର ହୋଇ ପାଦ ଧୂଳି ମୁଣ୍ଡରେ ମାରିଲା । ଗାଁ ଶେଷ ବରଗଛ ପର୍ଯ୍ୟନ୍ତ ଟିକିନୀ ଏବଂ ଦେବବୋଉ ସେମାନଙ୍କୁ ବିଦାୟ ଦେବା ଉଦ୍ଦେଶ୍ୟରେ ଚାଲି ଆସିଥିଲେ । ଟିକିନୀ କହିଥିଲା, "ନୂଆବୋଉ କଲିକତା ଯାଉଛ, ମୋ ପାଇଁ ଭଲ ଜିନିଷ ଆଣିବ ।" ଶ୍ରାବଣୀ କୁନି ନଣନ୍ଦର ନାକକୁ ଚିପି ହସ ହସ ମୁହଁରେ ସ୍ନେହ ବୋଳି ଦେଇ କହିଥିଲା– "ଈଶ୍ୱର କରନ୍ତୁ, ତମ ଭାଇ ଚାକିରୀ କଲେ ତୁମକୁ କଲିକତା ବୁଲେଇ ଆଣିବେ ।"

ସୂର୍ଯ୍ୟ ଉଇଁଲା ବେଳକୁ ପାଦଚଲା ରାସ୍ତା ଅଧାଅଧି ଧରିଲେଣି । ବିଶେଷ ଓଜନିଆ ଜିନିଷ ହାତରେ ଧରି ନାହାନ୍ତି, କେବଳ ସୁଟ୍‌କେଶଟିଏ । ତାକୁ ହାତରେ ଧରି ବୁଲାବୁଲି କରିବା ପାଇଁ ଅସୁବିଧା ହେବନି । ଚୂଡ଼ା ମୁଢ଼ି ସାଙ୍ଗରେ ନେବାର ଆଉ ଦରକାର ନଥିଲା । ଆବଶ୍ୟକ ଅର୍ଥ ସୁବିଧାରେ ବନ୍ଦୋବସ୍ତ ହୋଇ ଯାଇଥିଲା ସପନି ଗୁଡ଼ିଆଠୁଁ । ଋଣ ଟଙ୍କା ହେଲେବି ପାଖରେ ପଇସା ଥିଲେ ମନଟା ଉଚାଟ ହୁଏ । ଧନ ଶୀତଳ ଚର୍ମରେ ଚହଟ ଆଣେ, ଡେଣାରେ ପରଲଗେ, ପାଣ୍ଡୁର ଆକାଶ ରଙ୍ଗୀନ୍ ଦିଶେ ; ମନ ଉଡ଼େ ଫୁର୍ ଫୁର୍ ହୋଇ ଡେଣା ମେଲି– ଠିକ୍ ପ୍ରଜାପତି ଭଳି ।

ମାଟିଆ ଚିଲଟାଏ ମୁଣ୍ଡ ଉପରେ ପଇଁତରା ମାରି ଗଗନରେ ପୁଣି ଚକ୍‌କର କାଟିଲା ।



Digitized by PPRACHIN, SOA

: ଛିଃ, ପୋଡ଼ାମୁହାଁ ମାଟିଆ ଚିଲ । ଥୁ ଥୁ କରି ଛେପ ତିନିଥର ଭୂଇଁକୁ ଫିଙ୍ଗିଲ ଶ୍ରାବଣୀ, ବାଁ ଗୋଡ଼ ସାତଥର ତଳେ କଗଡ଼ିଲ ।

: କ'ଣ ଏମିତି କରୁଛ ? ଅସୁବିଧା କ'ଣ ହେଲ ?

ଶଙ୍କିତ ଗଳାରେ କହିଲ ଶ୍ରାବଣୀ– ମାଟିଆ ଚିଲ ।

: ଏମିତିତ ସବୁଦିନ ମାଟିଆ ଚିଲ ଉଡ଼ନ୍ତି, ଆଜି କ'ଣ ନୂଆ କଥା ?

: ନାଁ, ମାଟିଆ ଚିଲ ଶୁଭ ନୁହେଁ । କୁଆଡ଼େ ଭଲ କାମରେ ଗଲ-ବେଳେ ମାଟିଆ ଚିଲ ଦେଖିଲେ କହନ୍ତି, ଶଙ୍ଖଚିଲ ଭାଇ ନମସ୍କାର, ମାଟିଆ ଚିଲକୁ ଗୋଇଠା ମାର । ଆଉ ପୁଣି କହନ୍ତି, ପୋତ କଦଳୀ ଗଛ, ଯାହା ହେବ ଶେଷ...... ଶଙ୍ଖଚିଲ ଏବେ କାହିଁତ ଦିଶୁ ନାହାନ୍ତି ?

ଶୁଭ ସଙ୍କେତଟିଏ ଦେଖିବା ପାଇଁ ଶ୍ରାବଣୀ ବ୍ୟଗ୍ର ହୋଇ ଉଠିଲ । ରହୁଁଥିଲ ଚାଲିଲ ବାଟର ଗଛକୁ, ଗହିରକୁ । ଆକାଶକୁ ବାରମ୍ବାର ଲକ୍ଷ୍ୟ କରୁଥିଲ ସେ ।

: ଏସବୁ ଲୋକାଚାର ବାଢେକଥାକୁ ମୁଣ୍ଡରେ ପଶାଇ ମନକୁ ବିଭ୍ରାନ୍ତ କରିବା ଉଚିତ ନୁହେଁ । ଯାହା ଅନିର୍ବାଯ୍ୟ, ତାହା ହିଁ ଘଟିବ । ଆଗତ ଘଟଣା ଉପରେ କାହାର ହାତ ନାହିଁ । ମତ ପ୍ରକାଶ କଲ ଦେବକାନ୍ତ ।

କେଉଁ ଜିନିଷ ଶୁଭ, କ'ଣ ଅଶୁଭ, ଶ୍ରାବଣୀ ଅନୁଭୂତିସମ୍ପନ୍ନ ପୁରୁଖା ଲୋକଙ୍କ ଢାଣିଲ ଢଙ୍ଗରେ ଚର୍ଚ୍ଚା କରୁଥାଏ । ଅମଙ୍ଗଳ ଲକ୍ଷଣ ଦୃଶ୍ୟ ହେଲେ ତା'ର ପ୍ରତିକାର ବ୍ୟବସ୍ଥା କ'ଣ ସେ ବିଷୟରେ ମଧ୍ୟ ଗପି ଚାଲିଥାଏ, ସ୍ତୀର ଗାଉଁଲି ଜ୍ଞାନକୁ ପ୍ରଶଂସା କରୁଥିଲ ଦେବକାନ୍ତ ମନେ ମନେ । କହିଲ, ଶୀଘ୍ର ପାଦ ପକାଅ, ବେଗି ବେଗି ଚାଲ– ଝଡ ମାଡ଼ି ଆସିବ ।



Digitized by PPRACHIN, SOA

: ଏଇ ଦେଖ, ଭଦଭଦଳିଆ ପକ୍ଷୀ, ନୀଳ ଡେଣା ମେଲି ଉଠୁଛି । ଚାଲିବାବସ୍ଥାରେ ଆଙ୍ଗୁଠି ଠାରି ଦେଖାଇ ଦେଲା ଶ୍ରାବଣୀ । ଉଲ୍ଲସିତା ହୋଇ ଉଠିଲା ସେ ନିଜେ ।

ତାହେଲେ ଏଥର ଶୀଘ୍ର ଶୀଘ୍ର ଚାଲ । ତେଣେ ବସ୍ ଫେଲ ହୋଇଗଲେ ଅବସ୍ଥା ମୁସ୍କିଲ ହୋଇଯିବ ।

ବାଟଚଲା ଅବ୍ୟାହତ ଅଛି । ଗୃହର ବନ୍ଦୀଶାଳାରୁ ମୁକୁଳି ବହିର୍ଜଗତ ଦର୍ଶନ କରିବା ଶ୍ରାବଣୀ ପାଇଁ ହେଉଛି ଏହା ପ୍ରଥମ । ସେ ଯେମିତି ଗୋଟିଏ ନୂତନ ଭୂଖଣ୍ଡ ଆବିଷ୍କାର କରିବାକୁ ଯାଉଛି ! ପୋଷାମନା ପକ୍ଷୀଟିଏ ପିଞ୍ଜରାରୁ ବାହାରି ଅତି ଆନନ୍ଦରେ ଡେଣା ମେଲି ମୁକ୍ତ ଆକାଶରେ ପ୍ରଥମେ ଲକ୍ଷ୍ୟହୀନ ଭାବରେ ଯେମିତି ଏଣେ ତେଣେ ଉଡ଼ିବୁଲେ, ଶ୍ରାବଣୀ ଗ୍ରାମ୍ୟ ଜୀବନର ରକ୍ଷଣଶୀଳ ଶୃଙ୍ଖଳରୁ କିଛିଦିନ ଛୁଟି ପାଇ ଆସିଥିବାରୁ ସେ ପୁଲକିତା ହୋଇ ଉଠୁଥିଲା । ମନରେ ଉତ୍ସାହ ପୂରି ରହିଥିଲା ପୂର୍ଣ୍ଣ ମାତ୍ରାରେ । ପାଞ୍ଚ ମାଇଲ କଚ୍ଚା, ଖବଡାଖାବଡା ଗୋଡ଼ିଆ ରାସ୍ତା ପାଦରେ ଅତିକ୍ରମ କରିଥିଲେ ମଧ୍ୟ ସେ ଅନୁଭବ କରୁଥିଲା ଯେମିତି ସେ କିଛିବାଟ ଚାଲିନାହିଁ । ଏଇପରି ପଚାଶ ମାଇଲ ପଥଶ୍ରମ କଲେ ମଧ୍ୟ ସେ ଆଦୌ କଷ୍ଟ ଅନୁଭବ କରିବନି ବୋଲି ତା'ର ବିଶ୍ୱାସ ।

ସ୍ୱାର କଅଁଳ ପାଦ କ୍ଲାନ୍ତି ଅନୁଭବ କରୁଥିବ । ସେ କଷ୍ଟ ପାଉଥିବ, ଯା ଭବି ଦେବକାନ୍ତ ସହାନୁଭୂତିପୂର୍ଣ୍ଣ ଗଳାରେ ପଚାରୁଥିଲା– ଥକ୍କା ଲାଗୁଛି ? ଗୋଡ଼କୁ କଷ୍ଟ ହେଉଥିବ ନିଶ୍ଚୟ । ଚାଲ, ଗଛମୂଳେ ଟିକେ ବସି ପଡ଼ିବ ।

: ମୋର କିଛି ହେଉନାହିଁ । ତୁମକୁ କଷ୍ଟ ହେବଣି କୁହ । ଯେଉଁ ସୁଟ୍‌କେଶକୁ ବାଁରୁ ଡାହାଣ ହାତ, ଡାହାଣରୁ ବାଁ ହାତ ବାରମ୍ବାର କରୁଛ, ସେଥିରୁ ମୁଁ ଜାଣି ପାରୁଛି ତୁମେ କଷ୍ଟ ପାଉଛ । ମତେ ଦିଅ, ମୁଁ ଖଣ୍ଡେ ବାଟ ଧରିନିଏ......

: ଥାଉ ।



Digitized by PPRACHIN, SOA

ମନ ସତେଜ ଥିଲେ ଶ୍ରମଜନିତ ଦୈହିକ କ୍ଲାନ୍ତି ଜଣାପଡ଼େ ନାହିଁ । ମାନସିକ ଶାନ୍ତି ଶାରୀରିକ ତୃପ୍ତି ଅପେକ୍ଷା ଢେର ଗୁଣରେ ସନ୍ତୋଷ-ଦାୟକ । ଏକଥା ଶ୍ରାବଣୀର ଚଞ୍ଚଳଚଞ୍ଚଳ ମନରୁ ଜଣା ପଡ଼ୁଥିଲା ।

ପ୍ରାତଃ ସୂର୍ଯ୍ୟର ରକ୍ତାଭ ଶୋଭା ମନକୁ ମୋହିତ କରୁଥିଲା, ଆଖିକୁ ମୁଗ୍ଧ କରୁଥିଲା । ଶ୍ରାବଣୀ ତା କୁଆଁରୀ କାଳରେ ଅନେକ ଥର ସୂର୍ଯ୍ୟ ଉଇଁବାର ଦେଖିଛି, ବଗ ବଗୁଲୀ ଦଳ ବିଲରେ ବିଚରଣ କରୁଥିବାର ଲକ୍ଷ୍ୟ କରିଛି । ଗଛ୍ରା ଉପରୁ କପୋତ କପୋତୀ ଖାଦ୍ୟ ଖୁଣ୍ଟୁଥିବାର ଦେଖିଛି, ନୀଳ ଆକାଶକୁ ଗ୍ରହିଁଛି, ଖୋଲା ପବନ ଦେହରେ ବାଜିଛି, କିନ୍ତୁ ଆଜିର ଦୃଶ୍ୟ ତାକୁ ନୂଆ ଲାଗୁଛି । ସାଙ୍ଗରେ ଜୀବନସାଥୀ ଥିଲେ ଜୀବନ ପରିପୂର୍ଣ୍ଣ ମନେହୁଏ । ଦେହରେ ଅଜଣା ଶକ୍ତି ଜାତ ହୁଏ, ଚେତନାରେ ସ୍ୱାଧୀନତା ଜାଗି ଉଠେ । ସବୁକିଛି ସୁନ୍ଦର ଦିଶେ ।

ସେମାନେ ଗମାପଲ୍ଲୀ ଛକ ପହଞ୍ଚି ଗଲେଣି । ଦାଢ଼ିଆ ବରଗଛ ମୂଳେ ସୁଟ୍‌କେଶଟି ଥୋଇ ଦେଇ ଦେବକାନ୍ତ ମୁହଁରୁ ଝାଳ ପୋଛିଲା । ହସି ହସି ଶ୍ରାବଣୀ ତା ପାଖକୁ ଲାଗିଯାଇ କହିଲା– ହାଲିଆ ହୋଇ ପଡ଼ିଲ– ନା ? ମତେ ପୁଣି କହୁଥିଲ, ଗ୍ଲଲି ପାରିବନି...... । ଦେଖିଲଚ, ମୋର କେତେ ବଳ ? ଆମେ ପର ଗାଁ ଝିଅ । ଗାଁ ପାଣି ପବନରେ ବଢ଼ିଛୁ, ଦେହ ବଳୁଆ । ତମେ ସହରରେ ରହି ପାଠ ପଢ଼ିଲ, କାଠି ଖଣ୍ଡକୁ ଦି ଖଣ୍ଡ କରିନ । ଆମପରି କ'ଣ ତମେ କଷ୍ଟ ସହି ପାରିବ ?

ଏମିତି ଗପସପରେ ଦିହେଁ ମାତି ରହିଲେ । କିଛି ସମୟ ଅନ୍ତେ ଘର୍ଘର ନାଦ କରି ପ୍ରତୀକ୍ଷିତ ମଟର ଗାଡ଼ିଟି ଗମାପଲ୍ଲୀ ଛକରେ ହାଜର ହୋଇଗଲା । ବସ ଦିହରେ ଧୂଳିର ଗ୍ଦରଟିଏ । ଭିତରେ ଉତ୍କଟ ଘାନା-ଗନ୍ଧ । ଏହା ଗୋଟିଏ ଯାତ୍ରୀବାହୀ ବସ୍ ବୋଲି କେହି କହିବ ନାହିଁ । ମଣିଷ ତୁଳନାରେ ମାଲ ସଂଖ୍ୟା ବହୁ ଅଧିକ । ଜଗତଯାକର ଆଳେ-ବାଳେ ଜିନିଷ ସବୁ ଲଦା ହୋଇଛି ସେଥିରେ । ଛିଣ୍ଡା ମସିଣା ଠାରୁ



Digitized by PPRACHIN, SOA

ଆରମ୍ଭ କରି ଖଣ୍ଡିଆ ଛାଆଣି, ଦଦରା ମାଟିହାଣ୍ଡି ଆଉ ହାଟୁଆ ବେପାରୀମାନଙ୍କ ବେପାର ଜିନିଷ– ଲୁଗା ଗାଣ୍ଠି, ତେଜରାତି ସାମାନ । ସବୁଠାରୁ ଅଦ୍ଭୁତ ଯାତ୍ରୀମାନେ ଥିଲେ ଲୁଙ୍ଗିପିନ୍ଧା ପଠାଣର ପାଞ୍ଚ ଗୋଟି ଛେଳି, ହାଟମୁହାଁ ଗାଁ ଲୋକଙ୍କ ପଲେ କୁକୁଡ଼ା । ପୁରୁଣା ମଡେଲ ମଟର ଗାଡ଼ିଟି ଗ୍ରାମ୍ୟ ଜୀବନର ଗୋଟିଏ ଭ୍ରମମାଣ ପ୍ରଦର୍ଶନୀ ଭଳି ମନେ ହେଉଥିଲା ଦେବକାନ୍ତର । କଣ୍ଡକ୍ଟର କହିଲା– ଏମାନେ ଯାଉଛନ୍ତି ଭଗୀପୁର ହାଟକୁ । ବାଟ ଆଉ ସାତ ଆଠ କୋଶ । ସେଠାରେ ସମସ୍ତେ ଓହ୍ଲାରି ଯିବେ । ସେ ଯାଏଁ ଛିଡ଼ା ହୋଇ ଗେଞ୍ଜ ଫେଞ୍ଜରେ ଚାଲିଗଲେ ତା ପରେ ଆଉ ଅସୁବିଧା ହେବନି ।

ଅଗତ୍ୟା ସ୍ୱାମୀ ସ୍ତ୍ରୀ ଦିହେଁ ଠେଲାଠେଲି ହୋଇ ଭିତରେ ପଶିଲେ । ଦେବକାନ୍ତ ତା ବଳିଷ୍ଠ ଦୁଇ ବାହୁକୁ ମେଲାଇ ତାରି ଭିତରେ ଶ୍ରାବଣୀ ପାଇଁ ବୃତ୍ତାକାର ସ୍ଥାନଟିଏ ସୃଷ୍ଟି କଲା, ଯେପରି ସ୍ତ୍ରୀ ଦେହରେ କାହାର ସ୍ପର୍ଶ ନ ଲାଗେ । ଯାନର ଧକମ୍ ଧକ୍କା ଗତି ଦ୍ୱାରା ଶ୍ରାବଣୀ ଶରୀରରେ କାହାର ସ୍ପର୍ଶ ଲାଗିଲେ ଦେବକାନ୍ତ ମୁହଁକୁ ବିକୃତ କରି ବିରକ୍ତି ପ୍ରଦର୍ଶନ କରୁଥିଲା । ମା'ର ଉଷୁମ କୋଳରେ କୁକୁଡ଼ା ଚିଆଁଟିଏ ଆଶ୍ରୟ ନେଇ ନିରାପଦ ମଣିଲା ଭଳି ଶ୍ରାବଣୀ ସ୍ୱାମୀର ହାତଘେର ଭିତରେ ରହି ଅଭୟ ଅନୁଭବ କରୁଥିଲା । ପରିସ୍ଥିତିର ଦ୍ୱାହି ଦେଇ ତା ଉନ୍ନତ ବକ୍ଷକୁ ସ୍ୱାମୀ ସାମ୍ରାଜ୍ୟରେ ଲେଟି ଦେଇଥିଲା, ଜନଗହଳି ପାଇଁ ଭ୍ରୂକ୍ଷେପ ନଥିଲା ତା'ର । ପତିସଙ୍ଗ ପତ୍ନୀକୁ ନିର୍ଭୀକ କରାଇ ଦିଏ, ସତେ ଯେମିତି ସ୍ୱାମୀର ଶକ୍ତି ଅପରିମେୟ, ତାଠୁଁ ଶକ୍ତିଶାଳୀ ଆଉ କେହି ନାହିଁ ଏ ଜଗତରେ ।

ଦିନ ଅଧାଅଧି ବେଳକୁ ଗାଡ଼ି ଜଟଣୀ ଧରିଲା । ତରବର ହୋଇ ଦିହେଁ ଗାଡ଼ିରୁ ଓହ୍ଲାଇଲେ, ଚାଲିଲେ ଷ୍ଟେସନ ଭିତରକୁ । ଦେବକାନ୍ତ ବାଟ କଢ଼େଇ ନେଉଥାଏ ସବ୍‌ଜାନତା ଢଙ୍ଗରେ । ଏଠି ସର୍ବସାଧାରଣଙ୍କ ବିଶ୍ରାମାଗାର । ଲୋକଗୁଡ଼ିଏ ମେଞ୍ଚାମେଞ୍ଚି ହୋଇ ସିମେଣ୍ଟ ବେଞ୍ଚରେ ବସିଥାନ୍ତି, ଆଉ କେତେ ସିମେଣ୍ଟ ଚଟାଣରେ ଚେଇଁ ଶୋଇଥାନ୍ତି । ଦରିଦ୍ର



Digitized by PPRACHIN, SOA

ମା' ପାଖରେ ଇଙ୍ଗଳା ଛୁଆ କେତୁଟା ଏପାଖ ସେପାଖ ହେଉଥାନ୍ତି ଠିକ୍ ଘୁଷୁରୀ ପଲପରି । ସହରରେବି ଏମିତି ଅପରଚ୍ଛିନିଆ ଉଲୁଣି ମୁଣ୍ଡିଆ ହର୍ଷିତ ଲୋକ ଥାନ୍ତି ! ଶ୍ରାବଣୀର ଧାରଣା ଓଲଟ ପାଲଟ ହୋଇ ଯାଉଥାଏ ।

: ଲୋକମାନେ କନ୍ଦା ପିମ୍ପୁଡ଼ି ଭଳି ପଛକୁ-ପଛ ଧାଡ଼ି ବାନ୍ଧିଛନ୍ତି କାହିଁକି ?

: ଏଠି ଏମିତି ଟିକଟ ପାଇଁ ଧାଡ଼ି ବାନ୍ଧନ୍ତି । ଆକୁ କ୍ୟୁ କହନ୍ତି । ଯିଏ ଆଗ, ତାକୁ ଆଗ ଟିକଟ ମିଳିବ । ଆଧୁନିକ ଯୁଗର ଶୃଙ୍ଖଳା, ସହରୀ ସଭ୍ୟତା । ନୂଆ ଜିନିଷଟିଏ ଶିକ୍ଷାଦେବା ଭଙ୍ଗୀରେ କହିଲେ ଦେବକାନ୍ତ । ପୁଣି କହିଲେ– ମହିଳାମାନଙ୍କ ପାଇଁ ବିଶେଷ ସୁବିଧା ରହିଛି । ସେମାନଙ୍କୁ ଆଗେ ଟିକଟ ମିଳିବ । ତମେ ଧାଡ଼ିରେ ଠିଆ ହୁଅ......

: ନା ବାବା, ଏସବୁ ମୋ ଦ୍ୱାରା ହୋଇପାରିବ ନାହିଁ ।

: ଶିଖ ।

: ଦରକାର ନାହିଁ, ତୁମେ ଠିଆ ହୁଅ ।

ଧାଡ଼ିରେ ଛିଡ଼ା ହୋଇ ଦେବକାନ୍ତ କଲିକତା ପାଇଁ ଟିକଟ ସଂଗ୍ରହ କରିନେଲେ ।

ଦେବକାନ୍ତ ଏବଂ ଶ୍ରାବଣୀ ଲମ୍ବା ପ୍ଲାଟଫର୍ମରେ ପଦଚାରଣ କରୁ-ଥିଲେ । ଶ୍ରାବଣୀ ପିନ୍ଧିଥିଲେ କାରୁକାର୍ଯ୍ୟ ଖଚିତ ନୀଳରଙ୍ଗୀ ସିଫନ୍ ଜରଜେଟ୍ ଶାଢ଼ୀ । ତହିଁ ସାଙ୍ଗକୁ ମେଳ ଖାଉଥିବା ଅଙ୍ଗଭେଦୀ ବ୍ଲାଉଜ, ଶାଢ଼ୀର ଅନ୍ତରାଳରେ ସାୟା, ବ୍ରା । ଶାଢ଼ୀର ଫୁଟନ୍ତା ଡାଳଗୁଡ଼ିକ ଦିବାଲୋକରେ ମଧ୍ୟ ରାତ୍ରିର ଆଭାସ ଦେଉଥିଲେ । କାନରେ ଝୁଲୁଥିଲା ସୁନାର ବିକନ୍ଧ– ରିଙ୍ଗ ହଳେ, ବେକରେ ପିନ୍ଧିଥିଲେ ପୋହଳା ମାଳି । ସ୍ୱାମୀ ପିନ୍ଧାଇ



Digitized by PPRACHIN, SOA

ଦେଇଥିବା ଚଉଠି ଗତିର ମୁଦିଟି ଆଙ୍ଗୁଠିରେ ଚକ୍ ଚକ୍ କରୁଥିଲା । ଛୋଟ ନାକ ଫୁଲଟି ମୁହଁର ସୌନ୍ଦର୍ଯ୍ୟ ବୃଦ୍ଧି କରୁଥିଲା । ତା ସୁନ୍ଦର ମୁହଁ ଉପରୁ ଦୃଷ୍ଟି ଅନ୍ୟତ୍ର କରିବା ପାଇଁ ଦେବକାନ୍ତ ଆଦୌ ଇଛା କରୁ ନଥିଲା । ଯେତେ ଦେଖୁଥିଲେ ତୃପ୍ତି ଶେଷ ହେଉ ନଥିଲା ତା'ର । ଆଜିକାଲିର ଆଧୁନିକା ବୋଲାଉଥିବା କସମେଟିକ୍ ଢଙ୍ଗା ସହରୀ ପାଠୋଇ ଝିଅ ଶ୍ରାବଣୀର ସମକକ୍ଷ ହେଇଭଳି ତା'ର ମନେ ହେଉ ନଥିଲା । ସବୁ ସ୍ତ୍ରୀ କ'ଣ ସ୍ୱାମୀ ଆଖରେ ଏମିତି ସୁନ୍ଦର ଦିଶନ୍ତି ? ଯାହାହେଉ । ଏପରି ରୂପସୀ ରମଣୀଟିଏ ପାଖରେ ଥିବାରୁ ତା' ପୁରୁଷ ସୁଲଭ ଆତ୍ମମର୍ଯ୍ୟାଦାଟା ଆହୁରି ଫୁଲି ଉଠିଥିଲା । ମନେ ମନେ ସେ ଗର୍ବ ଅନୁଭବ କରୁଥିଲା । ମୁଖ ମଣ୍ଡଳରେ ଖେଳୁଥିଲା ଉଲ୍ଲାସର ଲହରୀ ।

ମୁସାଫିର୍‌ଖାନାରେ ଯାତ୍ରୀମାନଙ୍କର କୋଳାହଳ, ଫଳବିକାଳି ମାନଙ୍କର ଉଚ୍ଚ ସ୍ୱର, ରେଳ ଇଞ୍ଜିନ୍‌ର ଗୁରୁଗର୍ଜନରେ ଶ୍ରାବଣୀ ଚମକୃତ ହୋଇ ପଡ଼ୁଥିଲା । ବିସ୍ମୟ ବିସ୍ଫାରିତ ନେତ୍ରରେ ଗ୍ୱହିଁ ରହୁଥିଲା ପ୍ରଶସ୍ତ ପ୍ଲାଟଫର୍ମର ଶେଷଭାଗ ଆଡ଼କୁ । ତା'ର ଜିଜ୍ଞାସାକୁ ଆହୁରି ବର୍ଦ୍ଧିତ କରିବାକୁ ଯାଇ ଦେବକାନ୍ତ କହିଲା– ଯା ଠୁଁ ବି ବଡ଼ ପ୍ଲାଟଫର୍ମ ଅଛି ।

ଯା ଠୁଁ ବି ବଡ଼ !– ବଡ଼ ପାଟିରେ କହିଲା ଶ୍ରାବଣୀ । ଦେବକାନ୍ତ ଆଖିରେ ସଂଯତର ଇସାରା । ଆଳାପ କିଏ ଶୁଣିଲା କି ? ମୁହଁ ଚହଲାଇ ଅପେକ୍ଷାରତ ସହଯାତ୍ରୀମାନଙ୍କ ଆଡ଼କୁ କଣେଇ କଣେଇ ଲକ୍ଷ୍ୟକଲା ଦେବକାନ୍ତ । ନାଇଁ, କେହି କିଛି ଶୁଣି ନାହାନ୍ତି ବୋଧହୁଏ ।

ଇଙ୍ଗିତର ଅର୍ଥ ବୁଝି ପାରିଲା ନାହିଁ ଶ୍ରାବଣୀ । ପାଖକୁ ଲାଗି-ଆସି ଦେବକାନ୍ତ ତା' କାନରେ ଫୁସ୍ ଫୁସ୍ ହୋଇ କହିଲା– ଲୋକେ କହିବେ ମଫ, ତେଣୁ ଆସ୍ତେ କୁହ......

: ସହରୀ ଲୋକେ କ'ଣ ଆସ୍ତେ କଥାବାର୍ତ୍ତା କରନ୍ତି ?

: ହଁ ସେଇଆ । ସାମାନ୍ୟ ଗମ୍ଭୀର ହୋଇ କହିଲା ଦେବକାନ୍ତ ।



Digitized by PPRACHIN, SOA

ଶ୍ରାବଣୀ କିଛିକ୍ଷଣ ଚୁପ୍ ରହିଲ । ଦେବକାନ୍ତ ଅନାଶ୍ୱସ୍ତି ବୋଧ-କଲ । କଅଁଳ ମନରେ ଆଘାତ ଲଗିଲା ବୋଧେ । ହଠାତ୍ କାହିଁକି ଉତ୍ସାହ ଜଣା ପଡ଼ିଗଲା ? ମନ ବଦଳେଇବା ପାଇଁ ନିଜଆଡ଼ୁ ନୀରବତା ଭଙ୍ଗି କହିଲା ଦେବକାନ୍ତ– ତୁମକୁ ଭୋକ ଲାଗିଲାଣି ?

ଶ୍ରାବଣୀ ମନାକଲା, ପାଟିରେ ନୁହେଁ, ଅଭିମାନିଆ ମୁହଁର ଭଙ୍ଗୀରେ ।

: ନିଶ୍ଚୟ ଭୋକ ହେବଣି । କ'ଣ ଗୁଣ୍ଡେ ପାହାନ୍ତା ପହରୁ ମୁହଁରେ ଗୁଞ୍ଜି ଆସିଥିଲ ଯେ, ଏତେ ବେଳଯାଏ ଆଉ କ'ଣ ପେଟରେ ଅଛି ? ହାଲିଆ ଲାଗୁଥିବ । ଚାଲ କ୍ୟାଣ୍ଟିନ୍‌ରୁ ଖାଇ ଆସିବା ।

ଦେବକାନ୍ତ ଜାଣି ପାରିଥିଲା, ଶ୍ରାବଣୀ ଅଳ୍ପାହାରୀ । ଭୋକରେ ହଁସା ଉଡ଼ି ଯାଉଥିଲେ ମଧ୍ୟ ତା ଆଡ଼ୁ କେବେ ଖାଇବାକୁ କହିବନି, ଏତ ଘର ନୁହେଁ ଯେ ଟିକିନୀ କିମ୍ବା ବୋଉ ଜବରଦସ୍ତ ତା ପାଟିରେ ଖାଦ୍ୟ ଗୁଞ୍ଜି ଦେବେ !

ଶ୍ରାବଣୀ ମନା କରିବା ସତ୍ତ୍ୱେ ଦେବକାନ୍ତ ତାକୁ ଟାଣି ନେଇଗଲା ଉପର ମହଲା ଭୋଜନ କକ୍ଷ ଭିତରକୁ । ପୁଣି ମୁହଁରେ ପ୍ରସ୍ଫୁଟିତ ହେଲା ସୁନ୍ଦର ସଲଜ ହସ, ଯେଉଁଥିରେ ଦେବକାନ୍ତ ପାଇଁ ଆକର୍ଷଣ ଭରି ରହିଥିଲା ।

ରେଳବାଇ ଭୋଜନାଳୟଟି ସଜ୍ଜିତ କୋଠରୀଟିଏ– ପରିଷ୍କାର ଏବଂ ପରିଚ୍ଛନ୍ନ । କେଉଁଠି ମଳି ଟିକିଏ ହେଲେ ନାହିଁ, ମାଛିଟିଏବି ନାହିଁ । ଟେବୁଲ ଚୌକୀରେ ଖାନା । ଏହା ହେଉଛି ଉଚ୍ଚ ଶ୍ରେଣୀର ଭୋଜନାଳୟ । ପଇସାବାଲା ବଡ଼ଲୋକମାନେ ଏଠାକୁ ଆସନ୍ତି, ବୁଝାଇ ଦେଲା ଦେବକାନ୍ତ ।

ପରିବେଷଣ ଟେବୁଲ ଉପରେ ଆଙ୍ଗୁଠି ମାରି ଶ୍ରାବଣୀ ପଚାରିଲା– ଏଇଟା କ'ଣ ଶଙ୍ଖମଲ୍‌ମଲ୍ ପଥର ?



Digitized by PPRACHIN, SOA

: ହଁ ।

: ବହୁତ ଦାମ ହୋଇଥିବ ନିଶ୍ଚୟ ।

: ଯାଠୁ ବଳି ଦାମୀ ଜିନିଷ ସବୁ ଅଛି । ଆଖି ଖୋସି ହୋଇଯିବ, ମନ ଲାଖି ରହିବ । ବୁଲିବାକୁ ଆସିଛ, ଦେଖିବାକୁ ଆସିଛ, ରୁହ, ସବୁ ଦେଖିବ । ଏତ ଆରମ୍ଭ ମାତ୍ର...... ଆଗେ ରଜା ମହାରଜାମାନେ ଏସବୁ ସୌଖୀନ ଜିନିଷ ବ୍ୟବହାର କରୁଥିଲେ । ଏବେ କିନ୍ତୁ ସବୁଲୋକ କରୁଛନ୍ତି । ସର୍ବସାଧାରଣଙ୍କ ଯୁଗ । ଯାହାର ପଇସା ହେଲା, ସେ ବିଳାସରେ ବଞ୍ଚିଲା, ଜୀବନକୁ ଉପଭୋଗ କଲା ।

ସ୍ୱାମୀର ବକ୍ତବ୍ୟକୁ ମୁଗ୍ଧ ଚିତ୍ତରେ ପିଇଯାଉଥିଲା ଶ୍ରାବଣୀ । ପରିଗ୍ରରକ ଆସି ଛିଡ଼ା ହେଲା ଫର୍ମାସୀ ନେବା ଉଦ୍ଦେଶ୍ୟରେ । ଶ୍ରାବଣୀର ଦୁଇନେତ୍ର ବିସ୍ତାରିତ ହେବା ସମୟରେ ପରିଗ୍ରରକକୁ ବରାଦ ଦେଲା ଦେବକାନ୍ତ– ଅଣ୍ଡା ଆମଲେଟ୍ ଏବଂ ପାଉଁରୁଟି ଟୋଷ୍ଟ ।

: ଏ ମା, ଅଣ୍ଡା ! ମୁଁ ଅଣ୍ଡା ଆଦୌ ଛୁଇଁବି ନାହିଁ ।

: କାହିଁକି ?

ଲାଜେଇ ଗଲା ଶ୍ରାବଣୀ । ଚୁପ୍ ଚୁପ୍ କରି ଦେବକାନ୍ତ କାନରେ କହିଲା– ବିବାହିତ ନାରୀ ଡିମ୍ବ ଛୁଇଁବା ନିଷେଧ ।

ଦେବକାନ୍ତ ହସି ହସି ବେଦମ୍ ହୋଇଗଲା । ହିନ୍ଦୁ ସ୍ତ୍ରୀର ଧର୍ମ-ତତ୍ତ୍ୱ । ସେଥିରେ ଆଉ ହସ୍ତକ୍ଷେପନକରି ଦେବକାନ୍ତ ବରାଦରେ ପରିବର୍ତ୍ତନ କଲା– ମୋ ପାଇଁ ଡବଲ୍ ଆମ୍ଲେଟ୍ ଏବଂ ବ୍ରେଡ୍ ଟୋଷ୍ଟ । ତାଙ୍କ ପାଇଁ ଚିଙ୍ଗୁଡ଼ି ପକୋଡ଼ା ଏବଂ ବିରିଆନି ।

ଶବ୍ଦଗୁଡ଼ିକ କାନକୁ ଓଜନିଆ ଏବଂ ଅବୁଝା ଶୁଭିଲେ ମଧ୍ୟ ଶ୍ରାବଣୀ ଧରି ପାରିଥିଲା ଚିଙ୍ଗୁଡ଼ିର ଅର୍ଥ । ତତ୍‌କ୍ଷଣାତ୍ ପ୍ରତିବାଦ କଲା– ଆଜି ଗୁରୁବାର, ଆମିଷ ଖାଇବା ମନା, ଲକ୍ଷ୍ମୀଛଡ଼ା କଥା......



Digitized by PPRACHIN, SOA

ଏତେ କଥା, ନୀତି ନୀୟମ, ଧର୍ମଧାରଣା ଶ୍ରାବଣୀ ଜାଣିଲା କିପରି ଏଇ ଅଳ୍ପ ବୟସରୁ ? ଦେବକାନ୍ତ ଆଶ୍ଚର୍ଯ୍ୟ ହେଉଥିଲା, ମନେ ମନେ ମୁଗ୍ଧ ହେଉଥିଲା । ଶ୍ରାବଣୀ ନାରୀଧର୍ମ ପାଳନ କରୁଛି ଚିଜେ ଚିଜେ । ସେ ଖାଇଲା ଖାଣ୍ଟି ଓଡ଼ିଆ ଖାଦ୍ୟ– ବରା ଏବଂ ତା ସାଙ୍ଗକୁ ଆଳୁଦମ୍ । କଣ୍ଟା ଗ୍ଲମ୍ଚର ସାହାଯ୍ୟ ନେଇ ଦେବକାନ୍ତ ବିଲତି କାଇଦାରେ ଆସ୍ୱାଦନ କରୁଥିଲା ବେଳେ ଶ୍ରାବଣୀ ସ୍ୱାମୀ ଙ୍କଙ୍କୁ ଟେବୁଲ ସନ୍ଧି ଦେଇ ଚିମୁଟି ଦେଲା । ଦେବକାନ୍ତ ଆଖିରେ ଜବାବ ଦେଲା । ଶ୍ରାବଣୀର ସଫେଦ ଦାନ୍ତଗୁଡ଼ିକ ସଜ ମଲ୍ଲୀଫୁଲ ଭଳି ଚହଟି ଉଠିଲେ । ମନରେ ଖେଳି ଯାଉଥିଲା ଅନେକ ଉନାଦନା । ଏତିକିବେଳେ ବାଜି ଉଠିଲା ପ୍ଲାଟଫର୍ମର ଘଣ୍ଟି, ଗାଡ଼ି ଷ୍ଟେସନରେ ପହଞ୍ଚିବାର ଅନ୍ତିମ ସୂଚନା । ଦେବକାନ୍ତ କହିଲା– ଟ୍ରେନ୍ ଆସିଗଲା । ଧଡ଼ପଡ଼ ହୋଇ ଦୁହେଁ କ୍ୟାଣ୍ଟିନ୍ ଛାଡ଼ିଲେ ।

ଲୋକଙ୍କ ଭିଡ଼ ଆହୁରି ଜମି ଉଠିଥିଲା ସମୁଦ୍ରର ଜୁଆର ପରି । ଲୋକାଧିକ୍ୟରେ ପ୍ଲାଟଫର୍ମ ହୋଇଥିଲା କୋଳାହଳମୟ । ବିକ୍ରେତାମାନେ ଠେଲା ଗାଡ଼ିରେ ନିଜ ନିଜ ବିକ୍ରୟ ସାମଗ୍ରୀ ଯନ୍ତ୍ରର ସହ ସଜାଡ଼ି ଥିଲେ । କୁଲିମାନେ ଇତଃସ୍ତତଃ ଧାଁ ଧପଡ଼ କରୁଥିଲେ । ଯାତ୍ରୀମାନେ ନିଜ ନିଜ ଆସବାବପତ୍ର ଧରି ଗାଡ଼ି ଚଢ଼ିବାକୁ ବ୍ୟଗ୍ର । ଶ୍ରାବଣୀକୁ ସତର୍କ ରହିବାକୁ ଦେବକାନ୍ତ ଆଉଥରେ ଚେତାଇ ଦେଲା ।

ଗମ୍ଭୀର ସ୍ୱର ମେଲଇ ମାଡ୍ରାସ-ହାବଡ଼ା କ୍ଷିପ୍ରଗାମୀ ରେଳଗାଡ଼ି ପ୍ରବେଶକଲା ପ୍ଲାଟଫର୍ମରେ । ମଟରଗାଡ଼ିରେ ଯେଉଁ ଅବସ୍ଥା, ଏଠାରେ ତତୋଽଧିକ । ଠେଲାଠେଲି ହୋଇ ସେମାନେ ପଶିଲେ ସାଧାରଣ ଶ୍ରେଣୀ ଡବାରେ । କେଉଁଠି ଟିକିଏ ହେଲେ ସ୍ଥାନ ଖାଲି ନାହିଁ । ଛିଡ଼ାହବା ଛଡ଼ା ଅନ୍ୟ ଉପାୟ ନଥିଲା ।

କିଛି ସମୟ ଦମ୍‌ନେଇ ଗାଡ଼ି ପୁଣି ଗତି ଆରମ୍ଭ କଲା । କ୍ରମେ ଗତି ହେଲା ତୀବ୍ର । ଷ୍ଟେସନ ପରେ ଷ୍ଟେସନ, ଛୋଟ ଏବଂ ବଡ଼ । ବସିବା



Digitized by PPRACHIN, SOA

ପାଇଁ ଯାଗାଟିଏ ମିଳିଗଲା ଯୋଗକୁ । ଗୋଟିକିଆ ବଡ଼ ସିଟ୍‌ରେ ଯାକି-ଯୁକି ହୋଇ ବସିଲେ ସ୍ୱାମୀ ସ୍ତ୍ରୀ ଦୁହେଁ । ସହଯାତ୍ରୀମାନଙ୍କ ଆଖିକୁ ଦିଶୁଥିଲା, ଗଛ ଡାଳରେ ବିପରୀତ ଲିଙ୍ଗର ଦୁଇଟି ବିହଙ୍ଗ ପର ଝାଡ଼ୁ-ଥିଲେ, ସ୍ନେହ ବିନିମୟ କରୁଥିଲେ । ଦର୍ଶକ ଦୃଷ୍ଟିରେ ଦୁହିଁଙ୍କ ଯୋଡ଼ି ଦିଶୁଥିଲା ଅପୂର୍ବ, ମାପଚୁପ ହୋଇ ମେଳ ଖାଇଲା ପରି– ହଂସ ମିଥୁନର ମେଳନ ।

ହେଇ, ଭୁବନେଶ୍ୱର ।

ରେଳ ଡବାର ଝରକାବାଟେ ଶ୍ରାବଣୀ ମୁଣ୍ଡ ନୁଆଁଇ ଦେଖିଲା– ଆକାଶ ଭିତରକୁ ମୁଣ୍ଡ ଟେକିଛି ବୃହତ୍ ଲିଙ୍ଗରାଜ ମନ୍ଦିର । ଚୂଡ଼ାରେ ମନ୍ଦିରର ନାଲି ନେତ ସୁଦର୍ଶନ । ଦୁଇହାତ ଟେକି ପ୍ରଣାମ କଲା ଶ୍ରାବଣୀ । ଦେବକାନ୍ତ ଶିକ୍ଷାପ୍ରଦାନ ଭଙ୍ଗୀରେ ସଂକ୍ଷିପ୍ତ ଭାଷଣଟିଏ ଦେଉଥିଲା ସ୍ଥାନର ପ୍ରସିଦ୍ଧି ସମ୍ପର୍କରେ । ମନ୍ଦିର ମାଳିନୀ ଭୁବନେଶ୍ୱର ନଗରୀ, ଓଡ଼ିଶାର ନୂତନ ରାଜଧାନୀ । ଓଡ଼ିଶା ମାନଚିତ୍ରରେ ଭୁବନେଶ୍ୱର ସ୍ଥାନ ପ୍ରଥମ ଏବଂ ପ୍ରଧାନ । ଓଡ଼ିଶାର ଐତିହାସିକ ନଗରୀ, ପୃଥିବୀର ପୁରାତନ ଶୈବପୀଠ, ପ୍ରତ୍ନତତ୍ତ୍ୱର ଖଣି । ଛତୁ ଫୁଟିଲା ପରି ଦେଉଳ, ଭାରତରେ କାହିଁକି, ବିଶ୍ୱର କେଉଁଠି ହେଲେ ଏତେ ମନ୍ଦିର ନାହିଁ । ଭୁବନେଶ୍ୱର ବିନା ଓଡ଼ିଶାର ଇତିହାସ ଅପୂର୍ଣ୍ଣ । ଦେଖ, ଦକ୍ଷିଣ ପୂର୍ବ କୋଣରେ ଧଉଳି ଗିରିର ଧଳା ଶାନ୍ତି ସ୍ତୁପଟି ଦିଶୁଛି ସ୍ପଷ୍ଟଭାବେ । ସେଠାର ଶିଳାରେ ଖୋଦିତ ହୋଇ ରହିଛି ଅଶୋକଙ୍କ ଅନୁଶାସନ, ବୌଦ୍ଧକୀର୍ତ୍ତି, ଶାନ୍ତିର ବାଣୀ । ଅଶୋକଙ୍କ କଥା ଶୁଣିଛ ? କଳିଙ୍ଗ ମାଟିର କି ରହସ୍ୟ, ଅଲୌକିକ ଶକ୍ତି ! ଏଇ ମାଟିର ସ୍ପର୍ଶରେ ନରହନ୍ତା ଅଶୋକ ଦେବତା ବନି ପାରିଥିଲା ଯେମିତି ଦସ୍ୟୁ ରତ୍ନାକର ମହର୍ଷି ବାଲ୍ମିକୀ ହୋଇ ପାରି-ଥିଲା । ଦେଖ, ପଶ୍ଚିମ ଦିଗରେ ଦ୍ୱାରପାଳ ଭଳି ଭୁବନେଶ୍ୱର ସହରକୁ ଜଗି ରହିଛି ଖଣ୍ଡଗିରି ଉଦୟଗିରି । ଓଡ଼ିଆ ସମ୍ରାଟ ଖାରବେଳଙ୍କର ଧର୍ମାନୁ-ଶାସନ– ଜୈନମାନଙ୍କ ବାର୍ତ୍ତା । ଜୀବପ୍ରତି ଦୟା, ମୋହ, ତ୍ୟାଗ, ଆତ୍ମସଂଯମର ଭାବଧାରା ଆଜି ମଧ୍ୟ ସ୍ପଷ୍ଟଭାବେ ପ୍ରସ୍ତରିତ ।



Digitized by PPRACHIN, SOA

ସେପଟେ କେଦାର ଗୌରୀ ମନ୍ଦିର, ଯେଉଁଠି ନାରୀ-ପୁରୁଷର ଐକାନ୍ତିକ ପ୍ରେମ ଅମରତ୍ୱ ଲାଭ କରିଛି । ସେମାନଙ୍କ ଅମର କାହାଣୀ ବ୍ରହ୍ମାଣ୍ଡରେ ବିରଳ । ସେଇ ଅଞ୍ଚଳରେ ରାଜରାଣୀ ମନ୍ଦିର, ମୁକ୍ତେଶ୍ୱର ମନ୍ଦିର, ଯେଉଁଠି ସୂକ୍ଷ୍ମାତି ସୂକ୍ଷ୍ମ କଳା– ସ୍ଥାପତ୍ୟ ପୃଥିବୀରେ ଶୀର୍ଷସ୍ଥାନ ଅଧିକାର କରିଛି । ଏଠି ରହିଛି ମରିଚି କୁଣ୍ଡ, ପାତାଳପୁରରୁ ଅହର୍ନିଶ ଝରୁଛି ପବିତ୍ର ପାଣି– ମଣିଷ ପାଇଁ ଅମୃତ । ସ୍ତ୍ରୀ ଲୋକମାନେ ମରିଚି କୁଣ୍ଡରେ ସ୍ନାନ କଲେ ସନ୍ତାନ ସମ୍ଭବା ହୁଅନ୍ତି ।

ଶୀତେଇ ଯାଇ ଶ୍ରାବଣୀ କହିଲା– ସତେ !

ରେଳ ଦ୍ରୁତ ଗତିରେ ଚାଲିଥାଏ ଆଗକୁ । ଦେଖୁଛ କଟକ ସହର ? କାଠଯୋଡ଼ି କୂଳରେ ଧାରେ ଧାରେ କୋଠାଘରଗୁଡ଼ିକ ଫୁଲମାଳ ଭଳି ସଜ୍ଜିତ । ଆର ପାଖରେ ମହାନଦୀ । ଦୁଇ ନଦୀର ମଧ୍ୟସ୍ଥଳୀରେ ଓଡ଼ିଶାର ପୁରାତନ ସହର– କଟକ । ଆମ ରାଜ୍ୟର ପୁରୁଣା ରାଜଧାନୀ ଥିଲା କଟକ । ଓଡ଼ିଶାର ସବୁଠୁଁ ବଡ଼ ସହର, ପଣ୍ୟଦ୍ରବ୍ୟ ପରିପୂର୍ଣ୍ଣ ଐତିହାସିକ ନଗରୀ ।

‘କଟକ’ ମାନେ ତ ନଗର ; ଯା ନାଁ କାହିଁକି କଟକ ଦିଆହେଲା ?– ପଚାରିଲା ଶ୍ରାବଣୀ ଜିଜ୍ଞାସୁ ବଦନରେ ।

ତେବେ ଇତିହାସ ଶୁଣ । ଏହାର ନାମ ପହିଲେ ଥିଲା ବାରଣସୀ– କଟକ । ବାରଣସୀ ବୋଲି କାହିଁକି କୁହାଗଲା ତାର ମଧ୍ୟ କାରଣ ଅଛି । କେଶରୀ ବଂଶର ରାଜା ନୃପତ କେଶରୀ ଏକ ସୁରମ୍ୟ ସ୍ଥାନରେ ରାଜ୍ୟର ରାଜଧାନୀ ପ୍ରତିଷ୍ଠା କରିବା ପାଇଁ ଇଚ୍ଛା କଲେ । କେଉଁଠି କରିବେ ? ତାଙ୍କ ମନରେ ବାରଣସୀ ଥିଲା ଏକ ଆଦର୍ଶ ସହର । ଧରାରେ ସର୍ବୋତ୍କୃଷ୍ଟ ଧର୍ମପୀଠ । ହଜାର ହଜାର ବର୍ଷ ପୂର୍ବେ ସମ୍ରାଟ ଦେବଦାସ ଏହି ନଗରୀର ପ୍ରତିଷ୍ଠାତା । ବାରଣା ଓ ଅସୀ ଦୁଇଟି ନାମଧେୟ ନଦୀର ରାଜା ସଙ୍ଗମ ସ୍ଥଳରେ ସହରର ଉତ୍ପତ୍ତି ଏବଂ ଅବସ୍ଥିତି । ବାରଣସୀର



Digitized by PPRACHIN, SOA

ପୂର୍ବନାମ କାଶୀ । କୁହାଯାଏ, କାଶୀ ଭଗବାନ ଶଙ୍କରଙ୍କ ତ୍ରିଶୂଳ ଉପରେ ପ୍ରତିଷ୍ଠିତ । ପୃଥିବୀର ପ୍ରାଚୀନତମ ନଗରୀ ହେଉଛି କାଶୀ ଏବଂ ସପ୍ତପୁରୀ ମଧ୍ୟରେ ଏହାହିଁ ପ୍ରଥମ ପୁରୀ । ପୁରାଣରେ ଅଛି, ରାଜା ହରିଶ୍ଚନ୍ଦ୍ର ଯେତେବେଳେ ସର୍ବସ୍ୱ ଦାନକରି ନିଃସ୍ୱ ହୋଇଥିଲେ, ମହର୍ଷି ନାରଦ ପଚାରିଲେ– ଆପଣତ ସବୁ ଦାନ କରିଦେଲେ, ନିଜେ ରହିବେ କେଉଁଠି ? ହରିଶ୍ଚନ୍ଦ୍ର ହସି ହସି ଉତ୍ତର ଦେଇଥିଲେ– ଦେବପୀଠ ବାରଣସୀରେ, ମର୍ତ୍ତ୍ୟରେ ଏହା ବିଷ୍ଣୁଙ୍କର ଆଳୟ, ଦେବତାମାନଙ୍କ ସ୍ଥାନ, ଏଣୁ ଏହା ମୋର ସମ୍ପତ୍ତି ନୁହେଁ, ତେଣୁ ଦାନରେ ଅନ୍ତର୍ଭୁକ୍ତ ନୁହେ । ମୁଁ ସେଇଠି ଯାଇ ବାସ କରିବି । ଯେଉଁଠାରେ ପରିସ୍ଥିତି କ୍ରମେ ହରିଶ୍ଚନ୍ଦ୍ର ନିଜର ସ୍ତ୍ରୀ ସହିତ ପୁନର୍ମିଳନ ଘଟିଥିଲା ଏବଂ ମୃତ ପୁତ୍ରର ଜୀବନ ଫେରି ପାଇ-ଥିଲେ ସେହିସ୍ଥାନ ଏବେ ବି 'ହରିଶ୍ଚନ୍ଦ୍ର ଘାଟ' ନାମରେ କଥିତ ।

ଅତଏବ ପୁରାଣ ପ୍ରସିଦ୍ଧ ବାରଣସୀ ପରି ସହରଟିଏ ତୋଳିବା ପାଇଁ ନୃପତ କେଶରୀଙ୍କ ପ୍ରବଳ ଇଚ୍ଛା । ମହାନଦୀ, କାଠଯୋଡ଼ୀ ଏବଂ ବିରୂପାର ତ୍ରିକୋଣ ଭୂମିରେ ଅବସ୍ଥିତ ଅଞ୍ଚଳଟି ତାଙ୍କର ମନୋନୀତ ହୋଇଥିଲା । ସ୍ଥାନଟି ଅନେକାଂଶରେ ବାରଣସୀ ସହରର ଭୌଗୋଳିକ ସ୍ଥିତି ସହିତ ମେଳ ଖାଉଛି । ଏହିଠି ସେ ସୁନ୍ଦର ସହରଟିଏ ନିର୍ମାଣ କଲେ । ସହରର ନାମକରଣ କଲେ, ବାରଣସୀ– କଟକ । କାଳକ୍ରମେ 'ବାରଣସୀ' 'ବିଡ଼ାନାସୀ' ନାମରେ ଅପଭ୍ରଂଶ ହେଲା । ପୁଣି ବିଡ଼ାନାସୀ ହୋଇଗଲା ଗୌଣ, ଜୀର୍ଣ୍ଣ ଏବଂ ପରିତ୍ୟକ୍ତ । ପ୍ରାଧାନ୍ୟ ଲଭିଲା 'କଟକ' ନାମଟି । ଆଜିର ଏହି କଟକ ଓଡ଼ିଶାର ଗୌରବ ମୁଣ୍ଡେଇଛି, ଇତିହାସର ପୃଷ୍ଠା ମଣ୍ଡନ କରିଛି.....

ହେଇଟି,

ବାଲେଶ୍ୱର ଆସୁଛି, ଦେଖୁଛ ? କହିଲା ଦେବକାନ୍ତ ।

: ହଁ, ବଡ଼ ସହରଟିଏ ତ !



Digitized by PPRACHIN, SOA

ବାଲେଶ୍ୱରର ବି ଐତିହ୍ୟ ଅଛି । ଏବେ ରେଳ ଘଣ୍ଟା ପାଖେ ପାଖେ ଶିଳ୍ପାଞ୍ଚଳ ଗଢ଼ି ଉଠିଛି । ଗଗନକୁ ଚିମିନିରୁ ଧୂଆଁ ଉଠୁଛି, ଶିଳ୍ପ ସଭ୍ୟତା ପ୍ରଚାର କରୁଛି । ପହିଲେ ଏଇ ବାଲେଶ୍ୱର ଥିଲା ୟୁରୋ-ପୀୟମାନଙ୍କ ଆଡ୍‌ଡାଘର । ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗରେ ବାଲେଶ୍ୱର ଥିଲା ପର୍ତ୍ତୁଗୀଜ, ଓଲନ୍ଦାଜ ଏବଂ ଇଂରେଜମାନଙ୍କ ପ୍ରବଳ ପ୍ରତି-ଦ୍ୱନ୍ଦ୍ୱିତାର ଭୂମି । ସମସ୍ତେ ଓହରି ଗଲେ, କେବଳ ପ୍ରତିଷ୍ଠା ଲାଭ କଲେ ଇଂରେଜମାନେ । ସେମାନେ ମଧ୍ୟ ବେଶୀ ବର୍ଷ ତିଷ୍ଠି ପାରି ନଥିଲେ । ମାରାତ୍ମକ ମେଲେରିଆ ରୋଗର ପ୍ରାଦୁର୍ଭାବରେ ପ୍ରାଣତ୍ୟାଗ କଲେ ସହସ୍ରା-ଧିକ ଗୋରାଲୋକ । ଏଠା ଜଳବାୟୁର କ୍ରୂରତା ଏବଂ କଠୋରତା ସହ୍ୟ ନକରି ପାରି ସବୁଦିନ ପାଇଁ ପରିତ୍ୟାଗ କଲେ ବାଲେଶ୍ୱର । ମନୋନି-ବେଶ କଲେ ଯାଇ ସୂତାନଟିରେ ଯାହାକୁ ଆଜି ଆମେ ଆଧୁନିକ କଲିକତା ବୋଲି କହୁଛେଁ । ସେତେବେଳେ ଏ ଅଞ୍ଚଳକୁ ମେଲେରିଆ ଗ୍ରାସ କରି ନ ଥିଲେ, ବାଲେଶ୍ୱର ଆଜି କଲିକତା ହୋଇ ବିଖ୍ୟାତ ଲାଭ କରିଥାନ୍ତା । ବିଦେଶୀ ବ୍ୟକ୍ତିମାନଙ୍କ ବସ୍ତିଗୁଡ଼ିକର ନାମ ଏବେବି ରହିଛି– ଓଲନ୍ଦାଜ ସାହି, ଫିରିଙ୍ଗିପଡ଼ା, ଦୀନାମାର ଡିଙ୍ଗା ଇତ୍ୟାଦି । ଆଜି ଯେଉଁଠି କିଲଟରୀ ଅଛି, ତାହା ଥିଲା ଗୋରାମାନଙ୍କ ଲୁଣ ଗୋଦାମ । ଦେଶର ଲବଣ ସତ୍ୟାଗ୍ରହ ଆନ୍ଦୋଳନରେ ବାଲେଶ୍ୱରର ସ୍ଥାନ ଅଦ୍ୱିତୀୟ । କର୍ପୂର ନାହିଁ, କନା ଖଣ୍ଡିକ ପଡ଼ି ରହିଛି ବିସ୍ମୃତ ପରିତ୍ୟକ୍ତ ଅତୀତର ଚିହ୍ନ ସ୍ୱରୂପ ।

ଶ୍ରାବଣୀର ଅନୁଭୂତି ଅଧିକରୁ ଅଧିକ ହେଉଥିଲା । ସ୍ୱାମୀଙ୍କର ଗଭୀର ଜ୍ଞାନକୁ ପ୍ରଶଂସା କରୁଥିଲା ମନେ ମନେ । କଥାଗୁଡ଼ିକ ଟିପି ନେଉଥିଲା ତା' ସ୍ମୃତି ପୃଷ୍ଠାରେ । ତାକୁ ଲାଗୁଛି ସବୁ ନୂଆ, ଆଶ୍ଚର୍ଯ୍ୟ । ସ୍ତର ସ୍ତର ହୋଇ ମଣିଷ ସମାଜ ଗଢ଼ି ଉଠିଛି କାଳର ଗତି ସଙ୍ଗେ ତାଳ ଦେଇ । ଆଦିରୁ ଅନାଦି ପର୍ଯ୍ୟନ୍ତ ମାନବ ସଭ୍ୟତାର ଗତି । ସହର ଜନ୍ମୁଛି, ପୁଣି ଲୀନ ହୋଇ ଯାଇଛି କାଳର ସେଇ ଜୀର୍ଣ୍ଣକାରୀ ପୃଷ୍ଠା ଭିତରେ । ଏଇତ ମଣିଷର ଇତିହାସ ।



Digitized by PPRACHIN, SOA

ବେଗଗାମୀ ରେଳ ଗାଡ଼ି ଗ୍ଲଇଥିଲା ତା'ର ପାରମ୍ପରିକ ଗତିରେ । ଶ୍ରାବଣୀ ପ୍ରଶ୍ନର ଉତ୍ତର ଦେଇ ଦେଇ ଥକି ପଡ଼ୁଥିଲା ଦେବକାନ୍ତ । ଶ୍ରାବଣୀ କିନ୍ତୁ ଥିଲା ଅକ୍ଲାନ୍ତ, ଜିଜ୍ଞାସାକୁ କରୁଥିଲା ଦୀର୍ଘାୟିତ । ନିଦାଘ ପରେ ଗିରି ତଟିନୀରେ ପହିଲି ବନ୍ୟା ଆସିଛି । ନବ ଜୀବନର ଉନ୍ମାଦନା ଉପୁଜୁଛି । ଆବେଗଚାର ମାତ୍ରା ବୃଦ୍ଧି ହେତୁ ଆହାର ନିଦ୍ରା ପରିହାର କରିଛି, ସ୍ୱାସ୍ଥ୍ୟରକ୍ଷାର ସର୍ବନିମ୍ନ ସାଧାରଣ ନିୟମ ପାଶୋରି ଦେଇଛି । ସ୍ମୃତିଶକ୍ତି, ବାକ୍‌ଶକ୍ତି, ଶ୍ରବଣେନ୍ଦ୍ରିୟ ସବୁ ଯେମିତି ଜାଗ୍ରତ ହୋଇ ଉଠିଥିଲେ ତା'ଠି । ସ୍ୱାମୀ ସ୍ତ୍ରୀଙ୍କ କଥୋପ-କଥନ ଗ୍ଲଲିଥିଲା ଅବିରାମ ଭାବେ । ପାଟି କହୁଥିଲା, କାନ ଶୁଣୁଥିଲା— ଗଲାଇ ଯାକର କଥା, ଗାଁ ହାଲଗ୍ଲଲରୁ ଦେଶ ଶାସନ ପର୍ଯ୍ୟନ୍ତ ।......

ଏକ ଅନାମଧେୟ, ଅଖ୍ୟାତ ଷ୍ଟେସନରେ ରେଳଗାଡ଼ି ଅଟକି ରହିଲା । କାରଣ ଜାଣିବାର ଉପାୟ ନ ଥିଲା । ଝର୍କାବାଟେ ବାହାରକୁ ମୁହଁକାଢ଼ି ଚାହିଁଲା ଦେବକାନ୍ତ । ସହଯାତ୍ରୀଙ୍କୁ ପଗ୍ଲରିଲା— ଏଇଟା କୋଉଯାଗା ? ସଠିକ୍ ଉତ୍ତର ମିଳିଲା ନାହିଁ । ଦୂରରେ ଦେଖିଲା, ଦୁଇଟି ଖୁଣ୍ଟ ଉପରେ ଆଶ୍ରାକରି ଆୟତାକାର କାଷ୍ଠ ପଟାଟିଏ ସ୍ଥାନର ନାମ ଘୋଷଣା କରୁଛି । ଅକ୍ଷର ଗୁଡ଼ିକ ସ୍ପଷ୍ଟ ଦୃଶ୍ୟ ହେଉ ନଥିଲେ ମଧ୍ୟ ଦୃଷ୍ଟିଶକ୍ତିକୁ ଯଥାସମ୍ଭବ ବିସ୍ତାରିତ କରି ପଢ଼ିବାକୁ ଚେଷ୍ଟାକଲା— ଗଜଘାଟ । କେବେ କେଉଁଦିନ ଖବର କାଗଜରେ ପଢ଼ିଲା ପରି ମନେ ହେଲା— ଏଠା ଲୋକମାନଙ୍କ ବହୁଦିନର ଦାବୀ ପୂରଣ ସ୍ୱରୂପ ରେଳ ବିଭାଗ ମନ୍ତ୍ରୀ ଗଜଘାଟ ଠାରେ ନୂତନ ଷ୍ଟେସନ ଉଦ୍‌ଘାଟନ କରିଛନ୍ତି । ତେବେ ଷ୍ଟେସନଟି ସମ୍ପୂର୍ଣ୍ଣ ନୂଆ, ଆନୁଷଙ୍ଗିକ କାମ ଆରମ୍ଭ ହୋଇନାହିଁ । ବିଜୁଳିବତୀ ନାହିଁ, ଜଳଯୋଗାଣର ବ୍ୟବସ୍ଥା ନାହିଁ । ଖାଲି କାମଚଳିବା ପାଇଁ ଷ୍ଟେସନ ଘୋଷିତ ହୋଇଛି । କେବଳ ଧୀରଗାମୀ ପାସେଞ୍ଜର ଗାଡ଼ିପାଇଁ ନବନିର୍ମିତ ଷ୍ଟେସନଟି ଉଦ୍ଦିଷ୍ଟ । ଦ୍ରୁତଗାମୀ ଗାଡ଼ି ଏଠି ଅଟକେ ନାହିଁ । କୌଣସି ଅନିବାର୍ଯ୍ୟ କାରଣ ବଶତଃ ଗାଡ଼ି ଆଗକୁ ନଯିବା ପାଇଁ ଲାଇନ୍ ସିଗ୍‌ନାଲ ନିର୍ଦ୍ଦେଶ ଜାରି କରିଛି । ରେଳ ଆଗକୁ ଛୁଟିବା ମନା ସିଗ୍‌ନାଲ ଡାଉନ୍ ନହେବା ପର୍ଯ୍ୟନ୍ତ ।



Digitized by PPRACHIN, SOA

୯ରେ ଶ୍ରାବଣ

ମାଡ୍ରାଜ-ହାବଡ଼ା ଦ୍ରୁତଗାମୀ ରେଳଗାଡ଼ି, ସହସ୍ରାଧିକ ମାଇଲ ଚା'ର ଯାତ୍ରା । ନିର୍ଦ୍ଧାରିତ ସମୟ ଠାରୁ ଅନ୍ତତଃ ତିନି ଘଣ୍ଟା ବିଳମ୍ବରେ ଗତି କରୁଛି । ଭୀମକାୟ କୋଇଲା ଚାଳିତ ଇଞ୍ଜିନ୍ ପଛକୁ ଯାତ୍ରୀ ଡବା-ଗୁଡ଼ିକ ଗୁନ୍ଥା ହୋଇଛି ସଳଖ ଫୁଲ ମାଳଟିଏ ଭଳି । ଏଇ ନବ ଘୋଷିତ ଗଜଘାଟ ଷ୍ଟେସନରେ ଗୋଟିଏ ସରଳ-ରେଖାରେ ଗାଡ଼ିଟି ଦଣ୍ଡାୟମାନ । ରହି ରହିକା ଇଞ୍ଜିନ୍ ଗର୍ଜୁଛି, ବିଳମ୍ବକୁ ସୁଧାରିବା ପାଇଁ କର୍ତ୍ତୃପକ୍ଷଙ୍କୁ ଚେତାଇ ଦେଉଛି, ଗତି କରିବାକୁ ହୁଙ୍କାର ଦେଉଛି ।

ଏଠାରେ ଏମିତି କେତେ ସମୟ ଗାଡ଼ି ପଡ଼ି ରହିବ ? ଜବାବ ଦେବାପାଇଁ କେହି ନାହିଁ । ବରଂ ସହଯାତ୍ରୀମାନଙ୍କ ମୁହଁରେ ପୁଞ୍ଜିଭୂତ ବିରକ୍ତି ।

ଉପରଓଳି ସମୟ ରୌଦ୍ରତାପର ମାତ୍ରା ପ୍ରଶମିତ ହୋଇ ଆସୁ-ଥିଲେ ମଧ୍ୟ ଉତ୍ତାପର ପ୍ରଚଣ୍ଡତା ହ୍ରାସ ପାଇ ନାହିଁ । ଗଛର ପତ୍ରଟିଏ ସୁଦ୍ଧା ହଲୁନାହିଁ । ପବନ ଟିକିଏ ନାହିଁ । ଶରୀର ସଂପୂର୍ଣ୍ଣ ଘର୍ମାକ୍ତ ।

ଶ୍ରାବଣୀ କହିଲ, ଖୁବ୍ ଶୋଷ କଲଣି ଅନେକ ବେଳୁ, ପାଣି ପିଇବି । ଦୁହେଁ ଉଠି ଗାଡ଼ି ଭିତର ଶୌଚାଗାରକୁ ଗଲେ । ସେଠି କଳ ଚିପଲେ । ପାଣି ନାହିଁ । ଗାଡ଼ିରେ ସଂରକ୍ଷିତ ପାଣି ଟିକକ ଶେଷ ହୋଇ ଯାଇଛି । ଅପରିଚିତ ଷ୍ଟେସନରେ ପିଇବା ପାଣି ମିଳିବ କେଉଁଠି ? ଦେବକାନ୍ତ ବ୍ୟସ୍ତ ହୋଇ ପଡ଼ିଲ । ମୁଣ୍ଡକାଢ଼ି ଲକ୍ଷ୍ୟ ବୃଦ୍ଧି କଲ ବାହାରକୁ । ଷ୍ଟେସନର ଶେଷଭାଗ ଆଡ଼କୁ ଦିଶୁଛି ନଳକୂପଟିଏ । କହିଲ, ଚାଲ ସେଠିକି ଯିବା ।

ସେ ଆଗ ଓହ୍ଲାଇ ଗଲ । ମୁଣ୍ଡେ ଉଞ୍ଚରୁ ସ୍ତୀର ହାତଧରି ତଳକୁ ଓହ୍ଲାଇ ଆଣିଲ ଖୁବ୍ ସାବଧାନରେ. ସତେକି ସେ ଗୋଟିଏ ସଖୀ କଣ୍ଢେଇ, ପିଲଠୁ ଛୋଟ, ସବୁ ସ୍ଥଳରେ ଆବଶ୍ୟକ କରୁଛି ଯତ୍ନ, ସତର୍କତା ଏବଂ ସାବଧାନତା । ଦିହେଁ ହସାହସି ହୋଇ ସେଇ ନଳକୂଅ ପାଖକୁ ଗଲେ ।



Digitized by PPRACHIN, SOA

ହାତୀଥୋଡ଼ପା ପରି ନଳକୂଅର ହାତ । ତାକୁ ତଳ ଉପରକୁ କରି ବ୍ୟାୟାମ କଲ ଦେବକାନ୍ତ । ପାଣି ଭସ୍ ଭସ୍ ବାହାରିଲା ତା' ମୁହଁରୁ । ଲୁଗା କାନିକୁ ଅଣ୍ଟାରେ ଖୋସି, ଦୁଇହାତ ଆଞ୍ଜୁଳା କରି, ଅଣ୍ଟା ନୁଆଁଇ ଶ୍ରାବଣୀ ପେଟେ ପାଣି ପିଇଲା ପରମ ତୃପ୍ତିରେ । ଶେଷ ଆଞ୍ଜୁଳାକ ପାଣି ଆଣି ମୁହଁରେ ବୋଳିଲା । ଓଃ କି ଶାନ୍ତି ! ଶୋଷ,– ତା'ପରେ ମୁନ୍ଦାଏ ଜଳ...... ଏମିତି ଶେଷ କରେ ଅବଶୋଷ, ଯେମିତି ଦୀର୍ଘଦିନ ଅନ୍ଧକାର ପରେ ଆଲୋକ ରେଖାଟିଏ ଚତୁର୍ଦ୍ଦିଗ ସନ୍ତୋଷର ଢେଉ ବିଞ୍ଚିଦିଏ ।

ଶ୍ରାବଣୀର ଏଥର କସ୍‌ରତ କରିବା ପାଳି । ଆଗ୍ରହରେ ସେ ପମ୍ପ ମାରିଲା । ଦେବକାନ୍ତ ପାଣି ପିଇବାକୁ ଉଦ୍ୟତ ହେଉଛି, ହଠାତ୍ ରେଳଗାଡ଼ି ଷ୍ଟେସନ ଛାଡ଼ିବା ଉପକ୍ରମ କଲା । ଜୀବନକୁ ତୁଚ୍ଛ କରି, ଶରୀରର ସମସ୍ତ ଶକ୍ତି ଖଟାଇ ଦୌଡ଼ିଲା ଦେବକାନ୍ତ । ଦୌଡ଼ି ଦୌଡ଼ି ଧାବମାନ ରେଳ ଡବା ଭିତରକୁ ଉଠିଗଲା ଜଣେ ପୋଖତ ଖେଳୁଆଡ଼ ଭଳି । ଦ୍ୱାର ଦେଶରୁ ଯାତ୍ରୀମାନଙ୍କୁ ଠେଲି ଭିତରକୁ ପ୍ରବେଶ କଲା । କିଛି ଚିନ୍ତା ନକରି ଦୁଇହାତ ଲଗାଇ ଝୁଲି ପଡ଼ିଲା ଦ୍ୱାର ଦେଶର ବିପଦ ଶିକୁଳିରେ । ବିନା କାରଣରେ ବିପଦ ଶିକୁଳି ସ୍ପର୍ଶକଲେ ବା ଟାଣିଲେ ସ୍ପଷ୍ଟ ଅକ୍ଷରରେ ଘୋଷିତ ହେଉଥିବା ସାବଧାନ ବାଣୀ– 'ପାଞ୍ଚଶ ଟଙ୍କା ଜୋରିମନା ଏବଂ ଛଅ ମାସ କାରାଦଣ୍ଡ' ପ୍ରତି ତା'ର ଭ୍ରୂକ୍ଷେପ ନଥିଲା ଏଇ ଘଡ଼ିସନ୍ଧି ମୁହୂର୍ତ୍ତରେ । କୁଆଁରୀ ସ୍ତ୍ରୀକୁ ଟଳେ ଛାଡ଼ି ଆସିଛି, ଯାଠୁଁ ବଳି ଅଧିକ ଉଦ୍‌ବେଗର କାରଣ ଆଉ କ'ଣ ହୋଇପାରେ ?

ତଥାପି ଚଳମାନ ଯାନ ରହୁନି କାହିଁକି ? ବରଂ ଗତି ଦ୍ରୁତତର ହେଉଛି ବେଳକୁ ବେଳ । ବିପଦ ଶିକୁଳି ବୋଧହୁଏ କାମ କରୁନି ! ବିଳମ୍ବକୁ ସୁଧାରିବା ପାଇଁ ଗାଡ଼ିବାଲଙ୍କର ଏହା ଗୋଟାଏ ଷ୍ଟଲ ହୋଇପାରେ । କ'ଣ କରିବ ? ଆଖିରେ ଜୁଳୁ ଜୁଳିଆ ପୋକର ଅନ୍ଧାରୀ ଜାଲ । ତା' ବୁଦ୍ଧି ହଜିଗଲା । ଉପାୟହୀନ ହୋଇ ହତାଶ ମନରେ ସିଟ୍ ପାଖକୁ ଧାଇଁଲା ।



Digitized by PPRACHIN, SOA

ଆରେ, ଏଠୁ ଟିଣ ସୁଟ୍‌କେଶ୍‌ଟି ଗଲା କୁଆଡ଼େ ? ଅଣ୍ଟାଳିଲା ସିଟ୍‌ତଳ, ମୁଣ୍ଡ ଉପର ଲଗେଜ ଥାକ । ସୁଟ୍‌କେଶ୍, ସୁଟ୍‌କେଶ୍, ମୋ ସୁଟ୍‌କେଶ, ବଡ଼ ପାଟିରେ ଚିତ୍କାର କଲା ଦେବକାନ୍ତ । ଅଳ୍ପ ସମୟ ତଳେ ବାହାରକୁ ପାଣି ପିଇଗଲା ବେଳେ ଥାକରୁ ଓହ୍ଲାଇ ଏଇ ବଡ଼ ସିଟ୍ ଉପରେ ଥୋଇ ଦେଇଗଲା ସାମନଦ୍ୱାର ନିଜ ସ୍ଥାନଟିକୁ ସୁରକ୍ଷିତ ରଖିବା ଉଦ୍ଦେଶ୍ୟରେ । ଏତେ ଚଞ୍ଚଳ କିଏ ହରଣଚାଳ କରିନେଲା ତା' ସୁଟ୍‌କେଶ୍‌-ଟିକୁ ? ବିକଳ ସ୍ୱରରେ ପ୍ରଳାପ କରୁଥିଲା ଦେବକାନ୍ତ । ହଁ, ଆଜ୍ଞା ତାଲା ପଡ଼ିଛି, ଚାବି ତା' ପକେଟରେ ଏବେ ବି ଅଛି, ତଥାପି ସୁଟ୍‌କେଶ୍‌ଟି କିଏ ଚୋରି କରିନେଲା ?

ସହଯୋଗିତ ଦୂରର କଥା, ସହଯାତ୍ରୀମାନଙ୍କଠୁ ସାମାନ୍ୟ ଜବାବ ମଧ୍ୟ ମିଳିଲା ନାହିଁ । ସମସ୍ତେ ଯେମିତି କାଲ, କାନକୁ କିଛି ଶୁଭୁନାହିଁ, ଆଖିକୁ କିଛି ଦିଶୁନାହିଁ । କେବଳ ବୋକାଙ୍କ ଭଳି ଏଣିକି ତେଣିକି ଚାହୁଁଥାନ୍ତି । ଅତି ବିକଳରେ ଅପହୃତ ସୁଟ୍‌କେଶର ଚାବି କାଠିଟି ସମସ୍ତଙ୍କୁ ଦେଖାଉ ଥିଲା ବେଳେ କେତେକ ଦର୍ଶକଙ୍କୁ ଆନନ୍ଦପ୍ରଦ ମନେ ହେଉଥିଲା । ଭାବୁଥିଲେ ଯୁବକଟି ପାଗଳ । କୋଇପ ଦିଆ କ୍ଷୁଦ୍ର ସାମାନ୍ୟ କାଠିଟି କ'ଣ ଚୋର ପାଇଁ ପ୍ରତିବନ୍ଧକ ହୋଇପାରେ ? ନୀରବ-ଦ୍ରଷ୍ଟା ସହଯାତ୍ରୀଙ୍କ ମନରେ କୌତୂହଳ, ମୁହଁରେ ଚାପା ହସର ଛାପ ।

ଦେଶର ଏଇ ଅବସ୍ଥା ଆଜି । ଜାତିର ଦୁରବସ୍ଥା । ଦୁନିଆଟା ସ୍ୱାର୍ଥପର । ନିଜ ସୁଖପାଇଁ ସମସ୍ତେ ବ୍ୟସ୍ତ । ସ୍ପଷ୍ଟ ଦିବାଲୋକରେ ପରର ମୁଣ୍ଡ କଟି ଯାଉଥିଲେ ଆଉ ନାରୀ ଧର୍ଷଣ, କନ୍ୟା ଅପହରଣ, ହତ୍ୟାକାଣ୍ଡ ଆଦି ବୀଭତ୍ସ ଦୃଶ୍ୟ ଆଖି ଆଗରେ ଘଟି ଯାଉଥିଲେ ମଧ୍ୟ କେହି ପାଟି ଫିଟାଇବେ ନାହିଁ, ଅନ୍ୟାୟର ପ୍ରତିରୋଧ କରିବେ ନାହିଁ । ପର ଲାଗି ପୁଅ ମୁଣ୍ଡ ଛୁଇଁବ କିଏ ? ପରୋପକାରର ସଂଜ୍ଞା କେଉଁ ଦିନଠୁ ଲୋପ ପାଇଗଲାଣି ଏ ସମାଜରୁ । ତ୍ୟାଗବୀର ଆଉ ନାହାନ୍ତି । ଯେଉଁମାନେ ତ୍ୟାଗର ଡିଣ୍ଡିମ ପିଟୁଛନ୍ତି, ସେମାନଙ୍କ ଉଦ୍ଦେଶ୍ୟ ଅଭିସନ୍ଧିରେ



Digitized by PPRACHIN, SOA

ପରିପୂର୍ଣ୍ଣ । ସ୍ୱାର୍ଥର ଅଦୃଶ୍ୟ କାମନା ମନ ଭିତର ସାତତାଳ ପଙ୍କ ପୋଖରୀରେ ଛପି ରହିଛି । ମୁହଁରେ ଗୋଟାଏ ମୁଖା ପିନ୍ଧି ମଣିଷ ଅଭିନୟରତ । ମଣିଷ ମୁହଁରେ କେବଳ ଚିନିବୋଳା ତିକ୍ତ ବଟିକା । ସର୍ବବ୍ୟାପୀ ଭେଜାଲର କାୟା ଜାଲ ବିସ୍ତାର କରିଛି– ଗାଁ ଗଣ୍ଡାରେ, ସହର ବସ୍ତିରେ, ମନ୍ଦିର ଭିତରେ, ପାଣି ପବନରେ । ନିଃସ୍ୱାର୍ଥପର ସମାଜ-ସେବା, ଉଦେଶ୍ୟ ବିହୀନ ଦୀନ ହୀନ ସେବା, ସାମାଜିକ କଲ୍ୟାଣ କାର୍ଯ୍ୟରେ ଆନ୍ତରିକତା, ଦେଶଭକ୍ତି ଆଜି ଅତୀତର କଥା ହୋଇଗଲାଣି । ସାଧୁ ସନ୍ଥ ମାନେ ଇତିହାସ ପୃଷ୍ଠାରେ ସୀମାବଦ୍ଧ । ମଣିଷ ମଣିଷ ମଧ୍ୟରେ ସ୍ନେହ ନାହିଁ, ଶ୍ରଦ୍ଧା ନାହିଁ, ସହନଶୀଳତା ନାହିଁ, ଶାଳୀନତା ନାହିଁ, ସାହାଯ୍ୟ ମନୋବୃତ୍ତି ନାହିଁ । ବ୍ୟକ୍ତି ବ୍ୟକ୍ତି, ଗୋଷ୍ଠୀ ଗୋଷ୍ଠୀ, ଜାତି ଜାତି ଭିତରେ କନ୍ଦଳ ବ୍ୟାପୁଛି ଅଧିକ ଭାବେ । ଆସ୍ଥାହୀନ ମଣିଷ-ସମାଜ ଧାଇଁଛି ଧ୍ୱଂସ ଆଡ଼କୁ । ସହଯାତ୍ରୀମାନଙ୍କ ଏମନ୍ତ ନିଷ୍କ୍ରିୟ ଭାବ, ପକ୍ଷାଘାତ ଦୃଷ୍ଟି ପାଇଁ ଦେବକାନ୍ତ ବିଷୋଦ୍‌ଗାର କରୁଥିଲା ମନେ ମନେ ।

ଦେବକାନ୍ତ ଏକାବେଳକେ ମ୍ରିୟମାଣ ହୋଇ ପଡ଼ିଥିଲା । ଦେହରୁ ଅଧେ ରକ୍ତ ଶୁଖିଗଲା ପରି ମନେ ହେଉଥିଲା । ଆହୁରି ଚନ୍ନ ଚନ୍ନ କରି ଖୋଜିଲା । ସୁଟ୍‌କେଶର ସନ୍ଧାନ ମିଳିଲା ନାହିଁ । ସେଥିରେ ଥିଲା ତା' କ୍ଷୁଦ୍ର ସଂସାରର ସବୁ ସମ୍ବଳ– ସାମାନ୍ୟ ଟଙ୍କା, କିଛି ଲୁଗାପଟା, ଗଙ୍ଗାରେ ବିସର୍ଜନ ପାଇଁ ଆଣିଥିବା ଜେଜିମା'ର ଅସ୍ଥି ଏବଂ ସବୁଠାରୁ ମୂଲ୍ୟବାନ ଜିନିଷ ଥିଲା ତା' ଶିକ୍ଷାଗତ ଯୋଗ୍ୟତାର ସବୁ ପ୍ରମାଣ ପତ୍ର...... ଇଣ୍ଟରଭ୍ୟୁ କାର୍ଡ଼, କମ୍ପାନୀର ଠିକଣା ଏବଂ ଅନ୍ୟାନ୍ୟ ସାର୍ଟିଫିକେଟ । ଆଖି ପିଛୁଳାକେ ସବୁ ସର୍ବନାଶ ହୋଇଗଲା !

ରେଳ ଗଲିଥାଏ ଅଧିକ ଗତିରେ । ଖ୍ରାବଣୀକୁ ଛାଡ଼ି ଆସିଲାଣି ବହୁ ପଛରେ, ଅନେକ ଦୂରରେ । ବଡ଼ ଦୁର୍ଦ୍ଦିନର ମୁହୂର୍ତ୍ତ ; ଉଭୟଙ୍କ ପାଇଁ ଏକ ବିପଜ୍ଜନକ ପରିସ୍ଥିତି । ମୁଣ୍ଡକୁ କିଛି ଉପାୟ ଢୁକୁନି ।



Digitized by PPRACHIN, SOA

ଗାଡ଼ି ଅଟକିଲା ଯାଇ ଜଳେଶ୍ୱର ଷ୍ଟେସନରେ । ତରବର ହୋଇ ଓହ୍ଲାଇ ଗଲା ଦେବକାନ୍ତ । କିଂକର୍ତ୍ତବ୍ୟବିମୂଢ଼ାବସ୍ଥାରେ ଛିଡ଼ାହୋଇ ରହିଲା ଘଡ଼ିଏ । ନିରୂପାୟ ସେ । ପାଖରେ ପଇସାଟିଏ ସୁଦ୍ଧା ନାହିଁ । ପକେଟ୍‌ମାର୍‌କୁ ଭୟକରି ଅଧିକ ଯତ୍ନବାନ୍ ହୋଇ ସବୁ ପଇସାତକ ରଖି ଦେଇଥିଲା ସୁଟ୍‌କେଶ ଭିତରେ, ଗୋଟିଏ କାଗଜ ମୁଣିରେ । ସବୁ ନେଇ-ଗଲା ଚୋର । ଦୁର୍ଯୋଗ ଆହୁରି ଜଟିଳତର ହେଉଥିଲା । ଅନନ୍ୟୋପାୟ ହୋଇ ଫେରନ୍ତା ଗାଡ଼ିକୁ ଅପେକ୍ଷା କରି ରହିଲା ।

ଦ୍ରୁତଗାମୀ ରେଳଗାଡ଼ି ଗଳଘାଟରେ ରହିବ ନାହିଁ । ଅତଏବ ପାସେଞ୍ଜର ଗାଡ଼ିହିଁ ଏକମାତ୍ର ଭରସା । ଗଳଘାଟକୁ ଅନ୍ୟ ଯାନବାହନର ସୁବିଧା ନାହିଁ, ଥିଲେ ବା ତା' ପାଖରେ ପଇସା ନାହିଁ ।

ବିଭାଗୀୟ ଅଫିସ କାନ୍ଥରେ ଲିଖିତ ସମୟ ତାଲିକାରୁ ପଢ଼ି ଜାଣିଲା, ଅପ୍ ପାସେଞ୍ଜର ଟ୍ରେନ୍‌ର ସମୟ ଯାଉଁ ରାତି ଆଠଟା ପଇଁତିରିଶ ମିନିଟ୍‌ରେ । ଦିନ ଶେଷ ହୋଇ ସନ୍ଧ୍ୟା ଆସିଗଲାଣି କେତେବେଳୁ । କଳା ଅନ୍ଧାର ଘୋଟି ଆସୁଥିଲା ଚତୁର୍ଦ୍ଦିଗକୁ ଆଚ୍ଛନ୍ନ କରି ; ତା' ସହିତ ମନ ଭିତରଟା ଆହୁରି ଅନ୍ଧାରିଆ ଦିଶୁଥିଲା ତାକୁ । ଶ୍ରାବଣୀର ଦୁରବସ୍ଥା ଅନୁମାନ କରି ଚିନ୍ତିତ ହୋଇ ପଡ଼ୁଥିଲା । ନୀରବ ହୋଇ ବସି ରହିଲା ପ୍ଲାଟଫର୍ମ ଶେଷଭାଗର ସିମେଣ୍ଟ ନିର୍ମିତ ବେଞ୍ଚ ଉପରେ ।

ଜଳେଶ୍ୱର ଷ୍ଟେସନଟି ପୁରୁଣା, ମଧ୍ୟମ ଧରଣର । ରେଳମଞ୍ଚ ଚେଇଁ ରହିଥିଲା । ଲୋକମାନେ ବ୍ୟସ୍ତ ରହିଥିଲେ ନିତିଦିନିଆଁ ଧନ୍ଦାରେ । ପାନ ବ୍ୟବସାୟୀମାନେ ଝୁଡ଼ି ଝୁଡ଼ି ପାନକୁ ଗଦାକରି ରଖୁଥିଲେ ବାହାରକୁ ରପ୍ତାନି କରିବା ପାଇଁ । ଗଦା ଗଦା ସଦ୍ୟ ସବୁଜ ପଇଡ଼ ଷ୍ଟେସନ ମଞ୍ଚ ଉପରେ ଜମା ରହୁଥିଲା । ଏ ଅଞ୍ଚଳ ପାନ ଏବଂ ନଡ଼ିଆ ପାଇଁ ପ୍ରସିଦ୍ଧ, ଲୋକମାନଙ୍କ ମୁଖ୍ୟ ଜୀବିକା ପାନ ଏବଂ ନଡ଼ିଆ ଚାଷ । ଇଚ୍ଛା ହେଉଥିଲା ପଇଡ଼ଟାଏ କାଟି ଢୋକେ ମଧୁର ପାଣି ପିଇ ଦିଅନ୍ତା । କିନ୍ତୁ,



Digitized by PPRACHIN, SOA

ଏକେତ ପକେଟରେ ପଇସାଟିଏ ନାହିଁ, ଘ୍ରେର ସବୁ ଲୁଟି ନେଇଛି । ସେ ଫକଡ଼ । ତା'ଛଡ଼ା ଶ୍ରାବଣୀର ଦୁର୍ଦ୍ଦଶା ଚିନ୍ତା କରି ମନ ଭଗକ୍ରାନ୍ତ । ଅନ୍ତଃକରଣକୁ କିଏ ବିଦାରି ପକାଉଛି ଯେମିତି । ମନ ଅସ୍ଥିର ବେଳେ ଭୋକ ଶୋଷ ଆଦି ଦୈହିକ କ୍ରିୟା କୁଆଡ଼େ ଉଭେଇ ଯାଏ । ଶ୍ରାବଣୀ ସଦ୍ୟ ବିବାହିତା ଅଳ୍ପବୟସ୍କା ଗଞ୍ଜା ଯୁବତୀ । ସେ ଶାନ୍ତ, ସରଳ ଏବଂ ମୌନାବତୀ । କଥା କଥାକେ ଆଖି ଛଳ ଛଳ ହୋଇଯାଏ ; ମୁହଁ ଖୋଲି କହେ ନାହିଁ ; ହାତପାତି ମାଗିବାର କ୍ଷମତା ନାହିଁ, ଖାଦ୍ୟ ଖାଇବାର ସ୍ପୃହା ନାହିଁ । ବାଲେଶ୍ୱର ଷ୍ଟେସନରେ ଅନେକ ଖୋସାମତ କରି ସାକୁଲେଇ ତାକୁ ଖୋଇଥିଲ ଦି'ଟି ସିଙ୍ଗଡ଼ା, ଗୋଟିଏ ଗୋଲପଜାମ । ଦେବକାନ୍ତ କହିଥିଲ, ଆଉ ଗୋଟିଏ ରସଗୋଲ ଖାଅ । ସେ ମୁହଁ ବିକୃତ କରି କହିଥିଲ– ମିଠା ଖାଇବାକୁ ଭଲ ଲଗେନି ।

: କ'ଣ ଖାଇବାକୁ ସୁଖ ଲଗେ ?

: ନା, କହିବିନି । ହସି ହସି କହିଥିଲ ଶ୍ରାବଣୀ ।

: ତା' ହେଲେ ଏଥର ପାଟି ଫିଟାଇବି ନାହିଁ । ହେଲତ ?

: ରାଗିଗଲ ନା କ'ଣ ?

: ରାଗିବି ନାହିଁ ? ବାହାରକୁ ଆସିଛ, କ'ଣ ଖାଇବାକୁ ଭଲପାଅ ମୁଁ ଜାଣିବି ନାହିଁ ?

ବହୁ କୁଣ୍ଠାରେ ପ୍ରକାଶ କରିଥିଲ ଶ୍ରାବଣୀ– ଖଟା, ଆମ୍ବର । ଫେଁ କରି ହସି ଉଠିଥିଲ ଦେବକାନ୍ତ । ଝିଅମାନଙ୍କର ଆମ୍ବର ପ୍ରତି ଗୋଟାଏ ଅସମ୍ଭବ ମୋହ । ଏହା ଏକ ଅଦ୍ଭୁତ ଲକ୍ଷଣ ତୁମ ଝିଅମାନଙ୍କଠି । କଅଁଳ ମନ୍ତବ୍ୟ ପ୍ରକାଶ କରିଥିଲଦେବକାନ୍ତ । ପୁଣି କହିଲ– ସେଇଥି ପାଇଁ ବୋଧହୁଏ ଟିକିନୀ ସଙ୍ଗେ ପ୍ରସ୍ତୁତ ଫାସର ହୁଅ । ଆମ୍ବୁଲ, ଚେଲ୍ଲଚି ଆମ୍ବର ପାଗ କରି ଖାଇବାର ଯୋଜନା ପ୍ରସ୍ତୁତ ଗ୍ଲଇଥାଏ......ଏଥର ବୁଝିଲି ।



Digitized by PPRACHIN, SOA

ଦେବକାନ୍ତକୁ ଆଉ ଅଧିକ କହିବାକୁ ଦେଇ ନଥିଲା ଶ୍ରାବଣୀ । ସ୍ୱାମୀ ଓଠରେ ହାତ ଦେଇ କଥାବାର୍ତ୍ତାର ବିଷୟବସ୍ତୁ ବଦଳେଇବା ପାଇଁ ଚେଷ୍ଟା କରିଥିଲା ସେ । ତା' ହସଉଚ୍ଛୁଳା ମୁହଁରେ ସଜ୍ଜିତ ଶୁଭ୍ର ଦାନ୍ତଗୁଡ଼ିକ ଅଳ୍ପ ମେଲି ପୁଣି ଓଠ ତଳେ ଲୁଚିଯାଇ ରଖିଥିଲା ସ୍ୱାମୀ ପାଖରେ ନୂଆବୋହୂଟିଏର ପ୍ରଥମ ଚଳନୀର ଢଙ୍ଗଭଳି । ଦେବକାନ୍ତକୁ ଦିଶୁଥିଲା, ଆକାଶର ଆଲୁଅ ଧାରେ ବଉଦ ଆଢୁଆଳରେ ଲୁଚି ରହିଲା ପରି ।

ଦେବକାନ୍ତ କୌଣସି ମତେ ନିଜକୁ ପ୍ରକୃତିସ୍ଥ କଲା । ଚିନ୍ତାକୁ ଚାପି ରଖି ଫେରନ୍ତା ଗାଡ଼ିକୁ ଅପେକ୍ଷା କଲା ।

ଅଧା ତାରଫୁଟା ଆକାଶର ଗୋଟିଏ କୋଣରେ ଖଣ୍ଡିଏ କଳା-ମେଘ ଦୃଶ୍ୟମାନ । ମେଘ ଆଢୁଆଳ ଭିତରେ ବିଜୁଳି ରହି ରହିକା ଡରଉଥିଲା ଦେବକାନ୍ତକୁ । ଖରଦିନିଆ ମେଘ । ଉଦଣ୍ଡା ଲୋକପରି କିଛି ମାନିବନି, ଭୁସ୍‌କିନା ମାଡ଼ି ଆସିବ ଧୂମାଳ ପବନ, ଉଭାଳ ବତାସ ବାଟ୍ଟୁଳି ଭଳି ଢୁଆପଥରକୁ ସାଙ୍ଗରେ ଧରି । ଗଛ ମୋଡ଼ିବ, ଡାଳ ଛିଣ୍ଡିବ, ଚାଳ ଉଡ଼ିବ, ଘର ଭାଙ୍ଗିବ, କରିଯିବ ମନଇଚ୍ଛା ଅତ୍ୟାଚାର । ଦେବକାନ୍ତ ଭୟ ମନରେ ବାରମ୍ବାର ଭଣ୍ଡୁଥିଲା ସେଇ ଦିଗକୁ । ବର୍ଷା ନହୁଅନ୍ତା କି !

ଚାହୁଁ ଚାହୁଁ ସତକୁ ସତ ଧୂଳି ଝଡ଼ଟାଏ ସୁସ୍ଥ ହୋଇ ଚଞ୍ଚଳ ବେଗରେ ଧାଇଁ ଆସିଲା ସେଇ ଦିଗରୁ ବୃଷ୍ଟିର ଅଗ୍ରଦୂତ ପରି । ବାଲିର ଛୁଞ୍ଚିବିନ୍ଧା ଆକ୍ରମଣରେ ଆଖି, କାନ, ମୁଣ୍ଡ ଚର୍ମ ଆତ୍ମରକ୍ଷା ପାଇଁ ବାଟ ପାଇଲେ ନାହିଁ । ଘଡ଼ ଘଡ଼ିର କାନଥରା ଧମକ । ବିଜୁଳିର ତରବାରୀରେ ଆକାଶ ଫାଟିଲା । ଲୋକସବୁ ଧାଇଁ ବସିଲେ ବିଶ୍ରାମାଗାର ଭିତରକୁ । ସେଠିବି ତ୍ରାହି ନାହିଁ । ତେଲୁଗୁଣି ପୋକ ସାଲୁବାଲୁ ଭଳି ସେଠିବି ଲୋକ ମାଜ ମାଜ, ଖୁନ୍ଦା ଖୁନ୍ଦି ।



Digitized by PPRACHIN, SOA

କିଛି ସମୟ ବାଦେ କ୍ଷଣକୋପୀ ଝଡ଼ ଶାନ୍ତ ହେଲା, କିନ୍ତୁ ତା'ର ଗତିଥିଲା ପଶ୍ଚିମାଭିମୁଖୀ...... ଯେଉଁ ଆଡ଼େ ରଙ୍ଗଘାଟ ରେଳଷ୍ଟେସନ ଅବସ୍ଥିତ । ବୃଷ୍ଟିର ଆଧିକ୍ୟ ନଥିଲା, କେବଳ ପ୍ରବଳ ପବନ ମାଧ୍ୟମରେ ଛଡ଼ା ଛଡ଼ା ବରକୋଳିଆ ଟୋପା ଝାଡ଼ି ଦେଇଥିଲା । ଦେବକାନ୍ତ ପ୍ରମାଦ ଗଣୁଥିଲା ।

ଏ ସମୟରେ ଶ୍ରାବଣୀ କ'ଣ କରୁଥିବ ? ପରିପକ୍ୱ ବୟସ ଆସିନାହିଁ । ସତର ବର୍ଷରେ ପଦାର୍ପଣ କରିଥିଲା ମାତ୍ର । ଅଙ୍ଗ ଭଲଭାବେ ପୂରିନାହିଁ । ବିବାହର ସଂଜ୍ଞା ଭଲଭାବେ ବୁଝିନାହିଁ । ସଂସାରର ବୋଝ ସମ୍ଭାଳି ନାହିଁ । ଦୁନିଆ କ'ଣ ଦେଖିନାହିଁ । ସହରୀ ଝିଅ ହୋଇ-ଥିଲେ ପେଣ୍ଟକୁର୍ତ୍ତା ପିନ୍ଧୁଥାନ୍ତା ଆଜି ପର୍ଯ୍ୟନ୍ତ । ସାମାଜିକ ଦାୟିତ୍ୱ ତୁଟା-ଇବା ପାଇଁ, ସଂସାର ବୋଝ ଛିଣ୍ଡାଇବା ପାଇଁ, ତା ବାପ ମା' ବ୍ୟସ୍ତ ହୋଇ ଝିଅ ଲାଗି ବର ଖୋଜିଥିଲେ । ଯୋଟସୂତ୍ରର ନିର୍ଦ୍ଦେଶ ମତେ ସେ ଦେବକାନ୍ତର ଗୃହିଣୀ ହୋଇପାରିଛି । ଏଇ ଅଳ୍ପ ବୟସରୁ ମଧ୍ୟ ସୁଗୃହିଣୀର ଗୁଣଗୁଡ଼ିକ ହାସଲ କରିଛି । ପିଲାଙ୍କ ପରି ତା'ର ଗଲ୍ଲୁଗାଲର କଥା, ନିର୍ମଳ ଏବଂ ନିର୍ଭେଜାଲ ବ୍ୟବହାର, ନିଷ୍କପଟ ସ୍ନେହ, ମନଖୋଲା କଥା, ଆଗ୍ରହ ବ୍ୟବହାର ସମସ୍ତଙ୍କୁ ପ୍ରଲୁବ୍ଧ କରିଛି । ମମତା ଡୋରିରେ ସମସ୍ତଙ୍କୁ ବାନ୍ଧି ରଖିଛି । ତା' ଗୁଣରେ ମୁଗ୍ଧ ହୋଇ ଦେବବୋଉ ବିନା ଯୌତୁକରେ ତାକୁ ବୋହୂ କରିଆଣିଛି । ବୋଉ କହେ ବୋହୂ ତା'ର ଯୌତୁକ । ସୁନାର ପୁଣି କ'ଣ ରଙ୍ଗ ଦରକାର ? ସେତ ସୁବର୍ଣ୍ଣ, ଉଜ୍ଜ୍ୱଳ !

ଆହା, କ'ଣ କରୁଥିବ ବିଚାରୀ ! ଅପରର ଜାଗାରେ ପଡ଼ି ଖାଦ୍ୟ ବିନା, ସାଥୀବିନା, ସାହାବିନା, କାନ୍ଦୁଥିବ ନିଶ୍ଚୟ । କେଉଁଠି ସେ ଆଶ୍ରୟ ନେଉଥିବ ? ଛାତି ଭଠିଲା ପଡ଼ିଲା । ସତ୍ୟାନାଶିଆ ଝଡ଼ ଠୁଳ ହେଲଣି ସେଇ ଦିଗ ଆଡ଼େ । ମନେ କରୁଥିଲା ଦେବକାନ୍ତ– ଝଡ଼ଟି ଯେମିତି ଅସୁର ପାଲଟି ଯାଇଛି, ବିକଟାଳ ମୁହଁକୁ ଆହୁରି ବିକୃତ କରି ଏକା ଖେପାକେ ଗିଳିଦେବ ସମସ୍ତଙ୍କୁ ।



Digitized by PPRACHIN, SOA

୯ରେ ଶ୍ରାବଣ

ଶ୍ରାବଣୀର ସ୍ୱର କାନ ପରଦାରେ ଟାଇଁ ଟାଇଁ ପିଟି ହୋଇଯାଉଛି । ତା' ହସକୁଡ଼ୀ ମୁହଁଟି ଆଖି ଆଗରେ ନାଚି ଉଠୁଛି, ପୁଣି ହଠାତ୍ ଲୁଚିଯାଇ ଦିଶୁଛି ତା'ର କାନ୍ଦୁରା ମୁହଁ, ଆଖିର ଲୋତକ ଧାର, ସ୍ୱାମୀ ପ୍ରତି ଆକ୍ଷେପୋକ୍ତି— ତମେ ଛାଡ଼ି ଚାଲି ଆସିଲ, ମୋର ଅବସ୍ଥା କ'ଣ ହେଲା ଜାଣ ?କରୁଣ କଥାଗୁଡ଼ିକ ଯେମିତି କେଉଁଆଡ଼ୁ ଭସି ଆସୁଛି......

ଦେବକାନ୍ତ ମୁହଁ ବୁଲାଇଲା । ଆଗକୁ, ପଛକୁ, କଡ଼କୁ ଚାହିଁଲା ବାରମ୍ବାର । ଅନ୍ୟ କେଉଁ ନାରୀର କଣ୍ଠ ହୋଇପାରେ, ନତୁବା ତା ମନର ବିଭ୍ରମ । ଶ୍ରାବଣୀକୁ ସେ ଛାଡ଼ି ଆସିଛି ଅନେକ ଦୂରରେ, ସେଇ ଅପରିଚିତ ସ୍ଥାନରେ । ଶୀଘ୍ର ସେଠିକୁ ଯିବ କେମିତି ? କେମିତି ଉଦ୍ଧାର କରିବ ତାକୁ ? ଦୁଶ୍ଚିନ୍ତାଗ୍ରସ୍ତ ମନକୁ ସହାନୁଭୂତି ଭଙ୍ଗୀରେ ସହଯୋଗ କରୁଥିଲେ ତା'ର ଗୋଡ଼ହାତ, ଆପେ ଆପେ ବାଢ଼େଇ ଛାଟେଇ ହେଉଥିଲେ ତା' ଅଜାଣତରେ । ଦେବକାନ୍ତ ଅଥୟ । ମନକୁ ସେ ସମ୍ଭାଳି ପାରୁ ନଥିଲା । ଦୁର୍ଭାବନାରେ ଛଟପଟ ହେଉଥିଲା ।

ଷ୍ଟେସନ ବାରଣ୍ଡା କାନ୍ଥରେ ଝୁଲନ୍ତା ଘଣ୍ଟାକୁ ମୁହୁର୍ମୁହୁଃ ଚାହୁଁଛି ଦେବକାନ୍ତ । ସମୟ ମାତ୍ର ସାତଟା ପାଞ୍ଚ । ମୁହଁରେ ବିରକ୍ତିର ସୂଚନା । ଘଣ୍ଟାକଣ୍ଟା, ମିନିଟକଣ୍ଟା ନିଜ ନିଜ ଭିତରେ ସଲ୍ଲସ୍ମୃତ୍ର ହୋଇ ମନ୍ଥର ଗତିରେ ଚାଲିଛନ୍ତି ଯେମିତି ! ସେ ଅନୁଭବ କରୁଥିଲା, ସମୟ ଯେମିତି ଷଡ଼ଯନ୍ତ୍ର କରୁଛି ! ସାଢ଼େ ଆଠ ହେବାକୁ ଆଉରି ଡେରି ଅଛି । ଗୋଟିଏ ମିନିଟ ଅତିକ୍ରାନ୍ତ କରିବା କଷ୍ଟବୋଧ ହୋଇ ପଡ଼ୁଛି ତାକୁ । ଘୋର ଉଦ୍‌ବିଗ୍ନତାକୁ ସାଥୀ କରି ସିମେଣ୍ଟ ବେଞ୍ଚ ଉପରେ ବସି ରହିବା ଛଡ଼ା ତା'ର ଅନ୍ୟ ଉପାୟ ଆଉ କ'ଣ ଅଛି ?

ନିର୍ଦ୍ଧାରିତ ସମୟଠାରୁ ଅନେକ ବିଳମ୍ବରେ, ଅନ୍ତତଃ ଦୁଇଘଣ୍ଟା ଡେରିରେ ଭଦ୍ରେଶ୍ୱର ଷ୍ଟେସନ ଛୁଇଁଲା ହାବଡ଼ା–ପୁରୀ ପାସେଞ୍ଜର । ଧଡ଼ପଡ଼ ହୋଇ ସେଥିରେ ଚଢ଼ିଲା ଦେବକାନ୍ତ । ଟିକଟ କଥା ଚିନ୍ତା



Digitized by PPRACHIN, SOA

କଇନି ସେ । ଧର ପଡ଼ିଲେ କୈଫିୟତ ଦେବ ; ତା' ନିର୍ଦ୍ଦୋଷତା ପାଇଁ ଯୁକ୍ତି ବାଢ଼ିବ ; ଅସହାୟତା ପ୍ରମାଣ କରିବ । ବିନା ଟିକଟରେ ଯାତ୍ରା କରିବା ତା'ର ଅଭିପ୍ରାୟ ନୁହେଁ, ପରିସ୍ଥିତିର ବାଧ୍ୟତା । ତା'ର ସମସ୍ତ ସମ୍ବଳ ଥିଲା ସୁଟ୍‌କେଶଟିରେ, ବର୍ତ୍ତମାନ ତାହା ଚୋରର ହାତରେ । ସତ କହିବାକୁ ତା'ର ଭୟ ନାହିଁ । ନିଜର ନିର୍ଦ୍ଦୋଷତା ପ୍ରମାଣ କରିବାକୁ ହେଲେ ସବୁଠୁଁ ବଡ଼ ଗୁଣ ତା'ଠି ରହିଛି - ନୈତିକ ବଳ । ଯେପରି ଅପ୍ରୀତିକର ପରିସ୍ଥିତି ଉପୁଜିଲେ ତା'ର ମୁକାବିଲା କରିବ । ଅବସ୍ଥା ଦେଖି ବ୍ୟବସ୍ଥା କରିବ । ବର୍ତ୍ତମାନ ତା'ର ଏକମାତ୍ର ଚିନ୍ତା– ଶ୍ରାବଣୀର ଉଦ୍ଧାର । ସେଇ ଚିନ୍ତା ତାକୁ ମାଡ଼ି ବସିଛି ; ମନକୁ ଗ୍ରାସିଛି ପ୍ରଚ୍ଛନ୍ନ ଭବେ ।

ରେଳ ଚାଲିଛି । ଯେତେ ଜୋରରେ ଗାଡ଼ି ଗଡ଼ିଲେ ମଧ୍ୟ ଦେବକାନ୍ତକୁ ଲାଗୁଥିଲା ମନ୍ଥର । ଗାଡ଼ି ଶଗଡ଼ ପରି ଚାଲୁଛି ଟିପେଇ ଟିପେଇ । ମନ ଯେତେ ଉଛନ୍ନ ହୋଇ ଉଠେ, ଉଦବିଗ୍ନତା ଯେତିକି ମାତ୍ରାରେ ବୃଦ୍ଧିପାଏ, ଆନୁଷଙ୍ଗିକ ପରିସ୍ଥିତି– ଯନ୍ତ୍ର, ଯାନ, ସମୟ– ସବୁଗୁଡ଼ିକ ପଶ୍ଚାତ୍ ଧାବନ କଲାପରି ମନେହୁଏ । ସବୁଗୁଡ଼ିକ ଅସ୍ୱାଭବିକ ମନେହୁଏ । ମଣିଷ ମନର ଯେ ଗୋଟାଏ ଅଦ୍ଭୁତ ଚିନ୍ତାଧାରା, ବିଚିତ୍ର ଭବନା । ଦେବକାନ୍ତ ଚିଡ଼ି ଉଠୁଥିଲା ରେଳ ବିଭାଗର କର୍ତ୍ତୃପକ୍ଷଙ୍କ ଉପରେ । ବିଭାଗୀୟ କର୍ମଚାରୀଙ୍କ ପ୍ରତି କ୍ଷୋଭ ଜାତହେଉଥିଲା । ଏ ସମସ୍ତଙ୍କଠି ସମୟ ଜ୍ଞାନର ଉତ୍କଟ ଅଭବ ରହିଛି । ଦେଶର ଶାସନ କଳ ହୁଗୁଳା ହୋଇଗଲାଣି । ସମସ୍ତେ ବନି ଗଲେଣି ଗୋଟାଏ ଗୋଟାଏ ନବାବ । ସମୟ ପ୍ରତି ଯାହାର ଅନୁରକ୍ତି ନାହିଁ, ସେତ ମଣିଷ ନୁହେଁ, ପଶୁ । ବରଂ ପଶୁର ସମୟ ଜ୍ଞାନ ଥାଇପାରେ, ସେ ଗୃହସ୍ୱାମୀର ବୋଲ ମାନି କାମ କରେ, ନିର୍ଦ୍ଦେଶ ମାନି ବ୍ୟବହାର କରେ । ତା' ପିଠିରେ ଚାବୁକର ଭୟ । ମଣିଷମାନଙ୍କର କିନ୍ତୁ ସମୟ ଜ୍ଞାନ ନାହିଁ । ସମୟ ହିଁ ଶୃଙ୍ଖଳା, ଶୃଙ୍ଖଳା ହିଁ ଯୋଜନା । ଯୋଜନା ଅଭବରୁ ଅଧୋଗତି । ଦେବକାନ୍ତ ମୁହଁରେ ପୁଞ୍ଜିଭୂତ ବିରକ୍ତିର ମୁଦ୍ରା ଫୁଟି ଉଠୁଥିଲା । ଝପଟି ଉଦାସୀନତା ପ୍ରତି ବିକ୍ଷୋଦ୍‌ଗାର କରୁଥିଲା ମନେ ମନେ ।



Digitized by PPRACHIN, SOA

ଗଜଘାଟ ପହଞ୍ଚିଲା ବେଳକୁ ବହୁତ ରାତି । ହାତରେ ଘଡ଼ି ନଥିଲା । ସଠିକ୍ ସମୟ ଜାଣିବାର ଉପାୟ ନଥିଲା । ତରବର ହୋଇ ଓହ୍ଲାଇ ପଡ଼ିଥିଲା ଟ୍ରେନ୍‌ରୁ । ଷ୍ଟେସନ ଏବଂ ତା'ର ଚତୁର୍ଦ୍ଦିଗରେ ଅନ୍ଧକାରର ସାର୍ବଭୌମତା । କାହାର ସ୍ବରଶବ୍ଦ ଏଠି ନାହିଁ । ଏଟା ଷ୍ଟେସନ୍ ନା ଗୋଟାଏ ମଶାଣି ଭୂଇଁ ? ତନ୍ନ ତନ୍ନ କରି ଚାରିଆଡ଼କୁ ଲକ୍ଷ୍ୟକଲା ଦେବକାନ୍ତ । ଏକୋଣା ଘରଟରେ ଅଳ୍ପ ଆଲୁଅର ବତୀଟିଏ ଦିଶୁଛି । ଅସ୍ଥାୟୀ ଟିକଟ ଘର ହୋଇପାରେ । ସେଠାରେ ଅବଶ୍ୟ କିଏ ହେଲେ ଥିବେ ଏବଂ ଶ୍ରାବଣୀ ନିଶ୍ଚିତ ଭାବେ ଥିବ ଅପେକ୍ଷମାଣା । ଅଦମ୍ୟ ଆଗ୍ରହରେ ଆଶାୟୀ ମନକୁ, ଉଦ୍‌ଗ୍ରୀବ ଗୋଡ଼କୁ ସେହିଆଡ଼େ ବୋହି ନେଲା ।

ଅସ୍ଥାୟୀ ଟିଣଛପର ଘରଟିଏ । ଅଧା ଆଉଜା କବାଟ ଫାଙ୍କରୁ ଲଣ୍ଠନର ଆଲୁଅ ଗାଢ଼ ଅନ୍ଧାର ଘଉଡ଼ାଉ ଥିଲା । ଦୁଆର ପାଖେ ଉପଗତ ହୋଇ କ୍ଷୁଦ୍ର କୋଠରୀ ଭିତରକୁ ଉଙ୍କିଲା ଦେବକାନ୍ତ । ଶ୍ରାବଣୀ କାହିଁ ?

ଗୋଟିଏ ଟୁଲ ଉପରେ ଠୁଙ୍କା ହୋଇ ବସି ରହିଥିଲା ଜଣେ ବୃଦ୍ଧ । ମୁହଁକୁ ଆଣ୍ଠୁ ଉପରେ ଥୋଇ ଥକକା ମାରୁଥିଲା, ନିଦ୍ରାମୋଚନ କରୁଥିଲା । ସେଠି କିନ୍ତୁ ପ୍ରିୟତମାର ଦର୍ଶନ ନାହିଁ । ଶଙ୍କାଗ୍ରସ୍ତ ମନ ଆହୁରି ସଙ୍କୁଚିତ ହେଲା, ଆତଙ୍କିତ ହେଲା ।

ପରିଧେୟରୁ ମନେ ହେଉଥିଲା, ବୃଦ୍ଧ ଜଣକ ରେଳ ବିଭାଗର ପୁରୁଣା କର୍ମଚାରୀ ପରି । ତାହାକୁ ଭଠି ପରିଣତ ବୟସରେ ପୁରସ୍କାର ସ୍ବରୂପ ରେଳ ଟିକଟ ବିକିବା ଦାୟିତ୍ୱରେ ଅଛି । ଲଣ୍ଠନ ପାଖେ କେତୋଟି ଟିକଟ ଥାକମରା ହୋଇ ଥୁଆ ହୋଇଛି । ପାଖରେ ପଇସା ବାକ୍‌ସଟିଏ ।

ଗଳା ସଫାକରି ଦେବକାନ୍ତ ଶବ୍ଦଟିଏ ସୃଷ୍ଟିକଲା ବୃଦ୍ଧର ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ । ମୁଣ୍ଡଟେକି ନିରୁତ୍ତାପ ଚାହାଣିରେ ବୃଦ୍ଧଟି ଚାହିଁଲା । ସଙ୍କୁଚିତ ଆଖି । ଲଣ୍ଠନ ବତୀକୁ ସାମାନ୍ୟ ତେଜି ଦେଖିଲା ଦେବକାନ୍ତକୁ । ରାତିର ନିଃସଙ୍ଗ ପାସେଞ୍ଜରଟିଏ ଭାବି ଟିକଟ



Digitized by PPRACHIN, SOA

ବାକ୍ସ ଆଡ଼କୁ ହାତ ବଢ଼ାଇଲେ । ଉଦ୍‌ବେଗଗ୍ରସ୍ତ କଣ୍ଠରେ କହିଲେ ଦେବକାନ୍ତ– ମୋ ସ୍ତ୍ରୀକୁ ଦେଖିଛ ? ଗେଡ଼ୀ, ଚକାମୁହିଁ, ଗୋରୀ ଝିଅଟିଏ......

ଦଦରା ଲଣ୍ଠନଟିକୁ ହାତରେ ଉଠାଇ ଦେବକାନ୍ତ ମୁହଁକୁ ଲକ୍ଷ୍ୟକଲା ବୃଦ୍ଧ ଜଣକ ଏବଂ ଚିକିଏ ରହି ଲଘୁ କଣ୍ଠରେ କହିଲା– ହଁ ବାବୁ, ଅଳ୍ପ ବୟସର ସ୍ତ୍ରୀ ଲୋକଟିଏ ଏଠି ଥିଲା, ଚାଲି ଗଲାଣି......

ଦେବକାନ୍ତ ଚିତ୍କାର କଲେ– କୁଆଡ଼େ ଗଲା ?

: କହୁଛି ଆଜ୍ଞା, ଥୟ ଧରନ୍ତୁ ।

ଦେବକାନ୍ତ ବିରକ୍ତ ହୋଇ ଉଠିଲେ– କହୁଛି ପର ସେ ମୋ ସ୍ତ୍ରୀ, କଥାଟା ସାଫ୍ ସାଫ୍ କହୁନ କାହିଁକି ଶୀଘ୍ର ? ସେ କୁଆଡ଼େ ଗଲା ? କେଉଁଠି ଅଛି ?

: କହୁଛି ବାପା, କହୁଛି । ଆଜି ମୋର ଗତି ଡିଉଟି । ସନ୍ଧ୍ୟା-ବେଳେ ଧୂମାଳ ଝଡ଼ ତୋଫାନ ମାଡ଼ି ଆସିଥିଲା ଯେ ଗତି ଡିଉଟିରେ ଯୋଗ ଦେବାକୁ ମୋର ଡେରି ହେଲା । ମୋର ପୂର୍ବ ସହକର୍ମୀ, ଯିଏ ଡ୍ୟୁଟି ହସ୍ତାନ୍ତର କରିଥାନ୍ତେ, ମୁଁ ଆସିଲା ବେଳକୁ ଏଠି ନଥିଲେ । ଦେଖିଲି ଦୁଆର ପାଖେ ଝିଅଟି କାନ୍ଦୁଛି । ଚମକି ପଡ଼ିଲି । ଝିଅ ନୁହେଁ, ମୁଣ୍ଡରେ ସିନ୍ଦୂର ଟୋପା, ବିବାହିତା । ରୂପ ରଙ୍ଗରେ ଦେହ ଝଟକୁଛି । କ'ଣ ହେଲା ତେବେ ଝିଅଟିର ?

: ଏଠି କାନ୍ଦୁଛୁ ମା କାହିଁକି ? ପଚାରିଲି ।

କିଛି ଉତ୍ତର ନାହିଁ । କଇଁ କଇଁ କାନ୍ଦଣା ହିଁ ସାର । ବଡ଼ ଆଶ୍ଚର୍ଯ୍ୟ କଥା ! କ'ଣ ନିଶ୍ଚୟ ହୋଇଛି ଏଇ ତରୁଣୀ ସ୍ତ୍ରୀ ଲୋକଟିର । ମୋ ମନକୁ ପାପ ଛୁଇଁଲା, ଖରାପ ଧାରଣା ଆସିଲା । ଗଳା ବୟସୀ ଝିଅଟିଏ । କେଉଁ ସଇତାନର ଶିକାର ହୋଇ ପାରିଥାଏ । ଆଜିକାଲି



Digitized by PPRACHIN, SOA

ଯୁଗ କଥାତ ଜାଣ ପୁଅ । ଭୁଲେଇ ଭାଲେଇ ଏମିତି ଅନେକ ଝିଅଙ୍କୁ ଅତ୍ୟାଚାର କରାଯାଉଛି, ବଜାର ହାଟରେ ସେମାନଙ୍କୁ ବିକ୍ରୀ କରାଯାଉଛି । ଖବର କାଗଜ ପଢ଼ୁନ ବାବୁ ? କେତେ ଗ୍ଲାନିକର ସମ୍ବାଦ !

: ଓଃ ଶୀଘ୍ର କହ, ସେ କେଉଁଠି ଅଛି ?– ଦେବକାନ୍ତର ବିକଳ କଣ୍ଠସ୍ୱର ।

: ଟିକିଏ ଧୈର୍ଯ୍ୟଧର କହୁଛି ପରା । ଭାବିଲି, ଝିଅଟି ଉପରେ ଅତ୍ୟାଚାର କିମ୍ବା ଅସତ୍ ବ୍ୟବହାର କରାଯାଇଛି, ନହିଲେ ଏପରି ଅବେଳରେ ଯୁବତୀ ଜଣକ କାନ୍ଦନ୍ତା କାହିଁକି ? ଆଖି ଓଦା ହୋଇ ଫୁଲି ଯାଇଥିଲା ତା'ର । ମୁଁ ସନ୍ଦେହ କଲି ମୋ ପୂର୍ବ ସହକର୍ମୀଙ୍କୁ । ଡ୍ୟୁଟି ହସ୍ତାନ୍ତର ନ କରି ସେ ଚାଲିଗଲେ କାହିଁକି ? ସେ ବୁଢ଼ା ହେଲେହେଁ ମଣିଷର ଭିତିରି କଥା କିଏ କହି ପାରିବ, କିଏ କଳି ପାରିବ ? ପର ମୁହୂର୍ତ୍ତରେ ଆହୁରି ଚିନ୍ତା କଲି । ସେତ ସେପରି ଲୋକ ନୁହନ୍ତି । ବିଗତ କୋଡ଼ିଏ ବର୍ଷ ହେଲା କାମ କରୁଛି ତାଙ୍କ ସହିତ । ସଚ୍ଚୋଟ ଲୋକ । ମୋ'ରି ଭଳି ତଳୁ ଉଠି ଉଠି ସଦାନନ୍ଦ ଆଜି ସବ୍ ଆସିଷ୍ଟାଣ୍ଟ ଷ୍ଟେସନ ମାଷ୍ଟର । ସୁନା ମୁଣ୍ଡାଟାଏ ରାସ୍ତାରେ ପଡ଼ିଥିଲେ ଉଠାନ୍ତି ନାହିଁ । ଚରିତ୍ର ଦୋଷ କେବେ ନଥିଲା । ନାତି, ନାତୁଣୀ ଦେଖିଲେଣି । ସେ କ'ଣ ନାତୁଣୀ ସମାନ ଝିଅ ପ୍ରତି ଅସତ୍ ବ୍ୟବହାର କରିବା ସମ୍ଭବ ? ଆଉ ଥୟ ଧରି ପାରିଲି ନାହିଁ । ମନରେ ଦ୍ୱନ୍ଦ୍ୱକୁ ଦମନ ନକରି ପାରି ଝିଅକୁ ପୁଣି ପଚାରିଲି– ମା' କାନ୍ଦୁଛୁ କାହିଁକି ? ଏଠିକୁ କେମିତି ଆସିଲୁ ? ତୋ ସାଙ୍ଗେ ଆଉ କେହି ନାହାନ୍ତି ? ଯାହାତ ହେବାର ହେଲାଣି, ଆଉ କାନ୍ଦି ଲାଭ କ'ଣ ?

କିନ୍ତୁ କାନ୍ଦଣା ହିଁ ଥିଲା ସାର ।

ପୁଣି କହିଲି– ମୁଁ ତୋ ବାପ ସମାନ । ଦୁଃଖର କାରଣ ସିନା କହିଲେ କିଛି ଅବା କରିପାରନ୍ତି ।

ପଚାରି ପଚାରି ଥକି ଗଲି । କରୁଣ କାନ୍ଦଣା ସ୍ୱର ଆହୁରି ଉଚ୍ଚତର ହେଲା । ବଡ଼ ଅଡୁଆ ପରିସ୍ଥିତି । ସ୍ତ୍ରୀଲୋକମାନଙ୍କର ଏତ



Digitized by PPRACHIN, SOA

ଗୋଟାଏ ଅଦ୍ଭୁତ ଚରିତ୍ର । କିଛି କହିବେ ନାହିଁ, କେବଳ କାନ୍ଦିବେ, ସତେ ଯେମିତି କାନ୍ଦିବାଟା ହିଁ ସେମାନଙ୍କର ସମ୍ବଳ । କାନ୍ଦିଲେ କି ଫଳ ମିଳେ ଯେ ?

ପୁଣି ମନକୁ ବୁଝାଇଲି । ନିଆଶ୍ରୀ ଝିଅଟିଏ ଅସୁବିଧାରେ ପଡ଼ିଛି ବୋଲି ସିନା ହୃଦୟ ଥଗଇ କାନ୍ଦୁଛି ! ମନେ ମନେ ମର୍ମାହତ ହେଲି । ଦୁଃଖ କଲି । ଦେଖେତ ପୁଣି ଥରେ ପଗ୍ଭରେ......

: କୁଆଡ଼େ ଯିବୁ ମା ? କୋମଳ ସ୍ୱରରେ କହିଲି । ବହୁ କଷ୍ଟରେ କାନ୍ଦି କାନ୍ଦି ଏଥର କହିଲା ସେ– କଲିକତା । ଏତ ଏକ ମହା ସମସ୍ୟା । ଶୋଭଙ୍ଗୀ ତରୁଣୀଟିଏ । ପୁଣି ଏକଲା । କିପରି ଯିବ ଏତେ ବାଟ ? କାହା ସଙ୍ଗେ ?

: କଲିକତା କାହିଁକି ଯିବୁ ? ସେଠି ତୋର କିଏ ଅଛି ?

: ମୋ ସ୍ୱାମୀ । ସେ ମୋତେ ଛାଡ଼ି ଗ୍ଭଲିଗଲେ ।

: ସ୍ୱାମୀଙ୍କ ନାମ କ'ଣ ? କ'ଣ ସେ କରନ୍ତି ? କେଉଁଠି ଥା'ନ୍ତି ? ତାଙ୍କ ଠିକଣା କ'ଣ ?

ଅପ୍ରତିଭ ମନେ କଲା ସେ । ସ୍ୱାମୀ ନାଁ ପାଟିରେ ଉଚ୍ଚାରଣ କରିବା ହିନ୍ଦୁନାରୀର ପରମ୍ପରା ବିରୁଦ୍ଧ । ସେଥିପାଇଁ ବୋଧେ କହୁନାହିଁ, ମୁହଁରେ ପ୍ରକାଶ କରୁନାହିଁ । ସେଥିରେ ଆଉ ଜୋର ନ ଦେଇ ଆଶ୍ୱାସନା ଦେଲି । କ୍ରମେ ଦୁର୍ଘଟଣାର କାରଣ ବୁଝି ମର୍ମାହତ ହେଲି । କହିଲି, ସାମାନ୍ୟ ଅସାବଧାନତା ଯୋଗୁଁ ପରିଣାମ ଭୋଗିବାକୁ ହୁଏ । ତେବେ ଧୈର୍ଯ୍ୟ ଧର, ପିଛିଲା ଟ୍ରେନ୍‌ରେ ବସାଇ ଦେବି । ଆଖିରୁ ତା'ର ସେଇ-ପରି ଛୁଟିଥିଲା ଧାରା ଶ୍ରାବଣ......

ଧୈର୍ଯ୍ୟହରା ହୋଇ ବ୍ୟଥାତୁର କଣ୍ଠରେ ପଗ୍ଭରିଲା ଦେବକାନ୍ତ– ସେ ତେବେ ଗଲା କୁଆଡ଼େ ?



Digitized by PPRACHIN, SOA

ଝରେ ଶ୍ରାବଣ

: ଏକ ଉଦାସପୂର୍ଣ୍ଣ ଗଳାରେ ବୃଦ୍ଧ ଉତ୍ତର ଦେଲ— ହାବଡ଼ା ଆଡ଼କୁ ଡାଉନ୍ ପାସେଞ୍ଜର ଟ୍ରେନ୍ ଯାଇଁ ଭୋର ଘରିଟାରେ । ସେତିକିବେଳ ପର୍ଯ୍ୟନ୍ତ ସମ୍ଭାଳି ଅପେକ୍ଷା କରିବାକୁ କହିଥିଲି । କିନ୍ତୁ ଦୈବାତ୍ ଗୋଟାଏ ଖାଲି ରେଳ ଇଞ୍ଜିନ୍ ଆସୁଥିଲ ବାଲେଶ୍ୱର ଆଡ଼ୁ । କାହିଁକି କେଜାଣି ଇଞ୍ଜିନ୍‌ଟି ଏଠାରେ ଅଟକି ରହିଲ । ଘୃଚକ ଠାରୁ ଯାଇଁ ବୁଝିଲି । ଖାଲି ଇଞ୍ଜିନିଟିକୁ ହାବଡ଼ା ନେଉଛି । ସେ ମୋର ଚିହ୍ନା ଲୋକ ଥିଲ । ପ୍ରଥମେ ମୋ ପରି କୁଲିଗିରି କରୁଥିଲ, ତା ପରେ ହେଲପର, କେଇ ବର୍ଷ ହେବ ଡ୍ରାଇଭରକୁ ପଦୋନ୍ନତି ପାଇଛି । ଝିଅଟିର ଦୁର୍ଦ୍ଦଶା ବିଷୟରେ ତାକୁ ଅବଗତ କରଉଲି । ହାବଡ଼ା ପର୍ଯ୍ୟନ୍ତ ନେଇଯିବା ପାଇଁ ସେ ରାଜି ହୋଇଗଲ । ତା'ର ଏମନ୍ତ ଅନୁଗ୍ରହ ପାଇଁ ଧନ୍ୟବାଦ ଦେଲି......

: ଏ କ'ଣ କହୁଛ ମଉସା ! ଜଣେ ଅଜଣା ଡ୍ରାଇଭର ସହିତ କୋଇଲ ଗ୍ଭଳିତ ଇଞ୍ଜିନ୍ ଭିତରେ ବସି ଦୂର ହାବଡ଼ା ପର୍ଯ୍ୟନ୍ତ ଜଣେ ଯୁବ-ବୟସୀ ସ୍ତ୍ରୀ ଲୋକ କ'ଣ ଯାଇପାରେ ? ଏହା କଦାପି ସମ୍ଭବ ନୁହେଁ । ସମ୍ପୂର୍ଣ୍ଣ ଅସମ୍ଭବ । ମିଥ୍ୟା । ଶ୍ରାବଣୀକୁ ମୁଁ ଚିହ୍ନେ, ଜାଣେ । ସେ କଦାପି ରାଜି ହୋଇ ନ ଥିବ । ସେ ଏତେ ନୀଚ ନୁହେଁ···· । ଗର୍ଜି ଉଠିଥିଲ ଦେବକାନ୍ତ ପ୍ରଚଣ୍ଡ କ୍ରୋଧରେ । ଭର୍ତ୍ସନା କରିଥିଲ ବୃଦ୍ଧଜନକୁ— ଏପରି ଦୁର୍ବୁଦ୍ଧି କଲ କାହିଁକି ? ବୁଢ଼ା ବୟସରେ ତୁମର ଏମନ୍ତ ବିପରୀତ ବୁଦ୍ଧି ହେଲ କାହିଁକି ?

ଦେବକାନ୍ତ କପାଳରେ କର କଘାତ୍ରୁ ଥିଲ । ଘଟଣାର ଗାମ୍ଭୀର୍ଯ୍ୟ ବୁଝିପାରି ଅତି ବିନୟ ହୋଇ ବୃଦ୍ଧ ଅନୁତପ୍ତ ଗଳାରେ କହିଲ— ମୁଁ କ'ଣ କରିବିରେ ବାପା, ତାକୁ ବହୁତ ବୁଝାଇ ଥିଲି । ସେ କିନ୍ତୁ ଥିଲ ଅବୁଝା । ଖାଲି କାନ୍ଦ ଆଉ କାନ୍ଦ— ସ୍ୱାମୀ ଛାଡ଼ିକରି ଗ୍ଭଲିଗଲେ, ସେ କ'ଣ ଆଉ ଏଠିକି ଫେରିବେ ? କାଲି କଲିକତାରେ କ'ଣ ଗୋଟେ ପରୀକ୍ଷା ଅଛି । ସେଇଠି ସେ ନିଶ୍ଚୟ ଥିବେ ।

କଲିକତା ଯିବାପାଇଁ ଝିଅ ଏକାବେଳକେ ବ୍ୟସ୍ତ, ବ୍ୟାକୁଳ ହୋଇ ପଡ଼ିଥିଲ । ତା' ଧୈର୍ଯ୍ୟର ବନ୍ଧ ଭୁଷୁଡ଼ି ପଡ଼ିଥିଲ । ପତି ପାଇଁ ତା'ର



Digitized by PPRACHIN, SOA

ଆତୁର ଚିତ୍କାର ମୋତେ ବ୍ୟଥା ଦେଉଥିଲା । ମୁଁ ଆଉ ସମ୍ଭାଳି ପାରି ନଥିଲି । ମୋର ଏ ବୁଢ଼ା ବୟସରେ ଆଉ କ'ଣ ଉଦ୍ଦେଶ୍ୟ ଅଛି ବାପା ? ବୁଢ଼ାର ଆଖି ଲୁହରେ ଢଳଢଳ ଆସିଥିଲା । ପୁଣି କହିଲା– ଠିକ୍ ତୁମର ସ୍ତ୍ରୀ ପରି ମୋର ମଧ୍ୟ ଝିଅଟିଏ ଥିଲା ବାବୁ ! ତାକୁ ଦେଖି ମୋ ଝିଅ କଥା ମନେ ପଡ଼ିଲା । ବହୁ କଷ୍ଟ କରି ସମସ୍ତ ସମ୍ପତ୍ତି ଅଜାଡ଼ି ଦେଇ ତାକୁ ହାତକୁ ଦି'ହାତ କରିଥିଲି । ରୋଜଗାରିଆ ଭେଣ୍ଡା ସ୍ୱାମୀ ତା'ର । କିନ୍ତୁ ଦଇବର ବିଚାର ଭିନ୍ନ ଥିଲା । ଜଅଁଳ ଶିଶୁଟିଏ ଜନ୍ମ ଦେଇ ଝିଅ ମୋର ଆଖି ବୁଜିଲା ସବୁଦିନ ପାଇଁ । ପୁଅଟିଏ । ମା'ର ମୁହଁ ଦେଖୁନି । ମୁଁ ଆଣି ତାକୁ ପାଳିଲି । ପାଞ୍ଚ ପୁରି ଛ' ଚାଲିଲାଣି । ତାକୁଇ ଦେଖି ଦିନ କାଟୁଛି, ତା' ମୁହଁ ଦେଖି ଝିଅ ମୁହଁ ମନେ ପଡ଼ୁଛି । ଝିଅ ମରିଛି ; ଚିହ୍ନ ରଖି ଯାଇଛି ; ସେଇ ସ୍ମୃତି ହିଁ ମଶାଣି ପର୍ଯ୍ୟନ୍ତ ରହିଥିବ । ଦାନ୍ତ ସବୁ ଝଡ଼ି ପଡ଼ିଲାଣି ମୋର, ବଳ ଖସିଲାଣି । ଆମର ବା ଆଉ କେତେ ଦିନ ?– ବୁଢ଼ାର ପୋଛିଲା ଆଖିରେ ପରିତାପର ଚିହ୍ନ ଅନଶୋଚନା ।

ବୃଦ୍ଧର ଦରଦ ହୃଦୟଙ୍ଗମ କରିଥିଲା ଦେବକାନ୍ତ, ତା'ର ଉଦ୍ଦେଶ୍ୟ ଅବଶ୍ୟ ଥିଲା ନିର୍ମଳ । ନିଃଛନ୍ଦ ଆଚରଣ । ତା'ର କିଛି ଦୋଷ ନାହିଁ । ଶ୍ରାବଣୀର ଆତୁର ଆବେଦନରେ ତରଳି ଯାଇ ବୃଦ୍ଧ ବିଚାରଶକ୍ତି ହରାଇ ଥିଲା । ଶ୍ରାବଣୀର ପିଲାଳିଆ ବୁଦ୍ଧି ; ଭବିଷ୍ୟତ ଚିନ୍ତା କରି ପାରିନି । ଚିହ୍ନିନି ଏ ମଣିଷ ସମାଜକୁ । ଦେଖିନି ସେ ସହରୀ ଜନ୍ତୁମାନଙ୍କର ଦୌରାତ୍ମ୍ୟ । ଏ ଘଡ଼ିସନ୍ଧି ସମୟରେ କ'ଣ କରାଯାଇ ପାରେ ? ସମ୍ଭାବିତ ବିପଦଗୁଡ଼ିଏ ଦେବକାନ୍ତ ମନ ଭିତରେ ଠୁଳ ହୋଇ ଭୂମିକମ୍ପ ସୃଷ୍ଟି-କରୁଥିଲେ । ଦୁଶ୍ଚିନ୍ତା ମନକୁ ଆକ୍ରାନ୍ତ କଲା । ଅନ୍ତର ଆଉଟି ଉଠିଲା ।

ଚଳନ୍ତା ଇଞ୍ଜିନ୍‌ଟିଏ ଦ୍ରୁତ ଗତିରେ ଯିବାର ଦେବକାନ୍ତ ଦେଖିଛି ଯେତେବେଳେ ସେ ପାସେଞ୍ଜର ଟ୍ରେନ୍‌ରେ ଜଳେଶ୍ୱରରୁ ରାଜଘାଟ ପେରୁ-ଥିଲା । ବାଟରେ ବିପରୀତମୁଖୀ ଉଭୟ ଚଳମାନ ଯାନ ପରସ୍ପରକୁ ଭେଟିଥିଲେ ମଧ୍ୟ, ଦେବକାନ୍ତ ଶ୍ରାବଣୀକୁ ଦେଖି ପାରି ନଥିଲା, ଦେଖିବା ମଧ୍ୟ ସମ୍ଭବ ନଥିଲା । ଦୁର୍ଭାଗ୍ୟ ।





Digitized by PPRACHIN, SOA

ହାବଡ଼ା ଅଭିମୁଖୀ ଚଳନ୍ତା ରେଳ ଇଞ୍ଜିନ୍ । କୃଷ୍ଣକାୟ, କଦାକାର, ବିଶାଳ ବପୁ ସମ୍ପନ୍ନ ଆସୁରିକ ଚେହେରା ତାର । କାନଫଟା, ହୁଙ୍କାର ମାରି ଧୁମ୍ ଧୁମ୍ ଶବ୍ଦକରି ରେଳ ରାସ୍ତାର ଲୁହା ଗୁଳା ଉପରେ ଗତି କରୁଥିଲା ଇଞ୍ଜିନ୍‌ଟି ଅନ୍ଧାର ଭିତରେ ତୀବ୍ର ବେଗରେ ଛୁଟି ଚାଲିଛି । ଇଞ୍ଜିନ୍ ପ୍ରକୋଷ୍ଠ ଭିତରେ ଥାନ୍ତି ଚାଳକ ଏବଂ ତାର ସହକାରୀ । ଉଭୟଙ୍କର କୃଷ୍ଣବର୍ଣ୍ଣ, ନାଲି ଆଖି । ଉଭୟଙ୍କ ଦେହରେ କୁର୍ତ୍ତା ନଥିଲା । ଝାଳୁଆ ଗଞ୍ଜିରେ କୋଇଲା ମଳିର ପରସ୍ତେ ଆବରଣ । ଭିତରେ ପ୍ରକାଣ୍ଡ କୋଇଲା ଚୁଲି ଜଳୁଥିଲା ପ୍ରଗାଢ଼ ଭାବେ । ଘୋଡ଼ଣିଟି ଖୋଲି ସହକାରୀ ଜଣକ ଗୋଟିଏ ବେଲ୍‌ଚା ସାହାଯ୍ୟରେ ଜଳନ୍ତା ଚୁଲି ଭିତରକୁ କୋଇଲା ମିଙ୍ଗୁଥିଲା । ପ୍ରକୋଷ୍ଠ ଭିତରଟି ଉଷ୍ମ । ଇଞ୍ଜିନ୍‌ର କ୍ରମ ବର୍ଦ୍ଧିଷ୍ଣୁ ବେଗ ସଙ୍ଗେ ତାଳ ରଖି ଦ୍ୱାର ବାଟେ ବିପରୀତ ଦିଗରୁ ଥଣ୍ଡା ପବନ ପଶି ଆସି ଗ୍ରୀଷ୍ମର ଭୀଷଣତା ଲାଘବ କରୁଥିଲା । ଶ୍ରାବଣୀର ଏସବୁ ନୂଆ ଜିନିଷ ପ୍ରତି ନିଘା ନ ଥିଲା ! ଜଳନ୍ତା ଚୁଲିର ଜାଳେଣି ସହିତ ଯେମିତି ପୋଡ଼ି ଯାଉଥିଲା ତା'ର ମନ ।

ସତରେ କ'ଣ ସେ ତାକୁ ଛାଡ଼ି ଦେଇଗଲେ ? ଟିକିଏ ସ୍ତ୍ରୀ କଥା ଚିନ୍ତା କଲେ ନାହିଁ ? ଚାକିରୀ ତାଙ୍କର ବଡ଼ ହେଲା ? ତାଙ୍କ ମନ ଭିତରେ କ'ଣ ଥିଲା କିଏ କହି ପାରିବ ? କିଏ ଜାଣେ ପୁରୁଷ ମନର ଭିତିରି ରହସ୍ୟ ? ପରିସ୍ଥିତିର ବାଧ୍ୟତା ଯୋଗୁଁ ବାହାହୋଇ ନାହାନ୍ତି ! ଶାଶୂ ସିନା ବିବାହ ପାଇଁ ଜିଗର କଲେ, କିଏ ଜାଣେ ସେଥିରେ ତାଙ୍କର ଆନ୍ତରିକତା ଥିଲା କି ନାହିଁ ? ଏମିତି କେତେ ଅବାନ୍ତର ଚିନ୍ତାରେ ଶ୍ରାବଣୀର ମନ ଛନ୍ଦି ହୋଇ ପଡ଼ୁଥିଲା । ସୀତା ବନବାସର କଠୋରତା ଯେମିତି ତା' ଉପରେ ଲଦି ହୋଇ ପଡ଼ୁଥିଲା ।



Digitized by PPRACHIN, SOA

ନାଃ, ଏମିତି ଅସନା ଅବାନ୍ତର ଚିନ୍ତା କରିବା ସୁନ୍ଦର ନୁହେଁ । ଏଇ କେତେଦିନର ମିଳନରେ ସ୍ୱାମୀଠାରୁ ସେ କେଉଁଠି କମ୍ ଆଦର, ସ୍ନେହ ପାଇନାହିଁ ; ବରଂ ପତି ସ୍ନେହରେ ସେ ଅଭିଭୂତା । ମୁହୂର୍ତ୍ତେ ଛାଡ଼ି ସେ କେଉଁଠି ରହିବାକୁ ପସନ୍ଦ କରନ୍ତି ନାହିଁ । ଚଉଠି ଦିନର ଖଗବେଳ ଘଟଣା ସବୁଦିନ ପାଇଁ ମନରେ ଉଜ୍ଜୀବିତ ହୋଇରହିଥିବ । ପତ୍ନୀକୁ ସ୍ନେହ କରିବାରେ କଦାପି ସେ କାର୍ପଣ୍ୟ କରି ନାହାନ୍ତି । ତାଙ୍କର ପ୍ରେମ ସ୍ଫଟିକ ଭଳି ସ୍ୱଚ୍ଛ, ଝରଣାର ପାଣି ଭଳି ନିର୍ମଳ । ତାଙ୍କ ଓଠରେ ମିଠା, ହସରେ ରସ, କଥାରେ ମହକ, ଚାହାଣିରେ କୁହୁକ, ସ୍ନେହରେ ସୁଧା...ତାକୁ ମୁଗ୍ଧ କରିଛି, ମୋହିତ କରିଛି । ଏମିତି ସ୍ୱାମୀର ହାତଧରି ସେ ଗର୍ବିତା । ସ୍ୱାମୀ ସ୍ନେହଠୁଁ ବଳି ସ୍ତ୍ରୀର ଆଉ ବଡ଼ ସମ୍ପଦ କ'ଣ ଅଛି ? ସେ ଏ ମହାଧନର ଅଧିକାରିଣୀ ହୋଇପାରିଛି । ଏପରି ସ୍ୱର୍ଗୀୟ ସ୍ୱାମୀ ବିରୁଦ୍ଧରେ କୌଣସି ଅନୁଯୋଗ ଅଭିଯୋଗ ସ୍ପୃହଣୀୟ ନୁହେଁ, କୌଣସି ମନ୍ଦ ଧାରଣା ମନକୁ ଆଣିବା ହିଁ ତା' ପକ୍ଷେ ପାପ । ନିଶ୍ଚୟ କୌଣସି ଦୁର୍ବାର କାରଣ ଯୋଗୁଁ ସେ କେଉଁଠି ଅଟକି ଯାଉଥିବେ ବା ଚାକିରୀ ଅନ୍ୱେଷଣ ତାଙ୍କୁ ଆଚ୍ଛନ୍ନ କରିଥିବ ।

ଘରପାଇଁ ଚାକିରୀ ଏକାନ୍ତ ଜରୁରୀ, ତାଙ୍କ ପାଇଁ ନିହାତି ଆବଶ୍ୟକ । ବାହାଦିନଠୁ ସବୁବେଳେ ସେ ସେଇକଥା ଚିନ୍ତା କରୁଛନ୍ତି । ସବୁବେଳେ ଭାବୁଛନ୍ତି ଯେଳଗାରର ପନ୍ଥା । କହନ୍ତି, ନିଜ ଗୋଡ଼ରେ ଠିଆ ନ ହେଲା ପର୍ଯ୍ୟନ୍ତ, ନିଜ ଶିଙ୍ଗରେ ମାଟି ନ ତାଡ଼ିଲା ପର୍ଯ୍ୟନ୍ତ ମୋର ନିସ୍ତାର ନାହିଁ । ଭେଣ୍ଡା ଯୁବକ ହୋଇ ଅନ୍ୟ ଉପରେ ନିର୍ଭର କରିବା ଅର୍ଥ ନିଜ ଉପରେ ଅନାସ୍ଥା ଜାରି କରିବା । ମୁଁ ଅକର୍ମଣ୍ୟ ନୁହେଁ, ପଙ୍ଗୁ ନୁହେଁ, ବଳବାନ୍ ସୁମନ୍ତ ପୁରୁଷ । ସବୁ ଥାଉଁ ଥାଉଁ ଏତେ ବଡ଼ ସଂସାରରେ ମୁଁ ବେକାର ହୋଇ ରହିଯିବି ? ବେକାରୀ ଶବ୍ଦଟିକୁ ମୁଁ ଘୃଣାକରେ । ଏ ଶବ୍ଦଟି ଯୁବକ ପତି ଏକ ମହା ଅଭିଶାପ, ଏକାନ୍ତ ଦୁର୍ବିଷହ !

ଶ୍ରାବଣୀ ବୁଝାଏ–କେତେ ବା ବୟସ ତୁମର ? ବାଇଶି ଅବା ତେଇଶି । ଚାକିରୀ କରିବା ସମୟ କୁଆଡ଼େ ଚାଲିଯାଉଛି ଯେ ? ସେଇ



Digitized by PPRACHIN, SOA

ବିଷୟ ସବୁବେଳେ ଚିନ୍ତା କଲେ ସ୍ୱାସ୍ଥ୍ୟ ହାନି ହେବ । ଚାକିରୀ ତ ଖୋଜୁଛ, ଉଦ୍‌ଯୋଗ କରୁଛ । ନ ମିଳିଲେ କ'ଣ ପେଟ ଅପୋଷା ରହିଯିବ ? ଛୋଟ ପରିବାର ତୁମର । ଭାଇ ନାହିଁ କି ଭଗାରି ନାହିଁ । ଚିକିନୀର ବାହାଘର ହୋଇଗଲେ ଘର ଖାଲି । ଯେତେକ ଜମି ଅଛି ତୁମର ଯଥେଷ୍ଟ, ହଳିଆ ମୂଲିଆ ଖାଇ ଆହୁରି ବଳିବ । ଆଜି ସିନା ବାପା ସୁସ୍ଥ ଅଛନ୍ତି, ଜମିବାଡ଼ିର ଯତ୍ନ ନେଇ ପାରୁଛନ୍ତି । ତାଙ୍କ ବଳ ଖସିଲେ ତାର ତତ୍ତ୍ୱ ବୁଝିବ କିଏ ? କ୍ଷେତ ବାଡ଼ି ସିନା ଉଜୁଡ଼ି ଯିବ, ପର ଖାଇବେ ? କହନ୍ତି, ଚାକିରୀ ଗଛର ଛାଇ, ଆଜି ଅଛି କାଲି ନାହିଁ । ପୁଣି କହନ୍ତି, ଚାଷ ନାହିଁ ଯାହାର, ବାସ ନାହିଁ ତାହାର । ଏକଥା କ'ଣ ଭୁଲ ?

ଦେବକାନ୍ତ ସ୍ତବ୍ଧ ହୁଏ । ଗାଙ୍ଗୁଲି ତର୍କଶାସ୍ତ୍ରରେ ନିପୁଣା ଶ୍ରାବଣୀ–ବୟସର ପରିପକ୍ୱତା ଆସି ନଥିଲେ ମଧ୍ୟ ବୁଦ୍ଧିରେ ଖୁବ୍ ପ୍ରଖରତା । ପ୍ରତି ପଦେପଦେ ଉପଦେଶ । ଦେବକାନ୍ତ ମନେମନେ ଖୁବ୍ ତାରିଫ କରେ ସ୍ତ୍ରୀର ଗୁଣାବଳୀକୁ । ତା ସୁନ୍ଦର ନାକକୁ ଚିପି ସ୍ନେହ ରଚନା କରେ । କହେ, ତୁମେ ଯାହା କହୁଛ ଶ୍ରାବଣୀ ସତକଥା । କିନ୍ତୁ ଦେଶର ଢାଞ୍ଚା ବଦଳୁଛି, ସହରାଭିମୁଖୀ ସଭ୍ୟତାରେ ଅର୍ଥନୀତିର ଢାଞ୍ଚା ପରିବର୍ତ୍ତନ ହେଉଛି । ଆଜିକାଲି କେବଳ ଚାଷ ବା କେବଳ ଚାକିରୀ ଯଥେଷ୍ଟ ନୁହେଁ ; ଆମର ଉଭୟ ଆବଶ୍ୟକ । ଚାକିରୀ କରି କ'ଣ ମୁଁ ଜମିବାଡ଼ିର ତତ୍ତ୍ୱ ନେଇ ପାରିବି ନାହିଁ ? ଉଚ୍ଚଶିକ୍ଷା କ'ଣ ମୋର ହଳଲଙ୍ଗଳ ପାଇଁ ଉଦ୍ଦିଷ୍ଟ ?

ଚାକିରୀ ପାଇଁ ସ୍ୱାମୀଙ୍କର ଅଭିଳାଷ ଶ୍ରାବଣୀ ପ୍ରତି ସ୍ତରରେ ଉପଲବ୍ଧି କରେ । ମନେମନେ ଠାକୁରଙ୍କ ପାଖେ ମାନସିକ କରେ–ଶୀଘ୍ର ସ୍ୱାମୀଙ୍କୁ ଭଲ ଚାକିରୀଟିଏ ମିଳିଯାଉ । ତାଙ୍କ ମନସ୍କାମ ପୂର୍ଣ୍ଣ ହୋଇଯାଉ । କେତେ ସେ ସୁଖୀ ନ ହେବ ? ତାଙ୍କ ଆନନ୍ଦରେ ହିଁ ତାର ଖୁସି । କହନ୍ତି, ଚାକିରୀ କଲେ ଆମେ ସହରରେ ରହିବା । ମଜା କରିବା । ଜୀବନକୁ ଉପଭୋଗ କରିବା । ନନୀ ମୁନୀ କୋଳରେ ହସି ଉଠିବେ । ଦେଖିବ କେତେ ମଜା ... ... ଆଃ, କେତେ ଆଶା, କେତେ ଆକାଙ୍କ୍ଷା !



Digitized by PPRACHIN, SOA

ଶ୍ରାବଣୀର ମନ ମଉଳି ଗଲ ବାସୀ ଫୁଲଟିଏ ଭଳି । ସ୍ୱାମୀ ଏଇନେ କେଉଁଠି ଥିବେ ? କିପରି ପାଇବ ? ଜୀବନ ଯାତ୍ରାର ପ୍ରଥମ ସୋପାନରେ ଏମିତି କାହିଁକି ବିଘ୍ନ ଘଟୁଛି ! ଅଗ୍ନେନକ ବିଚ୍ଛେଦ ତାକୁ ବିପନ୍ନ କରିଛି । ତା' ଆଖିରେ ଅଶ୍ରୁର ଅବାରିତ ଝରଣା । ଦୁଃଖ ପଖଳା ମୁହଁକୁ ଲୁଗାକାନିରେ ପୋଛିଲ । ଗଦାଏ ଚିନ୍ତା ମୁଣ୍ଡେଇ ରାତ୍ରି ଉଦ୍‌ଯାପନ କରୁଥିଲ ଶ୍ରାବଣୀ ରେଳ ଇଞ୍ଜିନ୍‌ର ପ୍ରକୋଷ୍ଠ ଭିତରେ । ଗଡ଼ି ଗଢ଼ି ଗ୍ଲୁଥିଲ ରେଳ ଇଞ୍ଜିନ୍ ।

ଗ୍ରଇଭ ଏବଂ ତାର ସହକାରୀ ଇଞ୍ଜନ୍ ଗ୍ରଳନା କାମରେ ଲଗି ପଡ଼ିଥିଲେ । ଶ୍ରାବଣୀ ନିଜକୁ ସଙ୍କୁଚିତ କରିନେଇ କାଠ ଭଳି ଛିଡ଼ା ହୋଇ ରହିଥିଲ । ଇଞ୍ଜିନ୍ ଚୁଲିରେ କୋଇଲର ଅଗ୍ନି ତାଣ୍ଡବ; ହୁତ୍ ହୁର୍ ହୋଇ ଜଳୁଥିଲ ନିଆଁ, ଜଳୁଥିଲ ଶ୍ରାବଣୀର ହୃଦୟ ।

କାର୍ଯ୍ୟରତ ଗ୍ରଇଭର ହାତ ହଠାତ୍ ଶ୍ରାବଣୀ ଦେହକୁ ସ୍ପର୍ଶକଲ । ଶ୍ରାବଣୀ ନିଜକୁ ସଙ୍କୁଚିତ କରିନେଲ ସାଧବ ବୋହୂ ପୋକ ପରି । ଦେହକୁ ସମ୍ପୂର୍ଣ୍ଣ ଭବେ ବସ୍ତ୍ରାବୃତ କରି ନେଲ, ମୁଣ୍ଡର ଓଢଣାକୁ ଆହୁରି ତଳକୁ ଟାଣିଲ, ଦୃଢୀଭୂତ କଲ । ସ୍ଥାନାଭବ ଯୋଗୁଁ ଡ୍ରାଇଭରର ହାତ ଦେହରେ ଲଗିଥାଇପାରେ ।

ଡ୍ରାଇଭରର ପୁଣି ସେଇ ସ୍ୱଭବ । ଏଥର ଶ୍ରାବଣୀର ଚେତା ପଶିଲ । ସେ ପିଲ ନୁହେଁ, ପ୍ରାପ୍ତ ବୟସା ମହିଳା, ବିବାହିତା ନାରୀ । ପୁରୁଷର ଉଦ୍ଦେଶ୍ୟ ଉପଲବ୍ଧି କରିବାର ଶକ୍ତି ତାର ଅଛି । ମନ୍ଦ ଉଦ୍ଦେଶ୍ୟ ଜାଣିପାରି ସେ ଚିହିରି ଉଠିଲ ବାଘୁଣୀ ଭଳି, ଫୁଲି ଉଠିଲ ନାଗୁଣୀ ପରି । ବଡ଼ ପାଟିରେ ଚିତ୍କାର କଲ–"ଗାଡ଼ି ଏଇଠି ରଖ, ମୁଁ ଆଉ ଇଞ୍ଚେ ଆଗକୁ ଯିବି ନାହିଁ, ଓହ୍ଲେଇ ଯିବି । ରଖୁଚ ନା ନାହିଁ ?"

ଉପାଣିଆ ହସଟିଏ ହସିଥିଲ ଡ୍ରାଇଭର । କାହାକୁ ଏ ସ୍ତ୍ରୀ ଲୋକଟି ଧମକ ଦେଉଛି ? ଏଠି କେହି ନାହାନ୍ତି ପିଠିରେ ପଡ଼ିବାକୁ ।



Digitized by PPRACHIN, SOA

ଅବଶ୍ୟ ବୃଦ୍ଧ ଡ୍ରାଇଭର ନଥିଲା ମନ୍ଦ ଉଦ୍ଦେଶ୍ୟ । କାମ ବେଳେ ଏମିତି ତା'ର ହାତ ଥରେ ଅଧେ ଅଜାଣତରେ ଝିଅଟି ଦେହରେ ବାଜି ଯାଇଥିଲା । ତା'ର ତର୍ଜି ଦେଖି ଚଢ଼ା ଗଳାରେ କହିଥିଲା–ଦେଖୁଛୁ ! ଚୁଲି ଭିତରେ ନିଆଁ ଜଳୁଛି ହୁତ୍ ହୁତ୍ ? ବେଳଗ୍ରରେ କୋଇଲା ଯେମିତି ଫିଙ୍ଗା ଯାଉଛି ଚୁଲି ଭିତରକୁ, ଆଉ ଯଦି ବେଶୀ ବକ୍ ବକ୍ ହେଉ, ତୋର ଅବସ୍ଥା ମଧ୍ୟ କୋଇଲା ଭଳି ହେବ । ଚୁପ୍‌ହୋଇ ବସ ...

ଶ୍ରାବଣୀ କମ୍ପିତ ଗଳାରେ କହି ଉଠିଥିଲା–ଖବରଦାର, ଆଉଥରେ ଯଦି ଦେହରେ ହାତ ବାଜେ ମୁଁ ତଳକୁ ଡେଇଁ ପଡ଼ିବି, ମଲେ ମରିବି ପଛକେ...

ଆରେ ବାପରେ ! ବାହାରୁ ଲାଗୁଛି, ସ୍ତ୍ରୀ ଲୋକଟି ସରଳ । କିନ୍ତୁ ସାମାନ୍ୟ ହସ୍ତସ୍ପର୍ଶରେ ଏମିତି ମହାକାଳୀ ରୂପ ତା'ର ! ଆଉକିଛି ଅଧିକ ହେଲେ ସେତ ପ୍ରଳୟ କରିଦେବ ! ଡ୍ରାଇଭର ଶଙ୍କି ଯାଇଥିଲା, ପରିଣାମକୁ ଭୟ କରିଥିଲା । ତା'ର ଧାରଣା ହୁଏତ ଭୁଲଥିଲା । ଭାବିଥିଲା ସାଧାରଣ ଗାଉଁଲି ଝିଅଟିଏ । ବର୍ତ୍ତମାନ ଦେଖୁଛି, ସେ ଅସାଧାରଣ । ଯେଉଁ ମହିଳା ପରିଣାମକୁ ଭ୍ରୂକ୍ଷେପ ନ କରି ନିର୍ଜନ ରାତିରେ ନିର୍ଭୟରେ ଅଚିହ୍ନା, ଅପରିଚିତ ପୁରୁଷ ସଙ୍ଗେ ଯାତ୍ରା କରିପାରେ, ତା'ର ଅନ୍ତର୍ଶକ୍ତି ଓ ସାହସ ଯେ ଅପରିମେୟ, ଏହା ଅନୁଭବ କରି ବୁଢ଼ା ଡ୍ରାଇଭରଟି ମନେ ମନେ ଚକିତ ହୋଇ ପଡ଼ିଥିଲା । ନିଜକୁ ସଯତ କରି ନେଇ, ସଫେଇ କରି କଣ୍ଠ ବଦଳେଇ କହିଲା–ତୁ ଝିଅ ଅକାରଣରେ ବ୍ୟସ୍ତ ହୋଇ ପଡୁଛୁ । ତୋତେ ନିରାପଦରେ ହାବଡ଼ାରେ ପହଞ୍ଚେଇବା ପାଇଁ ଗୁରୁଚରଣଙ୍କୁ କଥା ଦେଇଛି । ମୁଁ ମୋ ଦାୟିତ୍ୱ ନିଷ୍ଠା ନିଷ୍ଠାର ସହିତ ତୁଲାଇବି । ଏମିତି ଅସମ୍ଭାଳ ହୋଇ ଠିଆ ହୋଇ ରହିଲେ ଇଞ୍ଜିନ୍ ଚାଳନାରେ ବ୍ୟାଘାତ ଘଟିବ, ଆମ ନଜର ଗଣ୍ଡଗୋଳ ହୋଇଯିବ । ବାଟ ଭୁଲ ହୋଇଯିବ । ଡ୍ରାଇଭରୀ କାମ । ହେଲପର ସିଟ୍‌ରେ ବିଶ୍ରାମ ନେ । ଆମେ ସିନା ରାତ୍ରି ଅନିଦ୍ରାରେ ଅଭ୍ୟସ୍ତ ...



Digitized by PPRACHIN, SOA

ଡ୍ରାଇଭର ସିନା ଆଚରଣ ପରିବର୍ତ୍ତନ କରିଥିଲା, ହେଲେ ଶ୍ରାବଣୀର ଧାରଣା ଅପରିବର୍ତ୍ତିତ ରହିଥିଲା । ମନରୁ ଭୟକୁ ଆଦୌ ପୋଛି ପାରି ନଥିଲା ସେ । ତା'ର ମନେ ହେଉଥିଲା, ଘୋର ଜଙ୍ଗଲର ବିପଦ ସଙ୍କୁଳ ରାସ୍ତାରେ ସେ ଗୋଟିଏ ବେସାହାରା ପଥଚାରୀ । ଏଠି ମଣିଷଖିଆ ବାଘ ମାତିଛି; ଆତଙ୍କ ଜାରି କରିଛି । ଏଠି ଜୀବନ ପ୍ରତି ମୁହୂର୍ତ୍ତରେ ବିପଦାପନ୍ନ, ତାର ଇଜ୍ଜତ, ତାର ସତୀତ୍ୱ, ତାର ନାରୀତ୍ୱ ସଙ୍କଟାପନ୍ନ । ହିଂସ୍ରଜନ୍ତୁଙ୍କ ହାବୁଡ଼ରୁ ବର୍ତ୍ତିବ କିପରି ? ଶ୍ରାବଣୀ ଭୟରେ ଥରୁଥିଲା ।

ରାତ୍ରିର ନିଶବ୍ଦତାକୁ ବିଦୀର୍ଣ୍ଣ କରି ରେଳ ଇଞ୍ଜିନ୍ ହୁସାର ଛାଡୁଥିଲା, ବାୟୁମଣ୍ଡଳ କମ୍ପୁଥିଲା, ଭୂଇଁ ଥରୁଥିଲା, ଆତଙ୍କିତ ହୋଇ ପଡୁଥିଲା ଶ୍ରାବଣୀ । ଇଞ୍ଜିନ୍ ଗୋଟିଏ କଳ ନୁହେଁ, କାଳ । ତା' ଭୀମ ରଡ଼ିରେ ସେ ଶୁଣୁଥିଲା ମହାକାଳର ଗର୍ଜ୍ଜନ ।

ରାତିର ଶେଷ ପହର । ଆକାଶ ଠାଏ ଠାଏ ପରିଷ୍କାର ଦିଶିଲାଣି । ପାହାନ୍ତି ତାରା ମାନଙ୍କର ଉଦ୍‌ଯାପନ ମେଳା ଅନୁଷ୍ଠିତ ହେଉଥିଲା । ଇଞ୍ଜିନ୍ ଅଟକିଲା ଗୋଟିଏ ବଡ଼ ଷ୍ଟେସନରେ ।

କେଉ ଷ୍ଟେସନ ଏଟା ? ହାବଡ଼ା ନୁହେଁ ତ ? ପଚାରିବାକୁ ସାହସ ହେଲନାହିଁ ଶ୍ରାବଣୀର । ବାହାରକୁ ଉଣ୍ଟିଲା । ସ୍ଥାନର ନାଁଟି ପଢ଼ିବାକୁ ଚେଷ୍ଟାକଲା ସୂଚିତ ବୋର୍ଡ଼ରୁ । ଇଂରଜୀ ଏବଂ ବଙ୍ଗଳା ଅକ୍ଷରରେ ସେ ଅଜ୍ଞ, ଅପରିଚିତା । ତଥାପି ନାମଟି ପଞ୍ଚାକ୍ଷର ହୋଇଥିବାରୁ ନିଶ୍ଚିତ୍ ଭାବେ ଜାଣି ପାରିଲା ଏହା ହାଓଡ଼ା ନୁହେଁ । ଡ୍ରାଇଭର ଅନ୍ୟମନସ୍କ ଥିଲା । ସହକାରୀ ଜଣକ ଚା' ଉଦ୍ଦେଶ୍ୟରେ ବାହାରକୁ ଯାଇଥିଲା । ଇତ୍ୟବସରରେ ସୁଯୋଗ ଦେଖି ଚୁଟ୍‌କରି ଇସ୍ପାତ ପ୍ଲାଟଫର୍ମ ଉପରକୁ ଡ଼େଇଁପଡ଼ି ଜୋରରେ ଦୌଡ଼ିବାକୁ ଲାଗିଲା ଶ୍ରାବଣୀ ଏକ ନିଃଶ୍ୱାସୀ ହୋଇ । ଡ୍ରାଇଭର ପଛରୁ ଚିତ୍କାର କରୁଥିଲା–''ଯାଉଛୁ କୁଆଡ଼େ ? ଏଇଟା ହାବଡ଼ା ନୁହେଁ, ଖଡ଼ଗପୁର । ଫେରି ଆସ, ଫେରି ଆସ, ଆମେ ସକାଳ ଦଶଟାରେ ହାବଡ଼ା ପହଁଞ୍ଚିବା ... ...



Digitized by PPRACHIN, SOA

୯ରେ ଶ୍ରାବଣ

ପ୍ରଶସ୍ତ ପ୍ଲାଟଫର୍ମର ମଝାମଝି ଅଞ୍ଚଳରେ ଠିଆହୋଇ ଦମ୍ଭ ମାରିଲା ଶ୍ରାବଣୀ । ନିଃଶ୍ୱାସ ପ୍ରଶ୍ୱାସର ପ୍ରଖରତା ହେତୁ ଦେହ ଧଇଁ ପେଲୁଥିଲା । ଅନେକ ଗୁଡ଼ିଏ ଯାତ୍ରୀ ପ୍ଲାଟଫର୍ମରେ ବସିଥିଲେ, କେତେକ ସିମେଣ୍ଟ ବେଞ୍ଚରେ ବସି ଢୁଳାଉଥିଲେ । ନିର୍ଦ୍ଦିଷ୍ଟ ଯାନପାଇଁ ସମସ୍ତେ ଅପେକ୍ଷମାଣ । ଜନାରଣ୍ୟ ଦେଖି ଶ୍ରାବଣୀ ସାମାନ୍ୟ ଆଶ୍ୱସ୍ତି ବୋଧକଲା, ଦେହରେ କିଛି ଦମ୍ଭ ଜାତ ହେଲା । ଅଳ୍ପକେ ବର୍ତ୍ତି ଯାଇଛି । ଦି' ଜଣ ମର୍ଦ୍ଦଙ୍କ ମେଳରେ ଏତେ ଗୁଡ଼ାଏ ବାଟ ଗ୍ଭଲି ଆସିଥିଲା ଗୋଟେ ଝିଅାଲରେ । କିଛି ଯଦି ଅଘଟଣ ଘଟିଥାନ୍ତା ତାର ସର୍ବନାଶ ହୋଇଥାନ୍ତା । କପାଳ ଜୋରରୁ ସିନା ବଞ୍ଚିଗଲା ! ଛାତି ଉପରୁ ଲୁଗା ଆଡ଼େଇ ନେଣ୍ଡାଏ ଛେପ ଥୁକିଲା ।

ଅନ୍ୟପାଖ ପ୍ଲାଟଫର୍ମରେ ପାସେଞ୍ଜର-ପୂର୍ଣ୍ଣ ରେଳଡ଼ବା ଗୁଡ଼ିଏ ସ୍ଥିର ହୋଇ ଛିଡ଼ା ହୋଇଥିଲେ । କାହାକୁ କିଛି ନ କହି ଗୋଟିଏ ବଗି ଭିତରକୁ ଚଢ଼ିଗଲା । ପାସେଞ୍ଜରଙ୍କ ଗହଳରେ ଖାଲି ସିଟ୍‌ଟିଏ ପାଇ ବସି ରହିଲା । କିଛି ସମୟ ପରେ ଡ଼ବାଗୁଡ଼ିକ ଗତି କରିବାକୁ ଆରମ୍ଭ କଲେ । ପ୍ରଥମେ ଧୀରେ ଧୀରେ, ତା ପରେ ଗାଡ଼ିର କ୍ରମବର୍ଦ୍ଧମାନ ବେଗ । ଅଜସ୍ର ଦୁଶ୍ଚିନ୍ତା ମୁଣ୍ଡ ଭିତରେ ଲଦି ହୋଇ ପଡ଼ୁଥିଲା । ଅଶାନ୍ତ ଲହରୀ ମାଳା ହୃଦୟ-ସମୁଦ୍ରକୁ ମନ୍ଥନ କରୁଥିଲା ।

କଳା ପୋଷାକଧାରୀ ବାବୁ ଜଣେ ଆସି ଟିକଟ ମାଗିଲେଣି । ହାବଭାବରୁ ଜଣା ପଡ଼ୁଥିଲା, ସେ ଜଣେ ବିଭାଗୀୟ କର୍ମଗ୍ଭରୀ, ଟିକଟ ଯାଞ୍ଚକାରୀ । ଶ୍ରାବଣୀର କିଛି ଦେବାର ନଥିଲା, ଟିକଟ ଦେଖାଇବାର ନଥିଲା, କିଛି ମଧ୍ୟ କହିବାର ନଥିଲା ।

ଟିକଟ ?

କେବଳ ଲୁହରେ ଉତ୍ତର ଦେଲା ଶ୍ରାବଣୀ ।

ଯାଞ୍ଚକାରୀ ଭଦ୍ରଲୋକ ଜଣକ କିଛି ନ ବୁଝିପାରି ପଗ୍ଭରିଲେ ଲହରେଇ ଲହରେଇ । ମହିଳାଙ୍କ ମୁହଁରୁ କିଛି ବାଚନିକ ଉତ୍ତର



Digitized by PPRACHIN, SOA

ନ ମିଳିବାରୁ ବିରକ୍ତି ପ୍ରକାଶ କଲେ ମଧ୍ୟ । ପୁଣି ଅଳ୍ପ ସମୟ ପରେ ଅପେକ୍ଷାକୃତ ଚଡାଗଳାରେ କହିଲେ–ପଗ୍ଲୁଛି ପଗ ଯିବ କୁଆଡ଼େ ?

ଏଥର ରକ୍ଷାନାହିଁ । କିଛି ନ କହି ବାଟ ନାହିଁ । ମୁହଁ ତଳକୁ ପୋତି କ୍ଷୀଣ ଏବଂ ନିରୁତ୍ତାପ ଗଳାରେ କହିଲ ଶ୍ରାବଣୀ–ଯିବି କଲିକତା, ମୋ ସ୍ୱାମୀଙ୍କ ପାଖକୁ ...

ପାଗଳୀଟାଏ ନା କ'ଣ ? ଚିନ୍ତା କଲେ ଯାଞ୍ଚକାରୀ ବାବୁ । ପୁଣିଟିକେ ଚିନ୍ତାକରି କହିଲେ–କଲିକତା ଯଦି ଯିବାକୁ ଥିଲ ଏ ଟ୍ରେନ୍‌ରେ ଚଢିଲ କାହିଁକି ? ଏଇଟାତ ହାବଡ଼ା–ବିଳାସପୁର ପାସେଞ୍ଜର ଗାଡ଼ି, ତମେତ ଯାଉଛ କଲିକତାର ଠିକ୍ ବିପରୀତ ଦିଗକୁ । କାହାକୁ ପଗ୍ଲରି ଗାଡ଼ିରେ ବସିଲନି ?

ଶ୍ରାବଣୀ ଆହୁରି ଜୋରରେ ଲୁହ ଢାଳିବାକୁ ଲଗିଲ । ସ୍ୱାମୀ ଠାରୁ ଦୂରେଇ ଦୂରେଇ ଯାଉଛି, ନଦୀ ସ୍ରୋତରେ ଭସି ଭସି ଯାଉଛି ଅଥଳ ଦରିଆ ଗର୍ଭକୁ । ସତରେ ସେ କ'ଣ ଆଉ ସ୍ୱାମୀଙ୍କ ମୁହଁ ଦେଖିବ ? କା ଆଗେ କହିବ ତା ମର୍ମ କଥା ? କିଏ ବୁଝିବ ତା ହୃଦୟର ବ୍ୟଥା ?

ପ୍ରଶ୍ନକର୍ତ୍ତା ଭଦ୍ରବ୍ୟକ୍ତି ଜଣକ ଥିଲେ ଜଣେ ଭେଣ୍ଡା ଯୁବକ । ହାବଭବ ଏବଂ ଭଷାରୁ ଓଡ଼ିଆପରି ମନେ ହେଉଥିଲ । ଶ୍ରାବଣୀ ନୀରବ ରହି ଆଖି ପୋଛୁଥିଲ ବେଳେ ଦୟା ପରବଶ ହୋଇ କୋମଳ କଣ୍ଠରେ କହିଲେ–ବ୍ୟସ୍ତ ହୁଅନି ଭଉଣୀ, ମୁଁ ପୁଣି ହାବଡ଼ା ଫେରିବି । ଯଦି ଆପତ୍ତି ନଥାଏ, ମୋ ସଙ୍ଗେ ଲେଉଟାଣି ଗାଡ଼ିରେ କଲିକତା ଫେରିପାର...

ପୁଣି ଜଣେ ଅପରିଚିତ ଯୁବକ ସହିତ କଲିକତା ଯାତ୍ରା କରିବାର ଆହ୍ୱାନ ଶ୍ରାବଣୀକୁ ଆହୁରି ଶଂକିତ କଲ । ପୂର୍ବ ଘଟଣାର ପୁନରାବୃତ୍ତି ! ସେ ହଠାତ୍ କିଛି ସିଦ୍ଧାନ୍ତ କରି ପାରିଲନି । ଜୀବନର ଦୁର୍ଗମ ପଥରେ ଏପରି ସବୁ ଅଯାଚିତ ସାହାଯ୍ୟ ସଦା ହୋଇପଡ଼େ । କେବଳ ନାରୀ



Digitized by PPRACHIN, SOA

ବୋଲି ସିନା ! କ'ଣ ମିଠାବା ତା'ଠି ଅଛି ? ସେଇ ରହସ୍ୟକୁ ମୁଣ୍ଡରେ ପୂରାଇ ଶ୍ରାବଣୀ ବାରମ୍ବାର ଚିନ୍ତା କରିବାକୁ ଲାଗିଲା ।

ଗନ୍ଧ ବାଗି ଭଅଁରମାନେ ଫୁଲର ଚତୁର୍ଦ୍ଦିଗରେ ଗୁଞ୍ଜରଣ କରନ୍ତି । ଏତ ସୃଷ୍ଟିର ରହସ୍ୟ । ନାରୀ ଯୌବନରେ କିମିଆ ଅଛି । ଆଖିରେ ପ୍ରତିଶ୍ରୁତିଭରା ଛଳନା, ଓଠରେ ଆମୁଗ୍ଧ କରିବାର ଚୁମ୍ବକୀୟ ଶକ୍ତି ଅଛି । ପୁରୁଷ ପିଲାକୁ ଦୋଷ ଦେଇ ଲାଭ କ'ଣ ? ନିଜେ ଠିକ୍ ତ ଦୁନିଆ ଠିକ୍ । ଏବେଠୁଁ ଚିନ୍ତିତ ହେବ କାହିଁକି ? ବେଳ ଆସିଲେ ବିଗ୍ଭର କରିବ । ପରିସ୍ଥିତି ଉପୁଜିଲେ ସେ ମୁକାବିଲା କରିବ । ତା'ର ଆଜି ଦୁର୍ଯୋଗ ସମୟ ପଡ଼ିଅଛି । ଭଦ୍ରଲୋକର ଅନୁରୋଧ ବା ଉପଦେଶକୁ ଉପେକ୍ଷା କରିବା ତାର ନିର୍ବୋଧତା ହେବ । କଲିକତା ଯାତ୍ରା ସୁନିଶ୍ଚିତ । ସେଇଠି ତା ସ୍ୱାମୀ ଥିବେ । ସେଇଠି ସେ ତାଙ୍କୁ ଖୋଜି ପାଇ ପାରିବ ।

ଲୋକଟି ଭଉଣୀ ବୋଲି ସମ୍ବୋଧନ କଲଣି । ବଚନରେ ମଧୁରତା । ସବୁଲୋକ କ'ଣ ଧପ୍‌ପାବାଜ ହୋଇପାରନ୍ତି ? ସବୁଲୋକଙ୍କୁ ଯଦି ଅବିଶ୍ୱାସ କରଯାଏ, ସଂସାରରେ, ସମାଜରେ ଚଳିବା, ତିଷ୍ଠିବା, ବଞ୍ଚିବା ଯେ ଅସମ୍ଭବ ! ତେଣୁ ଚିନ୍ତାକରି, ମୁଣ୍ଡ ଟୁଙ୍ଗାରି ଶ୍ରାବଣୀ ସମ୍ମତି ପ୍ରକାଶ କଲା । ଏହାଛଡ଼ା ତା'ର ବିକଳ୍ପ ପନ୍ଥା ଆଉ କ'ଣ ବା ଅଛି ? ଗଭୀର ଗଣ୍ଡ ଜଳରେ ବୁଡ଼ି ଯାଉଥିବା ମଣିଷଟିଏ କୁଟା ଖିଅ ଖଣ୍ଡେ ଧରି ରକ୍ଷା ପାଇବା ଭଳି ଶ୍ରାବଣୀର ଆର୍ତ୍ତଧ୍ୱନି । ସଙ୍କଟ ସମୟରେ ଆଗପଛ ବିଗ୍ଭର କରିବାକୁ ବେଳ ନଥାଏ । ତାର ମହାନଗରୀ ଯାତ୍ରା ଆଉ ସୁଖ ପାଇଁ ନୁହେଁ, ଆନନ୍ଦ ପାଇଁ ନୁହେଁ, ସଉକ ପାଇଁ ନୁହେଁ । ତାର ଏହା ହୁଏତ ଏକ ତୀର୍ଥ ଯାତ୍ରା । ପତି ଦର୍ଶନ ହିଁ ତା'ର ବର୍ତ୍ତମାନ ଏକମାତ୍ର ଉଦ୍ଦେଶ୍ୟ, ସ୍ୱାମୀ ସହିତ ପୁନର୍ମିଳନ ହିଁ ତାର ଲକ୍ଷ୍ୟ । ସେ ଗ୍ରହଣ କରିବ ପତିବ୍ରତା ତପସ୍ୱିନୀର ନିଷ୍ଠା । କଷ୍ଟ ସହିବାକୁ ସେ ପ୍ରସ୍ତୁତ । କଷ୍ଟ ଅରଜିଲେ ସିନା କୃଷ୍ଣ ପ୍ରାପତି ! ଭଗବତର ବାଣୀ ସେ ପାଶୋରି ଯାଇନି । ଯେଉଁ ଦେଶରେ ସୀତା, ସାବିତ୍ରୀ ଜନ୍ମିଥିଲେ, ଯେଉଁଠି ମହାସତୀ ଅନୁସୂୟା ପତି ଭକ୍ତିର ମହାନ ପରମ୍ପରା ସୃଷ୍ଟିକରି ଯାଇଛନ୍ତି, ସେଠି ନାରୀ କେବେ ସ୍ୱାର୍ଥପର ହୋଇ ପାରେନା । ସ୍ୱାମ୍ୟାନୁରକ୍ତିରେ ତାର ଜୀବନ ଗଢ଼ା । ତ୍ୟାଗ, ସେବା, ଉତ୍ସର୍ଗର ସେ ପ୍ରତୀକ । 



Digitized by PPRACHIN, SOA

ତହିଁ ଆରଦିନ ପୂର୍ବାହ୍ନରେ ଦେବକାନ୍ତ ପହଞ୍ଚିଲା ହାବଡ଼ା ଷ୍ଟେସନରେ । ମହାନଗରୀ କଲିକତା ସ୍ୱାଗତ କରୁଛି ତାର ଚଉଦ ଗୋଟି ପ୍ଲାଟଫର୍ମ ମାଧ୍ୟମରେ । ଧାଡ଼ିକି ଧାଡ଼ି ରେଳଗାଡ଼ି ପ୍ଲାଟଫର୍ମ ଭିତରକୁ ପ୍ରବେଶ କରୁଛନ୍ତି ; କେତୋଟା ବାହାରୁଛନ୍ତି ; ଆଉ କେଇଟା ଛିଡ଼ା ହୋଇ ଦମ୍ ମାରୁଛନ୍ତି । ଗାଡ଼ିମାନଙ୍କରେ ଯାତ୍ରୀମାନଙ୍କ ଓହ୍ଲାଚଢ଼ା ମଣିଷର ନିଃଶ୍ୱାସ ପ୍ରଶ୍ୱାସ ପରି ଅହରହ ଲାଗି ରହିଛି । ଦିନ ବେଳେ ବି ଏଠି ବିଜୁଳି ଆଲୁଅରେ ରୋଷଣୀ ; ଜନସ୍ରୋତର ବିରାମ ନାହିଁ ; ଆଖିକୁ ଖାଲି ଦିଶୁଛି ମଣିଷ ମୁଣ୍ଡମାଳ । ଏ ବିରାଟ ଜନ ସମୁଦ୍ରରୁ ତା'ର ଛୋଟ ଶାମୁକାଟିକୁ ଖୋଜି ପାଇବ କିପରି ?

ଭୟମିଶ୍ରିତ ଉଚ୍ଛ୍ୱାସରେ ଧାଉଁଥିଲା ଷ୍ଟେସନ ଗୋଟାକ ଯାକ । ଖୋଜିଲା ପ୍ରତି ପ୍ଲାଟଫର୍ମର ଅନ୍ଦି କନ୍ଦି ; ଦେଖିଲା ପ୍ରତି ବଗିକୁ ; ନିରେଖିଲା ପ୍ଲାଟଫର୍ମ ଭିତରକୁ ପ୍ରବେଶ କରୁଥିବା ପ୍ରତି ରେଳଗାଡ଼ିକୁ । ଧାଇଁ ଯାଉଥିଲା ଇଂଜିନ୍ ଚାଳକମାନଙ୍କ ପାଖକୁ । ନେହୁରା ହୋଇ ମିନତି ଭରା କଣ୍ଠରେ ପଚାରୁଥିଲା—ମୋ ସ୍ତ୍ରୀକୁ ଦେଖିଛନ୍ତି ଆଜ୍ଞା ?

ସାମାନ୍ୟ ସମବେଦନାଠୁ ଦୂରର କଥା, ତାର ଆତୁର ଆବେଦନକୁ ଗୋଟେ ପାଗଳର ପ୍ରଳାପ ଭାବି ବିକୃତ ମୁହଁରେ ଘଉଡ଼ି ଦେଉଥିଲେ ସମସ୍ତେ । ଖାଲି ରେଳ ଇଞ୍ଜିନ୍‌ଟାଏ ଦୃଶ୍ୟ ହେଲେ ଚମକି ପଡୁଥିଲା ଦେବକାନ୍ତ । ଇଞ୍ଜିନର ତୂର୍ଯ୍ୟନାଦ ତା' ହୃଦୟ ଭିତରେ ଭୂତକମ୍ପ ସୃଷ୍ଟି କରୁଥିଲା ବହୁ ସମୟ ପର୍ଯ୍ୟନ୍ତ । କୁଆଡ଼େ ଗଲା ଶ୍ରାବଣୀ ? ତାର ଚାନ୍ଦମୁହଁ, କଅଁଳ କଣ୍ଠସ୍ୱର, ସୁଗଠିତ ଶରୀରର ପ୍ରତ୍ୟେକ ଅଙ୍ଗ ମାନସ ପଟରେ ଉଦ୍‌ଭାସିତ ହୋଇ ଉଠୁଥିଲା । ମନ ତାର କୋରି ବିଦାରି



Digitized by PPRACHIN, SOA

ହୋଇଯାଉଥିଲା । ସରଳତାର ଶିକାର ହେଲା ନାହିଁତ କେଉଁଠାରେ ? ଦୁର୍ବଳ ମନକୁ ଦୁଶ୍ଚିନ୍ତା ଆହତ କରୁଥିଲା ବାରମ୍ବାର । ହତାଶର ଢେଉ ମାଡ଼ି ଆସୁଥିଲା ମୁଣ୍ଡ ଉପରକୁ । ସାମାନ୍ୟ ତ୍ରୁଟିର ଭୟାବହତା ଚିନ୍ତାକରି ସେ ଶକ୍ତିହୀନା ହୋଇ ପଡୁଥିଲା ।

ହାବଡ଼ା ପ୍ଲାଟ ଫର୍ମର ଘନଘଟା ଭିତରେ ଦିନଟି କଟିଲା ଅତି ହନ୍ତସନ୍ତ ଅବସ୍ଥାରେ । ସହରୀ ସନ୍ଧ୍ୟା ଆସିଲା ତାର ଚିରଚରିତ ଦୃଶ୍ୟ ଧରି । ବିଜୁଳି ଆଲୁଅର ଥାଟ ଆହୁରି ଉଜ୍ଜ୍ୱଳ ହୋଇ ଉଠିଲା । ଆଖି ଆକର୍ଷଣକାରୀ ରଙ୍ଗୀନ୍ ଆଲୋକ ସଜ୍ଜା ମଧ୍ୟରେ ଚିତ୍ତହରଣକାରୀ ବିଜ୍ଞାପନର ପ୍ରଦର୍ଶନୀ ଆଖି ଆଗରେ ଝଲ୍‌ମଲ୍ ହେଉଥିଲା । ଡ଼ାକବାଜି ଯନ୍ତ ମୁହଁରୁ ରେଳ ପ୍ରବେଶ ଓ ପ୍ରସ୍ଥାନର ଘନଘନ ଘୋଷଣା ପରିବେଶକୁ କରୁଥିଲା ଅଧିକ ମୁଖରିତ । କିନ୍ତୁ ଏତେ କୋଳାହଳ ମଧ୍ୟରେ ଦେବକାନ୍ତ ଅନୁଭବ କରୁଥିଲା ନିର୍ଜନତା । ସମଗ୍ର ଶରୀରରେ ତାର ଅନ୍ତର୍ବେଦନା ପ୍ରାଧାନ୍ୟ ବିସ୍ତାର କରିଥିଲା । କୌଣସି କଥା ତା କାନ ଭିତରକୁ ପଶୁ ନଥିଲା, କିଛି ଦିଶୁ ନଥିଲା, କେବଳ ଦିଶୁଥିଲା ଶ୍ରାବଣୀର ଆଖି ଛଳଛଳ ମୁହଁ, ଶୁଣୁଥିଲା ତାର ଆର୍ଦ୍ରସ୍ୱର, ଅପାଙ୍‌କ୍ତେୟ ପତି ପ୍ରତି ଆକ୍ଷେପ ଏବଂ ଅଭିଯୋଗ–ତମେ ଛାଡ଼ି ଗ୍ଲିଗଲ ଏ ଅଭାଗିନୀକୁ ! ଅନୁମାନ କରିପାରୁଛ ମୋର ଅବସ୍ଥା ?

ସତେ କ'ଣ ଦେବକାନ୍ତ ତା'କୁ ଆଉ ସଶରୀରେ ଦେଖିବ ? ଚିଦାକାଶ ଅନ୍ଧାରିଆ ଦିଶିଲା । ଆଖିକୁ ଲୁହ ଆସିଗଲା ଆପେ ଆପେ । କୁର୍ତ୍ତାରେ ଆଖି ପୋଛିଲା । ଗୋଟିଏ ପୁସ୍ତକ ଷ୍ଟଲକୁ ପିଠି ଆଉଜେଇ ଗୋଡ଼କୁ ଲମ୍ବକରି ସିମେଣ୍ଟ ଚଟାଣ ଉପରେ ନିସ୍ତେଜ ଭାବେ ବସି ରହିଲା । ଦୃଷ୍ଟି ପଡ଼ିଲା ଲୁହା ଖୁଣ୍ଟର ଶୀର୍ଷ ଭାଗରେ ଝୁଲନ୍ତ ସିନେମା ପୋଷ୍ଟର ଗୁଡ଼ିକ ଉପରେ । ଡ୍ରାଗନର ଚିତ୍ର । ପ୍ରାଗୈତିହାସିକ ଜୀବ ପରି ଦାନ୍ତ ନଖ; ବିକଟାଳ, ବିକୃତ ମୁହଁ ତା'ର, ଏକା ଖେପାକେ ମଣିଷକୁ ଟାଉକିନା ଗିଳିଦେବ ଶିକାରୀ ବେଙ୍ଗ ପତଙ୍ଗକୁ ଚଟ୍‌କିନା ଥରକେ ତା' ବୃହତ୍ ପାଟିଭିତରକୁ ଟାଣି ନେଲାଭଳି । ସମାଜର ପ୍ରତି ସ୍ତରରେ ଛପ



Digitized by PPRACHIN, SOA

ରହିଛନ୍ତି ଏମିତି ରାକ୍ଷସ ଗୁଡ଼ିଏ, ଦୁର୍ବଳ ଉପରେ ସବଳର ଆକ୍ରମଣ, ଅତ୍ୟାଚାର; ନିରୀହ ଉପରେ ଦୁଷ୍କର ନୃଶଂସତା । ଛିଃ, ଏମିତି ଅଶୁଭ ଦୃଶ୍ୟ ଆଖି ଆଗକୁ ଧାଇଁ ଆସୁଛି କାହିଁକି ? ଛାତି ଧଡ୍ ଧଡ୍ ହେଲା । ଦୃଷ୍ଟି ବଦଳେଇଲା । ପୁଣି ଆଖି ପଡ଼ିଲା ସିନେମା ପୋଷ୍ଟର ଗୁଡ଼ିକ ଉପରେ । ଯୌନୋଦ୍ଦୀପକ ଉଲଗ୍ନ ଚିତ୍ର । ଯେଉଁଠି ଦେଖ, କାନ୍ଥ, ବାଡ଼, ଲୋକ ଚଲା ଚଲ ସ୍ଥାନମାନଙ୍କରେ ଏମିତି ଦୃଶ୍ୟ । ମ୍ୟାଗାଜିନ, ପତ୍ରପତ୍ରିକା ଆଦିରେ ଏମିତି ନଗ୍ନତା । ଭାଇ ଭଉଣୀ, ବାପଝିଅ, ମା'ପୁଅ ସମସ୍ତଙ୍କ ନଜରରୁ ଏ ନଗ୍ନ ଚିତ୍ରଗୁଡ଼ିକ ବାଦ୍ ପଡ଼ନ୍ତି ? ପ୍ରତିବାଦର ସ୍ୱର ତୋଳୁଛି କିଏ ? ଦୋଷ କାହାର ? ବିକାଶଶୀଳତା, ଆଧୁନିକତାର ଅନ୍ତରାଳରେ ଛପି ରହିଛି ଛଳନା ଭଣ୍ଡାମୀ ଏବଂ ବିଶ୍ୱାସ-ଘାତକତା । ବିଜ୍ଞାନ ବର୍ଦ୍ଧିତ ବିପୁଳ ବିଶ୍ୱରେ ଲୁଚି ଲୁଚି ଜଳୁଛି ଉନ୍ମତ୍ତତା, ଉଦ୍ଭଟତାର ନିଆଁ । ଦେବକାନ୍ତ ମୁହଁରେ ଅସନ୍ତୋଷର ଚିହ୍ନ । ମନଭିତରେ ନୈତିକ ଚେତନା ଯେମିତି ଆନ୍ଦୋଳନ ସୃଷ୍ଟି କରୁଥିଲା । କିଛି ସମୟ ହେଲା ବିପନ୍ନ ମନ ଏମିତି ଇତସ୍ତତଃ ହୋଇ ଧାଇଁ ଯାଉଥିଲା ଅନ୍ୟ ଦିଗକୁ । ପୁଣି ସେ ପ୍ରକୃତିସ୍ଥ ହେଲା, ଫେରି ଆସିଲା ପୂର୍ବାବସ୍ଥାକୁ । ସମୟର ଗତି ଉପରେ ତା'ର କୌଣସି ପ୍ରଭାବ ନାହିଁ, ବରଂ କାଳର କର୍ତ୍ତୃତ୍ୱ ତା' ଉପରେ ବିସ୍ତାରିତ । ଏ ବିଷୟରେ ଚିନ୍ତା କରିବା ତା'ର ବାତୁଳତା, କଟକ ଚିନ୍ତା ବାଇମୁଣ୍ଡି ପରି । ଶ୍ରାବଣୀ ଚିନ୍ତା ଘାରିଲା । ଦୁର୍ଭାବନାର କଳାମେଘ ମୁଣ୍ଡ ଉପରେ ଢାଙ୍କି ରହିଲା ।

ଦିହହାତ ଅବଶ ଲାଗିଲା । ଗୋଡ଼କୁ ଲମ୍ବାଇ ପିଠିକୁ ପଛ ଲୁହା ଖୁଣ୍ଟରେ ଆଉଜେଇ ରଖିଲା ସାମାନ୍ୟ ଆରାମ ଅନୁଭବ କରିବା ଅଭିପ୍ରାୟରେ । ଥକ୍‌କା ଆଖିକୁ ନିଦ ମାଡ଼ି ଆସିଲା । କୋଳାହଳ ପୂର୍ଣ୍ଣ ହାବଡ଼ା ପ୍ଲାଟଫର୍ମ ତା' ନିଦ ଭାଙ୍ଗି ପାରି ନ ଥିଲା ନିଶାର୍ଦ୍ଧ ପର୍ଯ୍ୟନ୍ତ । ନିଦ ଭାଙ୍ଗିଲା ବେଳକୁ ସେ ନିଜେ ଠିକ୍ କରି ପାରି ନଥିଲା ତା'ର ଅସ୍ତିତ୍ୱ । ରାତିର ସେଇ ତନ୍ଦ୍ରାଛନ୍ନ ସମୟ ଟିକକ ଥିଲା ତା' ଗୁରୁଚିନ୍ତାରୁ କ୍ଷଣିକ ବିରତି । ଦେହର ଯନ୍ତ୍ରଗୁଡ଼ିକ ସାମୟିକ ବିଶ୍ରାମ ଦାବୀ କରିଥିଲେ ବୋଧେ ତା' ମନର ଅନିଚ୍ଛା ସତ୍ତ୍ୱେ । ନିଦ ଭାଙ୍ଗିଲା ପରେ ଅଙ୍ଗପ୍ରତ୍ୟଙ୍ଗ ଗୁଡ଼ିକ ସଚଳ



Digitized by PPRACHIN, SOA

ହୋଇ ଉଠିଲେ । ମନ ଅସମ୍ଭାଳ ହୋଇ ଉଠିଲା ପ୍ରାଣସଙ୍ଗିନୀକୁ ଠାବ କରିବା ଉଦ୍ଦେଶ୍ୟରେ । କେଉଁଠି ଗୋପ୍ୟ ରହିଲା ତା' ସୁହାସିନୀ ସ୍ତ୍ରୀ ? କେଉଁଠି ଅଛି ସେ ? ନିଜ ଅସହାୟତାରେ ହା ହା କାର କରୁଥିଲା ବେଳେ ଅନ୍ତର ବିଳିବିଳେଇ ହେବାକୁ ଲାଗିଲା–ଶ୍ରାବଣୀ, ଶ୍ରାବଣୀ ।

ରାତି ଅନେକ ହେବଣି । ଦିବାଲୋକର ଷ୍ଟେସନ ମଞ୍ଚ ଏବଂ ରାତିକାଳର ମଞ୍ଚ ମଧ୍ୟରେ କୌଣସି ଫରକ ନଥିଲା । କୋଳାହଳର ସମାପ୍ତି ନଥିଲା; ହୋ ହଲ୍ଲାର ଅବିରମ ସ୍ରୋତ । ଏଠି ବସିଛି ଚବିଶ ଘଣ୍ଟିଆ ହାଟ–ପ୍ଲାଟଫର୍ମର ଅହୋରାତ୍ର ସମାନ୍ତରାଳ ପରିବେଶ । ଦେବକାନ୍ତର ଛାତି ରୁନ୍ଧି ହୋଇ ଯାଉଥିଲା । ସେ ନିଜକୁ ଅଣନିଃଶ୍ୱାସୀ ମଣୁଥିଲା । ପ୍ରିୟାର ବିଚ୍ଛେଦରେ ସେ ମ୍ରିୟମାଣ, ମୂହ୍ୟମାନ । ଅନ୍ୱେଷଣର ଉପାୟ ସ୍ଥିର କରିପାରୁ ନଥିଲା । ମୁଣ୍ଡକୁ ବୁଦ୍ଧି ଆସୁ ନଥିଲା, ଆଖିକୁ ବାଟ ଦିଶୁ ନ ଥିଲା । ହତାଶର ଅନ୍ଧକାର ଆଖି ଆଗରେ ଢ଼େଣା ହଲେଇ ଚକ୍କର କାଟୁଥିଲା । ଅନୁଭବ କରୁଥିଲା ସେ ଯେମିତି ଜଣେ ପଥହୁଡ଼ା ପଥିକ । 



Digitized by PPRACHIN, SOA

ଶ୍ରାବଣୀର ଦେହରକ୍ଷୀ ଭଳି ସେଇ ଯୁବକ ଜଣକ ପାଖେ ପାଖେ ଥିଲେ । ବାବୁଙ୍କ ନାମ ଜାଣିବା ଶ୍ରାବଣୀ ପକ୍ଷେ ସମ୍ଭବ ନଥିଲା । ନାଁ ବୁଝିବାର ମଧ୍ୟ ଆବଶ୍ୟକତା ନଥିଲା ଶ୍ରାବଣୀର । କିନ୍ତୁ ଏତିକି ସେ ଜାଣିଥିଲା, ବାବୁଟି ଜଣେ ରେଳ ବିଭାଗୀୟ ଚାକିରିଆ । ଗାଡ଼ିରେ ଯାତ୍ରୀମାନଙ୍କର ଟିକଟ ଯାଞ୍ଚ କରିବା ତାଙ୍କର କାମ । ଗୋରା, ଲମ୍ବାମୁହିଁ, ପତଳା ଶରୀରଯୁକ୍ତ ଢେଙ୍ଗା ମଣିଷ ଜଣେ । ବୟସ ତିରିଶି ଛୁଇଁନି । ତୀକ୍ଷ୍ଣ ନାକତଳେ କଳା ମୁଚ୍ ମୁଚ୍ ହଳିଏ ଗଳା ନିଶ । ନିଶକୁ ବାଗେଇ କଇଁଚିରେ ଯତ୍ନ ସହକାରେ କାଟିଛନ୍ତି । ମୁହଁଟିକୁ ଭଲଭବେ କ୍ଷିଅର କରି ସଫାସୁତୁରା ରଖିଛନ୍ତି । ଦେହରେ କଳା କୋଟଟିଏ ଘୋଡ଼େଇ ହୋଇଛନ୍ତି ଯେମିତି ସରକାରଙ୍କର ପ୍ରଦତ୍ତ ଅଧିକାରଟି ସେଥିରେ ଯ.' ଆସ କରୁଛି । ପାସେଞ୍ଜର ମାନେ ତାଙ୍କୁ ଆଡ଼େଇ ଯାଉଛନ୍ତି । ମୁହଁରେ ମଧୁର ଭଷା ଏବଂ ବ୍ୟବହାର ସରଳ ଏବଂ ମାର୍ଜିତ । ଯାତ୍ରୀ ଭରପୁର ଡ଼ବାଭିତରେ ଶ୍ରାବଣୀ କଇଁ କଇଁ ହୋଇ କାନ୍ଦୁଥିଲା ବେଳେ ଗୋଟିଏ ଝର୍କାକଡ଼ରେ ତାକୁ ବସେଇ ଦେଇ ସାନ୍ତ୍ୱନା ପ୍ରଦାନ କରି କହିଥିଲେ–ଏଇଠି ବସିଥାଅ ଭଉଣୀ ମୁଁ ଆସି ନ କହିଲା ପର୍ଯ୍ୟନ୍ତ କେଉଁଠି ଓହ୍ଲାଇବ ନାହିଁ, କୁଆଡ଼େ ଯିବ ନାହିଁ । ମୁଁ ଏଇ ଗାଡ଼ିରେ ଅଛି, ହୁଏତ ଅନ୍ୟ କେଉଁ କମ୍ପାର୍ଟମେଣ୍ଟରେ କାମ କରୁଥିବି । ମଝିରେ ମଝିରେ ଆସି ସୁବିଧା ଅସୁବିଧା ବୁଝିବି । ମୁଁ ପୁଣି ଫେରିବି ଜାମସେଦପୁରଠୁଁ । ସେଇଠୁଁ ଆମେ ଗାଡ଼ି ବଦଳ କରି ଫେରନ୍ତା ରେଳରେ ହାବଡ଼ା ଯିବା । କ'ଣ ଖାଇଛନ୍ତି ?

ଶ୍ରାବଣୀର ମୁହଁ ଶୁଖି ଯାଇଥିଲା । ଓଠ ଅଠା ଅଠା । ପୁରୁଷ ଲୋକଙ୍କ ମୁହଁରେ ମିଠାକଥା ଅର୍ଥ ମହୁବୋଳା ତିକ୍ତ ବଟିକା । ସେମାନଙ୍କ ବଚନରେ କୁହୁକ, ବ୍ୟବହାରରେ ଇନ୍ଦ୍ରଜାଲ ଥାଏ । ସେ ଚେଷ୍ଟା ଖାଇଛି



Digitized by PPRACHIN, SOA

ଥରେ । ଅନ୍ତକେ ରକ୍ଷାପାଇଛି । କାହା ଉପରେ ଭରସା ରଖିବ ? କ'ଣ କହିବ ?

ବାବୁ ଦୋହୋରେଇ ପଗ୍ଚରିଲେଣି । କିଛି ଗୋଟାଏ ଉତ୍ତର ନ ଦେବା ଅଭଦ୍ରାମି ହେବ । ମଝିରେ ମଝିରେ ଏମିତି ଗାଡ଼ି ଛିଡ଼ା ହେଲାବେଳେ ନଜର ପକେଇ ଯାଉଛନ୍ତି । ତାଙ୍କ ଆଚରଣରେ କୌଣସି ଅଭଦ୍ରାମି ବା ଅଭିସନ୍ଧି ଏଯାଏଁ ଲକ୍ଷ୍ୟ କରି ନାହିଁ ଶ୍ରାବଣୀ । ତା' ପାଖେ ଟିକଟ ନଥିଲା । ଗାଡ଼ିରୁ ତାକୁ ନିକାଲି ଦେବା ପରିବର୍ତ୍ତେ, ଦୟାର୍ଦ୍ର ହୋଇ ତା ଅନ୍ତର୍ବେଦନା ବୁଝିଥିଲେ । ହାବଡାରେ ପହଞ୍ଚେଇଦେବେ ବୋଲି ଆପେ ଆପେ ବଚନ ଦେଇଛନ୍ତି । ଭଉଣୀ ବୋଲି ବାରମ୍ବାର ସମ୍ବୋଧନ କରୁଛନ୍ତି । ତଥାପି ଯଦି ତାଙ୍କ ମନରେ କିଛି ମନ୍ଦ ଉଦ୍ଦେଶ୍ୟ ଲୁଚି ଥାଏ, ସେ ପାପ ତାଙ୍କର । ପବିତ୍ରତା ବୋଲି କିଛି ଚିଜ କ'ଣ ଏ ସଂସାରରେ ନାହିଁ ?

ଶ୍ରାବଣୀ ଥରିଲା ଥରିଲା କଣ୍ଠରେ କହିଲା—ମୁଁ ଖାଇଛି, ଏଇନେ କିଛି ଖାଇବିନି । କଲିକତା ଯିବି । ମୋ ସ୍ୱାମୀ ସେଠି ଅପେକ୍ଷା କରିଥିବେ ...

ସରଳ ହସଟିଏ ହସି ସେ କହିଲେ—କଲିକତା ତ ନିଶ୍ଚୟ ଯିବ । ମୁଁ ଯେତେବେଳେ ଅଛି ଗସ୍ତା ଆଉ ଭୁଲ ହେବନି । ତେବେ ଖାଇବାରେ ଅସୁବିଧା କ'ଣ ? ପେଟକୁ ପୀଡ଼ା ଦେଇ, ମନକୁ କଷ୍ଟଦେଇ ଲାଭ କ'ଣ ? ତୁମକୁ କଲିକତା ପହଞ୍ଚେଇବା ମୋର କାମ । ଏଥର ନିଶ୍ଚିନ୍ତ ରୁହ ।

ଶ୍ରାବଣୀର ପେଟକୁ କ୍ଷୁଧା ସ୍ପର୍ଶ କରୁନଥିଲା । ଖାଦ୍ୟ ଖାଇବାର ଆଗ୍ରହ ଲୋପପାଇ ଯାଇଥିଲା । ଶୋକ, ଶୋଷ, ଆହାର ନିଦ୍ରା ବିବାକେ ସେ ଯେମିତି ଭୁଲି ଯାଇଥିଲା । ତାର ଶରୀରର ଇନ୍ଦ୍ରିୟଗୁଡ଼ିକ ଯେମିତି ନିଷ୍କ୍ରିୟ ଏବଂ ନିସ୍ତେଜ ହୋଇ ପଡ଼ିଥିଲେ । ସେ ମନେମନେ ପ୍ରତିଜ୍ଞା



Digitized by PPRACHIN, SOA

କରିଥିଲା–କଲିକତାରେ ନ ପହଞ୍ଚିବା ପର୍ଯ୍ୟନ୍ତ ଅନ୍ନ, ଜଳ ସ୍ପର୍ଶ କରିବ ନାହିଁ । କିନ୍ତୁ ଏହି ଯୁବକ ଜଣକ ବହୁ ବାଧ୍ୟ କରିବାରୁ, ମନରେ ଦୟା ଭରିବାରୁ ସେ ମାତ୍ର ଗୋଟିଏ ଷ୍ଟେସନୀ-ରସଗୋଲା ଏବଂ ଗିଲାସେ ପାଣି ପାକସ୍ଥଳୀକୁ ଠେଲି ଦେଇଥିଲା ।

ପରଦିନ ଦିବସ ଶେଷ ବେଳକୁ ଶ୍ରାବଣୀ ହାବଡ଼ା ଷ୍ଟେସନରେ ଓହ୍ଲାଇଲା । ଭଦ୍ରଲୋକ ପଚାରିଲେ–ତୁମ ସ୍ୱାମୀ କେଉଁଠି ଅଛନ୍ତି ? ଯିବ କେଉଁଠିକି ?

ପ୍ଲାଟଫର୍ମପୂର୍ଣ୍ଣ ହାବଡ଼ା ଷ୍ଟେସନର ବିସ୍ତୃତ ପରିବେଶକୁ କାତୁସ୍ତ ଚାହାଣିରେ ଶ୍ରାବଣୀ ଅନେଇଲା । ଏଠି ଅଗଣିତ ଯାତ୍ରୀ ସମାବେଶ, ମଣିଷମାନଙ୍କର ପଟୁଆର । ଲୋକ ଗଣିବା, ଚିହ୍ନିବା, ଖୋଜି ବାହାର କରିବା କାଠିକର ପାଠ । ସ୍ୱାମୀଙ୍କର ଠିକଣା ତା ପାଖେ ନାହିଁ । ତାଙ୍କ ଠିକଣା ତା ହୃଦୟ ଭିତରେ । ସ୍ୱାମୀଙ୍କ ଛଡା ତା ହୃଦୟର ଭଷା, ମନର କଥା ଆଉ କିଏ ପଢ଼ିପାରିବ । କ'ଣ କହିବ ଭଦ୍ରଲୋକଙ୍କୁ ?

ଏଣେ ତେଣେ ମୁହଁ ବୁଲେଇ ଚାହିଁଲା ଶ୍ରାବଣୀ । ଖାଲି ଲୋକ ମାଳ ମାଳ । ଢେଉ ଭଳି ମାଡି ଅସୁଛନ୍ତି ଗାଡ଼ି ଭିତରକୁ, ପୁଣି ଓହ୍ଲାଇ ଯାଉଛନ୍ତି ବଳ ଦଳ ହୋଇ । ଏଠି ସ୍ୱାମୀ କାହାନ୍ତି ? କେଉଁଠି ଲୁଚି ରହିଲେ ଏତେ ବେଳ ଯାଏଁ ?

ଭଦ୍ରବ୍ୟକ୍ତିଙ୍କର ପୁନର୍ବାର ପ୍ରଶ୍ନ–ତମ ସ୍ୱାମୀଙ୍କ ନାମ କ'ଣ ? ତାଙ୍କର ଠିକଣା ?

କଟଡ଼ାଟିଏ ଖାଇଲା ପରି ମନେହେଲା ଶ୍ରାବଣୀର । ପୁଣି ସେଇ ପ୍ରଶ୍ନ ... ଯେଉଁ କଥାକୁ ସେ ଡରୁଥିଲା, ତା ଆଗରେ ସେହି କଥା ବାରମ୍ବାର ଉପସ୍ଥାପିତ । କ'ଣ ସେ କହିବ ? ସ୍ୱାମୀଙ୍କର ନାମ ସେ କଦାପି ହେଲେ ପାଟିରେ ଉଚ୍ଚାରଣ କରି ନପାରେ । ଭଦ୍ରଲୋକଟି ବିରକ୍ତି ପ୍ରକାଶ ନକରି ବରଂ ସେଇ ପ୍ରଶ୍ନକୁ ବାରମ୍ବାର ଦୋହରାଇବାରେ ଲାଗିଛନ୍ତି । କ'ଣ ଉତ୍ତର ଦେବ ସେ ?



Digitized by PPRACHIN, SOA

ପୁଣି ଥରେ ବାବୁଙ୍କଠାରୁ ପୀଡ଼ାଦାୟକ ପ୍ରଶ୍ନଟି ମାଡ଼ି ଆସିଲା । ଏଥରକ ଯେମିତି ତା ବ୍ରତ ଭଙ୍ଗ ପଡ଼ିବ ! ବାବୁ ସହିତ ବିଶେଷ କଥାବାର୍ତ୍ତା କରିବାକୁ ସେ ସଙ୍କୋଚ କରୁଥିଲା । କିନ୍ତୁ ଏଥର ଉପାୟ ନ ଥିଲା । ବାଧ୍ୟତାର ବଶବର୍ତ୍ତୀ ହୋଇ, ସରମକୁ ସାମାନ୍ୟ ଉପେକ୍ଷା କରି ଉଦାସ ଏବଂ ବିମର୍ଷ ବିଗଳିତ ସ୍ୱରରେ ପ୍ରକାଶ କଲା–କାଗଜ ଟିକିଏ ଦିଅନ୍ତୁ ।

ରହସ୍ୟ ଭେଦ ନକରି ପାରି ବ୍ୟକ୍ତି ଜଣକ କହିଲେ–କାଗଜର ଆବଶ୍ୟକତା କ'ଣ ? ମୁହଁରେ କହିଲେ ଚଳିବ ନାହିଁ ?

ଅତ୍ୟନ୍ତ ଲଜ୍ଜାଶୀଳ ଏବଂ ସଙ୍କୁଚିତ ହୋଇ କ୍ଷୀଣ ସ୍ୱରରେ ଶ୍ରାବଣୀ କହିଲା– ଆପଣ ହିନ୍ଦୁ ନା ? ସ୍ୱାମୀଙ୍କ ନାମ ତୁଣ୍ଡରେ ଧରିବା ହିନ୍ଦୁ ନାରୀର ଅଧର୍ମ, ଶାସ୍ତ୍ର ବିରୁଦ୍ଧ କାମ । ଏଥିରେ ସ୍ୱାମୀ ପ୍ରତି ଅସମ୍ମାନ ହୁଏ, ତାଙ୍କ ଆୟୁଷ ହାନି ହୁଏ । ସ୍ତ୍ରୀ ହତଲକ୍ଷ୍ମୀ ହୁଏ । ପତି ଯେ ପତ୍ନୀର ଦେବତା !

ଭଦ୍ରବ୍ୟକ୍ତି ବିସ୍ମୟ ବିସ୍ଫାରିତ ନେତ୍ରରେ ଶ୍ରାବଣୀ ଆଡ଼କୁ ଗଭୀର ଭକ୍ତି ସହକାରେ ଚାହିଁ ରହିଥିଲେ କିଛିକ୍ଷଣ । ତାଙ୍କ ଦୃଷ୍ଟିରେ ଏଇ ଦୁର୍ଦ୍ଦଶା ପ୍ରପୀଡ଼ିତ ନାରୀ ପ୍ରତି ଆନ୍ତରିକ ସମ୍ମାନ ଜାତ ହେଉଥିଲା । ତାଙ୍କ ମୁଣ୍ଡ ନଇଁ ଆସୁଥିଲା ଆପେ ଆପେ । ଅଳ୍ପ ବୟସୀ ସ୍ତ୍ରୀ ଲୋକ ଜଣକ ସତରେ କେତେ ସରଳ ଏବଂ ନିଷ୍କପଟୀ ! ତା' ଛଳଛଳ ଆଖିରେ ପତ୍ୟନୁରକ୍ତିର ସ୍ରୋତ ଝରୁଥିଲା । ଏ ଯୁଗରେ ବି ଏମିତି ରମଣୀ ଅଛନ୍ତି ବୋଲି ଭଦ୍ରଲୋକ ଆଖିକୁ ବିଶ୍ୱାସ କରି ପାରୁ ନ ଥିଲେ । ମଥାର ମଧ୍ୟ ଭାଗରେ ପ୍ରାତଃ ସୂର୍ଯ୍ୟ ଭଳି ସିନ୍ଦୂର ଟୋପାଟିଏ ଦାଉ ଦାଉ ଜଳୁଥିଲା । ମୁଣ୍ଡର ଓଢଣାଟି ଗଣ୍ଠଭଳକୁ କେବେ ଖସୁ ନଥିଲା । ଦେହର ସବୁ ଅଙ୍ଗ ଲୁଗା ଓ ପଣତ କାନିରେ ଆବୃତ୍ତ ଥିଲା, ଦିଶୁଥିଲା କେବଳ ସୁନ୍ଦର ମୁହଁଟି, ଅଳତା ପିନ୍ଧା ପାଦ ଦିଓଟି, ଗୋରା ଗୋରା ହାତ ଦିଓଟି । ନାରୀ ସୌନ୍ଦର୍ଯ୍ୟ ଲୁଚି ରହିଥିଲା ସମ୍ପୂର୍ଣ୍ଣ ବସ୍ତ୍ରାଭରଣ ଭିତରେ । ଆଧୁନିକତାର ଦ୍ୱାହି ଦେଇ ଯେଉଁଠି ନାରୀମାନେ ନଗ୍ନତାର ସଂଜ୍ଞା ପ୍ରସ୍ତର କରୁଛନ୍ତି,



Digitized by PPRACHIN, SOA

ସେ ଯଗରେ ବି ଏମିତି ସ୍ତ୍ରୀ ଅଛନ୍ତି ଯିଏ ସ୍ୱାମୀର ନାମ ଉଚ୍ଚାରଣ କରିବା ମହାପାପ ମନେ କରୁଛନ୍ତି ? ଭଦ୍ରଲୋକଙ୍କ ମନ ଶ୍ରାବଣୀ ପ୍ରତି ଆହୁରି ତରଳି ଯାଇଥିଲା । ଯେ କୌଣସି ଉପାୟରେ ସାହାଯ୍ୟ କରିବାକୁ ମନେମନେ ସ୍ଥିରକଲେ । ଏପରି ସରଳା ନାରୀକୁ ସାହାଯ୍ୟ କରିବାଟାକୁ ସାହାଯ୍ୟ କୁହା ଯିବନି, ବରଂ କର୍ତ୍ତବ୍ୟ ।

ସହାସ୍ୟ ବଦନରେ ସେ କାଗଜ ଏବଂ କଲମଟିଏ ବଢାଇ ଦେଲେ । ଇଙ୍ଗାଭରଣ ଭିତରେ ବାବୁଙ୍କ ଆଡ଼କୁ ·ପଛକରି ଶ୍ରାବଣୀ କାଗଜ ଉପରେ ଲେଖିଲା–'ଦେବକାନ୍ତ' । ପରମ ଆଗ୍ରହରେ ଭଦ୍ରଲୋକ କାଗଜ ଟୁକୁଡ଼ାଟିକୁ ଆଣି ପଢିବାକୁ ଚେଷ୍ଟାକଲେ । ସେ ଯେମିତି ଅନ୍ଧ । ଓଡ଼ିଆ ଲିପି ଯଦିଚ ଚିହ୍ନି ନାହାନ୍ତି, ତେବେ କହିପାରନ୍ତି ଭଲଭାବେ । କାଗଜରୁ ନାଁଟି କିପରି ଠଉରେଇବେ ? ଓଡ଼ିଆ ଅକ୍ଷରରେ ନିଜ ଅଜ୍ଞତା ପ୍ରକାଶ କରିବାକୁ ଅପ୍ରତିଭ ମନେ କଲେ । କିନ୍ତୁ ଉପାୟ ନ ଥିଲା, ଧରପଡ଼ିଗଲେ । ଅକ୍ଷମତା ସ୍ୱୀକାର କରି କହିଲେ–ସ୍ୱାମୀଙ୍କ ନାଁଟି ଯଦି ଓଲଟାଇ କହି ପାରନ୍ତ, ଭଲ ହୁଅନ୍ତା ।

ଏତ ବଡ଼ ଅସୁବିଧା କଥା । ଶ୍ରାବଣୀ ପୁଣି ହଡ଼ବଡ଼େଇଲା । ହାତରେ ପିନ୍ଧିଥିବା ମୁଦିରେ ସ୍ୱାମୀଙ୍କନାମ ଲେଖାଥିଲା । ଘୁରିଁଲା ତାକୁ ବାରମ୍ବାର । ଭଦ୍ରଲୋକ କ'ଣ ମୁଦିରୁ ବୁଝିପାରିବେ ? ସେଥିରେ ତ ସେଇ କଥା ଲେଖା ଅଛି ।

ବାବୁ ପୁଣି ସ୍ୱାମୀଙ୍କ ନାଁ ଓଲଟାଇ କହିବାକୁ ଜିଗର କଲେଣି ।

ଅଜଣା ମଣିଷ ସହିତ ବାର୍ତ୍ତାଳାପ କରିବାକୁ କୁଣ୍ଠିତ ମନେ କରୁଥିଲେହେଁ ବାଧ୍ୟତା ଘୁପରେ କହିଲ–ତାଙ୍କର ନାମ ଜଣେ ଠାକୁରଙ୍କ ନାମ ।

: କେଉଁ ଠାକୁର ? ରାମ, କୃଷ୍ଣ, ବିଷ୍ଣୁ, ହରି, ବ୍ରହ୍ମା ନା ଈଶ୍ୱର ?

: ହଁ, ହଁ, ସେଇ ଶେଷଟି ।



Digitized by PPRACHIN, SOA

: ତେବେ ଈଶ୍ୱର ତୁମ ପତିଙ୍କ ନାମ ।

: ନା ଈଶ୍ୱରଙ୍କ ଅନ୍ୟ ନାମଟି ।

ଈଶ୍ୱରଙ୍କ ଅନ୍ୟନାମ କ'ଣ ହୋଇପାରେ ? ଭଦ୍ରଲୋକଙ୍କର ଧର୍ମ ବିଷୟରେ ବିଶେଷ ଦଖଲ ନାହିଁ । ଟିକିଏ ଚିନ୍ତା କରି କହିଲେ– ମହେଶ୍ୱର ? ମହାଦେବ ?

: ହଁ, ହଁ ସେଇ ଶେଷ ନାମଟି । ତେବେ ସେଥିରୁ ପ୍ରଥମ ଦୁଇଟି ବର୍ଣ୍ଣ ବାଦ କରି ଦିଅନ୍ତୁ ।

: ତା' ହେଲେ 'ଦେବ' ତୁମ ସ୍ୱାମୀ । ଖୁବ୍ ସୁନ୍ଦର ନାମ ।

ଯାହାର ସ୍ୱାମୀ ଦେବ ଦେବ ମହାଦେବ, ତା'ର ପୁଣି ଦୁନିଆଁରେ ଡ଼ର କାହାକୁ ? ତମେ ଭଉଣୀ ଭାଗ୍ୟବତୀ ।

ଶ୍ରାବଣୀ ଅଳ୍ପ ହସିଥିଲା । ପରକ୍ଷଣରେ ହସ ମଉଳି ଯାଇଥିଲା ନିବିଡ଼ ମେଘଭରା ଆକାଶର ବିଜୁଳି ଝଲକଟିଏ ଭଳି । ତା' ନାରୀ ଜୀବନ ଏକ କଠିନ ପରୀକ୍ଷାରେ ସମ୍ମୁଖୀନ ।

ହାବଡ଼ା ଷ୍ଟେସନ ଦେଖା ମେଲିଥିଲା । ପ୍ଲାଟଫର୍ମର ମଧ୍ୟସ୍ଥଳୀରେ ସେମାନେ ଛିଡ଼ା ହୋଇଥିଲେ । ଶ୍ରାବଣୀର କେଉଁ ଆଡ଼କୁ ନିଘା ନଥିଲା । ଯାହାକୁ ମନ ଖୋଜୁଥିଲା, ଆଖି ଖୋଜୁଥିଲା, ତାକୁ ନ ପାଇ ଆହୁରି ହତାଶ ହୋଇ ପଡ଼ିଲା । ଆଶା କରିଥିଲା, ସ୍ୱାମୀ ଏଠାରେ ଅପେକ୍ଷା କରିଥିବେ ତାକୁ । ବର୍ତ୍ତମାନ ଆଶା ଯେମିତି ସୁଦୂର ପରାହତ ! ଯୁବତୀ ଝିଅ ସେ ଦେହରେ ଯୌବନ ଲହଡ଼ି ଭାଙ୍ଗୁଛି । ପ୍ରତି ପାଦେ ପାଦେ ବିପଦର ଆଶଙ୍କା । ଥରେ କଳଙ୍କ ଲାଗିଲେ, ଦୁର୍ନାମ ବ୍ୟାପିଲେ ମଲାପର୍ଯ୍ୟନ୍ତ ତାହା ଲିଭେନି, ଆମ୍ବୁଡ଼ା ଦାଗ ରହିଯାଏ ଚିରକାଳ । ପୁରୁଷ ପୁଅକୁ ସିନା ସାତଖଣ୍ଡ ମାଫ୍, ସାତ ମାଇପ କଲେ ମଧ୍ୟ ସେ ସୁନାଭଳି ନିଷ୍କଳଙ୍କ, କଳା ପାଣିରେ ପହଁରିଲେ ବି ଦେହରେ କଳାଦାଗ ଲାଗେନି । ସବୁ ବାଛବିଚାର, ବଦନାମ ମାଇପିମାନଙ୍କ ପାଇଁ । ଏଭଳି ଏକ ପରିସ୍ଥିତି ଉପୁଜିବ ବୋଲି ସେ କେବେ କଳ୍ପନା କରି ନ ଥିଲା ।



Digitized by PPRACHIN, SOA

କ୍ଷୁଦ୍ର କାଠିଟିଏ ଜଳସ୍ରୋତରେ ଭାସିଗଲା ପରି ତା'ର ଅନିର୍ଦ୍ଦିଷ୍ଟ ଗତି । ତାର ଅନ୍ତର ଗେଦନ କରୁଥିଲା ନିର୍ଜନ ଦ୍ଵୀପରେ ନିର୍ବାସିତ ବ୍ୟକ୍ତିର ବିଳାପ ଭଳି । ଆଖିରୁ ଲୋତକଧାର ବୋହିଲା । ଲୁଗା କାନିରେ ମୁହଁ ଘୋଡ଼ାଇ କହିଁ କହିଁ କାନ୍ଦିଲା । ଭଦ୍ରଲୋକ କିଂକର୍ତ୍ତବ୍ୟବିମୂଢ଼ ଭାବେ ଗ୍ରହିଁ ରହିଲେ । ତାଙ୍କ ସମ୍ମୁଖରେ ଯୌବନାବତୀ ବେସାହାର ସ୍ତ୍ରୀ ଜଣେ, ସାହାଯ୍ୟ ଦାବୀ କରୁଥିଲା । ପ୍ରବୋଧନା ଦେଇ ସେ କହିଲେ–ରାତି ହେଲାଣି । ଏଠି ଆଉ ଖୋଜି ଲାଭ ନାହିଁ । ମୋର ବସା ଏଠୁ ଡାକେ ବାଟ । ଗ୍ଲଇ ଆଜି ରାତିକ ସେଠାରେ ରହିଯିବ ; କାଲି ସକାଳେ ପୁଲିସକୁ ଖବର ଦେଇ ତମ ସ୍ଵାମୀଙ୍କର ସନ୍ଧାନ ନେବା । ମୋ ଉପରେ ଭରସା ରଖ ଭଉଣୀ...

ଶ୍ରାବଣୀ ପାଇଁ ଏହା ଥିଲା ଆଉ ଗୋଟିଏ ଅତୁଆ କଥା, ଆଉ ଏକ ବିଷମ ପରିସ୍ଥିତି । ଅଚିହ୍ନା ଲୋକ ସହିତ ରାତିଟିଏ ବିତାଇବା ତା' ପାଇଁ ବିପଜ୍ଜନକ । କିନ୍ତୁ ଅନ୍ୟ ଉପାୟ କ'ଣ ? ଅଜଣା ଜାଗା । ଏଠି ଅନିଶ୍ଚିତତା ଭିତରେ ଘୂରିବା ପରିବର୍ତ୍ତେ ଭଦ୍ରଲୋକଙ୍କ ଘରେ ରାତିଟି ରହିଯିବା ବରଂ ଭଲ । ବାବୁଲୋକଙ୍କ ବ୍ୟବହାରରେ କୌଣସି ଦୁର୍ଗୁଣ ସେ ଲକ୍ଷ୍ୟ କରିନି । ଭାଇ ଭଉଣୀର ସମ୍ପର୍କ ଯୋଡ଼ିଲେଣି । ମଣିଷଟି ଭଦ୍ର । ନା ପସ୍ତାନି ବୁଝିବ ? ନା, ଅଭଦ୍ରାମି ହୋଇପାରେ । ତା ଚିତ୍ତ ଅଟକି ଗଲା । ତାଙ୍କ ନାଁରୁ ତାକୁ କ'ଣ ମିଳିବ ? ରାତିକ କୌଣସି ମତେ କଟିଗଲେ ଯାଏ । ବାଧ୍ୟ ଶିଶୁଟିଏ ଭଳି ଧୀର ପାଦରେ ହାବଡ଼ା ହତା ପାର ହୋଇ ବାବୁଙ୍କୁ ଅନୁଧାବନ କଲା ଶ୍ରାବଣୀ ...





Digitized by PPRACHIN, SOA

ପ୍ଲାଟଫର୍ମ ପିଣ୍ଡାରେ ଦେବକାନ୍ତ ଘଡିଟି ବିତାଇ ଥିଲା । ମନ ଖୋଜୁଥିବା ଜିନିଷଟି ଏ ଯାବତ୍ ଦୃଶ୍ୟ ହୋଇ ନାହିଁ । ଦେହ ଦୁର୍ବଳ ଲାଗୁଥିଲା । ଖାଲି ପେଟର ଘୁ ଘୁ ସ୍ୱର ଜଳନ୍ତା ଚୁଲି ଉପର ପାତ୍ରର ଫୁଟନ୍ତା ଚଳଚଳି, ପଦାର୍ଥ ପଡ଼ିଲେ ପେଷିବ, ଥମିବ ଆହାର ଚିନ୍ତା କରି ନଥିଲା ଏତେ ବେଳ ଯାଏଁ । ଶ୍ରାବଣୀ ଚିନ୍ତା ଘାରିଥିଲା ତା' ମନକୁ । ତା'ର ଶରୀରରୁ ପ୍ରାଣଟା ଯେମିତି ଦୂରେଇ ଯାଇଛି, ହଜି ଯାଇଛି ମହା ସମୁଦ୍ରର ବକ୍ଷ ଭିତରେ କ୍ଷୁଦ୍ର ଶାମୁକାଟିଏ ଭଳି । ଠିକଣା ବିହୀନ ପତ୍ରଟିଏ । କେଉଁଠି ଖୋଜି ପାଇବ ତାକୁ ? କିପରି ଥିବ ? କେଉଁଠି ଥିବ ଏଇଲେ ? ଛାତି ତଳଟା କେମିତି କ'ଣ ହୋଇଯାଉଥିଲା ।

ନିକଟସ୍ଥ ଟି-ଷ୍ଟଲରେ ସକାଳ ଚା' ପାଇଁ ଭିଡ଼ ଜମିଲାଣି । ଦଣ୍ଡାୟମାନ ଗ୍ରାହକମାନଙ୍କ ଓଠରେ ଚା' କପ୍‌ର ଉଷ୍ମ ଚୁମ୍ବନ । ଓଠ ଓ କପ୍‌ର ବନ୍ଧୁତା ଲାଗି ରହିଥିଲା ସେଠି । ଦେବକାନ୍ତ ଚାହିଁ ରହିଥିଲା ଗରମ ଚା' ଆଉ ଓଠର ସମ୍ପର୍କକୁ । ସକାଳର ଶୀତଳ ଦେହକୁ, ଥଣ୍ଡା ମନକୁ ଉଷ୍ମ କରିବାର ଉପାଦାନ ଏଇ ଚା' ଟିକକ । ତା ସାଙ୍ଗକୁ ବିସ୍କୁଟ୍‌ଟେ କିମ୍ବା ସିଙ୍ଗଡ଼ା ଦି'ଟା ଯୋଗକଲେ ସକାଳ ବେଳର ଖାଦ୍ୟ ଚିନ୍ତା ଶେଷ ।

ଦେବକାନ୍ତ ପେଣ୍ଟ୍ ପକେଟ ଭିତରକୁ ହାତ ପୂରାଇଲା ଖାଲି । ମଣିଷର ଏହା ଗୋଟେ ଅଭ୍ୟାସ । ଶତବାର ଜାଣି ଥିବା ଏମିତି ଖାଲି ସ୍ଥାନକୁ ହାତ ଆପେ ଚାଲିଯାଏ । ବିମର୍ଷ ଚିତ୍ତରେ ଷ୍ଟଲ ଚାରିପାଖେ ଏପଟ ସେପଟ ହେଲା ଦେବକାନ୍ତ । କାହାରିକୁ କପେ ଚା' ମାଗିବ ?

ଛିଃ, ନିଚ୍ଛଟଣା କାମ ।

ତେବେ ?



Digitized by PPRACHIN, SOA

ସକାଳର ଖରା ଭୂଇଁ ଛୁଇଁଲଣି । ମନର ଯନ୍ତ୍ରଣା ସହିତ ପେଟରେ ଜ୍ୱାଳା ବଢ଼ି ଚାଲିଥିଲା ସମାନ୍ତରାଳ ଭାବେ । ଦୁଇଦିନ ହେଲା କୌଣସି ଖାଦ୍ୟ ପାକସ୍ଥଳୀ ସ୍ପର୍ଶ କରିନାହିଁ ।

ଏ ପାଖେ ଦରବୁଢ଼ା ଫଳବାଲାଟାଏ ପସରା ଖୋଲି ବସିଲାଣି । ନିକିତିକୁ ଭଲଭାବେ ପରିଷ୍କାର କରି ଧୂପ ସଜାଡୁ ଥିଲା । ବୋଝ ଭିତରେ ଲାଲ ଟହ ଟହ ସେଉ । ସିଙ୍ଗାପୁରୀ କଦଳୀ, ପାଚିଲା ଆମ୍ବ ଲେଙ୍ଗଡ଼ା, ବାଇଗଣ ପଲେଇ, ନୀଳମ୍ ଆଦି ଅନେକ ପ୍ରକାରର । ଫଳଗୁଡ଼ିକ ଗରାଖମାନଙ୍କୁ ନିମନ୍ତ୍ରଣ କରୁଥିଲେ ସେମାନଙ୍କ ପକ୍ୱତା, ମଧୁରତା ପରୀକ୍ଷା କରିବା ପାଇଁ । ବିକ୍ରେତାର ଅଲକ୍ଷ୍ୟରେ ସେଉଟେ ଟାଣି ଆଣି ପାଟିରେ ପୂରେଇ ଦେବାପାଇଁ ଚିନ୍ତା କରୁଥିଲା ଦେବକାନ୍ତ । କିନ୍ତୁ ତା' ବିବେକ ବାଧା ଦେଲା । ବିବେକ ଏବଂ ବର୍ତ୍ତମାନ ମଧ୍ୟରେ ଭିଡ଼ା ଓଟରା । ତା' ଶିକ୍ଷାଗତ ଯୋଗ୍ୟତା, ଆତ୍ମମର୍ଯ୍ୟାଦା ପ୍ରବଳ ପ୍ରତିବନ୍ଧକ ଭାବେ ଠିଆ ହେଲା । ପେଟ ଏଣେ ପୋଡ଼ି ଯାଉଛି । ତା' ଜୀବନର ଗୋଟାଏ ଚରମ ପରୀକ୍ଷାର ମୁହୂର୍ତ୍ତ ଉପସ୍ଥିତ ।

କଥାରେ କହନ୍ତି "ପେଟ ପୋଷ୍, ନାହିଁ ଦୋଷ୍ ।" କିନ୍ତୁ ମାଗି ଖାଇବା କିମ୍ବା ଚୋରି କରିବା ପାଇଁ ଦେବକାନ୍ତର ମନ ରାଜି ହେଲାନାହିଁ । ମୁଣ୍ଡରେ ବୁଦ୍ଧି ଥାଉଁ ଥାଉଁ, ବାହୁରେ ବଳ ଥାଉଁ ଥାଉଁ ଭିକ୍ଷାମାଗିବା ବା ଚୋରି କରିବା କେବଳ ହୀନ କାମ ନୁହେଁ, ଅପରାଧ ମଧ୍ୟ । ରାସ୍ତାରେ, ବସ୍‌ଷ୍ଟାଣ୍ଡରେ ଅବା ହାଟ ବଜାରରେ ସୁସ୍ଥ ସବଳ ଲୋକଟିଏ ଛିଣ୍ଡା ଲୁଗା ଦେହରେ ଗୁଡ଼େଇ ହାତପାତି ମାଗିଲା ବେଳେ ଦେବକାନ୍ତ ମୁହଁରୁ ପ୍ରଚଣ୍ଡ ବିରକ୍ତି ପ୍ରକାଶପାଏ । ମୁହଁ ଛିଞ୍ଚାଡ଼ି, ନାକ ଟେକି କଠୋର ଭାବେ ସେ କହି ପକାଏ ହାତ ଗୋଡ଼ ତ ବେଶ୍ ସୁସ୍ଥ ଅଛି, ଏମିତି ଭିକ ମାଗି ସହଜ ଧନ୍ଦା ଧରିବାକୁ ଇଚ୍ଛା ଲାଗୁନି ? ଏପରି ଅକର୍ମା ଲୋକମାନଙ୍କୁ ଏକମାତ୍ର ଶାସ୍ତି ହେଉଛି ଚାବୁକ ଏବଂ ଜେଲ । କିନ୍ତୁ ଯିଏ ବିକଳାଙ୍ଗ, ପଙ୍ଗୁ, ଅଥର୍ବ, ଶ୍ରମ କରି ଗୁଜୁରାଣ ମେଣ୍ଟାଇବାର ଶକ୍ତି ନାହିଁ,



Digitized by PPRACHIN, SOA

ସେ ହିଁ କେବଳ ଦୟାର ପାତ୍ର; ତାରି ଶୂନ୍ୟ ପାତ୍ରରେ ପଇସାଟିଏ ପକାଇବା ପାଇଁ ଦେବକାନ୍ତ କେବେ କାର୍ପଣ୍ୟ କରି ନଥାଏ । କିନ୍ତୁ ଆଜି କ'ଣ ସେ ବିକଳାଙ୍ଗ ? ଅନ୍ୟର ଦୟାଦାନ ଉପରେ ନିର୍ଭରଶୀଳ ?

ଆଜି କିନ୍ତୁ ଦେବକାନ୍ତର ବିଗ୍ଭର ବୁଦ୍ଧି ଏପଟ ସେପଟ ହୋଇ ଯାଉଛି । ବର୍ତ୍ତମାନ ତା'ର ତ୍ରିଶଙ୍କୁ ଅବସ୍ଥା । ଯେଉଁ ବୃତ୍ତିଟିକୁ ସେ ଅନ୍ତରରେ ଘୃଣା କରୁଥିଲା, ସେ ଆଜି ତା' ଆଗରେ ପ୍ରଶ୍ନଟିଏ ଭଳି ଛିଡ଼ା ହୋଇଛି ।

ଏଠି କେଉଁ ସହୃଦୟ ବ୍ୟକ୍ତିକୁ ସେ ନିବେଦନ କରିବ ? ଆଜ୍ଞା, ଖୁବ ଅସୁବିଧାରେ ପଡ଼ିଛି, ମୁଁ ହାତ ପତେଇବା ଲୋକ ନୁହେଁ, ଦାତାଙ୍କ ଆଗରେ ମୁହଁ ନେଫେଡ଼େଇ ମାଗିବା ଲୋକ ନୁହେଁ, ମାଗୁଛି କେବଳ ବାଧ୍ୟହୋଇ । ନାଃ, କସ୍ମିନ୍‌କାଳେ ସେ ଏପରି ହୀନ କାର୍ଯ୍ୟ କରି ପାରିବ ନାହିଁ । ବରଂ ମୃତ୍ୟୁ ତା' ପାଇଁ ଶ୍ରେୟସ୍କର ।

ମୃତ୍ୟୁ ! !

ମିଛ କଥା । ଏଡ଼େ ସହଜ ନୁହେଁ । ବିପୁଳ ପୃଥିବୀର କୋଳରେ ବଞ୍ଚି ରହିଛନ୍ତି ଅନେକ ଲୋକ ଯେଉଁମାନଙ୍କର ବାସ ହେଉଛି ଆକାଶ ତଳ, ବୃକ୍ଷମୂଳ ଅଥବା ଫୁଟ୍‌ପାଥ୍ । ପବନ, ପାଣି ସେମାନଙ୍କର ଆହାର । ବିଶ୍ୱ ଜନସଂଖ୍ୟାରେ ଏମାନଙ୍କର ସଂଖ୍ୟା ସର୍ବାଧିକ, ଶହେରୁ ନବେ । ତଥାପି ସେମାନେ ବଞ୍ଚିଛନ୍ତି । କିପରି ? କେଉଁ ଉପାୟରେ– ଭିକ୍ଷା ? କେବେ ନୁହେଁ । ଯିଏ କେବଳ ନିଜକୁ ଠକି ଜାଣେ, ଠକିବାର ଅଭିନୟ ଯାହାକୁ ଜଣା, ମିଛ କହିବା କଳାରେ ପାରଙ୍ଗମ, ସେହିଁ କେବଳ ଭିକ ମାଗେ । ପଙ୍ଗୁ, ବିକଳାଙ୍ଗମାନଙ୍କ କଥା ଭିନ୍ନ । ଦେବକାନ୍ତ ବିକଳାଙ୍ଗ ନୁହେଁ ; ସେ ଜଣେ ବଳବନ୍ତ ଯୁବକ । ପରିସ୍ଥିତି ହୁଏତ ଆଜି ତାକୁ ଦୁର୍ବଳ କରିଦେଇଛି । ତଥାପି ସେ ସାମାନ୍ୟ ପେଟର ଦାଉରୁ ସମ୍ଭାଳି ପାରିବ ନାହିଁ ? ତା ଜୀବନର ଏତ ପ୍ରଥମ



Digitized by PPRACHIN, SOA

ପରୀକ୍ଷା, ଦୁନିଆଁର ଦାଉ ଧକ୍କା ସହ ସାଲିସ୍ କରିବାର ପ୍ରଥମ ଚେଷ୍ଟା ! ପରାଜୟ ସ୍ୱୀକାର କରିବ ନାହିଁ ଏତେ ଚଞ୍ଚଳ । ମଲେ ସୁଦ୍ଧା ବିବେକ ବିରୁଦ୍ଧ କାମ କରିବ ନାହିଁ । ସେ ସଂଗ୍ରାମ କରିବ, ସଂଯମ ଶିଖିବ । ଖାଦ୍ୟ ନ ମିଳିଲେ ପାଣିତ ଅଛି, ପବନ ଅଛି, କେବଳ ପାଣି ପିଇ, ପବନ ଢୋକି, ପେଟ ଫୁଲେଇ ତା ପ୍ରିୟତମାକୁ ଗୋଡ଼ି ଚାଲୁଥିଲା ପର୍ଯ୍ୟନ୍ତ ଖୋଜିବ, ଖୋଜିବ ସହରର ପ୍ରତି ଗଳି କନ୍ଦି, ଅନ୍ଦି ସନ୍ଧି । ଦ୍ୱାର ଦ୍ୱାର ବୁଲିବ, ଘର ଘର ଅନୁସନ୍ଧାନ କରିବ । ମନକୁ ଦୃଢ଼ କରିନେଲା । କ୍ଷୁଧା ଦମନ କରିବାକୁ ଚେଷ୍ଟାକଲା ପ୍ରାଣପଣେ ।

ନଜର ପଡ଼ିଲା ନିକଟସ୍ଥ ବୁକ୍ ଷ୍ଟଲ ଉପରେ । ଅନେକ ଗୁଡ଼ିଏ ବହି, ବିଭିନ୍ନ କିସମର ମ୍ୟାଗାଜିନ୍, ବହୁଭଷୀ ପତ୍ରପତ୍ରିକା ଗୁଡ଼ିଏ । ଦେହରେ ରଙ୍ଗ ବୋଳି ଆବଦ୍ଧ କାଚ ଆଲମାରୀ, ଉନ୍ମୁକ୍ତ ଥାକ ଏବଂ ଖୋଲା ମେଜ ଉପରେ ପୁସ୍ତକାନୁରାଗୀ, ପାଠକମାନଙ୍କୁ ସ୍ୱାଗତ କରୁଛନ୍ତି । ଛାତ୍ର ବେଳର ଅବସର ସମୟରେ ବସ୍‌ଷ୍ଟାଣ୍ଡ କିମ୍ବା ଷ୍ଟେସନ ବୁକ୍ ଷ୍ଟଲକୁ ଯାଇ ବହି ଲେଉଟେଇବା ଏବଂ ଗୋଟେ ଅଧେ ପତ୍ରିକା ଖରିଦ କରିବା ଦେବକାନ୍ତର ଥିଲା ଗୋଟାଏ ପୁରୁଣା ଅଭ୍ୟାସ । ବହିକୁ ସେ ଖୁବ୍ ଭଲ ପାଉଥିଲା । ଅଜାଣତରେ କିଏ ଯେମିତି ତାକୁ ଆଜି ବହି ଦୋକାନ ପାଖକୁ ଟାଣି ନେଉଛି । ଏଥର କିନ୍ତୁ ବହି ବା ପତ୍ରିକା ଖରିଦ କରିବାର ଉଦ୍ଦେଶ୍ୟ ନାହିଁ ।

ପୁସ୍ତକ ବିକ୍ରେତା ଜଣେ ଭଦ୍ରଲୋକ ଭଳି ଜଣା ପଡୁଛନ୍ତି । ଦେହରେ ସଫା ଧୋତି ଏବଂ ପଞ୍ଜାବୀ । ସକାଳୁ ଆସି ପୁସ୍ତକ ଗୁଡ଼ିକ ସଜାଡ଼ି ରଖୁଛନ୍ତି, ଦୈନିକ ସମ୍ବାଦପତ୍ର ସବୁ ଯଥା ସ୍ଥାନରେ ସାଇଟି ରଖୁଛନ୍ତି, ସେଥିରୁ ଧୂଳି ଝାଡୁଛନ୍ତି । ଦେବକାନ୍ତ ତାଙ୍କ ନିକଟତର ହେଲା । କହିବ କ'ଣ ? ମନରେ ସଂକୋଚ । ଦେହରେ ଝୁଲୁଥିବା ତିନିଦିନ ତଳର ପୋଷାକ ତା'ର ଉଜ୍ଜ୍ୱଳତା ହରାଇ ଥିଲା । ଦେହ ଧୂସର । ମୁଣ୍ଡବାଳ ଅଲଗା, ଆଲୁଚାଲିତ । ପତ୍ରିକା-ଖରିଦଦାର ଭଳି ଦିଶୁ ନଥିଲା । ଭେକରୁ ସିନା ଭିକ ମିଳେ ।



Digitized by PPRACHIN, SOA

ଗୋଡ଼ଭଙ୍ଗି ଠିଆ ହେଲ ସେଠି । ଗୁହାଣିରେ ନେହୁର ଭାବ ଫୁଟୁ ଥିଲ । କେତୋଟି ମ୍ୟାଗାଜିନ୍ କିମ୍ବା ଖବର କାଗଜ ବାକୀ ସୂତ୍ରରେ ହାସଲ କରି ପାରିଲେ ବୁଲି ବୁଲି ବିକି ପାରନ୍ତା, ଯାହା ଦି'ପଇସା ଭିଆନ୍ତା ଦିନକର ଗୁଜୁରଣ ମେଣ୍ଟିଯାନ୍ତା । କିନ୍ତୁ ତା ପାଟି ଖୋଲୁନି । ଦୁଇଥର ଚେଷ୍ଟା କଲଣି, କିନ୍ତୁ ତଣ୍ଟିରେ କଥାଟା ଲଗି ରହୁଚି, ଜିଭ ଅଗରୁ ଭଷାଟା ପୁଣି ପେଟ ଭିତରକୁ ଫେରି ଯାଉଛି । ଜୀବନରେ ପ୍ରଥମ ଥର ପାଇଁ ସାହାଯ୍ୟ ଭିକ୍ଷା ନିମନ୍ତେ ଅଚିହ୍ନା ଲୋକର ଦ୍ୱାରସ୍ଥ ହେବାକୁ ଯାଉଛି । ମନରେ ଦ୍ୱିଧା ଭବ । ପେଟରେ ଭୋକ, ମୁହଁରେ ଲଜ । ହାବୁକେ ପବନ ଦୁଆର ଠେଲି ଭୁସ୍‌କରି ଘର ଭିତରକୁ ପଶି ଆସିଲ ଭଳି ପାଟି ଭିତରୁ କଥାଟା ବାହାରି ଆସିଲ ।

ଲୋକଟି କ'ଣ କହୁଛି ବୋଧହୁଏ—ବହିବାଲାର ଧ୍ୟାନ ଆକର୍ଷଣ ହେଲା । କେତୁଟା ସକାଳିଆ ଗରହାକ ସମ୍ବାଦପତ୍ର କିଣିବାକୁ ଉପଗତ । ଯୁବକଟି କ'ଣ କହୁଛି ତା ଅଧାଭୋକା, ଅଧାକୁହା କଥା ମାଧ୍ୟମରେ ? ଦୋକାନୀଟି ବଙ୍ଗାଳୀ ଲୋକ । ଓଡ଼ିଆ ତାର ପ୍ରତିବେଶୀ ଭଷା । ଅନେକ ଓଡ଼ିଆ ଏହି ସହରରେ ବାସ କରୁଛନ୍ତି । ଜନସଂଖ୍ୟା ଭିତ୍ତିରେ କଲିକତା ନଗରୀ ହୁଏତ ହୋଇପାରେ ଓଡ଼ିଆମାନଙ୍କର ଦ୍ୱିତୀୟ କିମ୍ବା ତୃତୀୟ ବୃହତ୍ତମ ସହର । ଓଡ଼ିଆ ଏବଂ ବଙ୍ଗଳା ଭଷାରେ ରହିଛି ଅନେକ ସାମଞ୍ଜସ୍ୟ । ସଂସ୍କୃତି, ଗ୍ରଲିଚଳନ, ଖାଦ୍ୟପେୟ, ପୋଷାକ ପରିଚ୍ଛେଦ ଆଦିରେ ଉଭୟେ ଅନେକାଂଶରେ ମେଳଖାନ୍ତି—ଗୋଟିଏ ମା' ପେଟରୁ ଦୁଇଟି ଭଉଣୀ ପରି । କହିବାରେ ସାମାନ୍ୟ ପାର୍ଥକ୍ୟ ଥିଲେ ମଧ୍ୟ ବୁଝିବାରେ ଆଦୌ ଅସୁବିଧା ହୁଏନି । ପୁସ୍ତକ ବିକ୍ରେତାର ହୃଦବୋଧ ହେଲ, ଯୁବକଟି କେଇଖଣ୍ଡ ବହି ଏବଂ ପତ୍ରିକା ମାଗୁଛି ।

କ'ଣ କରିବ ? ବହିବାଲର ଭଷାରେ ଦୃଢ଼ତା ।

ନମ୍ର ଭବେ କହିଲ ଦେବକାନ୍ତ—ଏଇଠି ପ୍ଲାଟଫର୍ମରେ ଲୋକଙ୍କୁ ବିକ୍ରୀ କରିବି । କିଛି କମିସନି ମିଳିଲେ ... ...



Digitized by PPRACHIN, SOA

: ଆରେ ବାବା, ଏତ ବଡ଼ ମୁସ୍କିଲ କଥା । ବ୍ୟାପାରଟା ଏଠାରେ ହୋଇ ପାରିବ ନାହିଁ । ଗେକ୍ ଠୋକ୍ ଭବେ କହିଲ ଦୋକାନି, ତା' ଭଷାରେ ଅବିଶ୍ୱାସ ଭରି ରହିଥିଲ ଭଳି ଲଗିଲ ।

ତଥାପି ଆଶା ରଖି କହିଲ ଦେବକାନ୍ତ–ବଡ଼ ଅସୁବିଧାରେ ପଡ଼ିଛି ଆଜ୍ଞା । ମୁଁ ଏମିତି ମାଗିବା ଲେକ ନୁହେଁ ... ...

: ଯା ଯା; ଅନ୍ୟ ଧନ୍ଦା ଦେଖ । ଠକ କି ସାଧୁ କିଏ କହି ପାରିବ ? ଆଜିକାଲି ଏମିତି ଚିତାକଟା ଲେକଙ୍କ ସଂଖ୍ୟା ଅନେକ । କ'ଣ ଭରସା ଅଛି ଏମାନଙ୍କ ଠି ? ଏଠୁ ଦୂର୍ ହ, ଗ୍ଲଲଖି ପଣିଆ ରଖିଥା, ବିଦ୍ୟା କେତେ ଯାଏଁ ?

ଦେବକାନ୍ତ ଦେହରେ ବୁଲ୍‌ଡ଼ୋଜର ଧକ୍କା, ମନରେ ପ୍ରଚଣ୍ଡ ଆଘାତ । ଅନୁରେଧଟି ହଠାତ୍ ନାକଚ ହୋଇଗଲ ଏବଂ ତା' ସହିତ ଅନେକ ଆକ୍ଷେପୋକ୍ତି । ସମସ୍ତେ କ'ଣ ଠକ ଆଉ ଚ୍ରେର ? ଏମିତି ଅବିଶ୍ୱାସ ମଣିଷ ମନ ଭିତରେ ଜମାଟ ବାନ୍ଧି ରହିଛି କାହିଁକି ? ବିବେକବନ୍ତ ଲେକ କ'ଣ ସମାଜରୁ ଲେପ ପାଇଗଲେଣି ବିବାକେ ? ବିବେକୀ ଲେକ କ'ଣ କେହି ନାହାନ୍ତି ଏ ଦୁନିଆଁରେ ? ଦୁର୍ଯୋଗରେ ପଡ଼ିଥିବାରୁ ସିନା ସେ ଆଜି ହାତ ପାତିଥିଲ, ନହିଲେ କ'ଣ ଦରକାର ଥିଲ ପାଟି ଖୋଲିବା ପାଇଁ ? ଏମିତି ଅସୁବିଧା ଏବଂ ଦୁର୍ଗତିର ଚକ୍ରବ୍ୟୂହ ଭିତରେ ଘାଣ୍ଟି ହୋଇ ମଣିଷ ସିନା ଡ଼ାକୁ ସାଜେ ! ଫୁଟିକିଆ ଲମ୍ବର ଇଙ୍ଗଲା ଶିଶୁ ଚ୍ରେରଟିଏ ହୋଇ ଜନ୍ମି ନଥାଏ । ଘଟଣାଚକ୍ର ତାକୁ ସମାଜଚ୍ୟୁତ କରଏ । ସେ ବାଛିନିଏ ଚୌରବୃତ୍ତି । ବାଘ ପ୍ରଥମଥର ପାଇଁ ମଣଷ ମାଂସ ଖାଇ ସେ ଯେପରି କ୍ରମଶଃ ସେଇ ମାଂସ ପ୍ରତି ଆକୃଷ୍ଟ ହୁଏ ଏବଂ ପୋଖତ ମଣିଷଖିଆ ବାଘ ବନିଯାଏ, ଚ୍ରେରର ବୃତ୍ତି ସେଇପରି ଭୟାନକ ହୋଇ ଉଠେ କାଳ କ୍ରମେ । ସବୁ ପେଟ ପାଇଁ; ପେଟ ପୋଡ଼ିଗଲେ ସବୁ ଅନ୍ଧାର, ଅନ୍ଧାର ଭିତରେ ଭଲ ଭେଲ, ସବୁ



Digitized by PPRACHIN, SOA

ସମାନ ରଂଗ ହୋଇଯାଏ । ଦେବକାନ୍ତ ମନେ ମନେ ଅନୁଶୀଳନ କରୁଥିଲା ମଣିଷ ଷଭବର ବିଭିନ୍ନ ଦିଗଗୁଡ଼ିକ । ଆଜି ସିଧାସଳଖ ସମ୍ମୁଖୀନ ହୋଇଛି ସମାଜର ବାସ୍ତବ ସତ୍ୟ ସମ୍ମୁଖରେ, ସ୍ୱଚକ୍ଷୁରେ ଦେଖୁଛି, ସମାଜ-ଅନ୍ତରଳର ଚିତ୍ର, ଅଙ୍ଗେ ନିଭଉଛି ପରିସ୍ଥିତିର ନିଷ୍ଠୁରତା, ଅନୁଭବ କରୁଛି ଘଟଣାର କଠୋରତା ।

ପ୍ଲାଟଫର୍ମ କଳରୁ ଗଦ୍ ଗଦ୍ ହୋଇ ପାଣି ବୋହି ଯାଉଛି । ଦୌଡ଼ିଗଲା ସେଠିକୁ । ତଣ୍ଡି ପର୍ଯ୍ୟନ୍ତ ପାଣି ଭର୍ତ୍ତି କଲା । ମନେ ପଡ଼ିଗଲା ସେଇ ଗଜଘାଟ କଥା । ଏମିତି ହାତକୁ ଆଞ୍ଜୁଳା କରି ପାଣି ପିଉଥିଲା । ଗାଡ଼ି ଛାଡ଼ି ଦେଲା ... ଆହା, ତା'ର ପ୍ରାଣାଧିକା ଶ୍ରାବଣୀ ! ପତି ବିନା କେତେ ଅସହାୟ ମନେ କରୁ ନ ଥିବ ବିଗ୍ଭରୀ ! ଅନାଥିନୀ ଭଳି କେଉଁଠି ଥିବ ବର୍ତ୍ତମାନ ? ପୁଣି ସ୍ତ୍ରୀ ଚିନ୍ତା ମାଡ଼ି ବସିଲା ଭୂତଭଳି । ଘାଉଁରି ଖାଇଲା ଖପୁରୀ ଭିତରଟା ।

ଦେବକାନ୍ତର ପେଟ ପୂରିଥିଲା କଳ ପାଣିରେ । ମୁଣ୍ଡଟେକି ଗ୍ଭରିଆଡ଼କୁ ଆଖି ପହଁଚେଇଲା । ଜନାରଣ୍ୟରେ ବେଳକୁ ବେଳ ପ୍ଲାଟଫର୍ମ ଭଳୁଛି । ସେ ତନ୍ନ ତନ୍ନ କରି ପ୍ରତି ପାସେଞ୍ଜରକୁ ନିରିଖୁଛି । କିନ୍ତୁ ଶ୍ରାବଣୀ ଏଠାରେ ନାହିଁ । ନିଶ୍ଚିତ ଭାବେ ସେ ସହର ଭିତରକୁ ଗ୍ଭଲି ଯାଇଛି । ଏଠାରେ ଆଉ ଅଧିକ ସମୟ ରହି ତାକୁ ଖୋଜିବା ଫଳପ୍ରଦ ନୁହେଁ, ଅନାବଶ୍ୟକ । ବରଂ ଚଞ୍ଚଳ ସହର ଭିତରକୁ ଯାଇ ତାକୁ ଅନ୍ୱେଷଣ କରିବା ଖୁବ୍ ଅତି ଜରୁରୀ ।

ପ୍ଲାଟଫର୍ମ ବାହାରକୁ ଯିବ କିପରି ? ପାଖରେ ଟିକଟ ନାହିଁ । ଅଧିକ ଯତ୍ନବାନ ହୋଇ ଦୁଇଟିଯାକ ରେଳ ଟିକଟ ରଖିଥିଲା ହ୍ୟାଣ୍ଡ ସୁଟ୍‌କେଶ୍‌ଟିରେ । ସୁଟ୍‌କେଶ୍‌ଟି ଗଲା, ତା ସହିତ ସର୍ବସ୍ୱ ହଜିଲା ।

ପ୍ରସ୍ଥାନ ଦ୍ୱାର ପାଖେ ଧାଡ଼ି ବାନ୍ଧିଛନ୍ତି କଲିକତା ଅଭିମୁଖୀ ଯାତ୍ରୀମାନେ । ସେମାନଙ୍କ ହାତରେ ବେଡିଂ ବୁଜୁଲା ଅବା କାହାପାଇଁ



Digitized by PPRACHIN, SOA

ନାଲି କୁର୍ତ୍ତାପିନ୍ଧା କୁଲି ନିୟୋଜିତ । ସେଇ ଲମ୍ବା ଲାଇନ ଭିତରେ ଚୁପ୍‌କିନି ନିଜକୁ ମିଶାଇ ନେଇ ଦେବକାନ୍ତ । ଭୟାର୍ତ୍ତ ମନ । ଆଇନ୍‌କୁ ଅସମ୍ମାନ କରି ଶିଖିନି । ନିଜକୁ ମାଡ଼ି ମାଡ଼ି ପଡ଼ୁଛି । ଦୁରବସ୍ଥା କହିବ କାହାକୁ ? କିଏ ଦୁଃଖ ବୁଝିବ ? କିଏ ତାକୁ ବିଶ୍ୱାସ କରିବ ? ବିନା ଟିକଟ ଯାତ୍ରୀମାନଙ୍କ ପାଇଁ ରେଳ ବିଭାଗର କଡ଼ା ବ୍ୟବସ୍ଥା–ସତର୍କ ନାମା ଗୁଡ଼ିକ ରେଳ ଡ଼ବା, ପ୍ଲାଟଫର୍ମ କାନ୍ଥ ଆଦିରେ ସ୍ପଷ୍ଟାକ୍ଷରରେ ଘୋଷିତ । ଛାତି ଧଡ଼ଧଡ଼ ହେଲ ।

ଧାଡ଼ିର ଆଗବାଗଙ୍କ ହାତରୁ ଟିକଟ ସଂଗ୍ରହ କାମ ଚାଲିଛି । ସେ ପଟେ ଟାକ୍‌ସିବାଲାମାନେ ଆଗନ୍ତୁକମାନଙ୍କୁ କଢ଼େଇ ନେଉଛନ୍ତି ନିଜ ନିଜ ଟାକ୍‌ସି ପାଖକୁ । ଆସିଲା ଦେବକାନ୍ତର ପାଳି ।

ଟିକଟ ?

ଦେବକାନ୍ତର ପାଟି ଖନି ବାଜିଲା । ଥତ ମତ ହୋଇ ଓଡ଼ିଆ ଭଷାରେ କହିଲା–ଅଜ୍ଞା ଚୋରି ହୋଇଯାଇଛି ।

ପେଣ୍ଟ ପକେଟରୁ କ୍ଷୁଦ୍ର କଅଁଟିଏ ଆଣି ଦେଖାଇଲା ପସ୍ଥାନ ଦ୍ୱାରର ଟିକଟ ସଂଗ୍ରହକାରୀଙ୍କୁ । ଦେଖନ୍ତୁ ଆଜ୍ଞା, ସୁଟ୍‌କେଶ ତାଲା ପଡ଼ିଥିଲା । ସେଥିରେ ସବୁ ଥିଲା । ମୋର ସାର୍ଟିଫିକେଟ, ଟଙ୍କା, ଟିକଟ । କିନ୍ତୁ ଚୋର ନେଇଗଲା । ଆଖି ଛୁଉଁଚି, ସତ କହୁଚି, ମିଛ କହୁଥିଲେ ଧ୍ୱଂସ ହୋଇଯିବି । ଏଇ ସାମାନ୍ୟ କଥାକୁ ଏତେ ବଡ଼ ମିଛ କୁହାଯାଇ ପାରେ ?

: ଚୋରି ହୋଇଯାଇଛି ! ଠକମାନଙ୍କର ଏହା ଗୋଟାଏ ସୁନ୍ଦର ଉପାୟ, ଅଭୁତ ଗଳ୍ପ । ଆଡକୁ ଆ, ଏଇଲେ ଦେଖିବୁ ମାମୁଁ ଘର ।

; ହଁ ଆଜ୍ଞା, ସତ କହୁଛି । ଟିକଟ ସହିତ ମୋର ସବୁ ଆସବାବପତ୍ର ମଧ୍ୟ ହରଣଚାଳ ହୋଇଯାଇଛି । ମୋ ସ୍ତ୍ରୀ ମଧ୍ୟ ନିଖୋଜ । ବଡ଼ ଅସୁବିଧାରେ ପଡ଼ିଛି ଆଜ୍ଞା ।



Digitized by PPRACHIN, SOA

: ଆଉ ସଫେଇ କରିବାର ଆବଶ୍ୟକ ନାହିଁ । ଶୀଘ୍ର ପଇସା ବାହାର କର, ଜୋରିମାନା ଦାଖଲ କର, ନହିଲେ ଦେଖିବୁ ମାମୁଁ ଘର । ଓଃ, ଏମିତି ବିନା ଟିକଟ ଯାତ୍ରୀଙ୍କ ସଂଖ୍ୟା ଏତେ ବେଶୀ ହେଲାଣି ଯେ, ରେଲୱେ ଷଷ୍ଠା ଦେବାଳିଆ ଅବସ୍ଥାକୁ ଆସି ଗଲାଣି । ଏମାନଙ୍କୁ ଉଚିତ୍ ଦଣ୍ଡ ଦିଆ ନଗଲେ ଅବସ୍ଥା ସୁଧୁରିବ ନାହିଁ ।

ଦେବକାନ୍ତ ଚୁପ୍ ରହିଥିଲା ! ମଣିଷ ଯାହାକୁ ଡ଼ରେ ତାରି ହାବୁଡ଼ରେ ପଡ଼େ । ମନେମନେ ଯାହା ଆଶଙ୍କା କରୁଥିଲା, ତାହାହିଁ ଘଟିଲା । ତା ପାଇଁ ଓକିଲଟି ବାଢିବା ପାଇଁ କେହି ନାହିଁ, ତା ନିର୍ଦ୍ଦୋଷତା ପ୍ରମାଣ କରିବା ପାଇଁ ତାର ସମ୍ବଳ ନାହିଁ । ଭଗ୍ୟ ତ ତାକୁ ଦୋଷୀ ସାବ୍ୟସ୍ତ କରି ସାରିଲାଣି ! ନିରୂପାୟ ଥିଲା ସେ । ମୁଣ୍ଡରେ ହାତ ଦେଲା । ଘଣ୍ଟା ବେଳକୁ ବେଳ ଜଟିଳ ହେଉଛି ତା' ପାଇଁ । ଯାହା ହେବ ସବୁ ମୁଣ୍ଡପାତି ସହିବ । କେବଳ ସହିବା ଛଡ଼ା ଅନ୍ୟ ଉପାୟ କ'ଣ ଅଛି ?

ପ୍ଲାଟଫର୍ମର ଏକେଣା କୋଣରେ ଓସାରିଆ ଲୌହଦ୍ୱାର ନିର୍ମିତ ପ୍ରକୋଷ୍ଠଟିଏ । ତା ଭିତରେ ଦିଶୁଛନ୍ତି କେଇଟା ଲୋକ । ତା' ପରି ବୋଧହୁଏ ସେମାନେ ଅସହାୟ କିମ୍ବା ଆଇନ୍ ଭଙ୍ଗକାରୀ ବିନା ଟିକଟ ଯାତ୍ରୀ ଅଥବା ପକେଟମାରୁ । ସିପେହୀର ନିର୍ଦ୍ଦେଶ ମତେ ଦେବକାନ୍ତ ଗଲା ସେଇ ଗେରଜ ଭିତରକୁ । ଜନ୍ତୁଟିଏ ଜନ୍ତା ଭିତରେ ରହିଲା ଭଳି ସେ ବିନା ପ୍ରତିରୋଧରେ ତା' ଭିତରେ ଯାଇଁ ଚୁପ୍ ହୋଇ ବସି ରହିଲା । ଆଜି ସେ ଅଭିଯୁକ୍ତ ଆସାମୀ, ଆଇନ୍ ଆଖିରେ ଦୋଷୀ, ବିନା ଟିକେଟ ଯାତ୍ରୀ । ଜୋରିମନା ଅର୍ଥ ଦେବାକୁ ଅସମର୍ଥ ହେବାରୁ ସେ ଜେଲ ଭୋଗିବ ଦିନା କେତେ । କେତେ ଦିନ ହୋଇପାରେ ?

ବିକୃତ ମୁହଁରେ ଦାନ୍ତ ନେଫେଡ଼ି ସହବାସୀ ଆସାମୀ ପଚାରିଲା ଚୁପ୍ ଚୁପ୍—କେତେ ଭିଆଇଛୁ ?



Digitized by PPRACHIN, SOA

ଦେବକାନ୍ତ ନୀରବ ନିରୁତ୍ତର ରହିଥିଲା । ସଙ୍କୁଚିତ ଢଳ ଢଳ ଆଖି, ମେଘଢଙ୍କା ମୁହଁ । ଏମିତି ଅକଳ୍ପିତ ଘଟଣାଗୁଡ଼ିଏ ମଣିଷ ଜୀବନରେ ଉପସ୍ଥିତ ହୁଅନ୍ତି, ସେଥିରେ ମଣିଷର ହାତ ନଥାଏ, ସମାଧାନର ଶକ୍ତି ନ ଥାଏ, ମୁକାବିଲା କରିବାର ସାମର୍ଥ୍ୟ ନ ଥାଏ । ହୃଦୟ ତା'ର ବିଳାପ କରୁଥିଲା, ପେଟ ଏଣେ ଗର୍ଜନ କରୁଥିଲା । ସିମେଣ୍ଟ ଚଟାଣ ଉପରେ ପେଟ ମାଡ଼ି ଶୋଇ ରହିଲା । ଦୁର୍ବଳ ମନ । ନିସ୍ତରଙ୍ଗ ଶରୀର । ଭେ ଭେ ହୋଇ କାନ୍ଦିବାକୁ ଇଚ୍ଛା ହେଉଥିଲା ତା'ର । କିନ୍ତୁ ପୁରୁଷ ପୁଅ ସେ । ଆତ୍ମାକୁ କଷ୍ଟ ହେଉଥିଲେ ମଧ୍ୟ ଆଖିର ଲୁହ ଆଖି ଭିତରେ ଗୋପନ ରଖୁଥିଲା । ଆଖି ଭିତର ଲୁହ, ମନ ଭିତର କୋହ ଏକାକାର ହୋଇ ଅନ୍ତର୍ବିଳାପର ସ୍ୱର ରଚନା କରୁଥିଲେ । 



Digitized by PPRACHIN, SOA

ଆଶ୍ରୟଦାତା ବଙ୍ଗାଳୀ ଭଦ୍ରବ୍ୟକ୍ତିଙ୍କ ବାସଗୃହ ହାବଡ଼ା ଷ୍ଟେସନର ଅନତି ଦୂରରେ । ପାଦରେ ଗ୍ଲଲିଗଲେ ପ୍ରାୟ ଦଶମିନିଟର ବାଟ । ତିନି ମହଲା ବିଶିଷ୍ଟ ଫ୍ଲାଟ କ୍ୱାଟରଟିଏ । ଭଡ଼ାଘର । ତଳ ମହଲଟି ଏଇ ବାବୁଙ୍କର । ବିଶେଷ କିଛି ଆଡ଼ା ଚଉଡ଼ା ଘର ନୁହେଁ । ଭିତରେ ମାତ୍ର ଦୁଇଟି କୋଠରୀ, ସେଥିରୁ ଗୋଟିଏ ବସା ଉଠା କରିବା ପାଇଁ ବୈଠକ ଘର । ଛୋଟ ଟି'ପଏକୁ ଘେରି ରହିଛନ୍ତି କାଠ ନିର୍ମିତ ସୋଫା ଚୌକି । ଅନ୍ୟ ବଖରାଟି ବାବୁଙ୍କ ଶୟନ କକ୍ଷ । ସେଠି ଅଳ୍ପ ଉଞ୍ଚା ଖଟ ଉପରେ ଗଦିର ବିଛଣା । ଦୁଇ ତିନୋଟି ତକିଆ ଇତସ୍ତତଃ । ସିମେଣ୍ଟ ଢାଳିର ଆବଦ୍ଧ ବାରଣ୍ଡା ଦୁଇ କୋଠରୀକୁ ଆବୋରି ବସିଛି । ବାରଣ୍ଡାକୁ ଲାଗି ନିକଟରେ ରୋଷେଇ ଘର । ସବୁ ଆଡ଼େ ବିଜୁଳି ଆଲୁଅ, ବିଜୁଳି ପଙ୍ଖା । ଆଲୁଅ ଜଳାଇ ପଙ୍ଖାକୁ ଗ୍ଲଲୁ କରି ଦେଲେ ଭଦ୍ରଲୋକ ।

ଭିତର ସବୁଆଡ଼ ଦୃଷ୍ଟି ଖେଳେଇ ନେଲା ଶ୍ରାବଣୀ । ଘରଟି ଅବହେଳିତ ଭବେ ପଡ଼ି ରହିଛି । ଅନେକ ଦିନ ହେବ ଚଟାଣରେ ଝାଡୁ ବାଜିନି । କାନ୍ଥରେ ବୁଢୀଆଣୀ ଜାଲର ଜଙ୍ଗଲ । ରୋଷେଇଘର ଉପରେ ଦୃଷ୍ଟି ପଡ଼ିଲା ତାର । ସେଥିରେ ପାଣି କଳ, ଗ୍ୟାସ ଚୂଲି ଏବଂ ଅନ୍ୟାନ୍ୟ ରୋଷେଇ ସରଞ୍ଜାମ ଓ ଅନେକ ଗୃହୋପକରଣ ତା ଆଖି ନ ଦେଖିବା ଚିଜଗୁଡ଼ିଏ । ବାସନକୁସନ ଗୁଡ଼ିକ ଆଡ଼େ ସାଡ଼େ ଖେଳେଇ ହୋଇ ପଡ଼ିଛି । ଘରେ ଘରଣୀ ନଥିଲେ ଏସବୁ ଜିନିଷର ଯତ୍ନ ନେବ କିଏ ? ସ୍ତ୍ରୀ ନଥିଲେ ଘର ଏମିତି ଶ୍ରୀହୀନ ଦିଶେ । କୁଣ୍ଠା ନକରି ତଳେ ପଡ଼ିଥିବା ଝାଡୁ ମୁଠାକୁ ହାତରେ ଧରି ଝାଟେଇ ଆଣିଲା । ଗୃହକର୍ତ୍ତା ଜିଭ କାମୁଡ଼ି ଶ୍ରାବଣୀକୁ କାର୍ଯ୍ୟରୁ ନିବୃତ୍ତ କରିବାକୁ ଚେଷ୍ଟା କଲେ । କିନ୍ତୁ ଶ୍ରାବଣୀ କୋଉ ଛାଡ଼ିବା ପିଲା ! ସେମାନଙ୍କ ମଧ୍ୟରେ ଘଇ-ଭଉଣୀର ସମ୍ପର୍କ ଯୋଡ଼ି ଉଠୁଥିଲା ।



Digitized by PPRACHIN, SOA

: ବ୍ୟସ୍ତ ହୁଅନି ଭଉଣୀ, କେହି ନ ଥିବାରୁ ଏ ଘର ଏମିତି ଅସନା, ଅପରିଷ୍କାର ହୋଇ ପଡ଼ିଛି । ସବୁ ଠିକ୍ ହୋଇଯିବ । ତମେ ହାଲିଆ ହୋଇପଡ଼ିଛ, ବିଶ୍ରାମ ନିଅ । ମୁଁ ଖିଆପିଆର ବନ୍ଦୋବସ୍ତ କରୁଛି ...

: ଝିଅପିଲା ଥାଉଁ ଥାଉଁ ପୁରୁଷ ପୁଅ ରନ୍ଧଣା କାମ କରିବ ? ଏକି ଅଲକ୍ଷଣା କଥା ? ଚୁପ୍‌ଚାପ୍ କହିଥିଲା ଶ୍ରାବଣୀ । ତା ବଚନରେ ଥିଲା ଅଭିମାନର ସ୍ୱର ।

ଭଦ୍ରଲୋକ ଲେଖକୋଶ୍ର ହୋଇ ପଡ଼ିଥିବା ବ୍ୟାଗଟିକୁ ଧରି ତତ୍ପରତା ସହିତ ନିକଟସ୍ଥ ବଜାରକୁ ଧାଇଁଲେ । ସବୁ ସଙ୍କୋଚକୁ ଦୂରକରି ଶ୍ରାବଣୀ କିଛିକ୍ଷଣ ଜିନିଷ ସଜଡ଼ା ସଜଡ଼ିରେ ମନ ଦେଇଥିଲା । ଗେଷେଇ ଶାଳ । ଆଧୁନିକ ରୋଷେଇର ସରଞ୍ଜାମଗୁଡ଼ିକୁ ଦେଖୁଥିଲା ଶ୍ରାବଣୀ । ସେ ଗୁଡ଼ିକ ବିଷୟରେ ସମ୍ୟକ୍ ଧାରଣା ଦେଉଥିଲେ ଭାଇ ବୋଲାଉ ଥିବା ଭଦ୍ରଲୋକ । ହାତଗୋଡ଼ ଲଗିବ ନାହିଁ, ନିଆଁ ଧୂଆଁ ନାହିଁ, କଞ୍ଚା କୋଇଲା, ଚୁଲି ଫୁଙ୍କାର ପ୍ରଶ୍ନ ଉଠୁନାହିଁ । ଗ୍ୟାସ ଚୁଲା ସାଙ୍ଗକୁ ପ୍ରେସର କୁକର । ରନ୍ଧଣା କାମରେ ମଧ୍ୟ ଯନ୍ତ୍ର ଯୁଗର କୁହୁକ କାରସାଦି । ଶ୍ରାବଣୀ ବିସ୍ଫାରିତ ନେତ୍ରରେ ସେ ଗୁଡ଼ିକୁ ପରଖି କରି ନେଇଥିଲା । ପରମ ଆଗ୍ରହରେ ଦୁହେଁ ଲାଗି ପଡ଼ିଲେ ରୋଷେଇ ଧନ୍ଦାରେ । ଭାତ ଫୁଟିଲା । ତରକାରୀର ସେଁ ସେଁ ଶବ୍ଦରେ ଗୁହର ଦୀର୍ଘ ଛନ୍ଦତା ଦୂରେଇଲା । ଶ୍ରାବଣୀ ନିଜକୁ ଭୁଲି ଯାଇଥିଲା କିଛି ସମୟ । ରୋଷେଇ ଘର ପ୍ରତି ମମତା ମନକୁ ବାନ୍ଧି ରଖୁଥିଲା କେଇ ମୁହୂର୍ତ୍ତ । ହାଣ୍ଡିଶାଳ ତାକୁ ତୃପ୍ତି ଦେଉଥିଲା, ଦୁଃଖଗ୍ରସ୍ତ ମନକୁ ଭୁଲାଇ ରଖୁଥିଲା ।

ସ୍ତ୍ରୀ ଲୋକର ହାତରନ୍ଧା ଖାଦ୍ୟ ଅନେକ ଦିନ ହେଲା ଭଦ୍ରଲୋକଙ୍କ ପାଟି ସ୍ପର୍ଶ କରି ନଥିଲା । ଏଇ ସହରୀ ଜୀବନରେ ସର୍ବସାଧାରଣ ହୋଟେଲ ତାଙ୍କ ପାଟି ଏବଂ ପେଟର ଯତ୍ନ ନେଇଥିଲା । ସେ ଦିନ ଶ୍ରାବଣୀର ହାତରନ୍ଧା ଭାତ, ତିଅଣ, ଗରମା ଗରମ ଭଜା ଖାଇ ଭଦ୍ରଲୋକ



Digitized by PPRACHIN, SOA

ସ୍ତାବକ ଭଳି ପ୍ରଶଂସା କରିଥିଲେ–ସତରେ ଭଉଣୀ ତୁମେ ଦ୍ରୌପଦୀ, ଏମିତି ସୁଆଦିଆ ରନ୍ଧା ମୁଁ କେବେ ଖାଇ ନଥିଲି ।

ଘଡି ବଢୁଛି । ବର୍ତ୍ତମାନ ଶୋଇବା ସମସ୍ୟା । ଶ୍ରାବଣୀ ଶୋଇବ କେଉଁଠି ? ଗୋଟିଏ କୋଠରୀରେ ? ଅସୁନ୍ଦର କଥା । ସମ୍ଭବ ନୁହେଁ ମଧ୍ୟ । ଟିକିଏ ଚିନ୍ତାକରି ମୁହଁରେ ଛୋଟ ହସଟିଏ ଧରି କହିଲେ ଭଦ୍ରଲୋକ–ତମେ ଥକି ପଡ଼ିଛ ଭଉଣୀ, ବିଛଣା ପାରି ଦେଇଛି, ଖଟ ଉପରେ ଶୁଅ । ମୁଁ ଡ୍ରଇଁଙ୍ଗ୍ ରୁମ୍‌ରେ ଶୋଉଛି ।

: ନାଃ, ମୁଁ ଶୋଇ ପଡୁଛି ସେ ବୈଠକ ଘରେ । ତମେ ତମ ବିଛଣା ଧର ।

: ମୁଁ ବଡ଼, ବଡ଼ଭାଇ କଥା ସାନମାନେ ମାନିବାକୁ ବାଧ୍ୟ ।

ସୁବୋଧ ଶିଶୁଟିଏ ଭଳି ଶ୍ରାବଣୀ ଶୋଇବା ଘରର ଭିତର ଶିକୁଳି ଦେଲା । ବିଜୁଳି ଆଲୁଅ ଜଳୁଛି, ପଙ୍ଖା ଘୁରୁଛି । ଶ୍ରାବଣୀ ନିଜକୁ ବିଛଣାରେ ଲେଟାଇ ଦେଲା । ଆଖିକୁ ନିଦ ଆସୁନାହିଁ । ସ୍ୱାମୀ ଚିନ୍ତା ମନକୁ ଗ୍ରାସକଲା କଚାସୁର ଭଳି । ଭଦ୍ରଲୋକଙ୍କ ଆତିଥ୍ୟ ସତ୍ତ୍ୱେ ନିଜକୁ ଅସହାୟ ବୋଧ କରୁଥିଲା ଶ୍ରାବଣୀ ।

ଭୋର ବେଳରୁ ଉଠି ଆଶ୍ରୟ ଦାତା ତତ୍ପରତା ସହିତ ସକାଳ ଚା' ପ୍ରସ୍ତୁତ କରି ସାରିଥିଲେ । ଶ୍ରାବଣୀ କହିଲା–ମୁଁ ଚା' ପିଏନି ।

ପରମାଶ୍ଚର୍ଯ୍ୟ ଆଖିରେ ଚାହିଁଲେ ଯୁବ ଭଦ୍ରଲୋକ । ଏ ଯୁଗର ପୁଣି ଚା' ନ ପିଇବା ଲୋକ ଅଛନ୍ତି ! ଶଯ୍ୟାତ୍ୟାଗ ବେଳେ ଆଳସ୍ୟ ଦୂର କରିବା ପାଇଁ ସକାଳ ଚା'ର ହିଁ ଆବଶ୍ୟକତା । ସକାଳୁ ମିଜାଜ ଠିକ୍ ରହିଲେ ଦିନଟି ଭଲରେ କଟିଯାଏ, ନୁହେଁ ? ସରଳ ସ୍ମାଇଲ ଭଙ୍ଗୀରେ କହିଲେ ଭଦ୍ରଲୋକ ।



Digitized by PPRACHIN, SOA

ଫେଁ କରି ହସି ଉଠୁଥିଲା ଶ୍ରାବଣୀ । ଭଦ୍ରାମି ଦୃଷ୍ଟିରୁ ହସକୁ ଲୁଚାଇ ରଖି କହିଲା—ଆମ ମଫସଲରେ ଗୁ' ଫା ଚଳେନି । ଏହା ଏକ ବଦଭ୍ୟାସ, ନିଶା ।

ସ୍ତ୍ରୀ ଲୋକଟିର ସେଇ ଆଦିମ ସରଳତା ଭଦ୍ରଲୋକଙ୍କ ମନରେ ଦୃଢ ରେଖାପାତ କରୁଥିଲା ।

ଅଫିସ ସମୟ ପାଖେଇ ଆସୁଥିଲା । ତରବର ହୋଇ ଭଦ୍ରଲୋକ ବାହାରି ପଡ଼ିଲେ ଏବଂ କହିଗଲେ—ଦେଖ ଭଉଣୀ, ମୁଁ ଆଜି ଆସି ପାରିବି ନାହିଁ । ଡ୍ୟୁଟିରେ ଯାଉଛି ଦୂରବାଟ । ଫେରିବି କାଲି ଗତିକି । ଘରେ ସବୁ ଜିନିଷ ଅଛି । ବାହାର କବାଟ ସବୁବେଳେ ବନ୍ଦ କରିଥିବ । କେବେ ଖୋଲିବ ନାହିଁ । କଲିକତା ସାଙ୍ଘାତିକ ଜାଗା । ଟିକିଏ ଅସାବଧାନ ହେଲେ ବିପଦ ବାଘ ଭଳି ମାଡ଼ି ପଡ଼ିବ । ତଥାପି କିଛି ଭୟ ନାହିଁ, ମୁଁ ଆସିଲେ ପୁଣ କଥାବାର୍ତ୍ତା ... ଶ୍ରାବଣୀ କିଛି କହିବାକୁ ଚେଷ୍ଟା କରୁଥିଲା, କିନ୍ତୁ କହି ପାରିଲା ନାହିଁ । ତା' କରୁଣ ମୁହଁ ମନର ବାଣୀ ପ୍ରକାଶ କରୁଥିଲା ମାତ୍ର । କୌଣସି ପୁରୁଷ ସଙ୍ଗେ ମନଖୋଲା କଥାବାର୍ତ୍ତା କରିବା ତା'ର ଅଭ୍ୟାସ ନ ଥିଲା । ଏଠି କେବଳ ଅସୁବିଧାରେ ପଡ଼ି ଯଥା ସମ୍ଭବ କମ୍ କଥା କହୁଥିଲା ।

ଭଦ୍ରଲୋକ ଡ୍ୟୁଟିରେ ବାହାରି ଗଲା ପରେ ସେ କବାଟ ବନ୍ଦକରି ଖଡ଼ିକି ଦେଲା ।

ବର୍ତ୍ତମାନ ସେ ଏକା, ନିଃସଙ୍ଗ । ଆବଦ୍ଧ ଘରଟି ଖାଁ ଖାଁ ଡାକୁଛି । ସ୍ୱାମୀଙ୍କ ମୁହଁ, ହସ, ଦେହର ସବୁ ଅଂଶ ଜଳ ଜଳ ହୋଇ ଦିଶିଯାଉଛି । କୋଉଠୁ ଆସି କେଉଁଠି ହେଲାଣି ସେ । ଭଗ୍ୟ ସିନା ଏମିତି ମଣିଷକୁ ଖେଳାଏ ! ମୁଣ୍ଡ ଭିତରେ ଅଛିଣ୍ଡା ଚିନ୍ତା, ଗଣ୍ଡମଣ୍ଡଳରେ ବୁନ୍ଦ ବୁନ୍ଦ ଲୁହ ଜମି ରହିଥିଲା ।



Digitized by PPRACHIN, SOA

୯ରେ ଶ୍ରାବଣ

କେଇଦିନ ହେଲା ଶ୍ରାବଣୀ ଗାଧୋଇ ନାହିଁ । ଯାହା ସ୍ନାନ କରିଥିଲା ସେ ଦିନ ପାହାନ୍ତାରେ ଗାଁ ପୋଖରୀ ତୁଠରେ । ଅନ୍ଧାରୁ ଅନ୍ଧାରୁ ଗାଁ ଛାଡ଼ି ବାହାରି ଆସିଥିଲେ ସ୍ୱାମୀ ସ୍ତ୍ରୀ ଦୁହେଁ । ସେ ଦିନଠୁଁ ଦେହରେ ଆଉ ପାଣି ବାଜିନି ।

ବାବୁଙ୍କ ଶୋଇବା ଘର କାନ୍ଥରେ ଶିବ, ପାର୍ବତୀଙ୍କ ବନ୍ଧେଇ ଫଟ, ଟା ପାଖକୁ ରାଧାକୃଷ୍ଣ କ୍ୟାଲେଣ୍ଡର କଣ୍ଟାରେ ଝୁଲୁଛି । ଆଉ ତା ପାଖକୁ ମଧ୍ୟ ଅର୍ଦ୍ଧ ଉଲଗ୍ନ ଖିଆଲୀ ନର୍ତ୍ତକୀର ଛବି, ତା ହାତରେ ସୁରା ପାତ୍ରଟିଏ । ଭଦ୍ରଲୋକଟିର ବୁଦ୍ଧି ବୃତ୍ତି କିଛି ନାହିଁ ବୋଧେ । ବିବେକଶୂନ୍ୟ ପରି ମନେ ହେଉଛି । ଦେବଦେବୀଙ୍କ ଫଟ ପାଖେ ନୃତ୍ୟରତା ବେଶ୍ୟାର ଚିତ୍ର କ'ଣ ସୁନ୍ଦର ଦିଶୁଛି ? ଛିଃ । ଦୃଶ୍ୟ ଆଖିକୁ ରୁଚିଲା ନାହିଁ । ନିମିଷକ ଭିତରେ କ୍ୟାଲେଣ୍ଡରଟିକୁ କାନ୍ଥ କଣ୍ଟାରୁ ଓଟାରି ଆଣି ଭିତର ବାରଣ୍ଡାର ଅନ୍ୟ ଏକ ସ୍ଥାନରେ ଝୁଲାଇ ଦେଇ ଛବିଟିକୁ କାନ୍ଥପଟକୁ ମୁହାଇଁ ଦେଲା । ଦିଶିଲା ପରିଷ୍କାର । ଘର ଭିତରକୁ ଯାଇ ପୁଣି ଭକ୍ତି ଭରରେ ଲକ୍ଷ୍ୟ କଲା ଦେବଦେବୀଙ୍କ ଫଟ ଆଡ଼କୁ । ଯୁଗଳ ମୂର୍ତ୍ତି-ହର-ପାର୍ବତୀ, ରାଧାକୃଷ୍ଣ । କେଡ଼େ ସୁନ୍ଦର ଯୋଡ଼ି ସବୁ ! କୁଆଡ଼େ ଗଲେ ତା'ର ଜୀବନର ଯୋଡ଼ି, ତାର ପ୍ରିୟତମ ସ୍ୱାମୀ ବର ! ଲୋତକପୂର୍ଣ୍ଣ ଚକ୍ଷୁରେ ଠାକୁରଙ୍କ ଫଟ ଆଡ଼କୁ ଚାହିଁ ମିନତି ଜଣାଇଲା ଶ୍ରାବଣୀ ।

ସୁଗନ୍ଧି ଧୂପକାଠି ବିଡ଼ାଟିଏ ଏବଂ ଦିଆସିଲି କାନ୍ଥ ଥାକରେ ସୁରକ୍ଷିତ ଥିଲା । ଅଣିରା ଚଣ୍ଡିରା ଲୋକ । ଘରଣୀଟିଏ ଥିଲେ ସିନା ଘର ସଜାଡ଼ନ୍ତା ; ସବୁର ଯତ୍ନ ନିଅନ୍ତା । ଘର ସୁନ୍ଦର ଦିଶନ୍ତା ।

ଧୂପବତୀ ଦେଖି ଠାକୁରଙ୍କୁ ମନଭରି ପୂଜା କରିବାକୁ ଶ୍ରାବଣୀ ଇଛା କଲା । ସ୍ନାନ କରିବା ନିହାତି ଆବଶ୍ୟକ । ଦେହ ଶଉଚ କରିବ, ମନ ଶୁଚି କରିବ ।



Digitized by PPRACHIN, SOA

ପାଖକୁ ଛୋଟ ଗାଧୁଆ ଘରଟିଏ । କଳରେ ଗଦ୍ ଗଦ୍ ପାଣି ଆସୁଛି । ଗାଧୋଇବ କିପରି ? ଏକ ବସ୍ତ୍ର ହୋଇ ଘୂରୁଛି କିଛିଦିନ ହେଲ । ପାଲଟିବା ପାଇଁ ଲୁଗା ନାହିଁ । ଯାହା ଆଣିଥିଲ ସ୍ୱାମୀଙ୍କ ପାଖେ ରହି ଯାଇଛି, ସେଇ ଛୋଟ ସୁଟ୍‌କେଶ୍‌ଟିରେ । ଏବେ ଦେହରେ ବାସୀ ଶାଢୀ, ଶାୟା, ବ୍ଲାଉଜ ଏବଂ ବ୍ରା । ସେଗୁଡ଼ିକ ମଇଳା, ପାରିସ୍ରୁଆ, ଅଧୁଆ, ଝାଳୁଆ ଗନ୍ଧେଇଲଣି ; ସେଗୁଡ଼ିକ ପିନ୍ଧି ଠାକୁର ପୂଜା କରିବା ଅଶୁଦ୍ଧ ଏବଂ ଅରୁଚିକର, ନିହାତି ଧୋଇବା ଦରକାର । କିନ୍ତୁ ତା ବଦଳରେ ପିନ୍ଧିବ କ'ଣ ? ଯଦି ନ ଧୁଏ ଗାଧୋଇବ କିପରି ? ଲଙ୍ଗଳା ହୋଇ ? ଠାକୁରଙ୍କୁ ପୂଜା କରିବ ଲଙ୍ଗଳା ବେଶରେ ? ଛିଃ ଅସନା କଥା, ଅସଭ୍ୟ କାରବାର । ଏତିକି ବେଳକୁ କିଏ ଯଦି ଆସେ ? କି ଲଜ୍ଜାକର ପରିସ୍ଥିତି ହେବ ?

ଶ୍ରାବଣୀ ଚିନ୍ତାକଲ ଅନେକ । ତା' ପରେ ଗଲ ଛୋଟ ଗାଧୁଆ ଘରକୁ । କବାଟ କିଳିଲ ଭିତର ପଟୁ । କିଛି ଫାଙ୍କ ନାହିତ କେଉଁଠି ? ଉପର ସ୍କାଇଲାଇଟରୁ ଆଲୁଅର କ୍ଷୀଣ ଧାରଟିଏ ପ୍ରବେଶ କରୁଛି ଗାଧୁଆ ଘର ଭିତରକୁ । ଫାଙ୍କ ବାଟେ ଯଦି କିଏ ଦେଖୁଥାଏ ? ସନ୍ତର୍ପଣରେ ଲକ୍ଷ୍ୟ କଲ, ମୃଗୁଣୀଟିଏ ଚରିବା ପୂର୍ବରୁ ଏଣେ ତେଣେ ଲକ୍ଷ୍ୟ କଲ ଭଳି । ହୃଦ୍‌ବୋଧ ହେଲ, ଫାଙ୍କ ବାଟେ କିଛି ଦିଶିବ ନାହିଁ । ତାହା ବହୁ ଉଚ୍ଚରେ । ତା ଅଙ୍ଗକୁ କେହି ଦୃଷ୍ଟି ଦେବେ ନାହିଁ, ନିର୍ବିଘ୍ନରେ ଗାଧୁଆ କାମ ଶେଷ କରିବା ଉଚିତ୍ ।

ସ୍ନାନର ପୂର୍ବପର୍ବ ଆରମ୍ଭ ହେଲ । ସାବଧାନରେ ଦେହରୁ ବସ୍ତ୍ର ଦୂରକଲ । ଇସ୍, ଦେହ ଭଲସି ଉଠୁଛି । ସମ୍ପୂର୍ଣ୍ଣ ଉଲଗ୍ନ ଶରୀର । ଅଭିନବ ଅନୁଭୂତି ତାର । ଗାଧୁଆ କାନ୍ଥର ଲମ୍ବା ଦର୍ପଣରେ ତାର ପ୍ରତିଛବି । ଦେହ ଶୀତେଇ ଉଠିଲ । ଏମିତି ଥରେ ମିଞ୍ଜି ମିଞ୍ଜି ଆଲୁଅରେ ସ୍ୱାମୀ ତା ଦେହରୁ ଗୋଟିଏ ପରେ ଗୋଟିଏ ପରିଚ୍ଛଦ ଉତାରି ଥିଲେ । ସେ ଲାଜେଇ ଯାଇ ଖାପଛଡ଼ା ଦେଉଥିଲ । ମୁହଁ ଅନ୍ୟ



Digitized by PPRACHIN, SOA

ଆଡ଼କୁ ବୁଲେଇ ଦେଇଥିଲ । ସେ କହୁଥିଲେ, ସ୍ୱାମୀ ସମ୍ମୁଖରେ ସ୍ତ୍ରୀର ଲଜ କ'ଣ ? ତାକୁ ଅଡୁଆ ଲଗୁଥିଲ । ସ୍ୱାମୀ କସରତ କରିବାରେ ଲଗି ପଡ଼ିଥିଲେ । କିନ୍ତୁ ଆଜି ? ଗାଧୁଆ ଗୃହ ମଧ୍ୟରେ ଉଲଙ୍ଗ ଶରୀରଟା ତାକୁ ବ୍ୟତିବ୍ୟସ୍ତ କରୁଥିଲା । ଆଃ, କି ଦୁର୍ଭାଗ୍ୟ ତାର ଆଜି ! ପତି ପାଖରେ ନ ଥିଲେ ପତ୍ନୀ ସିନା ଏମିତି ହନ୍ତସନ୍ତ ହୁଏ ! ନାରୀ ସିନା ସ୍ୱାମୀଙ୍କୁ ନେଇ ଜୀବନ ଉପଭୋଗ କରେ । ସେଥିପାଇଁ ତ କଥିତ ଅଛି—ନାରୀଣାଂ ଭୂଷଣଂ ପତି ... ପତିହିଁ ନାରୀର ଅଳଂକାର । ଛୋଟ ଗାଧୁଆ ଘର ଭିତରେ ସ୍ୱାମୀ ସୁହାଗିନୀ ନାରୀର ଆର୍ତ୍ତ ବିଳାପ ଧ୍ୱନି ଗୁଂଜରିତ ହୋଇ ଉଠୁଥିଲ ।

ବାହାରେ କ'ଣ ଗୋଟେ ଢଙ୍ଗ୍‌କିନି ଶବ୍ଦ ହେଲ । ନେଣ୍ଡାଏ ଛେପ ପୁଙ୍ଗୁଳା ଛାତି ଉପରେ ପକାଇଲ ଶ୍ରାବଣୀ । କିଏ ? ଡାକୁଛି ନା କ'ଣ ? ତଳେ ଥୋଇଥିବା ଛିଟ ଲୁଗାକୁ ପୁଣି ଦେହରେ ଗୁଡ଼େଇ ଆସ୍ତେ ଗାଧୁଆ ଘର କବାଟ ଖୋଲିଲ । କେବଳ ମୁଣ୍ଡଟି କାଢି ବାହାରକୁ ଚାହିଁଲ । କାହିଁ, କେହି ନାହାନ୍ତିତ ଏ ଘରେ । ଶବ୍ଦ ତେବେ କୁଆଡୁ ଆସିଲ ? ନିଃଶବ୍ଦରେ ଗୋଡ଼ ଚିପି ଚିପି ବାରଣ୍ଡାକୁ ଆସିଲ । ଲକ୍ଷ୍ୟ କଲ ଚତୁର୍ଦ୍ଦିଗକୁ । ଦାଣ୍ଡ କବାଟ ପାଖକୁ ଆସି କାନ ପାରିଲ । କିଛି ଶବ୍ଦ ଶୁଭୁ ନାହିଁ, କେହି ଡ଼ାକୁ ନାହାନ୍ତି । ରୋଷେଇ ଘରୁ କଳା ଅଣ୍ଡିରା ବିରଡ଼ିଟିଏ ଡ଼ୁପ୍‌କରି ବାହାରି ଆସି ଝାପ୍ଫି ଝାଳି ଦେଇ ବାହାରକୁ ପଳାଇ ଗଲ । ତେବେ ଏଇ ଭୁଆ ବିରଡ଼ିର କାରବାର । ତାକୁ ଗାଳି ଦେଇ କହିଲ—ଡାଆଣୀ, ମରଣ ହେଉନି ଏଟାକୁ ! ବର୍ତ୍ତମାନ ସେ ଭୟମୁକ୍ତ । ନିଃସଙ୍କୋଚରେ ନିର୍ଭୟରେ ପୁଣି ପ୍ରବେଶ କଲ ଗାଧୁଆ ପ୍ରକୋଷ୍ଠ ଭିତରକୁ ସ୍ନାନପର୍ବ ଶେଷ କରିବା ପାଇଁ । ତରବରରେ ବାଲଟିଏ ପାଣି ଦେହରେ ଢାଳି ପକାଇଲା । ଦେହ ଏଥର ଶୁଦ୍ଧ । ଲୁଗାପଟା ସବୁ ଧୋଇ ପକାଇଲା । ସେଇ ଓଦା ଲୁଗାଟିକୁ ପାଲଟି ପିନ୍ଧିଲା । ପାଣି ସରସର ଦେହରେ ଠାକୁରଙ୍କ ଫଟ ପାଖକୁ ଆସି ଧୂପ ଜାଳିଲ, ସ୍ୱାମୀଙ୍କ ପାଇଁ କୋଟି ପ୍ରଣାମ କଲ । ତଳେ ବସି, ଦୁଇ ହାତ ଯୋଡ଼ି, ଆଖି ବନ୍ଦକରି ଧ୍ୟାନ କଲ । ଦୁର୍ଗାସ୍ତୁତି ଜପ କଲ । ମା ଦୁର୍ଗା, ତୁ ଦୁଃଖନାଶିନୀ,



Digitized by PPRACHIN, SOA

ଦୁର୍ଗତିନାଶିନୀ, ଅଭୟ ପ୍ରଦାୟିନୀ, ତୁ ଦୁଃଖ ମୋଚନ କର ; ଦୁର୍ଗତକୁ ରକ୍ଷା କର । ତୋ ଛଡ଼ା କିଏ ଆଉ ରକ୍ଷା କରିବ ? ଶ୍ରାବଣୀର ସ୍ୱରରେ ଆର୍ତ୍ତ, ମୁହଁରେ ଲୋତକର ବନ୍ୟା ଛୁଟିଲା । ବଡ଼ ନିଃସହାୟ ଅନୁଭବ କରୁଥିଲା ସେ । ବିଚ୍ଛେଦ ଯନ୍ତ୍ରଣା କଷ୍ଟ ଦେଉଥିଲା ପ୍ରାଣକୁ । ସମ୍ଭାଳି ପାରିଲାନି । କଇଁ କଇଁ ହୋଇ କାନ୍ଦିଲା । ଫୁଲିଲା ଆଖି ନାଲି ଦିଶିଲା । ଦେହର ଓଦା ଲୁଗା ଅଧା ଶୁଖିଲା । ଢାଳିଆ ଲାଗିଲା । ବିଛଣା ଉପରେ ହାମୁଡ଼େଇ ପଡ଼ି ରହିଲା । ନିଦ୍ରାସୁର ମାଡ଼ି ବସିଲା । ଚିନ୍ତା ଘାରିଲେ ମଣିଷକୁ ଏମିତି ନିଦ ମାଡ଼ି ବସେ ସିନା !

•

ଗୋଟାଏ ଦୁଃସ୍ୱପ୍ନରେ ନିଦ ଘୁଞ୍ଚି କିନା ଭାଙ୍ଗିଗଲା । ଦିନବେଳଟାରେ କାହିଁକି ସେ ଏମିତି ଅଶୁଭ ସ୍ୱପ୍ନ ଦେଖିଲା ? ରାମ, ରାମ ଉଚ୍ଚାରଣ କରି ଦେହରେ ଶକ୍ତି ସଞ୍ଚାରଣ କଲା । ସ୍ୱପ୍ନ ସତ୍ୟ ନୁହେଁ, ସ୍ୱାମୀଙ୍କୁ କୌଣସି ବିଘ୍ନ ଘଟି ନାହିଁ, ମନକୁ ବୁଝାଇଲା ।

ଦେହ ଅବଶ ଲାଗୁଛି । ବିଛଣାରୁ ଉଠିବାକୁ ଇଚ୍ଛା ହେଉନି । କ୍ଷୁଧା ନାହିଁ । ଭୋକ ପେଟ ଭିତରୁ ଉଭେଇ ଯାଇ ମନ ଭିତରେ ମରି ଯାଇଛି । ମନର ମଣିଷଟି ହୃଦୟ-ଦର୍ପଣ ଭିତରେ ଚକ୍ ଚକ୍ ଦିଶିଯାଉଛି । ନିଜ ପାଇଁ ରୋଷେଇ କରିବାକୁ ଉଦ୍ରେକ କାନେ କାନେ କହି ଯାଇଥିଲେ । ଘରେ ସବୁ ରନ୍ଧଣା ଜିନିଷ ରଖି ଯାଇଛନ୍ତି । ଗ୍ୟାସ ଚୁଲାରେ କିପରି ଅଗ୍ନି ସଂଯୋଗ ହେବ ଶିଖେଇ ଦେଇ ଯାଇଛନ୍ତି । ଏତେ ସୁବିଧା ଥାଇ ମଧ୍ୟ ଶ୍ରାବଣୀ ନିଜପାଇଁ ମୁଠାଏ ଫୁଟାଇବାକୁ କଷ୍ଟ ବୋଧ କରୁଥିଲା । କାହାପାଇଁ ଖାଦ୍ୟ ପ୍ରସ୍ତୁତ ଜରିବ ? କିଏ ତା' ହାତ ରନ୍ଧଣାକୁ ପ୍ରଶଂସା କରିବ ? ନାରୀ କ'ଣ ନିଜେ ରାନ୍ଧି ନିଜେ ଖାଇବାରେ ଆନନ୍ଦ ପାଏ ? ତା' ପାଇଁ ସବୁଠୁଁ ବଡ଼ ଆନନ୍ଦ ଖାଇବା ବାଲା ମୁହଁରୁ ପଦେ ପ୍ରଶଂସା । ତା' ହାତରନ୍ଧା ଖାଦ୍ୟକୁ ସମସ୍ତେ ପସନ୍ଦ କରନ୍ତି; କହନ୍ତି, ଲକ୍ଷ୍ମୀଟାଏ ତ, ଡିଅଣରେ ଯେମିତି ଅମୃତ ଭରି ରହିଛି । କାହାପାଇଁ ସେ ଆଜି ରାନ୍ଧିବ ? ନାଃ, ଆଜି ରୋଷେଇର ପ୍ରଶ୍ନ ନାହିଁ । ବାବୁ ଜଣକତ ଆସିବେ ନାହିଁ । କାଲିର ସେଇ ବାସୀ ପଖାଳ ମୁଠାକ



Digitized by PPRACHIN, SOA

ତା' ପାଇଁ ଯଥେଷ୍ଟ । ଦରକାର ହେଲେ ଲୁଣ, ଲଙ୍କା ପିଆଜ ଦେଇ କେଇଗୁଣ୍ଡା ପଖାଳ ତଣ୍ଟି ଭିତରକୁ ଠେଲି ଦେବ । ବେଳ କେତେ ହେବଣି ?

ସନ୍ଧ୍ୟା ଆସିଗଲଣି । ବିଜୁଳି ଆଲୁଅ କେଉଁଠି କେମିତି ଜଳି ଉଠିଲଣି । ଉପର ମହଲରୁ ପିଲମାନଙ୍କ ପାଟି ଶୁଭୁଛି । ବାହାରେ ମଟର ଗାଡ଼ିର ପେଁ ପାଁ ରଡ଼ି କାନରେ ବାଜୁଛି । ଏ ଘରଟି କିନ୍ତୁ ନିଶୂନ । ଏଠି ସମୟ କଟୁନି । ଖାଲି ଅଜସ୍ର ଚିନ୍ତା, ପାହାଡ଼ ପରିମାଣ, ଦୁର୍ଭାବନା । ଭବିଷ୍ୟତର ଗତି କେଉଁ ଆଡ଼େ ? କିଛି ଥଳକୂଳ ଦିଶୁନି । ନଦୀ ଆରପାଖ ଦୃଶ୍ୟକୁ ଆଖି ପାଉନି, କେବଳ ଉତାଳ ଜଳରାଶି ।

ମନ ଉଚ୍ଛନ୍ନ ହେଲଣି–କେତେବେଳେ ସ୍ୱାମୀଙ୍କ ଶ୍ରୀମୁଖ ଦେଖିବ ? ତାଙ୍କ ପରୀକ୍ଷା ଶେଷ ହେବଣି । ତାକୁ ନିଶ୍ଚୟ ଖୋଜୁଥିବେ କେଉଁଠି । ଅନ୍ତନଳୀଟା କୋରି ହୋଇ ଯାଉଛି, ଛାତି ଭିତରୁ ଜୋର କରି ଉଠି ଆସୁଛି କୋହ, ଚେଷ୍ଟା କଲେ ମଧ୍ୟ ତାକୁ ରୋପି ପାରୁନି ଶ୍ରାବଣୀ ।

ରାତି ଅନେକ ହେଲଣି । ସମୟ ପଗ୍ରରି ବୁଝି, ଜାଣିବା ସମ୍ଭବ ନୁହେଁ ତା' ପକ୍ଷେ, କେବଳ ଯାହା ଅନୁମାନ କରିବା କଥା । କାନ୍ଥରେ ବିଜୁଳି ଆଲୁଅ ଜଳୁଛି ନିର୍ବିକାର ଭାବେ । କେଉଁଠୁ ଗୋଟେ ରେଡ଼ିଓରୁ ପୁରୁଣା ଲହରୀ ହିନ୍ଦୀ ସଙ୍ଗୀତ ଲହଡ଼ି ଖାଇ ଭସି ଆସୁଛି ଘର ଭିତରକୁ । ତେରେ ବିନା ସାଜନା ... ...

କିଛି ସମୟ ପରେ ଅଞ୍ଚଳରେ ନୀରବତା ପ୍ରବେଶ କଲା । କେବଳ ମଝିରେ ମଝିରେ ମଟର କାର୍‌ର ଗହିରୀଆ ସ୍ୱର ରାତିର ସ୍ଥିର ବାୟୁମଣ୍ଡଳକୁ ଧମକ ଦେଉଥାଏ । ଶ୍ରାବଣୀ ଚୁପ୍ ହୋଇ ବସି ରହିଥାଏ ଘର ଭିତରଟାରେ । କେତେ ବସିବ ? ବସି ବସି, ଚିଟା ଲାଗିଲଣି । ଭାବି ଭାବି ମୁଣ୍ଡଟା ଓଜନିଆ ହୋଇ ଗଲଣି । ଅଧାରାତି ଏମିତି ଅସହାୟ ଭାବେ କଟିଲଣି । ଅନ୍ୟ ଅଧାକ କିପରି ଉଦ୍‌ଯାପନ କରିବ ଈଶ୍ୱରଙ୍କୁ ହିଁ ଜଣା । ଆଶାକୁ ଭରସା କରି ସମୟ କାଟିବା କଥା । ଅନିଶ୍ଚିତ ତା'ର ହୁହୁଡ଼ି ମଧ୍ୟରେ ନିଃସହାୟ ମଣିଷକୁ କେବଳ ଆଶା ହିଁ ପ୍ରେରଣା ଦିଏ ।



Digitized by PPRACHIN, SOA

ଗୁଣ୍ଡାଏ ପଖାଳ, ତାଟିଏ ତୋରାଣି ପେଟ ଭିତରକୁ ଠେଲିବାକୁ ଚେଷ୍ଟା କରୁଥିଲା ଶ୍ରବଣୀ । ଏତିକିବେଳକୁ ଦାଣ୍ଡ କବାଟ ଧଡ୍‌ଧଡ୍ ଶବ୍ଦ କଲା, କିଏ ଯେପରି ସେଥିରେ ମୁଦ୍‌ଗର ପିଟୁଛି । ବାବୁ ଡ୍ୟୁଟିରୁ ଫେରି ଆସିଲେ ବୋଧେ । କ'ଣ ଖାଇବେ ଏଇନେ ? ବଡ଼ ଅସୁନ୍ଦର କଥା, ଅଡୁଆ ପରିସ୍ଥିତି । ସେ କହିବା ସତ୍ତ୍ୱେ ଶେଷେଇ କଲା ନାହିଁ । କ'ଣ କୈଫିୟତ ଦେବ ? ଖାଇବା ସ୍ଥାନରୁ ଧଡ଼ପଡ଼ ହୋଇ ଉଠି ଆସିଲା ଶ୍ରାବଣୀ । କବାଟର ଶବ୍ଦ ବେଳକୁ ବେଳ ତୀବ୍ର ହୋଇ ଉଠୁଥିଲା । ଦୁଆର ପାଖକୁ ଯାଇ ମୁଣ୍ଡରେ ଓଢଣା ଟାଣିଲା, କାନ ପାତି ଶୁଣିଲା ।

କିଏ ଏତେ ରାତିରେ ଡାକୁଛି ? ବାବୁଙ୍କ ସ୍ୱର ପରି ତ ଜଣା ପଡୁ ନାହିଁ ।

: କିରେ ଅମିତାଭ, କ'ଣ ଶୋଇ ପଡ଼ିଲୁଣି ? ଏତେ ଡାକୁଛି, ତୋର ନିଦ ଭାଙ୍ଗୁନି ? ମୁଁ ପ୍ରଣବ କହୁଛି, ଶୀଘ୍ର କବାଟ ଖୋଲ ।

ଆଗନ୍ତୁକ ମୁହଁରେ ଖଣ୍ଡିତ ଭଷା ।

ପ୍ରଣବ ପୁଣି କିଏ ? ଅମିତାଭ ବାବୁଙ୍କ ବନ୍ଧୁ ବୋଧହୁଏ । ତେବେ ବାବୁ ସତର୍କ କରି ଦେଇ ଯାଇଛନ୍ତି । ତାଙ୍କ ଅନୁପସ୍ଥିତିରେ କାହାକୁ ଏ ଘରେ ପ୍ରବେଶ କରିବାକୁ ଅନୁମତି ଦେବନି ।

ପୁନର୍ବାର କବାଟ ଉପରେ କରାଘାତ । କ୍ରମଶଃ ତାହା ପ୍ରଖର ହେଲା, ଯେମିତି ଆଉ ଖୁବ୍ ଅଳ୍ପକେ ଆପେ ଆପେ କବାଟ ଧଡ୍ ଧାଡ୍ ଖୋଲିଯିବ ।

: ଖୋଲୁନୁ କାହିଁକିରେ ଅମିତାଭ ? ମୁଁ ପରା ପ୍ରଣବ କହୁଛି । କବାଟ ଭାଙ୍ଗିଗଲେ ମୋତେ ଦୋଷ ଦେବୁନି ।



Digitized by PPRACHIN, SOA

ପୁଣି ଅଧିକ ମାତ୍ରାରେ କବାଟ ଉପରେ ଚଢ଼ାଉ ।

ଶ୍ରାବଣୀ ପାଇଁ ବଡ଼ ଅସୁବିଧା ପରିସ୍ଥିତି । ଅଜଣା ଲୋକଙ୍କୁ କବାଟ ଖୋଲିବ କିପରି ? କ'ଣ ପରିଚୟ ପତ୍ର ତା'ର ? ବହୁ ଭାବିଚିନ୍ତି ଶ୍ରାବଣୀ ଘର ଭିତରୁ କହିଲା—ବାବୁ ଘରେ ନାହାନ୍ତି ।

ଆଶ୍ଚର୍ଯ୍ୟ ! ଘର ଭିତରୁ ନାରୀ କଣ୍ଠର ସ୍ୱର ! ଆଗନ୍ତୁକର ମୁହଁରେ ଦୀର୍ଘ ହସର ଲହରୀ ଖେଳିଲା । ଏତ ମହା ଆଶ୍ଚର୍ଯ୍ୟର କଥା । ଅମିତାଭ ଘରେ ପୁଣି ଜଣେ ଗୃହିଣୀର ସ୍ୱର ! ଗୃହିଣୀ ନା ହରିଣୀ ! ତେବେ ଖୁବ୍ ଭଲକଥା ହୋଇଛି । ଆଜି ରତିଟି ଏଠି ଆନନ୍ଦରେ କଟିବ । ନର ସହିତ ନାରୀ ଏବଂ ନାଗର ସଂଯୋଗ ନ ହେଲେ କ'ଣ ଉପଭୋଗ ଜମି ପାରେ ? ବିଳମ୍ବରେ ହେଲେ ମଧ୍ୟ ଅମିତାଭ ଆଜି ବାଟକୁ ଆସିଛି । ଶୁଣ, ମୁଁ ଏକା ଆସିନାହିଁ । ମୋ ସହିତ ଆସିଛନ୍ତି ମିସ୍ 'ଟିନା' । କ'ଣ ମିସ୍ ଟିନା, କିଛି କହୁନ ଯେ !

ମିସ୍ ଟିନା ଏଥର ପାଟି ଖୋଲି କହିଲେ—ଏଥର କବାଟ ଖୋଲନ୍ତୁ । ମୁଁ ମିସ୍ ଟିନା । ଭୟର କାରଣ ନାହିଁ । ଅମିତାଭ ବାବୁ କୁଆଡ଼େ ଗଲେ ?

ପୁରୁଷ ସହିତ କିଏ ଜଣେ 'ମିସ୍ ଟିନା' ? ସମ୍ଭବତଃ ତାଙ୍କ ସହଧର୍ମିଣୀ । ସ୍ତ୍ରୀ ଲୋକର ତୁଣ୍ଡ ଶୁଣି ଶ୍ରାବଣୀ ଏଥର ଆଶ୍ୱସ୍ତ ହେଲା । କିନ୍ତୁ ନିଜର ପରିଚୟ କ'ଣ ଦେବ ? ତଥାପି ସେମାନେ ମଣିଷତ, ସତକଥା କହିବାକୁ ଡ଼ରିବ କାହିଁକି ? ଏମିତି କ'ଣ ଅସୁବିଧାରେ ପଡ଼ି ଲୋକେ ପରଶ୍ରୟୀ ହୁଅନ୍ତି ନାହିଁ ?

ତଥାପି ଭୟ ସଙ୍କୁଳ ମନରେ ଶ୍ରାବଣୀ କବାଟ ଖୋଲିଲା । ଯୋଗକୁ ସେ ଅଳ୍ପ ସମୟ ପୂର୍ବରୁ ଶାଢ଼ୀକୁ କୁଞ୍ଚକରି ପିନ୍ଧି ପାରିଥିଲା । ସାୟା, ବ୍ଲାଉଜ, ବ୍ରା ଶୁଖି ଯାଇଥିବାରୁ ସେଗୁଡ଼ିକୁ ଦେହରେ ଲଗାଇ ପାରିଥିଲା । ନହିଲେ କେଡ଼େ ଅପଦସ୍ତ ହୋଇଥାନ୍ତା ଏଇନେ ! ଫୁଙ୍ଗୁଳା ଦେହରେ ସାଧା ପିନ୍ଧା ପତଳା ଲୁଗାଟା କେବଳ ଯେ ଗୋଟିଏ ନିପଟ



Digitized by PPRACHIN, SOA

ମଫସଲୀ ଝିଅର ପରିଚୟ ଦେଇଥାନ୍ତା, ତା'ର ଉଲଙ୍ଗ ଯୌବନ ଏଇ ବନ୍ଧୁ ବୋଲାଉ ଥିବା ଭଦ୍ରଲୋକ, ଭଦ୍ରମହିଳାଙ୍କ ସମ୍ମୁଖରେ ଏକାବେଳେ ପଦାରେ ପଡ଼ି ଯାଇଥାନ୍ତା !

କିନ୍ତୁ ଦୁଆର ଖୋଲିବା ମାତ୍ରେ ଯେଉଁ ପ୍ରଥମ ଦୃଶ୍ୟଟି ଦେଖିଲା, ସେ ସ୍ତମ୍ଭୀଭୂତ ହୋଇ ପଡ଼ିଲା । ତା' ଗୋଡ଼ ହାତ ଆଉ ଚଳିଲା ନାହିଁ । ଦୁଆର ସାମ୍ନାରେ ଛିଡ଼ା ହୋଇଛି ବବ ମାତାଲଟିଏ । ଅର୍ଦ୍ଧ ମୁଦ୍ରିତ ଆଖି, ଟଳ ଟଳ ମୁଣ୍ଡ, ସୁବେଶିନୀ ମହିଳା ଉପରେ ଢଳି ପଡ଼ିଛି ସମ୍ପୂର୍ଣ୍ଣ ଭାବେ । ହାତରେ ହୁଇସ୍କିର ବୋତଲଟିଏ । ମୁହଁରୁ ଦୁର୍ଗନ୍ଧ ବାହାରୁଛି । ମହିଳାଙ୍କ ବେଶଭୂଷାରୁ ପତ୍ନୀତ୍ୱର କୌଣସି ପ୍ରମାଣ ମିଳୁ ନ ଥିଲା । ନଥିଲା ତାଙ୍କ ମସ୍ତକରେ ସୀମନ୍ତରେଖା ଅଥବା ସର୍ବ ସନ୍ଦେହ ଦୂରକାରୀ ସିନ୍ଦୂର ଟୋପା । ଦେହରେ କେବଳ ଯୌନୋଦ୍ଦୀପକ ପରିଛଦ, ଛାତିଠୁଁ ଆଣ୍ଠୁ ପର୍ଯ୍ୟନ୍ତ ପ୍ରଲମ୍ବିତ ଏକ ଗାଉନ୍ । ଛାତି ଏବଂ ଗୋପନାଙ୍ଗକୁ ଆଭରଣ କରିବା ପାଇଁ ସେଇ ହିଁ ଏକମାତ୍ର ପୋଷାକ । ଆଣ୍ଠୁତଳ ପଶ୍ଚାଦ୍ଭାଗରେ ବଳିଷ୍ଠ ମାଂସ ପିଣ୍ଡୁଳା ସମ୍ପୂର୍ଣ୍ଣ ମୁକ୍ତ, ଦିଶୁଥିଲା ଉଚ୍ଛଟ । ବକ୍ଷଦେଶ ଅସମ୍ଭବ ଭାବେ ଉନ୍ନତ, ତୀକ୍ଷ୍ଣ । ଗାଉନ ବ୍ୟତୀତ ବକ୍ଷୋଜ ଉପରେ ଅନ୍ୟ ଆଭରଣ ନାହିଁ । ଏପରି ମହିଳା ହିନ୍ଦୁ ପୁରୁଷର ପତ୍ନୀ ହୋଇ ପାରେନା । ସେ ନିଶ୍ଚିତ ଭାବେ ଜଣେ କାମାତୁର ନାରୀ, ଦୁଶ୍ଚରିତ୍ରା ବେଶ୍ୟା । ଅସତ୍ ଉପାୟରେ ଅର୍ଥୋପାର୍ଜ୍ଜନ ଏମାନଙ୍କର ବେଉସା ।

ଶ୍ରାବଣୀ ମନରେ ଗାଉଁକା । ସେମାନେ ଘର ଭିତରକୁ ପଶି ଆସିଲେଣି । ସେ ଭୟରେ କଣ୍ଠାପାଣି । ଛାତି ଉଠୁଛି, ପଡୁଛି, ଦେହ ଥରୁଛି ବରଡ଼ା ପତର ଭଳି ।

ମଦ୍ୟପ ସଜ୍ଜନ ବୋତଲଟିକୁ ଦୃଢ଼ ଭାବରେ ଟି'ପଏ ଉପରେ କଟି ଦେଇ ଆଦେଶ ଦେଲେ ଗ୍ଲାସ ଏବଂ ପାଣିଜଗ ପାଇଁ । ଶ୍ରାବଣୀ ଏହାର ଅର୍ଥ ବୁଝିବା ପୂର୍ବରୁ ଆଗନ୍ତୁକ ନିଜେ ଯାଇ ଘର ଭିତରୁ କାଚ ଗ୍ଲାସ ଏବଂ



Digitized by PPRACHIN, SOA

ପାଣିପାତ୍ର ଆଣି ସେଥିରେ ତରଳ ପଦାର୍ଥ ଫେଣାଫେଣି ଆରମ୍ଭ କରିଦେଲେ । ଜଣା ପଡୁଥିଲା ସେ ଯେମିତି ଏ ଘର ସହିତ ଖୁବ୍ ପରିଚିତ, ଅଭ୍ୟସ୍ତ । ମୁହଁରୁ ଛୁଟୁଥିଲା ଅସ୍ପଷ୍ଟ ଭାଷା, ଖଣ୍ଡିଆ ସ୍ୱର, ଅଶ୍ଳୀଳ, ଅବାନ୍ତର ବାକ୍ୟବାଣ–"ଆମିତାଭ, ତୁଇ ଏକା ଗ୍ରାଲାଖ, ଏଠି ଲୁଚି ଲୁଚି ଗୋପନରେ ରାଧିକା ସଙ୍ଗେ ପ୍ରେମ କରୁଛୁ, ଏମିତି ପୁଣି ସ୍ୱାର୍ଥପର ଲୋକ ଥାନ୍ତି ଏ ଦୁନିଆରେ ! ଏମିତି ଲୁଚାଗୋରା କାରବାର କେବେଠୁଁ କଲୁଣି ? ଆବେ ମର୍ଦ୍ଦ ପୁଅ, ଧନ୍ଦା କରିବ ତ ଦିଶାରେ ହାତମାରି, ଦାଣ୍ଡରେ ପୁରୁଷପଣିଆ ଦେଖାଇ କରିବ, ଏମିତି ମାଇଚ୍ୟାଙ୍କ ପରି ଲୁଚିଛପି କାମ କରିବ କାହିଁକି ?

ଶ୍ରାବଣୀ ଆଡ଼କୁ ଦୃଷ୍ଟି ଫେରାଇ ଟିପ୍‌ପଣୀ ଦେଲା–କିଏ ରେ ଖୁରୁଙ୍ଗ ଟିଏ ଏଠି ? ତେବେ ଅମିତାଭର ରୁଚି ଖୁବ୍ ସୁନ୍ଦର । ଗଉଁଲିବୟସୀ ଝିଅ ପ୍ରତି ତା'ର ଆକର୍ଷଣ ବେଶ୍ ପ୍ରମାଣିତ ହୋଇଛି ଏଥିରୁ । ଭଲ, ଖୁବ୍ ଭଲ ... ଏଥର ଅମିତାଭ ବେଟା ବାଟକୁ ଆସିଛି । ଏମିତି ଯୁବତୀକୁ ରାତିରେ ଉପଭୋଗ ନ କରି ବେଟା ଯାଇଛି ଡ୍ୟୁଟି କରିବାକୁ ? ସାଲା ବେକୁବ୍‌ଟା ... ବୋକାମାନେ ଆଉ କ'ଣ ବୃକ୍ଷରେ ଫଳନ୍ତି ?

ମାତାଲ ମୁହଁରେ ଥିଲା ଅଟ୍ଟହାସ୍ୟ । ସାଙ୍ଗରେ ଧରି ଆଣିଥିବା କୋମଳାଙ୍ଗୀକୁ ସେ ଆଲିଙ୍ଗନ କଲା ଏବଂ ତା' ମୁହଁରେ ଚୋଳିଲା ଚୁମ୍ବନର ମାଳ । ଯୌନ ଦୃଶ୍ୟ ଆଖିକୁ ଅରୁଚିକର ହେବାରୁ ଶ୍ରାବଣୀ ମୁହଁ ବୁଲାଇଲା ଅନ୍ୟ ଦିଗକୁ । କେଡେ ଅସଭ୍ୟ ସହରୀ ଲୋକମାନେ ?

ଶ୍ରାବଣୀ କାତର ହୋଇ ସଂଲଗ୍ନ ଘରର କୋଣରେ ଲୁଚି ରହିବାକୁ ଚେଷ୍ଟା କରୁଥିଲା । ଲୋକଟିର ଆଚରଣରେ ସେ ଆତଙ୍କିତ ହୋଇ ପ୍ରମାଦ ଗଣୁଥିଲା କେବଳ । ସାଇ ଭିତରେ ଘର ଉପର ମହଲାରେ ଲୋକବାସ । ତଥାପି ଲାଜ ନାହିଁ, ଭୟ ନାହିଁ, ସଙ୍କୋଚ ନାହିଁ, ସରମ ନାହିଁ ଏ ମଣିଷର । ଅସଭ୍ୟ । ଏସବୁ ସହରାନୁଭୂତି ଥିଲା ତା କଳ୍ପନାର ବାହାରେ । ଗୋଟାଏ ଜଡ଼ତା ତାକୁ ଏକ ପ୍ରକାର ମୂକ କରି ଦେଇଥିଲା । ସର୍ବାଙ୍ଗ ତାର ଭୟରେ ଥରୁଥିଲା । ସ୍ୱପ୍ନରେ ସୁଦ୍ଧା ସେ ଆଶା କରି



Digitized by PPRACHIN, SOA

ନଥିଲା ଏମିତି ପରିସ୍ଥିତି । ପ୍ରତି ମୁହୂର୍ତ୍ତରେ ନୂଆନୂଆ ଅନୁଭୂତି ତାକୁ ମ୍ରିୟମାଣ କରୁଥିଲା । ଆଶ୍ରୟ ଦାତା ଭଦ୍ରବ୍ୟକ୍ତିଙ୍କ ଉପରେ ବିଷୋଦ୍‌ଗାର କରିବାକୁ ଲାଗିଲା ମନେମନେ । ତାର ମନେ ହେଉଥିଲା, ଏସବୁ ଘଟଣା ଯେମିତି ଏକ ସୁପରିକଳ୍ପିତ ଚକ୍ରାନ୍ତ, ଲୋକଟିର ସ୍ୱାର୍ଥସାଧନ ପାଇଁ ଏହା ଏକ ସୁଚିନ୍ତିତ ଯୋଜନା । କେତେ ସାକୁଲା ସାକୁଲି କରି, ଭଉଣୀ ବୋଲି ସମ୍ବୋଧନ କରି, ମିଠା ମିଠା କଥା କହି ତାକୁ ଭୁଲାଇ ଆଣି ଏଇ ନର୍କତୁଲ୍ୟ ଘରେ ଥୋଇ ଦେଇ ଅନ୍ତର୍ଦ୍ଧାନ ହୋଇ ଯାଇଛି ବା ନିକଟରେ କେଉଁଠି ଲୁଚି ରହିଛି ! ସରଳ ଭିତରେ ଗରଳ ! ଅମୃତ ଭିତରେ ବିଷ ! ସାଧୁ ଭିତରେ ମାଧୁ ! ମଣିଷ ମନର ଭିତିରି କଥା କିଏ ଜାଣି ପାରିବ ? ହୃଦୟ ଭିତରେ ଯେଉଁ ଅତୃପ୍ତ ଆଶାଟି ଲୁଚି ରହିଥାଏ ସେ ଯେ କେଉଁ ମୁହୂର୍ତ୍ତରେ ଜାଗ୍ରତ ହୋଇ ଫଣା ଟେକିବ ଏବଂ ଦଂଶିବ କିଏ କହି ପାରିବ ? ଆଶ୍ରାଦାତା ଭଦ୍ରଲୋକ ପ୍ରତି ପ୍ରଚଣ୍ଡ ଘୃଣାରେ ଶ୍ରବଣୀର ମୁହଁ ତିକ୍ତ ହୋଇ ଉଠିଲା । ଦିନ ବେଳେ ପୋଷାକର ଆବରଣରେ ରହି ମଣିଷ ଭଦ୍ରଲୋକ ସାଜେ, ରାତିରେ ତାର ରୂପ ବଦଳି ଯାଏ ; ଅନ୍ଧାରିଆ ଭୂତ ମାଡ଼ି ଆସେ ; ମଣିଷ ପଶୁ ପାଲଟେ ; ତାର ପଶୁ ପ୍ରକୃତି ପଙ୍କରେ ଲେଟେ । ମୁହଁ ଆଉ ମନ ମଧ୍ୟରେ ଏତେ ପାର୍ଥକ୍ୟ ଥାଏ ବୋଲି ଜାଣି ନଥିଲା ଶ୍ରାବଣୀ ।

ବନ୍ଧୁ ବୋଲାଉଥିବା ମାତାଲ ଜଣକ ବୈଠକ ଘର ଧଡ଼କରି ବନ୍ଦ କରିଦେଲେ ଏବଂ କିଳି ଦେଲେ । ସାଙ୍ଗରେ ଧରି ଆଣିଥିବା ମହିଳା ସହିତ କେଳି ରଚନାରେ ରହିଲେ ।

ଏହା ପରେ ପରିସ୍ଥିତି ଆହୁରି ଭୟାନକ ହୋଇପାରେ । ନିଶାଗ୍ରସ୍ତ ଲୋକକୁ ବିଶ୍ୱାସ କରଯାଇ ପାରେନା । କେତେବେଳେ କ'ଣ କରି ବସିବ କିଏ କହି ପାରିବ ? ଖଣ୍ଡିଆ ଭୂତ ଭଳି ମାଡ଼ି ଆସୁଥିବା ଭୟ ଶ୍ରାବଣୀ କାନରେ ସତର୍କ ଘଣ୍ଟି ବଜାଉ ଥିଲା । ଏଠି ଆଉ କ୍ଷଣେ ରହିବା ଅର୍ଥ ଜାଣିଶୁଣି ବିପଦକୁ ଡାକି ଆଣି ନିଜକୁ ବିପନ୍ନ କରିବା କଥା ।



Digitized by PPRACHIN, SOA

ଅନ୍ୟ କୋଠରୀଟିରେ ସେମାନେ ରତି ଲୀଳାରେ ଲିପ୍ତ । ଏତିକିବେଳେ ସେ ବାଟ କାଟି ଏଠୁ ଖସି ପଳାଇ ଯିବା ହିଁ ବୁଦ୍ଧିମାନର କାର୍ଯ୍ୟ ! ହେଲେ ଯିବ କୁଆଡ଼େ ଏତେ ରାତିରେ ? ବାହାରେ ନିଶା ଗର୍ଜୁଛି । ସେଠି ବି ନିରାପଦ ସ୍ଥାନ ନାହିଁ ? କେଉଁଠି ରାତିଟା ବିତେଇବ ? ମର୍ଦ୍ଦ ପୁଅ ହୋଇଥିଲେ କଥା ଦୁସ୍ତର, ମାଇପି ଝିଅ ସେ । ଦେହରେ ରୂପ ଫାଟକୁଛି, ଯୌବନ ଲହଡ଼ି ଭାଙ୍ଗୁଛି । ସେଇ ରୂପ ଯୌବନହିଁ ତାର କାଳ ହୋଇଛି । କେଉଁଠି ଲୁଚେଇ ରଖିବ ? ଆଖିକୁ କେବଳ ଦିଶୁଛି ଅନ୍ଧାର, ନିରାଶା, ହତାଶା । କିଛି ବାଟ ତାକୁ ଦିଶୁନି । ଯେମିତି ତାର ଦୃଷ୍ଟିଶକ୍ତି ହଜି ଯାଇଛି, ଅନ୍ଧ ଯେମିତି ବାଡ଼ି ହଲେଇ ଦେଇ ବାଟ ଖୋଜିବା ପାଇଁ ଦଉଡ଼ି ହେଉଛି ।

ଜୀବନରେ ଗୋଟିଏ ମହାଘାଟି ଉପସ୍ଥିତ । ଏଣେ ଡ଼ଙ୍ଗାରେ ବାଘ, ତେଣେ ପାଣିରେ କୁମ୍ଭୀର । କୁମ୍ଭୀର ତ ଏ ପର୍ଯ୍ୟନ୍ତ ଦେଖିନାହିଁ ; ଦେଖିଲେ ସେତେବେଳେ ଚିନ୍ତା କରିବ ; ମୁକ୍ତିର ପଥ ଅନୁସରଣ କରିବ ; ଉପାୟ ଖୋଜିବ । ବର୍ତ୍ତମାନ ବାଘ ହାବୁଡ଼ରୁ ରକ୍ଷା ପାଇବା ପ୍ରଥମ କାମ ।

ସେଇ ନିବୁଜ କୋଠରୀ ଭିତରେ ସୁରା ଆଉ ସାକୀରେ ଉନ୍ମତ୍ତ ରହିଛନ୍ତି କାମାତୁର ନାରୀ ସହିତ ମଦ୍ୟପ ପୁରୁଷ ଜଣକ । ଶ୍ରାବଣୀର ମୁଣ୍ଡକୁ ଉପାୟଟାଏ ଢୁକିଲା । ସେମାନଙ୍କ ଅଲକ୍ଷ୍ୟରେ ବାହାର ପଟୁ ଜଞ୍ଜିରଟି ଲଗାଇ ଦେଇ ସେ ପ୍ରାଣ ବିକଳରେ ଧାଇଁଲା ରାସ୍ତା ଉପରକୁ । ଦେହ ଧଇଁ ସେଲୁଥିଲା । ନିଃଶ୍ୱାସ ପ୍ରଶ୍ୱାସ ପ୍ରଖର ବେଗରେ ଶ୍ୱାସନଳୀ ଦେଇ ଗତି କରୁଥିଲା । ବର୍ତ୍ତମାନ ଗୋଟିଏ ମହା ବିପତ୍ତିରୁ ରକ୍ଷା ମିଳିଲା । ନୈକ ବିଶ୍ୱାସ ଦୁର୍ଗତିରୁ ଉଦ୍ଧାର ସକାଶେ ଦୁର୍ଗାସ୍ତୁତି ଜପ କରୁଥିଲା ମନେ ମନେ । ଭଙ୍ଗା ମନରେ ଦମ୍ଭ ଆଣିବା ପାଇଁ ଗାୟତ୍ରୀ ମନ୍ତ୍ର ଗାନ କରୁଥିଲା ଗୁଣୁ ଗୁଣୁ ହୋଇ । ସ୍ମରଣ କରୁଥିଲା ମହାସତୀ ସାବିତ୍ରୀଙ୍କୁ । ତା'ର ହାତ କାଚ ବଜ୍ରପରି କଠିନ ରଖିବା ପାଇଁ ପ୍ରାର୍ଥନା କରୁଥିଲା ନୀରବରେ ।



Digitized by PPRACHIN, SOA

ସମ୍ମୁଖରେ ଓସାରିଆ ପିଚୁରାସ୍ତା । ବିଜୁଳି ଖୁଣ୍ଟମାନଙ୍କ ଶୀର୍ଷ ଭାଗରେ ଉଜ୍ଜ୍ୱଳ ବତୀ ଗୁଡ଼ିକ ଜଳୁଥିଲେ । ଶ୍ରାବଣୀ ଏକାକିନୀ ଚାଲିଥିଲା ନାକ ସିଧା ରାସ୍ତାରେ । ଗତି ଚଞ୍ଚଳ, ଲକ୍ଷ୍ୟ ଅନିର୍ଦ୍ଦିଷ୍ଟ । ଖୋଜୁଥିଲା ରାତି ପୁହାଇବା ପାଇଁ ନିରାପଦ ସ୍ଥାନଟିଏ ।

ଅଦୂରରେ ଆଖିକୁ ଦିଶୁଛି ହାବଡ଼ା ପୋଲ ଯାହା ବିଷୟରେ ସେ ଆଗରୁ ଶୁଣିଥିଲା । ଗଙ୍ଗାମାତାର ଦୁଇକୂଳରେ ଦୁଇଟି ଗୋଡ଼ ରଖି ପୋଲଟି ଶୂନ୍ୟରେ ଝୁଲୁଛି । ତା' ଉପରେ ଚାଲିଛନ୍ତି ଗାଡ଼ି, ମୋଟର, ଟ୍ୟାକ୍ସି, ଏବଂ ହାତଟଣା ରିକ୍ସା ବାହକ ମାନେ । ପୋଲ ପାରି ହେଲେ ଯାଇ ପ୍ରକୃତ କଲିକତା ସହର ।

ଅକ୍ଲେଶରେ ପୋଲ ପାରି ହୋଇଗଲା ଶ୍ରାବଣୀ । ଏକଡ଼େ ଯାନ ବାହାନଙ୍କ ସଂଖ୍ୟା କମି ଆସିଲାଣି । ଗଙ୍ଗାକଡ଼ ଦେଇ ବିସ୍ତୃତ ରାସ୍ତାରେ ପାଦ ଚଳାଇଲା ଶ୍ରାବଣୀ । ଉପର ଷ୍ଟ୍ରାଣ୍ଡ ରୋଡ଼ଟି ଗତି କରିଛି ରବୀନ୍ଦ୍ର ସରଣୀ ଆଡ଼କୁ । ରାସ୍ତାର ବିସ୍ତୃତି ଉପରେ ତା'ର ଧାରଣା ଆସିବ କାହିଁ ? ଆଖିକୁ ଯେଉଁ ରାସ୍ତା ଦିଶିଲା, ତା' ଉପରେ ପାଦ ଲମ୍ବେଇଲା ।

ଆଗରେ ପଦଚାରୀ କେଇଟା ଏପଟ ସେପଟ ହେଉଥିଲେ । ଗତିର ଏଇ ଦ୍ୱିପଦ ଜାନୁଆର ମାନଙ୍କୁ ଏବେ ତା'ର ପ୍ରାଣ ଭୟ । ସେମାନଙ୍କ ଦୃଷ୍ଟି ଏଡ଼ାଇବାକୁ ଶତଚେଷ୍ଟା କରୁଥିଲା ଶ୍ରାବଣୀ । ଲୁଗାକୁ ମୁଣ୍ଡଠୁ ପାଦଯାଏଁ ଭଲଭାବେ ଢାଙ୍କି ରଖିଥିଲା । ବାଟଭାଙ୍ଗି ସେ ଅପେକ୍ଷାକୃତ କମ୍ ଓସାରିଆ ରାସ୍ତାକୁ ଗଲା । କିଛିବାଟ ଗଲାପରେ ରାସ୍ତାଧାରରେ ଦେଖିଲା ଗୋଟିଏ ପୁଷ୍ପୋଦ୍ୟାନ; ଉଦ୍ୟାନ ଭିତରେ ଦୋମହଲା ବାସଗୃହଟିଏ । ସହରର କୌଣସି ସ୍ଥାୟୀ ବାସିନ୍ଦାଙ୍କ ଘର ନିଶ୍ଚୟ । ବାସ ଭିତରେ ଲୋକ ଥିଲାଭଳି ମନେ ହେଉଛି । ଅତି ସନ୍ତର୍ପଣରେ ଅଳ୍ପ ଉଚ୍ଚ ପାଚେରୀକୁ ଡେଇଁ ଗୋଟିଏ ଗହଳିଆ ଫୁଲ ଗଛ ମୂଳରେ ନିଜକୁ ଲୁଚାଇ ରଖିବାକୁ ଚେଷ୍ଟାକଲା । ଭୟଭୀତା ହରିଣୀଟିଏ ପରି ଚାରିଆଡ଼କୁ ଚାହିଁଲା । କିଏ ତାକୁ ଦେଖୁ ନାହିଁତ ? ସବୁଆଡ଼େ



Digitized by PPRACHIN, SOA

ନୀରବତା ବିରାଜମାନ । ତା'ର ହୃଦବୋଧ ହେଲ, କବାଟ ବନ୍ଦକରି ଘର ଭିତରେ ସମସ୍ତେ ଶୋଇଛନ୍ତି । କଲିକତା ନଗରୀ ଶୋଇଛି । କେବଳ ରାସ୍ତାରେ ଜାଗି ରହିଛନ୍ତି କେଇଟା ନିଶାଚର ପ୍ରାଣୀ—ପଗଡ଼ି ପିନ୍ଧା ପୁଲିସ ବାବୁ କେତୋଟି । କାଁ ଭାଁ ମୋଟର ଟ୍ୟାକ୍‌ସି ଯା' ଆସ କରୁଛି । କଇଁଛ ବାହାରକୁ ବେକ କାଢି ଦେଖିଲା ଭଳି ନିଜକୁ ପାଚେରୀ ଉହାଡ଼ରେ ଲୁଗାଇ ରଖି ସେ ଲକ୍ଷ୍ୟ କରୁଛି ରାତ୍ରିକାଳର ମହାନଗରୀ ଦୃଶ୍ୟ ।

ଘର ଭିତରୁ ଗୋଟିଏ ପୁରୁଣା ବିଜୁଳି ପଙ୍ଖାର କଣ୍ଠରୋଧ ଶବ୍ଦ କାନରେ ଆସି ବାଜୁଛି । ଅଚଳ ଯନ୍ତ୍ରର ବିମର୍ଷ ଧ୍ୱନି, ଯେମିତି କିଏ ନିଶାର୍ଦ୍ଧରେ ରହି ରହି ବିଳାପ କରୁଛି । ବହୁ ମରାମତି ପରେ ଯନ୍ତ୍ରଟିକୁ ଚଳନକ୍ଷମ କରାଯାଇଛି ବୋଧେ ।

ଅନିତି ଦୂରରେ ହାବଡ଼ା ରେଳ ଷ୍ଟେସନ । ରେଳଗାଡ଼ିର ହନୁ-ହୁଙ୍କାର, ଇଂଜିନ୍‌ର ସାଇରନ ଶବ୍ଦରେ ଅଞ୍ଚଳଟି ଧ୍ୱନିତ । ଏଇ ରେଳ-ରାକ୍ଷସ କଥା ମନେ ପଡ଼ିଲେ ଛାତି ଥରି ଉଠୁଛି, ହୃଦୟ ଭିତରେ କମ୍ପନ ସୃଷ୍ଟି ହେଉଛି । ଶରୀରର ସୂକ୍ଷ୍ମତନ୍ତ୍ରୀ ଛିଣ୍ଡିଗଲା ପରି ଲାଗୁଛି । ଅନ୍ତଃନଳୀ ଛିଣ୍ଡି ଯାଉଛି । ଅନ୍ଧାରୀ ଭୂତ ତାକୁ ଗୋଡ଼େଇଛି ଯେମିତି ... ନିସ୍ତାର କାହିଁ ?

ଗୃହୋଦ୍ୟାନର ଗଛମେଳରେ ମିଶି ରହିବା ଆଦୌ ନିରାପଦ ନୁହେଁ । ଧରା ପଡ଼ିଗଲେ ଅବସ୍ଥା ଆହୁରି ଶୋଚନୀୟ ହୋଇ ପଡ଼ିବ । ସମସ୍ତେ କହିବେ—ଗ୍ରେଣୀ । ଏତେ ରାତିରେ ବଗିଚା ଭିତରେ କି କାମ ? ବିନା କାରଣରେ ଏତେ ଅପବାଦ, ହୀନସ୍ତା ମୁଣ୍ଡେଇବା କି ଦର୍କାର ? କେତେ କୈଫିୟତ, କାରଣ ଦର୍ଶାଇବ ? କିଏ ବା ତାର ଦୁର୍ଦ୍ଦଶା ବୁଝିବ ? ଏଣୁ ଏଠୁ ଶୀଘ୍ର ବାଟ କାଟିବା ବିଧେୟ । ବିନାନୁମତିରେ ପର ଘରେ ପ୍ରବେଶ କରିବା ଆନୁଚିତ, ଅସୁନ୍ଦର ମଧ୍ୟ ।

ଶ୍ରାବଣୀ ଉଠି ଆସିଲା ରାସ୍ତା ଉପରକୁ । ରାଜରାସ୍ତା । ଦମ୍ଭଧରି ଛିଡ଼ା ହେଲା ରାସ୍ତାକଡ଼ର ଫୁଟପାଥିରେ । ଦୁଇ କଡ଼ରେ ବିଜୁଳି ଆଲୁଅର



Digitized by PPRACHIN, SOA

ଥାଟ ଗହ୍ଣି ଅନ୍ଧାର ଦୂର କରୁଥିଲେ । ଶ୍ରାବଣୀ ଅନ୍ଧାରକୁ ଡ଼ରୁଥିଲା । ଏହା ଥିଲା ତା ପିଲାଦିନର ଭୟ । ଏବେ ସଡ଼କରେ ଅନ୍ଧାର ତାକୁ ଭୂତ ଭଳି ଡ଼ରାଉଛି । ଖୁଣ୍ଟି ଆଲୁଅ ତା' ମନରେ ସାହସ ସଞ୍ଚାର କରୁଥିଲା । ମନକୁ ଟାଣକରି ଆଗକୁ ଚାଲିବାକୁ ଲାଗିଲା ଧୀରେ ଧୀରେ । ଅନିର୍ଦ୍ଦିଷ୍ଟ ପଦଯାତ୍ରା, ଅନିଶ୍ଚିତ ଲକ୍ଷ୍ୟସ୍ଥଳୀ ।

ନିଶାର୍ଦ୍ଧର ସହରୀ ରାସ୍ତାରେ ଜଣେ ସ୍ତ୍ରୀ ଲୋକର ନିଃସଙ୍ଗ ଗତି । ମୁଣ୍ଡରେ ଓଢ଼ଣା । ନାଲି ଗୁଲୁ ଗୁଲୁ ସାଧବ ବୋହୂ ପରି ଧୀର ମନ୍ଥର ଚାଲି । ପାଦରେ ପାଉଁଜରସ୍ତ ରୁଣୁଝୁଣୁ ଝଙ୍କାର । କିଏ ହୋଇପାରେ ? ଜଗୁଆଳି ପୁଲିସିର କୌତୂହଳ ।

ଶ୍ରାବଣୀ ଚମକି ପଡ଼ିଲା ।

କିଏ ତୁମେ ନାରୀ ? କୁଆଡ଼େ ଯାଉଛ ? କ'ଣ ତୁମର ଉଦ୍ଦେଶ୍ୟ ? ସିପେହି ଜଣେ ଜେରା କରୁଥିଲା ଅଳ୍ପ ଦୂରରେ ରହି । ତା ମୁହଁରେ ଅସ୍ପଷ୍ଟ ଭାଷା ଭାସିଆସି ଶ୍ରାବଣୀ କାନରେ ବାଜୁଥିଲା ।

ପୁଲିସ ବାବୁ, ରାତିରେ ଏଠି ପହରା ଦେଉଛନ୍ତି । ଅବେଳରେ ସ୍ତ୍ରୀ ଲୋକ ଦେଖି ପୁନଃ ପୁନଃ ପ୍ରଶ୍ନ ପଚାରୁଛନ୍ତି । ପୋଷାକଧାରୀ ମଣିଷ ପ୍ରତି ତାର ଆଉ ଆସ୍ଥା ନାହିଁ । ମଣିଷକୁ ହଠାତ୍ ବିଶ୍ୱାସ କରିବାର ଫଳ ଏବେ ସେ ଅଙ୍ଗେ ନିଭେଇଛି । ଏ ସଂସାରଟା ଯେମିତି ବିଶ୍ୱାସ ଘାତକତାରେ ପରିପୂର୍ଣ୍ଣ ।

ପହରାଦାର ପୁଲିସି ତାଠୁ ଜବାବ ତଲବ କଲାଣି । ଚୁପ୍ ରହିଲେ ଶ୍ରେରଣୀ ଭାବି ତା' ଆଡ଼କୁ ମାଡ଼ି ଆସିବ, ଜେରା କରିବ । କିଛି ଗୋଟାଏ ଜବାବ ଦେବାକୁ ପଡ଼ିବ । କ'ଣ ଜବାବ ଦେବ ?

ନ ଶୁଣିଲା ଢଙ୍ଗରେ ଶ୍ରାବଣୀ ପୁଣି ପାଦ ଆଗକୁ ବଢ଼ାଉଥିଲା । ପଛଆଡ଼ୁ ପୁନର୍ବାର ପ୍ରଶ୍ନ—ଏଥର କିଛି ଅଧିକ ଚଡ଼ାଗଳାରେ, କିଏରେ ?



Digitized by PPRACHIN, SOA

ହାବୁଡ଼ରେ ଯେତେବେଳେ ପଡ଼ିଲଣି ଉପାୟ ଆଉ ନାହିଁ । ଶ୍ରାବଣୀ ଆଉ ଆଗକୁ ନ ଯାଇ କିଛି ସମୟ ସ୍ଥିର ରହିଲ । ମୁହଁଟି ଖୁଣ୍ଟ ଆଲୁଅରେ ପରିଷ୍କାର ଦିଶୁଥିଲ । ମନକୁ ଗୋଟାଏ ଉପାୟ ଜୁଟିଲ । ପୁଲିସ ବାଲ—କ'ଣ ବା ସିଏ କରି ପାରେ ? ତାକୁ ଏତେ ଭୟ କାହିଁକି ? ଓଠରୁ ଛୋଟ ନକଲି ହସଟିଏ ଉତୁରି ଆସି ଦେହରେ ମିଳାଇ ଯାଇଥିଲ । ଏହା ଥିଲ ତା'ର ଏକ ସୁନ୍ଦର ଅଭିନୟ । ଏଠି କାନ୍ଦ ନୁହେଁ, ହସ; ବିଷାଦ ନୁହେଁ ପ୍ରମୋଦ ପ୍ରୟୋଜନ ! ଖୁଆଲି ମଣିଷର ହାବୁଡ଼ରୁ ବର୍ତ୍ତିବାର ଅଭିନୟହିଁ ଏକମାତ୍ର ଆୟୁଧ । କୋହକୁ ଭିତରେ ଗୁପି, ଦୁଃଖକୁ ଅନ୍ତର ଭିତରେ ଲୁଚେଇ ରଖି ଓଠରେ କିପରି ହସ ସୃଷ୍ଟି କରିବାକୁ ହୁଏ ଏବଂ ଦୁନିଆ ଦାଉରୁ ରକ୍ଷା ପାଇବାକୁ ହୁଏ, ପ୍ରଥମ ଥରପାଇଁ ଶ୍ରାବଣୀ ଏହିଠାରେ ପ୍ରୟୋଗ କରିଥିଲ ।

ଲୋକେ ବେଳ ପଡ଼ିଲେ ଏମିତି ପୁଣି ବଳେଇ ଶିଖନ୍ତି ! ଆଜି ପର୍ଯ୍ୟନ୍ତ ମୁଣ୍ଡରେ ଓଢ଼ଣା ଟାଣି, ମଫସଲ ପରିବାରରେ ପାଳିତ ପ୍ରାଣୀ ବା ପକ୍ଷୀଟିଏ ଭଳି ପୋଷାମାନି ସେ ଚଳି ଆସିଥିଲ । ଆଜିର ସମୟ । ପରିସ୍ଥିତି ଭିନ୍ନ । ତା'ର ଘର ସଂସାର ଆରମ୍ଭରୁହିଁ ମହା ସଙ୍କଟ ଉପୁଜୁଛି । ଜୀବନ ମରଣ ସଂଘର୍ଷ ଉତ୍କଟ ହୋଇଛି । ଏଠି ସାହାଯ୍ୟ କରିବାକୁ କେହି ନାହିଁ, ପରାମର୍ଶ ଦେବାକୁ କେହି ନାହିଁ । ନିଜେ ନିଜର ପରାମର୍ଶ ଦାତା । ଯାହା ବୁଦ୍ଧି ମୁଣ୍ଡକୁ ଢୁକିବ, ତାକୁ ହିଁ ସମ୍ବଳ କରି ଶେଷ ପର୍ଯ୍ୟନ୍ତ ଲଢିବ । ବଞ୍ଚିବାର ଉପାୟ ଖୋଜିବ, ସ୍ୱାମୀଙ୍କୁ ଖୋଜିବ । ସ୍ୱାମୀହିଁ ତା'ର ଏକମାତ୍ର ଲକ୍ଷ୍ୟ, ସେ ତା'ର ପ୍ରାପ୍ତିଫଳ, ସବୁ ସାଧନାର ସିଦ୍ଧି, ପ୍ରାର୍ଥନାର ପ୍ରାପ୍ତି !

ପଛରୁ ପାଦ ମିଳେଇ ସିପେହୀ ଅନୁଗମନ କରୁଥିଲ ମୌନାବତୀର ଗତିଧାରକୁ । କିଛି ବାଟ ଅନ୍ତେ ଶ୍ରାବଣୀ ବାଟଭଙ୍ଗି ଗତି ବଦଳ କଲ । ପଛକୁ କଣେଇ ଗୁହିଁ ଲକ୍ଷ୍ୟ କଲ । ପୁଲିସ ଯୋତାର ଖଟ ଖଟ ଶବ୍ଦ ଆଉ ଶୁଭୁ ନଥିଲ । ସିପାହିଟି କେଉଁଠି ଦୂରରେ ରହି ଗଲଣି । ଓଃ ରକ୍ଷା ।



Digitized by PPRACHIN, SOA

ସିପେହୀ ମନରେ ସନ୍ଦେହ ଆପେ ଆପେ ମିଳେଇ ଯାଉଥିଲା । ଏମିତି ଗତି ଅଧରେ ସହରର ଛାତି ଉପରେ ତରୁଣୀମାନଙ୍କ ଅବାଧ ଚଲବୁଲ କିଛି ନୂଆ କଥା ନୁହେଁ । କାହାର ଉଦ୍ଦେଶ୍ୟ ଉନ୍ମୋଚନ କରିବା ତାର ଆବଶ୍ୟକ ନଥିଲା । ଗତି ଅଧିଆ ଏମିତି ଯେଉଁ ତରୁଣୀ ଛାତି ଫୁଲେଇ ଦମ୍‌ରେ ଯାଇପାରେ ତାର ଉଦ୍ଦେଶ୍ୟ ଅଜଣା ନୁହେଁ । କେତେ କୁଆଡ଼େ ଏମିତି ଧନ୍ଦାରେ ଯାଉଛନ୍ତି, ଦେହ ବିକି ଅର୍ଥ ଉପାର୍ଜନ କରୁଛନ୍ତି, ଗୁଞ୍ଜୁରଣ ମେଣ୍ଟାଉଛନ୍ତି । କିଏ ବା ଅକଲରେ ପଡ଼ି ନରକ କାମରେ ମାତୁଛି । କେବଳ କର୍ତ୍ତବ୍ୟର ସାମାନ୍ୟ ଚେତନାରେ ସିପେହୀ ପଦେ ହାଙ୍କି ଦେଇଥିଲା । ନହିଲେ କାହାର ପିଛା ଧରିବା ତାର ମତଲବ ନ ଥିଲା । ତରୁଣୀଟି ଦୃଷ୍ଟିରୁ ଦୂର ହୋଇଯିବା ପରେ ସିପେହୀ ଚୁପ୍ ରହିଲା, କୌଣସି ମତେ ଗତି ପହରା କାମ ଭଲରେ ଭଲରେ ଶେଷକରି ଘରେ ଯାଇ ବିଶ୍ରାମ ନେବା କଥା । ଝିନ୍‌ଜଟ୍‌ରୁ ଦୂରରେ ରହି ସୁରୁଖୁରୁରେ ଡ୍ୟୁଟି ଶେଷକଲେ ଶାନ୍ତି ।

ଗ୍ଲି ଗ୍ଲି ଗୋଡ଼ ଥକିଲାଣି, ପିଣ୍ଡକୁ ବାଧା ହେଲାଣି, ତେଜ ମଉଳି ଗଲାଣି । କଅଁଳ କନ୍ୟା ସେ । ଦୁର୍ବଳ ଅନଭ୍ୟସ୍ତ । ଏମିତି କେତେ ବାଟ ଗୋଟେ ସାହସରେ ଗ୍ଲି ଆସିଲାଣି ତାର ହିସାବ ନାହିଁ ।

ସିନ୍ଦୂର ଫାଟିଲାଣି । ରକ୍ତବର୍ଣ୍ଣୀ ପୂର୍ବାକାଶ । ଉଷାର ସବୁ ସୂଚନା ଗୁଡ଼ିକ କଥାବାର୍ତ୍ତା ହୋଇ ତପର ହୋଇ ଉଠିଛନ୍ତି । ସୂର୍ଯ୍ୟର ଆଗମନୀରେ ଆକାଶ ଏମିତି ହସିଉଠେ, ଅନ୍ଧାର ଲୁଚେ । ଆଲୁଅ ଆମୋଦ ରଶ୍ମି ବିତରଣ କରେ । କିନ୍ତୁ ତା ମନର ଅନ୍ଧକାର ଦୂର ହୋଇପାରିନି, ତା ଜୀବନ–ସୂର୍ଯ୍ୟ କେଉଁଠି ଅଛନ୍ତି ? ସେ କେବଳ ସେଇ ସୂର୍ଯ୍ୟର ଦର୍ଶନାଭିଳାଷୀ । ତାଙ୍କୁ ଦେଖିଲେ ଯାଇଁ ନେତ୍ର ପବିତ୍ର ହେବ । ନର୍କରୁ ଉଦ୍ଧାର ପାଇବ । ମୁକ୍ତ ।

ଗଙ୍ଗା ଧାରେ ଧାରେ ଶ୍ରାବଣୀ ଗ୍ଲିଥିଲା । ଷ୍ଟାଣ୍ଡରୋଡ଼ । ତା ପରେ ଡାଲହାଉସୀ ଯେଉଁଠି ଠିଆ ହୋଇଛି ସେକ୍ରେଟେରିଏଟ୍ ।



Digitized by PPRACHIN, SOA

ରି: ପି: ଓ: ଏବଂ ଅନେକ ନାମଧାରୀ ପ୍ରତିଷ୍ଠାନ । ପ୍ରଶସ୍ତ ରାସ୍ତାକୁ ଛୁଇଁ ଛିଡ଼ା ହୋଇଛନ୍ତି ଅଗଣିତ କୋଠାବାଡ଼ି–ପ୍ରାସାଦ-ମାଳିନୀ କଲିକତା ନଗରୀ, ଯାହା ବିଷୟରେ ସେ ଅନେକ ଶୁଣିଥିଲା, ଅଥଚ ଆଖିରେ କେବେ ଦେଖି ନଥିଲା ... ।

ଏଇ ଜନବହୁଳ, ଗୁହଗହଳ ନଗରୀ କଲିକତା । ଏଠି ଗଢ଼ି ଉଠିଛି ମଣିଷର ସହରକୈନ୍ଦ୍ରିକ ସଭ୍ୟତା । ବିଜ୍ଞାନର ସର୍ବାଧୁନିକତା, ନିତ୍ୟ ନୂତନତା ପ୍ରଥମେ ଏଇ ସହରରେ ଧଗଦିଏ । ଏଠି ସବୁକିଛି ଦେଖିବାକୁ ମିଳେ । ଗହଳ ଭିତରେ ଚହଳ, ଚହଳ ଭିତରେ କଗଳ । ସରଳ ଭିତରେ ଗରଳ । ଗରଳ ଭିତରେ ସରଳ । ସବୁ ମିଶାମିଶି ଫେଣ୍ଟା ଫେଣ୍ଟି ଏଠି, ଲୋକ ଖୁନ୍ଦାଖୁନ୍ଦି ସହର । ମେଣ୍ଟାପଲ, ଘୁଷୁରୀ ଗୋଠଭଳି ମଣିଷ ବାସ କରନ୍ତି–ରାସ୍ତା ଧାରରେ, ଗଛ ମୂଳେ, ନର୍ଦ୍ଦମା କୂଳେ, ପିଣ୍ଡା ତଳେ । ଏଠି ପୁଣି ଅଛି ଇନ୍ଦ୍ରମହଲ, ନନ୍ଦନକାନନ, ପାରିଜାତ ଫୁଲ, ମଣିଷର ଲୟ ବିଲୟରେ ସବୁ ଘଟି ଯାଉଛି ଏଠି । କିଏ ସବୁ ଘଟଣାର ହିସାବ ରଖୁଛି ? ବାର ରୁଷଳିଆ ସଭ୍ୟତା ।

କେଉଁଠି ଟିକିଏ ରାହା ମିଳିବନି ତାକୁ ? ଅନ୍ୟ ମନସ୍କ ଭାବେ ବାଟ ଚାଲିଥିଲା ସେ । କେତେ ଚାଲିବ ? ବହୁ ଦୂରକୁ, ଭିତରରୁ ଭିତରକୁ ଚାଲି ଆସିଲାଣି ସେ । ସହରଟା ଯାକ ରାସ୍ତାରେ ଛନ୍ଦା ଛନ୍ଦି । ଶରୀରର ଶିରା ପ୍ରଶିରା ଭଳି ରାସ୍ତାର ଶାଖା ଉପଶାଖା ବ୍ୟାପିଛି ଭିତରକୁ ଭିତରକୁ । ଅନଭ୍ୟସ୍ତ ଆଖି ମନେରଖିବା ସମ୍ଭବ ନୁହେଁ । ସବୁସ୍ଥାନ ନୂଆ । ଏ ପର୍ଯ୍ୟନ୍ତ ଦେଖିଛି ମାତ୍ର ଜାଣିଷ୍ଏ, ଦେଖିବାର ଆଉ ସଉକ ନାହିଁ ମନର ସରଗ ଲିଭି ଯାଇଛି ଯେତେବେଳୁ ସ୍ୱାମୀ ଛାଡ଼ି ଚାଲି ଯାଇଛନ୍ତି । କ'ଣ ତାଙ୍କ ମନରେ ଥିଲା ? ଆଣିବାକୁ ପ୍ରଥମେ ଅମଙ୍ଗ ହେଉଥିଲେ, ବାଧ୍ୟ କଲାରୁ ଫାନ୍ଦ ଫିକର କରି ଆଣିଲେ । କିନ୍ତୁ ରାମ ବନବାସରେ ସୀତା ସୁଖ ଖୋଜିବାକୁ ଯାଇ ଦୁଃଖ ଭୋଗିବେ ବୋଲି ସେ କ'ଣ କେବେ କଳ୍ପନା କରିଥିଲେ ? ସ୍ୱାମୀ ସହିତ ସୁଖ ଭ୍ରମଣରେ ଶ୍ରାବଣୀ ଉଲ୍ଲସିତ ହୋଇ ବାହାରି ଆସିଥିଲା । କିଏ ଜାଣିଥିଲା



Digitized by PPRACHIN, SOA

ତା ପୋଡ଼ା କପାଳରେ ଏମିତି ଦୁର୍ଯୋଗ ଆସିବ ବୋଲି ? ମଣିଷ ନାଗର, ନିମିର । ବିଧିର ସ୍ୱର ସଙ୍ଗେ ତାଳ ମିଶାଇ ନାଚେ ଯେମିତି ମାଙ୍କଡ଼ ନାଚ କରେ, ଭଲୁ ବୋଲ ମାନିବାକୁ ବାଧ୍ୟ ହୁଏ । ଭାଗ୍ୟଚକ୍ର ଯିଏ ଚଳଉଛି ସେ ସବୁଠୁ ବଡ଼ ମାଲିକ, ଖୁବ୍ ଶକ୍ତିଶାଳୀ । ତା ଚକରେ ସମସ୍ତେ ଘୂରନ୍ତି–ମଣିଷ, ପଶୁ, ପକ୍ଷୀ, ପତଙ୍ଗ ଏହାହିଁ "ଦର୍ଶନ ।" ସୁଖ ଦୁଃଖ ସବୁହିଁ ସେଇ ଯୋଗର ନିର୍ଦ୍ଦେଶ । ତାକୁ କିଏ ଅନ୍ୟଥା କରିବ ? ମଣିଷ ଚେଷ୍ଟା କରେ, ହେଲେ ଫଳ ତା ହାତରେ ନଥାଏ । ଫଳକୁ ଆଶାକରି, ଆଶାକରି ସେ ବଞ୍ଚେ । ଆଶା ହିଁ ଜୀବନର ଇନ୍ଧନ । ଆଶା ହରେଇଲେ ଜୀବନ ହାରେ । ଏମିତି ଅନେକ ଚିନ୍ତା ଶ୍ରାବଣୀ ମୁଣ୍ଡକୁ ଭାରକ୍ରାନ୍ତ କରୁଥିଲା । ଚିନ୍ତାର ଗତିକୁ ସେ ରୋକି ପାରୁ ନଥିଲା । କଳ୍ପନାର କଳାମେଘ ଚିଦାକାଶକୁ ଢାଙ୍କି ରଖୁଥିଲା ।

ସକାଳ ହେଲାଣି । କେଉଁଠି ଗୋପ୍ୟ ରହିଲେ ତା ମନର ମଣିଷ ? ତା ପ୍ରିୟାଦପି ପ୍ରିୟ ସ୍ୱାମୀବର ? କା' ଆଗେ ଗାଇବ ତା ହିନିମାନିଆ ଜୀବନର ଏହି ଦୁର୍ଦ୍ଦିନ ସଙ୍ଗୀତ ? କେଇ ଦିନର ଘର କୋଣର ନୂଆ ବୋହୂ ! ଶାଶୁଘର ସୁନ୍ଦର । ଛୋଟ ଖ୍ୱଡର ଘର, ରଂଗମାଟି ଲିପା କାନ୍ଥ, ଗୋବର ଲିପା ଘର ଭୂଇଁ, କୁନି ଅଗଣା, କଣ୍ଟାବୁଦା, ଇଟା ବାଡ଼ି, ତା ତଳକୁ ଗଡ଼ିଆ, ତାଳ ଗଛ, ବାଉଁଶନଟା, ଆମ୍ବ ନଡ଼ିଆର ବଗିଚ୍ଚ । ଘର ମଥାନରେ ଶୋଇଥାନ୍ତି ଅନେକ କଖାରୁ, ପାଣି କଖାରୁ, ଲାଉ ଗ୍ଡ଼ ଉପରେ ମାଡ଼ିଲା ଗଛ ଗୁଡ଼ିକ ସବୁଜ ଗ୍ଡ଼ଦୁଆ ମେଲିଥାନ୍ତି । ସେଇ ତାର କୁନି ସଂସାର । ଗୋଟାଏ ଉତ୍ତେଜନାରେ ଅନ୍ଧ ହୋଇ ସେ ସବୁ ସ୍ୱର୍ଗତୁଲ୍ୟ ସଂସାର ଛାଡ଼ି ଦୁର୍ଭାଗ୍ୟକୁ ନିଜ ହାତରେ ଟୋକି ଆଣିଛି । ଏଠି ନର୍କ ଭୋଗୁଛି । ବାରବୁଲା ଭିକାରୁଣୀର ଜୀବନ । କେତେ ଛି ଛାକର, ନାକ ଟେକା ଅବା ଦୁଷ୍ଟଙ୍କର ପାପଦୃଷ୍ଟି । ମନଟା ଭୀଷଣ ଗୋଳିଘାଣ୍ଟି ହେଉଛି ! ପ୍ରାଣରେ ପ୍ରଚଣ୍ଡ ପୀଡା ଅନୁଭବ କରୁଛି ।

ରାସ୍ତା କଡ଼ରେ ଆଶ୍ରୟ ନେଇଛନ୍ତି ଅନେକ କାଙ୍ଗାଳ, ଭିକାରୁଣୀ ଏବଂ ଦାରିଦ୍ର୍ୟର ସନ୍ତାନମାନେ । ଖଣ୍ଡିଆ ଅଖା, ଛିଣ୍ଡା ଗ୍ଦର, ଛିନ୍ନ



Digitized by PPRACHIN, SOA

କୁର୍ତା ; ମଇଳିଛିଆ ବସ୍ତ୍ର ସେମାନଙ୍କ ସମ୍ବଳ । ଅଣ୍ଡିଆ ଟିଣ । କନ୍ଥା ବିଚକୁଟିଆ ଡ଼େକଚି, ମାଟିହାଣ୍ଡି, ଭଙ୍ଗିଷ୍ଟ ଡ଼ବା, ବୋତଲ, ଦୁର୍ଗନ୍ଧ ଜର୍ଜରିତ କନ୍ଥା, କନା ସବୁ ଜମି ରହିଛି ସେମାନଙ୍କ ପାଖେ ପାଖେ ଚିରସାଥୀ ଭଳି । ଏଇ ଦୁର୍ଗଟମାନଙ୍କ ମେଳରେ ବୁଲା କୁକୁର ତାର କେତୋଟି ସଦ୍ୟଜାତ ଶିଶୁକୁ କୋଳରେ ଧରି ଥନଚିରି ଦୁଗ୍ଧପାନ କରାଉଚି । ସହରୀ ବୁଲା ଷଣ୍ଢଟିଏ ଏମାନଙ୍କ ପାଖକୁ ଆଣ୍ଠୁଭାଙ୍ଗି, ମୁଥୁଳ ପେଟକୁ ପିଚୁ ଚଟାଣ ଉପରେ ଥୋଇ ଆରାମରେ ପାକୁଳି କରୁଚି । ଯେଉଁ ସହରକୁ ସେ ସ୍ୱର୍ଗ ସମାନ ଭାବିଥିଲା, ସେଠି ପୁଣି ଏମିତି ବିଭତ୍ସ ଦୃଶ୍ୟପଟ ! ପ୍ରାଚୁର୍ଯ୍ୟ ମଧ୍ୟରେ ଦାରିଦ୍ର୍ୟର ବାନା ଉଡୁଛି । ଛିଃ ଏଇ ସହରକୁ ସ୍ୱର୍ଗ ଭାବି ସେ ନେତ୍ର ପବିତ୍ର କରିବା ପାଇଁ ଧାଇଁ ଆସିଥିଲା ! ସ୍ୱର୍ଗ ନୁହେଁତ ନଥିଲା ଭେକର ନର୍କ !

ସହର ପ୍ରତି ତାର ବିତୃଷ୍ଣା ଜାଗି ଉଠୁଥିଲା । ଏଇନେ ସ୍ୱାମୀଙ୍କୁ ପାଇ ଯାନ୍ତା କି, ମୁହୂର୍ତ୍ତେ ବିଳମ୍ବ ନକରି ଫେରିଯାନ୍ତା ତା ପଲ୍ଲୀ ପରିବେଶକୁ । ଶାଶୁଘର ଗାଁ, ତା ମାଟି, ପାଣି ପବନ କେତେ ସୁନ୍ଦର ! କେତେ ସ୍ନେହ କରୁ ନଥିଲେ ଶାଶୁ ଶ୍ୱଶୁର ଏବଂ ଛୋଟ ନଣନ୍ଦ ! ଶ୍ୱଶୁରଙ୍କର ଆନନ୍ଦ ଉଲ୍ଲାସରେ ନାଚି ଉଠୁଥିଲା ! ସୁନା କଣ୍ଢେଇଟି ଭଳି ସେମାନେ ତାକୁ ଆଦର କରୁଥିଲେ । ଶାଶୁଙ୍କ ଗେହ୍ଲା ଡ଼ାକ–ସାବି, ସାବି, ସେ କ'ଣ ଆଉ ଶୁଣିବନି ! ଯାଉଣୁ ଆସୁଣୁ ଟିକି ନଣନ୍ଦର ଡ଼ାକ– ନୂଆବୋଉ, ନୂଆବୋଉ କାନରେ ବାଜି ଯାଉଛି । ତା ତଣ୍ଟି ଶୁଖୁ ଗଲା ପରି ଲାଗିଲା । ତତଲା ଲୁହ ଝରିଲା । ବୁକୁ ଥରିଲା । ଦୀର୍ଘଶ୍ୱାସ ।

ଖୁବ୍ ଅନ୍ୟ ମନସ୍କ ଭାବେ ଶ୍ରାବଣୀ ଚାଲିଥିଲା । ଫୁଟ୍‌ପାଥରେ ଲମ୍ବହୋଇ ପଡ଼ିଥିବା ଗୋଟିଏ ଅଖା ବୁନୁଚାକୁ ଝୁଣ୍ଟି ପଡ଼ିଲା । ମୁହଁ ମାଡ଼ି ପଡୁ ପଡୁ ଅଳ୍ପକେ ରକ୍ଷା ପାଇଗଲା । ତଳେ ଥକ୍‌କା ହୋଇ ବସି ପଡିଲା । ଅଖା ବୁଜୁଳାଟିଏ ନୁହେଁ, ଅଖା ଭିତରେ କିଏ ଜଣେ ମୁହଁ ମାଡ଼ି ଶୋଇଛି, ତା ଗୋଡ଼ ଆଘାତରେ ହଲଚଲ ହେଉଛି, ଭଲ ଭାବେ ଲକ୍ଷ୍ୟ କଲା । ଚେକେଇ ହୋଇ ଶୋଇଥିବା ଲୋକଟି କଡ଼ ଲେଉଟେଇଲା । ଅଖଜ୍ଞ ମଣିଷକୁ ଅଜ୍ଞାତରେ ଝୁଣ୍ଟି ପଡ଼ିଛି ! ବିଷ୍ଣୁ ବିଷ୍ଣୁ ଉଚ୍ଚାରଣ କରି ଜିଭ କାମୁଡ଼ିଲା ଶ୍ରାବଣୀ ।



Digitized by PPRACHIN, SOA

ଅଖା ଘୁଞ୍ଚିଯାଇ ଲୋକର ପାଦ ଦୃଶ୍ୟ ହେଲା । ଇସ୍ ! କୁଷ୍ଠ ରୋଗୀଟିଏ । ଅନୁତାପ ଆସିଲା, ଦୟା ଆସିଲା । ସୃଷ୍ଟି-କର୍ତ୍ତାର ହିଂସ୍ରକୁଟିଆ ପ୍ରକୃତି । ଜନ୍ମତ ଦେଲ, ପୁଣି ଯନ୍ତ୍ରଣା କାହିଁକି ? ଜୀବନଟା କ'ଣ ଦୁଃଖ ଯନ୍ତ୍ରଣାର ପାରାବାର ? କେତେ ଦୁଃଖ ନ ପାଉଛି ବିଚରା ରୋଗିଟି !

ଏତେ କୋଳାହଳ ସତ୍ତ୍ୱେ ଲୋକଟି ଶୋଇ ରହିଛି । ଦିନରେବି ଘୁଙ୍ଗୁଡ଼ି ମାରି ପାରୁଛି । ବଡ଼ ବିଚିତ୍ର ଏଇ ମଣିଷ ଜୀବନ । ତଥାପି ଜୀଇଁ ରହିବା ମଣିଷର ଆଦତ୍, ଆପ୍ରାଣ ଉଦ୍ୟମ । ଧନ ଲିପ୍ସାର ଅନ୍ତ ନାହିଁ । ଧନପତି ଖୋଜୁଁଛି ପୁଣି ଧନ, ପ୍ରକୃତରେ ଧନୀ କିଏ ? ସୁଖୀ କିଏ ? ସବୁଠାରୁ ଅଳ୍ପରେ ଯିଏ ସନ୍ତୁଷ୍ଟ ହୋଇ ପାରିଲା ସେ ହିଁ ଶ୍ରେଷ୍ଠଧନୀ । ଦୁଃଖ, ଦୁର୍ଦ୍ଦଶାକୁ ଆଦରି ଯେ ମୁହଁରେ ହସ ଫୁଟାଇ ପାରିଲା, ସେ ହିଁ ପ୍ରକୃତରେ ସୁଖୀ । କିଛି ସମୟ ହେଲା ଶ୍ରାବଣୀ ଭୁଲି ଯାଇଥିଲା ତାର ସ୍ଥିତି, ତାର ଅବସ୍ଥା, ତାର ସତ୍ତା । ସନ୍ତୋଷର ସଂଜ୍ଞା ଅନୁଶୀଳନ କରୁଥିଲା ମନେ ମନେ । ତା ଭଳି ଏମିତି ଅନେକ ଦୁର୍ଭାଗାମାନେ ଦିନ ବିତଉଛନ୍ତି, ମରି ଯାଉ ନାହାନ୍ତି ସେମାନେ । ଯେ ମରିବାକୁ ଜାଣି ଜାଣି ନିମନ୍ତ୍ରଣ କରେ ସେ ଭୀରୁ କାପୁରୁଷ । କୋଟିଏ ଜନ୍ମ ପରେ ଗୋଟିଏ ମଣିଷ ଜୀବନ । ଦୁର୍ମୂଲ୍ୟ ଦୁର୍ଲ୍ଲଭ ! ଜୀବନକୁ ଦୁଃସହ ମଣି ନିଜକୁ ନାଶ କରିବା ଭୀରୁତା ; ତାକୁ କେଉଁ ପୁରରେ ସ୍ଥାନ ନାହିଁ । ଏମିତି ଏକୁଟିଆ ବେଳେ ଅନେକ ବାର ଘଉଳିଆ ଭାବନା ମୁଣ୍ଡ ଭିତରେ ଜବରଦସ୍ତ ଗୁଣ୍ଡ ହେଉଛନ୍ତି । ଭାବି ଭାବି ମୁଣ୍ଡଟା ଭାରି ଲାଗୁଛି । ଦୁର୍ବହ ।

ନିସ୍ତେଜ ହୋଇ ବସି ପଡ଼ିଲା । ଦେହଟି ଭୂଇଁରେ ଲୋଟି ପଡ଼ିଲା ସେଇମାନଙ୍କ ଭଳି, ଯେଉଁମାନଙ୍କ ବିଷୟରେ ଅଳ୍ପ ସମୟ ପୂର୍ବେ ଅନେକ ଚିନ୍ତା ରଚନା କରି ଯାଇଥିଲା । ସମଦଶା ଭୋଗୁଥିବା ଲୋକକୁ ଦେଖିଲେ ଯେମିତି ସ୍ୱତଃ ସାନ୍ତ୍ୱନା ଜାତହୁଏ, ସହରର ଦାରିଦ୍ର୍ୟ ରୂପକୁ ଦେଖି ଶ୍ରାବଣୀ ନିଜକୁ ସାମାନ୍ୟ ହାଲୁକା ଅନୁଭବ କରିଥିଲା କିଛିକ୍ଷଣ ଓ ସେଇ ଅବସରରେ ତା'ର ଆଖି ବୁଜି ହୋଇ ପଡ଼ିଥିଲା । ନିଦ । ●●●



Digitized by PPRACHIN, SOA

ଦେବକାନ୍ତ ଦିନସାରା ପୋଲିସ ଧଡ଼ା ଭିତରେ ରହିଥିଲା । ତା' ପରେ ତାକୁ ରେଲ ବିଭାଗ ଫାଣ୍ଡିକୁ ଅଣାଯାଇଥିଲା—ଅଧିକ ଜେଲ ଏବଂ ଜୋରିମାନାରେ ଦଣ୍ଡିତ କରିବା ପାଇଁ । ଖାଇବାକୁ କିଛି ମିଳି ନଥିଲା ଧଡ଼ା ଭିତରେ । ପେଟର ଜ୍ୱାଳାରେ ଅତିଷ୍ଠ ହେବାରୁ ସହବାସୀ କଏଦୀ ଜଣକୁ ବିକଳ ହୋଇ କହିଥିଲା—'ଦି' ଦିନ ହେଲା ପେଟରେ କିଛି ଆହାର ପଡ଼ିନି । ଭୋକରେ ଧଇଁ ପେ଼ଛି, କଥା କହିବାକୁ ବଳ ପାଉନି । ଯଦି କିଛି ଦେଇ ପାରନ୍ତ ମୁଁ ଦିନେ ନା ଦିନେ ଉପକାର ସୁଝନ୍ତି ।

କାହା ଆଗରେ ହାତ ପତେଇବା ତା'ର ରୁଚି ବିରୁଦ୍ଧ । ଅସୁବିଧାରେ ପଡ଼ି ଭିକ୍ଷା ମାଗୁଛି । ଅଭାବରେ ସ୍ୱଭାବ ନଷ୍ଟ ହେଉଛି । ଏମିତି ଅସୁବିଧାରେ ପଡ଼ି ଭଗବାନ କୁଆଡ଼େ ଗଧପାଦ ଧରିଲେ । ପେଟର ପ୍ରକୋପ ସମ୍ଭାଳିବ କିଏ ?

ଏଠି କଏଦୀ ଖାନାରେ କିଏ କାହାକୁ ଖାଦ୍ୟ ଦେବ ? କିଏ ବା ତା ପାଇଁ ଖାଦ୍ୟ ସାଇତି ଥୋଇଛି ଶ୍ୱଶୁରଘରଯ ଭଳି । ତା'ର ଏ କରୁଣ ନିବେଦନ ଗୋଟାଏ ଠିକ୍ ଅରଣ୍ୟ ରୋଦନ ଭଳି ।

ଗୋଟାଏ ଶସ୍ତା ହସ ହସି ସହବାସୀ କଏଦୀ ଜଣକ ପକେଟରୁ ଖଣ୍ଡିଆ ବିଡ଼ିଟାଏ ଆଣି ଓଠରେ ରଖିଲା ଏବଂ ଦିଆସିଲି କାଠି ଜଳାଇ ଅଧାଖିଆ ବିଡ଼ିରେ ଅଗ୍ନି ସଂଯୋଗ କଲା । ବିଡ଼ିଟିକୁ ଜୋରକରି ପୁଣେ ଟାଣି ଧୂଆଁତକ ଢୋକିବା ଅବସରରେ କାଶି କାଶି କହିଲା, କହିବୁତ ବିଡ଼ିଟେ ଦେଇପାରେ ।

ବିଡି ! ବିଡ଼ି କ'ଣ ପେଟର ଦାଉ ସମ୍ଭାଳି ପାରେ ? ଜୀବନରେ ପାନ ଖଣ୍ଡେ ଖାଇବାକୁ କୁଣ୍ଠିତ ହୋଇଛି । ସ୍ୱାସ୍ଥ୍ୟର ନିୟମ ପାଳନ କରି ଆସିଛି । ବସ୍‌ରେ ଯାତ୍ରା କଲାବେଳେ କିମ୍ବା ସିନେମା ହଲ ଭିତରେ



Digitized by PPRACHIN, SOA

ସ୍ପଷ୍ଟ ନିଷେଧାଜ୍ଞା ସତ୍ତ୍ୱେ ଯେଉଁମାନେ ବିଡ଼ି ବା ସିଗ୍ରେଟ୍ ଟାଣନ୍ତି, ସେମାନଙ୍କୁ ସେ ତଉଟି ଗ୍ଭହେଁ, ଘୃଣା ଚକ୍ଷୁରେ ଦେଖେ । କିନ୍ତୁ ବର୍ତ୍ତମାନ ? ଦୋଷୀ ସାବ୍ୟସ୍ତ ସହବାସୀ ଜଣକ ବିଡ଼ିଟିଏ ଯାଚୁଛି । ବିଡ଼ି ବୋଧେ ଏ ମାନଙ୍କ ଆହାର । କ'ଣ ମାଦକତା ଏଥିରେ ଭରି ରହିଛି ? ଏମିତି ବେପରୁଆ ଲଗାମଛଡ଼ା ଜୀବନରେ ବିଡ଼ି କ'ଣ ଏକ ଆବଶ୍ୟକୀୟ ପଦାର୍ଥ ? ପଇସା ବାଲାଙ୍କ ପାଇଁ ସିଗାରେଟ୍ ଅନ୍ତ ଆୟକାରୀ ଏବଂ ତଳିଆ ଲୋକଙ୍କ ପାଇଁ ବିଡ଼ି । ବିଡ଼ି ସିଗାରେଟ୍ ଏକ କଥା, ଦୁଇ ଭାଇ, ଉଭୟେ ମାଦକଦ୍ରବ୍ୟ କୁ–ଅଭ୍ୟାସରେ ଗଣା । ଥରେ ଅଭ୍ୟାସର ବଶବର୍ତ୍ତୀ ହେଲେ, ସେ ଆଉ ଛାଡ଼େନି, ସର୍ବସ୍ୱାନ୍ତ କରେ, ଜୀବନ ଶୋଷେ । ତଥାପି ଜାଣି ନ ଜାଣିଲା ପରି ମଣିଷ ତା'ରି ପଛରେ ଧାଏଁ, ପତଙ୍ଗ ନିଆଁ ଚତୁର୍ଦ୍ଦିଗରେ ଘୂରିଲା ଭଳି ଯଦିଚ ସେ ନିଆଁରେ ଜଳିଯାଏ । ଜୀବମାନଙ୍କର ଚରିତ୍ର ଅଦ୍ଭୁତ ।

ପୁଣି ଚିଗୁଲେଇ ହୋଇ ବେପରୁଆ ଢଙ୍ଗରେ ସହବାସୀ ଯୁବକ କହିଲା–ମୋ କଥା ମାନେ କହୁଛି, ଖଣ୍ଡେ ବିଡ଼ି ଟାଣି ଦେ, ଦେଖିବୁ କେମିତି ମଜା ଲାଗିବ । ଏତ ଖାଲି ବିଡ଼ି ନୁହେଁ, ଯା' ଭିତରେ ମହାଦେବଙ୍କ ଭୋଗ ଅଛି, ପୁତାଏ ଟାଣି ଦେଖ, କେମିତି ଲାଗିବ କହିବୁ, ଜେଲ ଯନ୍ତ୍ରଣା ଦେହକୁ ବାଧିବନି । ଯେତ ଭାଇ ଆମ ଦରିଦ୍ର ଲୋକଙ୍କ ପାଇଁ ମହୌଷଧି, ଏକଦମ୍ ଗରୀବ ବ୍ରାଣ୍ଡ, ନେ ଥରେ ଚାଖ ...

ବିପୁଳା ଧୂଆଁ ଢୋକି ବାକୀଟକ କୁଣ୍ଡଳାକାରରେ ପାଟିରୁ ଛାଡ଼ିଲା । ଦେବକାନ୍ତ ବୋକାଭଳି ଅନେଇ ରହିଥାଏ ।

ସ୍ୱାସ୍ଥ୍ୟବାନ ଭେଣ୍ଡାଟିଏ । ହୁଏତ ଦେବକାନ୍ତର ବୟସ ହେବ । କୁର୍ତ୍ତାକୁ ଇନ୍‌କରି ପିନ୍ଧିଛି । ମୁଣ୍ଡରେ ଗୋଛେ କୁଞ୍ଚବାଳ । କାମିଜର ଉପରଆଡୁ ଛାତିପାଖ ବୋତାମ ଦୁଇଟି ଖୋଲା, ଚଉଡ଼ା ଛାତିର କିଛି ଅଂଶ ଦିଶୁଛି । ବେକରେ ସୁନେଲୀ ରଙ୍ଗର ଚେନ୍‌ଟିଏ, ସୁନା ନୁହେଁ । ତା' ହାବଭାବ ଓ ଚେହେରାରୁ ମନେ ହେଉଥିଲା, ସେ ଯେମିତି ଜେଲ କର୍ତ୍ତୃପକ୍ଷଙ୍କ ଦଣ୍ଡାଦେଶ ପାଇଁ ଆଦୌ ଚିନ୍ତିତ ନ ଥିଲା । ଏମିତି କାରବାରରେ ଅଭ୍ୟସ୍ତ ।



Digitized by PPRACHIN, SOA

ଦେବକାନ୍ତ ଅନୁନୟ ହୋଇ କହିଲ—ମୁହଁ ଖୋଲିବା ଠିକ ନୁହଁ ମୁଁ । କେବଳ ଘୋର ଅସୁବିଧାରେ ପଡ଼ି କହୁଥିଲି । କା' ଆଗେ କହିବି ମୋ ଦୁଃଖ ? କେହି ଶୁଣିବାକୁ ପ୍ରସ୍ତୁତ ନୁହନ୍ତି । ଦୁର୍ଯୋଗ ମୋତେ କେଉଁଠୁ ଆଣି କେଉଁଠି କଲଣି । ଆସିଥିଲି କେଉଁ ଉଦ୍ଦେଶ୍ୟରେ, ଘଟଣା ହେଲଣି କେଉଁ ପ୍ରକାରର !

ଯୁବକ ମନରେ ଦେବକାନ୍ତ ପ୍ରତି କରୁଣା ଭାବ । ନୂଆ ମୁହଁଟିଏ, ବୋଧହୁଏ ପ୍ରଥମ ଥର ପାଇଁ ଧନ୍ଦାରେ ପଶିଛି । ତେଣୁ ସହାନୁଭୂତିପୂର୍ଣ୍ଣ ଗଳାରେ କହିଲ—ତେବେ ଅପେକ୍ଷା କର ଟିକିଏ । ହେଇଟି ଫାଟକ ଖୋଲି ବାବୁ ଆସୁଛି ସିପେହି ଭାଇ । ଏମିତି କାରବାର ଦ୍ୱାର ଚିହ୍ନା ହୋଇ ଗଲଣି । 'ଗରୀବ ବ୍ରାଣ୍ଡର' କରମତି ତୁ ଜାଣୁନା । ତାକୁଇ କହିଲେ କାମଟି ହୋଇଯିବ ।

ଏହାକହି ପକେଟରୁ ବିଡ଼ି କଠାଟି ବାହାରକଲ । ସିପେହୀ ଫାଟକ ପାଖକୁ ଆସିଲ ମାତ୍ରେ ତାକୁ ସଲମଟିଏ କରି ବିନା କଥାବାର୍ତ୍ତାରେ ଗରିବ ବ୍ରାଣ୍ଡରୁ ଖଣ୍ଡିଏ ବଢେଇ ଦେଲ । ଆଡ଼େ ସାଡ଼େ ଟିକିଏ ମୁହଁ ବୁଲେଇ ଚୁଟ୍‌କିନା ବିଡ଼ିଟିକୁ ସିପେହୀ ଧରି ନେଲ । ଏତିକି ବେଳେ ତା' କାନରେ ଫୁସ୍ ଫୁସ୍ କରି ତରତରରେ କଅଣ କହିଦେଲ ଏବଂ ତା' ହାତରେ କେତୋଟି ପଇସା ଗୁଞ୍ଜି ଦେଲ ।

ଆଶ୍ଚର୍ଯ୍ୟର ସୀମା ରହିଲ ନାହିଁ । ସଙ୍ଗେ ସଙ୍ଗେ ବାରମଜାର ଠୁଙ୍ଗାଟିଏ । ନିଃସଙ୍କୋଚରେ ଦେବକାନ୍ତ ସେ ଗୁଡ଼ିକୁ ଉଦରସ୍ଥ କଲ । ଅଧ ସୁରେଇଏ ପାଣିପିଇ ଭେକ ଶୋଷ ଦୂରକଲ । ପ୍ରାଣରେ ପିଣ୍ଡ ପ୍ରବେଶ କଲ ପରି ଲାଗିଲା ତାକୁ । ମନେ ମନେ ଅନେକ ତାରିଫ କଲା ସହଯୋଗୀ ବନ୍ଧୁକୁ । ବନ୍ଧୁ ନୁହେଁତ ଆଉ କ'ଣ ? ଏଇମାନେହିଁ ଜୀବନର ପ୍ରକୃତ ବନ୍ଧୁ । ବିନା ପରିଚୟରେ ପରର ଦୁଃଖ ଯେ ବୁଝିପାରେ ସେହିଁ ବନ୍ଧୁ, ଯାହାର ହୃଦୟ ଅଛି ସେ ମହାନ୍ ।



Digitized by PPRACHIN, SOA

ସକାଳର ତିକ୍ତ ଅନୁଭୂତି । ପୁସ୍ତକ ବିକ୍ରେତାଙ୍କୁ କେତେ ନେହୁର ହୋଇ କେତେଖଣ୍ଡି ବହି, ପତ୍ରିକା ବା ସମ୍ବାଦପତ୍ର ଧାରସୂତ୍ରରେ ଆଣି ବିକିବା ପାଇଁ ଅନୁରୋଧ କରି ନ ଥିଲା ! କିନ୍ତୁ ଅନୁନୟ ତାର ପ୍ରତି ବଦଳରେ ସେ ପାଇଥିଲା ଆକ୍ଷେପୋକ୍ତି, କେତୋଟି ତୀକ୍ଷ୍ଣ କଟୂକ୍ତି । ବହି ବାଲାର ସିନା ହୃଦୟ ନ ଥିଲା, ଅବିଶ୍ୱାସର ନାଗଫେଣୀ କଣ୍ଟାରେ ତା' ମନଥିଲା କଣ୍ଟକିତ, ବିଷାକ୍ତ; କିନ୍ତୁ ଜଣେ ଆଇନ-ଭଙ୍ଗକାରୀ ଅଭିଯୁକ୍ତ ଆସାମୀର ହୃଦୟ ଥାଇପାରେ, ଦେବକାନ୍ତ ଆଶା କରି ନ ଥିଲା ।

ତା ନାଁ, ଠିକଣା ପଚାରିବା ପାଇଁ ଦେବକାନ୍ତର ଇଚ୍ଛା ହେଉଥିଲା । କିନ୍ତୁ ଲାଭ କ'ଣ ? ଆଉ ଭବିଷ୍ୟତରେ ତା' ସହିତ ଦେଖା ହେବାର ଆଦୌ ଆଶାନାହିଁ । ଉଭୟଙ୍କର ଉଦ୍ଦେଶ୍ୟ ଭିନ୍ନ, ସମ୍ପୂର୍ଣ୍ଣ ପୃଥକ୍ । ମୁହଁରେ ଧନ୍ୟବାଦ ନ ଦେଇ, ଦେଇଥିଲା ମନରେ ।

ଏମାନଙ୍କର କିଛି ଦୋଷ ନାହିଁ । ଦୋଷ ପରିସ୍ଥିତିର । ବହୁ ବାଳୁତମାନେ ଶିକ୍ଷା, ସଂସାର ଅଭାବରୁ ପରିସ୍ଥିତିର ବାଧ୍ୟତା ଯୋଗୁଁ ଅସମାଜିକ ପଥ ଆଦରି ନେଇଛନ୍ତି । ଏମିତି ଅନେକ ହୃଦୟବାନ ବ୍ୟକ୍ତି, ଯୁବକ କେବଳ ଘଟଣାଚକ୍ରରେ ପଡ଼ି ଗୌରବ ନଷ୍ଟ କରନ୍ତି । ଏ ଯୁବକ ଜଣକ କେବଳ ଗୁଜୁରାଣ ମେଣ୍ଟାଇବା ପାଇଁ ଧନ୍ଦାଟିଏ ଧରିଛି । କେବଳ ଠାଉକା, ଛୋଟ ଚୋର । କେଉଁଠି କେତେବେଳେ ସୁବିଧା ପାଇଲେ ଯାତ୍ରୀର ଅସାବଧାନତାର ସୁଯୋଗ ନେଇ ଜିନିଷଟାଏ ଉଠାଇ ଆଣେ । ଅବା ତା'ର ଅଲକ୍ଷ୍ୟରେ ପକେଟରୁ ଅର୍ଥ ହରଣଗ୍ରହଣ କରିନିଏ । ଧରା ପଡ଼ିଲେ ପିଠିକୁ ପକେଇ ଗାଇକୁ ପ୍ରସ୍ତୁତ ରଖିଥାଏ । ଅପରାଧ ଗର୍ହିତ ନ ହେଲେ ମଧ୍ୟ ଅପରାଧୀ । ଦେହ କୁଣ୍ଡିଆରୁ ଯାଦୁ, ଯାଦୁରୁ ମହା ବେମାରୀ ବ୍ୟାଧିଲା ଭଳି ଅପରାଧ କ୍ରମେ ବଢିଗଲେ ଛୋଟ ଚୋରରୁ ମହାଚୋର ଆଖ୍ୟା ଅର୍ଜନ୍ତି । ଆଇନ ଆଖିରେ ଦାଗୀ ସମାଜ ଆଖିରେ ଅସାମାଜିକ । ଏମାନଙ୍କ କଥା ବିଚାରୁଛି କିଏ ? ଚୋରବୃତ୍ତିର କାରଣ ଏବଂ ନିରାକରଣ, ସମସ୍ୟା ଏବଂ ସମାଧାନର ପନ୍ଥା ଅନେକବାର ଦେବକାନ୍ତ ମସ୍ତିଷ୍କକୁ ଆକ୍ରାନ୍ତ କରୁଛି ।



Digitized by PPRACHIN, SOA

ଏହିପରି ଜଣେ ଠାଉକା ଚୋର ଟ୍ରେନ୍‌ରୁ ତାର ସୁଟ୍‌କେଶଟି ଉଠେଇ ନେଇ ତା ବିପତ୍ତିକୁ ବଢାଇ ଦେଇଛି । ଏ ପର୍ଯ୍ୟନ୍ତ ଏପରି ଚୋରମାନଙ୍କ ଚଉଦ ପୁରୁଷ ଉଦ୍ଧାର କରୁଥିଲା, ବିଷୋଦ୍‌ଗାର କରୁଥିଲା, କିନ୍ତୁ ପୁଲିସ ଧଡ଼ା ଭିତରେ ଯୁବ ଆସାମୀ ସହିତ ଅଳ୍ପ ସମୟ ସଂସ୍ପର୍ଶ ତାର ମତ ପରିବର୍ତ୍ତନ କରି ପାରିଛି । ଯୁବକର ନା ହୁଏତ ଭୁଲି ଯାଇପାରେ, କିନ୍ତୁ ତାର ଛବି ଜୀବନ ସାରା ଦେବକାନ୍ତ ମନରେ ରେଖାଙ୍କିତ ହୋଇ ରହିବ ... ।

ଅଦାଲତକୁ ଚାଲାଣ ହେବାପାଇଁ ନିର୍ଦ୍ଦେଶ ଆସିଲା । ପହିଲେ ଜଣେ ସବ୍‌ଇନ୍‌ସ୍ପେକ୍ଟର ତା ବିରୁଦ୍ଧରେ ଥିବା ଅଭିଯୋଗକୁ ତଦନ୍ତ କଲେ । ଦେବକାନ୍ତ ଚୋରି କରିନି ବା ପକେଟ୍‌ମାରୁ ନୁହେଁ । ତେଣୁ ତାକୁ ସରଳ ଭାବେ ଜେରା କଲେ—ବିନା ଟିକଟରେ ରେଳଯାତ୍ରା କରିବା ବେଆଇନ୍, ଏଥିପାଇଁ ତିନିଶହ ଟଙ୍କା ଜୋରିମାନା ଅଥବା ଜେଲ ଦଣ୍ଡ । ଜାଣିଛୁ ତ ? କେଉଁଠୁ ଆସିଲୁ ?

: ଖୋର୍ଦ୍ଧା ରୋଡ଼ରୁ । ମୋର ଟିକଟ ଥିଲା, ଚୋରି ହୋଇଯାଇଛି ।

: ପୋଲିସରେ ଖବର ଦେଇଥିଲୁ ?

: ନାଇଁ ଆଜ୍ଞା, ସମୟ ପାଇନାହିଁ । ମୋ ସ୍ତ୍ରୀ ବାଟରେ ହଜି ଯାଇଛି । ତାକୁ ଖୋଜୁଥିଲି ।

: ଗୋଟିଏ ବୁଡ଼ୁବକ୍ କେଉଁଠିକାର । ଏ ପର୍ଯ୍ୟନ୍ତ ପୋଲିସରେ ଏତାଲା ନଦେଇ କ'ଣ କରୁଥିଲୁ ?

: ତୋ ସ୍ତ୍ରୀତ ବାଟରେ ହଜିଲା । ଏଠି କ'ଣ କରୁଥିଲୁ ?

: ସେ କଲିକତା ଆସିଛି ।



Digitized by PPRACHIN, SOA

: ଗୋଟାଏ ନିର୍ଘାତ ବୋକା ଲୋକଟା ନା କ'ଣ ? ଯାଆବେ ଲାଲ ବଜାର ପୋ:ଲିସ ଷ୍ଟେସନ । ସେଠି ମିସିଙ୍ଗ୍ ସ୍କ୍ୱାଡ୍‌ରେ ଖବର ଦେବୁ । ଜଲ୍‌ଦି ଯା!' । ଏମିତି ବୁଦ୍ଧୁ, ମୂର୍ଖ ଲୋକ ମୁଁ କେଉଁଠି ଦେଖୁନି ।

ପୁଣି ସାମାନ୍ୟ ଦୟାର୍ଦ୍ର କଣ୍ଠରେ ପୁଲିସ ବାବୁ କହିଲେ–ବର୍ତ୍ତମାନ ତୁ ଏଠୁ ୨୨–୩।୪୪୧ ନମ୍ବରକୁ ଡାଏଲ କରିପାରୁ ।

ଫୋନ୍ ! କିଏ ତାକୁ ଚିହ୍ନେ ? କିଏ ଶୁଣିବ ତା ଗୁହାରୀ ଏ ବିଜର୍ଘିତ ମୁହୂର୍ତ୍ତରେ ! ଏମିତି ଅନେକ ଫୋନ୍ ବାର୍ତ୍ତା ସେମାନଙ୍କ ପାଖେ ପ୍ରତିକ୍ଷଣରେ ପହଞ୍ଚୁଥିବ । ଯଦି ଫୋନ୍ ମାଧ୍ୟମରେ ହଜିଲା ବ୍ୟକ୍ତିମାନେ ମିଳି ଯାଉଥାନ୍ତେ, ଦୁଃଖ ରହନ୍ତା ନାହିଁ ।

: ଭାବୁଛୁ କ'ଣ ?

: ନାଇଁ ଆଜ୍ଞା । ମୋ କଥା ଶୁଣିବ କିଏ ?

: ତେବେ ଶୀଘ୍ର ଏଠୁ ଯା । ବ୍ୟକ୍ତିଗତ ଭାବେ ସେଠି ରିପୋର୍ଟ କରିବୁ ।

ପୁଲିସବାବୁଙ୍କ ସମୟୋଚିତ ଆଦେଶ, ଉପଦେଶ ପାଇଁ ଦେବକାନ୍ତ ଧନ୍ୟବାଦଟିଏ ଉଚ୍ଚାରଣ କରିବାକୁ ଉଦ୍ୟତ ହେଉଥିଲା, କିନ୍ତୁ ତାର ସାହସ ଅଣ୍ଟିଲା ନାହିଁ । ଧନ୍ୟବାଦ ତଣ୍ଟିରେ ଅଟକି ଗଲା । ବାବୁଭୟା ଲୋକ, ମିଜାଜୀ ମଣିଷ । ଯଦି ସୌଜନ୍ୟ–ଶିଷ୍ଟାଗ୍ରର ବେହିଆମିରେ ପରିଣତ ହୁଏ ? କିଏ ଏତେ କଥା କହିପାରେ ? ଅତଏବ ସେ ମଉନ ରହିଲା । ଶିକ୍ଷାଗତ ଭଦ୍ରାମି ମନରେ ଚହଲୁଥିଲା ।

ପୁଲିସ ବାବୁଙ୍କ ଚେତାବନୀରେ ଦେବକାନ୍ତ ମୁଣ୍ଡରେ ଚେତା ପଶିଲା । ସତେ ତ, ପୋଲିସରେ ଘଟଣାଟି ନ ଜଣାଇ ସେ ଭୁଆଁ



Digitized by PPRACHIN, SOA

ବୁଲୁଛି । ଭୁଲ କରିଛି । ନିଖୋଜ ବ୍ୟକ୍ତିମାନଙ୍କ ସନ୍ଧାନ ନେବା ପାଇଁ ପୋଲିସ ଅନୁଷ୍ଠାନର ସ୍ୱତନ୍ତ୍ର ସଂସ୍ଥା ଅଛି, ଏକଥା ତାକୁ ମାଲୁମ ନଥିଲା । ଆଉ କାଳବିଳମ୍ବ ନକରି ସେ ଯିବ ଲାଲବଜାରସ୍ଥିତ ପୋଲିସ କାର୍ଯ୍ୟାଳୟକୁ । ସେଠି ମିସିଙ୍ଗ୍ ସ୍କ୍ୱାଡ୍‌ରେ ଶ୍ରାବଣୀର ନିଖୋଜ ସମ୍ବାଦ ଲିଖିତାକାରରେ ଦେବ, ସରକାରୀ ସଂସ୍ଥାର ସହାୟତା ଲୋଡ଼ିବ । ଲୋକମାନଙ୍କ ଦୁଃଖ ଦୂର କରିବା ପାଇଁ ସରକାର ଏମିତି ଅନେକ ବ୍ୟବସ୍ଥା ମେଲିଛନ୍ତି । ତାର ସୁଯୋଗ ସେ ନ ନେବ କାହିଁକି ?

ବିନା ଟିକଟରେ ରେଳଯାତ୍ରାଜନିତ ଅଭିଯୋଗରୁ ମୁକ୍ତ ହୋଇ ସେ ପ୍ରବେଶ କଲା ପ୍ରକୃତ କଲିକତା ସହର ଭିତରକୁ ଲାଲବଜାର ଅଭିମୁଖେ । ସହର ଉପରେ ସନ୍ଧ୍ୟା ନଇଁ ଆସୁଥିଲା । ତିନିଦିନ ହେବ ହାବଡ଼ା ପ୍ଲାଟଫର୍ମ ଭିତରେ ମନଟା ରୁନ୍ଧି ହୋଇ ଯାଉଥିଲା । ବାହାରକୁ ଆସି ସେ ଗୋଟାଏ ମୋଟା ନିଃଶ୍ୱାସ ମାରିଲା । ପୋଲିସ ସହାୟତାରେ ତା ଅଙ୍କଲକ୍ଷ୍ମୀକୁ ଏଥର ଖୋଜି ପାଇବାରେ ବିଶେଷ କଷ୍ଟ ହେବନାହିଁ ।

କଲିକତା ନଗରୀ ଏଇଠୁ ବିପୁଳାକାରରେ ବିସ୍ତୃତ । ସମ୍ମୁଖରେ ଛିଡ଼ା ହୋଇଛି ଦୋଳାୟମାନ ଉଦ୍‌ଭନ୍ତା ପୋଲ । କେଉ ଇଂରେଜ ଶାସନ ଅମଳରେ ୨୧୫୦ ଫୁଟ ଲମ୍ବ ଲଣ୍ଡନର ବ୍ରିଟନ୍ କମ୍ପାନୀ ଦ୍ୱାରା କେବଳ ଲୌହରେ ନିର୍ମିତ ହୋଇଥିଲା । ଆଜି ବି ଏହା ସୁରକ୍ଷିତ ଅଛି । କଲିକତା ସହରକୁ ବାହ୍ୟ-ଜଗତ ସହିତ ସଂଯୋଗ କରୁଛି ଏଇ ଓସାରିଆ ପୋଲଟି । ଅସଂଖ୍ୟ କାର୍, ଟ୍ୟାକ୍‌ସି, ବସ୍, ଟ୍ରାମ୍ ପୋଲ ଉପରେ ପ୍ରବଳ ବେଗରେ ଧାବମାନ ।

ଦେବକାନ୍ତ ଧୀରେ ଧୀରେ ଅଗ୍ରସର ହେଲା ସହର ଭିତରକୁ । ପଦଗ୍ରାହୀକୁ ପଚାରି ବୁଝିନେଲା ଲାଲବଜାର କାର୍ଯ୍ୟାଳୟର ଠିକଣା । ହାବଡ଼ା ପରେ ବ୍ରାବନ୍ ଗେଡ଼ । ତା ପରେ ବେଣ୍ଟିକ୍ ଷ୍ଟ୍ରିଟ୍, ରବୀନ୍ଦ୍ର ସରଣୀର ପ୍ରାରମ୍ଭରେ ଲାଲବଜାର ଥାନା । ଏଠି ପୋଲିସ କମିସନରଙ୍କ ମୁଖ୍ୟ ଦପ୍ତର ।



Digitized by PPRACHIN, SOA

ଦେବକାନ୍ତ ସେଠାକୁ ଗଲା । ପାଞ୍ଚ ମହଲା ବିଶିଷ୍ଟ ପୁରୁଣା କୋଠାଘର । ଏହି କେନ୍ଦ୍ରରୁ ସହରର ପୋଲିସ ବ୍ୟବସ୍ଥାକୁ ନିୟନ୍ତ୍ରଣ କରଯାଏ । ଦପ୍ତରର ମୁଖ୍ୟ ଫାଟକ ପାଖେ ଠିଆହୋଇ ପ୍ରକାଣ୍ଡ ଅଫିସକୁ ଲକ୍ଷ୍ୟ କଲା । କେତୁଟା ୟୁନିଫର୍ମ ପିନ୍ଧା ଦାରୋଗା ପିଣ୍ଡାରେ ଟହଲ ମାରୁଥିଲେ ।

: କିଏରେ ଏତେ ରାତିରେ ?

ଅତି ନଇଁ ସଇଁ ହୋଇ ଦେବକାନ୍ତ ଜଣକୁ ନିଜର ଅଭିପ୍ରାୟ ଜଣାଇଲା ।

: ଅପେକ୍ଷା କର ।

ଟିକେ ବାଦେ ଭିତରୁ ହାବିଲଦାରଙ୍କ ଠାରୁ ଡକରା ଆସିଲା ।

ହାବିଲଦାର ବାବୁ କାଗଜରେ କ'ଣ ରମାରମି କରୁଥିଲେ । ଦେବକାନ୍ତ ମୁଣ୍ଡ ନୁଆଁଇ ଦଣ୍ଡବତ କଲା । ଦୃଷ୍ଟି ଉପରକୁ କରି ହାବିଲଦାର ବାବୁ ପଚାରିଲେ -କ'ଣ କାମ ?

ନମ୍ରତାର ସହିତ କହିଲା—ମୋର ସ୍ତ୍ରୀ ହଜି ଯାଇଛି ।

ହାବିଲଦାର ବାବୁଙ୍କ ମୁହଁରେ ତାଚ୍ଛଲ୍ୟ—ମୁଁ ଭାବିଥିଲି, ଗୋଟାଏ ମସ୍ତବଡ଼ କାଣ୍ଡ ଘଟି ଯାଇଛି, ସେଇଥିପାଇଁ ଏଠିକୁ ଧାଇଁ ଆସିଲୁ ।

ପଡୁଆ ପିଲା ଦେବକାନ୍ତ । ହାବିଲଦାର ବାବୁଙ୍କ ତାଚ୍ଛଲ୍ୟ ବୁଝିବାକୁ ଡେରି ଲାଗି ନଥିଲା ତାକୁ । ତା ଅଭିଯୋଗଟି ସେମାନଙ୍କ ଆଖିରେ ସେତେ ଗୁରୁତର ନୁହେଁ । ଖୁବ୍ ମାମୁଲି । ଏଇ କ୍ଷୁଦ୍ର କ୍ଷୁଦ୍ର ଘଟଣାକୁ ତଦନ୍ତ କରିବାକୁ ପୋଲିସ୍‌ର ବେଳ କାହିଁ ?



Digitized by PPRACHIN, SOA

ହାବିଲଦାର ମୁହଁରେ ବିରକ୍ତିର ଚିହ୍ନ । ଗ୍ରେରି ଡ଼କାୟତି, ନରହତ୍ୟା, ଗଣଧର୍ଷଣ ଆଦି ବଡ଼ ବଡ଼ ଅପରାଧ ପ୍ରତି ଦୃଷ୍ଟି ଦେବାକୁ ଆମକୁ ବେଳ ନାହିଁ । ତୋ ମାଇପ ଗ୍ଲେରକୁ ଧରିବାକୁ ଆମେ ଭଣ୍ଡି ବସିଛୁ ? ଧେତ୍ ଚେରିକା ... ମଫସଲି କେଉଁଠିକାର ... ।

ଦେବକାନ୍ତ ପୂର୍ବ ଭଳି ମୁଖାବନତ କରି ଛିଡ଼ାହୋଇ ରହିଥିଲା ! କ'ଣ ପୁଣି କହିବ ? ବଡ଼ ଆଶା ଘେନି ଆସିଥିଲା । ପୋଲିସ ନିଶ୍ଚୟ ସାହାଯ୍ୟ କରିବ । ପୋଲିସର ଏତାଦୃଶ ରୁକ୍ଷତାରେ ତା'ର ଚିନ୍ତାଧାରା ଓଲଟ ପାଲଟ ହୋଇ ଯାଉଥିଲା । କ'ଣ କରିବ ତେବେ ? ଦେଖେ, ପୁଣିଥରେ କହେ । ସାହସ ସଞ୍ଚୟ କରି କହିଲା–ଘୋର ଅସୁବିଧାରେ ପଡ଼ିଛି ଆଜ୍ଞା । ଖୋର୍ଦ୍ଧା ରୋଡ଼ରୁ ଆମେ ଆସୁଥିଲୁ ଟ୍ରେନରେ । ଦୁର୍ଭାଗ୍ୟ ବଶତଃ ବାଟରେ ଅଲଗା ହୋଇ ଯାଇଛୁ । ଏଇ ସହର ଭିତରେ କେଉଁଠି ଅଛି । ଟିକେ ଦୟା କରନ୍ତେ ...

: ଆବେ ବୋକା, ତୋ ସ୍ତ୍ରୀକୁ ଆଉ କିଏ ନେଇ ରଖିଲା । ତା'ର ସିନା ସେଥିକି ମନ ଅଛି ବୋଲି ? ସିଏ ଯଦି ଆଉ କାହାକୁ ଧରିଲା, ତତେ କ'ଣ ଆଉ ମାଇପ ମିଳୁନି ? ଆବେ ମର୍ଦ୍ଦ ପିଲଟି ! କୋଉ ଥୋବରା ମୁହଁରେ ଏଠିକୁ ଆସିଛୁ ଅଭିଯୋଗ କରିବା ପାଇଁ ? ତତେ ଲଜ୍ଜା ନାହିଁ ? ମର୍ଦ୍ଦ ମୁହଁରେ ମାଇଚ୍ୟା କଥା ଶୋଭା ପାଏନି ।

କଥାଗୁଡ଼ିକ କଣ୍ଟାଭଳି ଦେବକାନ୍ତ ଦେହରେ ଗଳି ଯାଉଥିଲା । ଦୁଃଖ ଜଣେଇବାକୁ ଆସିନି ଯେ, ଠେସଣା ଶୁଣିବାକୁ ଆସିଛି । ତା କଟା ଘା'ରେ ଚୂନ । ଛୋଟ ହେଉବା ବଡ଼ ହେଉ ବିଗ୍ରର ଯୋଗ୍ୟ ହେଉବା ନ ହେଉ, ଅଭିଯୋଗ ଶୁଣିବାକୁ କାହାର ଧୈର୍ଯ୍ୟ ନାହିଁ । କର୍ଣ୍ଣପାତ କରିବାତ ଦୂରର କଥା, ସାମାନ୍ୟ ସହାନଭୂତି ଏମାନଙ୍କଠୁ ଆଶାକରିବା ଏ ଯୁଗରେ ନିଛକ ବୋକାମୀ । ନ ଶୁଣିଲ ନାହିଁ, ସେଥିପାଇଁ ତୁମର ବେଳ ନାହିଁ, ଦୁର୍ବ୍ୟବହାର କରି କଟୁକଥା କହିବା ଏମାନଙ୍କର ଅଧିକାର



Digitized by PPRACHIN, SOA

ନାହିଁ । ଶାସନଟା ଜଣ ସେଉଆ ? ସବୁଆଡ଼େ ନିର୍ଣ୍ଣୟତା । ଦାୟିତ୍ୱ ବୋଧତା ଦେଶରୁ ଲୋପ ପାଉଲାଣି । କା ଆଗେ ଗୋଚର କରିବ ? କିଏ ତା କଥା ଶୁଣିବ ? ଆଲୋ ସଖୀ, ଆପଣା ମହତ ଆପେ ରଖି ଚଳିବା ସାର । ନିଜ ଭଗ୍ୟ ଆଦରି ରହିବା କଥା ।

ଏଥର ଶ୍ରାବଣୀର ଅନ୍ୱେଷଣ ଭର ନିଜେ ହିଁ ନେବ । ପରକୁ କହି ଭଣ୍ଡିଆ ହେବା କଥା । ମନ ବିଷେଇ ଉଠୁଥିଲା । ଏଇ କେତୋଟି ଘଟଣାରୁ ତାର ଜୀବନାନୁଭୂତି ବ୍ୟାପକରୁ ବ୍ୟାପକତର ହେଉଥିଲା । ବିତୃଷ୍ଣା ଆଉ ଦୂରବସ୍ଥାକୁ ପିଠିରେ ଲଦି, ଅପମାନର ବୋଝକୁ ମୁଣ୍ଡରେ ବୋହି ଭଗ୍ୟର ନିର୍ଦ୍ଦେଶକୁ କୋଳରେ ଜାକି ଶ୍ରାବଣୀକୁ ଠାବ କରିବା ଛଡ଼ା ତା'ର ଅନ୍ୟ ଗତି ନାହିଁ । ପ୍ରତିକୂଳ ଘଟଣା ସହିତ ନିଜେ ହିଁ ଯୁଝିବି । କ୍ଷୁବ୍ଧ ମନୋଭବ, କ୍ଷୋଭ ଜର୍ଜରିତ ମୁହଁରେ ଦେବକାନ୍ତ ସହରର କେନ୍ଦ୍ରାଞ୍ଚଳ ଆଡ଼କୁ ମୁହାଁଇଲା ।

କିଳିକିଳିଆ ଯନ୍ତ୍ରଣାର ସ୍ୱର ଗୁଞ୍ଜରି ଉଠୁଥାଏ ଛାତିତଳୁ । ତାର ସ୍ନେହମୟୀ ଶ୍ରାବଣୀ, ତାର ପ୍ରାଣ ପ୍ରତିମା । କୁମାରୀତ୍ୱର ସମସ୍ତ ସମ୍ଭାର ଧରି ସେ ଦେବକାନ୍ତର ଘରଣୀ ହୋଇ ଆସିଥିଲା । ଷୋହଳ ବର୍ଷର ବଢ଼ିଲା ଝିଅ, ଝିଅ ନୁହଁଟ, ଚହଲା ପାଣିର ଢେଉ । ଢଳ ଢଳ ଯୌବନ, ଭସାଣିଆ ଆଖି, ସମୃଦ୍ଧ ବକ୍ଷ । ଦେହରେ ଆକର୍ଷଣ ଅଛି, ରୂପରେ ରଙ୍ଗ ଅଛି, ଓଠରେ ପ୍ରୀତି ପାଖୁଡ଼ା, ସାନ୍ନିଧ୍ୟରେ ଅମୃତ ଭରି ରହିଛି । ବିବାହ ପରେ କେଇ ଦିନପାଇଁ ଅମୃତ ସେ ଉପଭୋଗ କରିଛି, ଘଟଣାର ସାମାନ୍ୟ ଫୁତ୍କାରରେ ସବୁ ଓଲଟ ପାଲଟ ହୋଇ ଯାଇଛି । ଆଜି ନିର୍ମମ ଭବେ ତାଠୁ ଦୂରେଇ ରହି ସେ ଛଟ ପଟ ହେଉଛି । ବିଚ୍ଛେଦ-କାତର ମନ ଅଥୟ ହେଉଚି । ବିରହର ଜ୍ୱାଳା ଅସ୍ତବ୍ୟସ୍ତ କରୁଛି । ନିୟତି ଏମିତି ନିଷ୍ଠୁର ହେଲା କିମ୍ପାଇ ?

ଗୋଡ଼ ହାତର ନିସ୍ତେଜ ଅବସ୍ଥା । ପାଦ ଅଚଳ ପ୍ରାୟ । ଅବାଧ୍ୟ ପାଦକୁ ଘୋଷାରି ଘୋଷାରି ଦଉଡ଼ିଙ୍ଗା ମନରେ ଦେବକାନ୍ତ ରାସ୍ତାରେ ଗୁଲିଥିଲା । ଜୀବନ ପ୍ରତି ଅବଜ୍ଞାର ସ୍ୱର ବାଜି ଉଠୁଥିଲା । ଆଶଙ୍କାର



Digitized by PPRACHIN, SOA

ଢେଉ ମାଡ଼ି ଆସୁଥିଲା ସମୁଦ୍ରର ଉତାଳ ଲହରୀ ପରି, ଆଶା ଦୂରେଇ ଯାଉଥିଲା ଦୂର ଗଗନର ନିଷ୍ପ୍ରଭ ନକ୍ଷତ୍ର ଭଳି, ମନ ମଉଳି ଆସୁଥିଲା ଗଛଛିଣ୍ଡା ଫୁଲଟିଏ ଭଳି । କାଳ ଅନ୍ଧାର ଘୋଟି ଆସୁଥିଲା ସବୁଦିଗରୁ । ମୁଣ୍ଡରେ ଶ୍ରାବଣୀର ଚିନ୍ତା । ଭୟ କାତର ମନ ପ୍ରମାଦ ଗଣି ଗଣି ଚାଲିଥିଲା ।

ଫୁଟପାଥରୁ ପାଦ କେତେବେଳେ ଓହ୍ଲାଇ ଆସି ଓସାରିଆ ପକ୍କା ରାସ୍ତା ଉପରେ ଚାଲିଥିଲା ତାର ଖିଆଲ ନଥିଲା । ଦେହଥିଲା ଠାଏ, ମନ ଥିଲା ଠାଏ । ପଛଆଡୁ, ଆଗଆଡୁ ମଟରକାର ଗୁଡ଼ିକ ହଠାତ୍ ଗର୍ଜନ କରି ଉଠିଲେ । ବିପରୀତ ଦିଗରୁ ଟ୍ରାମ୍‌ଟାଏ ଦ୍ରୁତବେଗରେ ମାଡ଼ି ଆସୁଥିଲା । ଯାନମାନଙ୍କର ଚକ୍ରବ୍ୟୂହ ମଧ୍ୟରେ ଦେବକାନ୍ତ ରହି ଯାଇଥିଲା । ତାର ଆଖି ଡୋଳା ଯେମିତି ଓଲଟି ପଡ଼ିଲା । ଅନ୍ଧାର ଦିଶିଲା । ଦୈବାତ୍ କିଏ ଜଣେ ପଛଆଡୁ ଦୌଡ଼ି ଆସି ଜୋରରେ ଧକ୍‌କାମାରି ତାକୁ ରାସ୍ତାଚ୍ୟୁତ କଲା । ଘଣ୍ଟି ଟନ୍ ଟନ୍ କରି ଲୋକ ବୋଝେଇ ଟ୍ରାମ ତା ନିର୍ଦ୍ଦିଷ୍ଟ ପଥରେ ଚାଲିଯାଇଥିଲା । କାରବାଲା, ଟ୍ୟାକ୍‌ସି ବାଲା ସମବେତ ଭାବେ ଗର୍ଜି ଉଠିଥିଲେ । ସେମାନଙ୍କ ମୁହଁରେ ଗାଳି ଗୁଲଜ— ଶାଲା, ମରିବାକୁ ଇଛା ନା କ'ଣ ? ଚତୁର୍ଦ୍ଦିଗରୁ ଯାନମାନଙ୍କର ଜାମ୍ ବଢ଼ି ଯାଇଥିଲା ବହୁ ଗୁଣରେ । ମୁଣ୍ଡରେ ଚେତା ପଶିଲା । ତା ଅସାବଧାନତାର ଫଳ । ଅସାବଧାନତା ଏମିତି ବିପଦ ମୁହଁକୁ ଠେଲିଦିଏ । ସାମାନ୍ୟ ଅସାବଧାନତାର ପରିଣାମ ସେ ଭୋଗୁଛି । ଅଣୁ ପରିମାଣ ବରଗଛ ବୀଜରୁ ବୃହତ୍ ବୃକ୍ଷଟି ସୃଷ୍ଟି ହେଲା ଭଳି ରେଳ ଯାତ୍ରାରେ ଟିକିଏ ଅବହେଳା ବା ବେହୁସିଆରି କାମ ଯୋଗୁଁ ଆଜି ତା ବିବାହର ପ୍ରାକ୍‌କାଳରେ ଏତେବଡ଼ ଝଞ୍ଜା ଉପୁଜିଛି । ବର୍ତ୍ତମାନ ଗୋଟିଏ ବଡ଼ ଦୁର୍ଘଟଣାରୁ ରକ୍ଷାପାଇଛି, ମୃତ୍ୟୁର ନିକଟତମ ହୋଇ ନିଜେ ପୁଣି ଫେରିଆସିଛି, ଜୀବନ ଅନ୍ତତଃ ରକ୍ଷାପାଇଛି । ବଞ୍ଚି ରହିଥିଲେ ସିନା ସବୁ କରିବ, ଶ୍ରାବଣୀକୁ ପାଇବ, ଫେରିଯିବ ତା ସୁନା ସଂସାରକୁ । ବାପ, ମା, ଭଉଣୀ, ସ୍ତ୍ରୀ ମେଳରେ ନିଜକୁ ହଜାଇ ଦେବ । ପୋଡ଼ିଯାଉ ତାର ଚାକିରୀ ସଉକ, ଚୁଲିକୁ ଯାଉ ତାର ଶିକ୍ଷା । ଚାକିରୀ ଗୋଲାମୀ, ତାର ପାଖେ ମୁଣ୍ଡ ବିକି ସ୍ୱାଧୀନତା ବିନିମୟରେ ଅର୍ଥ ଭିଆଇବା ବୋକାମୀ । ଦେହରେ ବଳ ଥାଉ ଥାଉ ବେକାରୀ ଆଖ୍ୟା ମୁଣ୍ଡେଇବା ଦୁର୍ଭାଗ୍ୟ । ବାପର ଜମି ଅଛି । ସେଇ ଯଥେଷ୍ଟ । ପ୍ରକୃତିସ୍ଥ ହେଲା । ଦେବକାନ୍ତ ସମ୍ଭାଳି ନେଲା ନିଜକୁ କୌଣସି ମତେ । 



Digitized by PPRACHIN, SOA

ଶ୍ରାବଣୀର ନିଦ ଭାଙ୍ଗିଲା ବେଳକୁ ସହରୀ ସକାଳ ଅଳସ ଭାଙ୍ଗୁଥିଲା । ଆଖି ଆଗରେ ସହର, ପ୍ରାସାଦମାଳିନୀ ମହାନଗରୀର ନଭସ୍ପର୍ଶୀ ରୂପ । ଭୂଇଁରୁ ଫୁଟି ଗଗନକୁ ଛୁଇଁଛି କୋଠାବାଡ଼ି, ତହୁଁ ବଡା, ତହୁଁ ବଡ଼ା ଅଟ୍ଟାଳିକାପୁଞ୍ଜ । କିନ୍ତୁ ପ୍ରତି ମୁହୂର୍ତ୍ତରେ ସହରର ଭୀମକାନ୍ତ ଦୃଶ୍ୟ ତାକୁ ଦଂଶନ କରୁଥିଲା । ଶାଶୁଘରର ଛବି ବାରମ୍ବାର ମନଭିତରେ ନାଚି ଉଠୁଥିଲା । ଶାଶୁ ଘରେ ମାତ୍ର କେଇଟା ଦିନର ଅଭିଜ୍ଞତା । କେତେ ଆଦର, କେତେ ସ୍ନେହ । ସାଇ ପଡ଼ିଶା, ବନ୍ଧୁ ବାନ୍ଧବଙ୍କ ଶାଶୁ ଘରେ ଭିଡ଼ ଲାଗି ରହିଥିଲା । ଅଥଚ ତମାମ ପଗ୍ଣାର– ମାନପୁର ଗାଁ ବଡ଼ଘେନା ଘରର ଗୁଣର ବୋହୂ । ଗାଁ ମାଇପିଙ୍କ ବଡ଼ ବଡ଼ ଆଖି ଗୁଡ଼ିକ ତା' ଉପରେ ସ୍ଥିର ରହୁଥିଲା । ଲାଜେଇ ଯାଇ ସେ ଓଢ଼ଣାର ଆକାରକୁ ଆହୁରି ଅଧିକ କରୁଥିଲା । ଲାଜ ସରସର ମୁହଁକୁ ଯଥା ସମ୍ଭବ ତଳକୁ କରି ଅର୍ଦ୍ଧଚନ୍ଦ୍ର ଭଳି ଦେହକୁ ବଙ୍କେଇ ଠୁଙ୍କା ହୋଇ ମଶିଣା ଉପରେ ବସି ଗୁଆ କାଟୁଥିଲା, ଆଗନ୍ତୁକ ମାନଙ୍କ ପାଇଁ ପାନ ଭାଙ୍ଗୁଥିଲା । ଚୁପ୍ ଚୁପ୍‌ଟିକିନୀ କାନରେ କହୁଥିଲା. ସାଦା ନା କଡା ପଗ୍ରରି ବୁଝ । ଶାଶୁ ପଣି ଆସୁଥିଲେ ମୁହଁରେ ମୁଠାଏ ସନ୍ତୋଷର ଛାପଧରି । ସାଇ ମାଇପିଙ୍କ ସମ୍ମୁଖରେ ତାଙ୍କ ଆତ୍ମଗର୍ବ ଉଛୁଳି ପଡୁଥିଲା । ମନଲଖୀ ଗୋରୀ, ଗୁଣର ବୋହୂଟିଏ ପାଇଛନ୍ତି ଦୁଲଣା ଅପା । ଶାଶୁଙ୍କ ମୁହଁରୁ କଥା ବାହାରି ପଡୁଥିଲା–ଘୋଡା ଯାଚୁଥିଲେ ହାତୀ ଯାଚୁଥିଲେ, ସବୁକୁ ଗୋଡ଼ରେ ଠେଲି ଦେଲି, ବାଛି ଆଣିଲି ମୋ ସୁବର୍ଣ୍ଣ ସୁନ୍ଦରୀକୁ । ରୂପ ଗୁଣକୁ ସିନା କହିବ ଧନ, ଘୋଡ଼ା ହାତୀ କ'ଣ ସରଗ ନେବ ? କ'ଣ କହୁଛ ଚମ୍ପି ନାନୀ, କ'ଣ ଲୋ ଖୁଡୀ ?

ଦେଖଣାହାରୀଙ୍କ ପୂର୍ଣ୍ଣ ସମର୍ଥନ । ବରୁଡ଼ା ବୋଉ ଖୁଡୀ କଳେ ପାନ ଜାକି ଆହୁରି ବଢି କହୁଥିଲା, ଦେଖୁନ ଏ ଗାଁ ସଉଦା ଘରର ବୋହୂକୁ ! ସେଠି ପୁଣି ଏମିତି ଅସୁନ୍ଦର ମଣିଷ ତିଆରି କରିଥାଏ !



Digitized by PPRACHIN, SOA

ଲମ୍ବା ବେକକୁ ଗୋଜିଆ ମୁହଁ । ସେଥିରେ ଫେଣେ ବାହାଡ଼ା ଦାନ୍ତ । କାଚ୍ଚା କପାଳରେ ସିନ୍ଦୂର ଟୋପା ଖାଇ ଗୋଡ଼ାଇଲା ପରି ଲାଗୁଛି । କାଲି ବାହାଘର ନ ସରୁଣୁ, ଆଜି ଶାଶୂ ସଙ୍ଗେ ଝଟାପଟା କଜିଆ, କଜିହୁଡ଼ୀଟିଏ । ବାପଘର ଦରବଗୁଡ଼ିଏ ଆଣିଛି ବୋଲି ସେ ଆଉ ଇନ୍ଦ୍ରଚନ୍ଦ୍ର ମାନୁନି । ଧନ ଦଉଲତରୁ କ'ଣ ମିଳେ ? ମହାଜନେ ଏବେ ପସ୍ତେଇ ହଉଛନ୍ତି । ହେଲେ ଦେବବୋଉ, ତମେ ସୁନାକୁ ଠିକ୍ ଚିହ୍ନିଲ ।

ଚମ୍ପି ନାନୀ କହିଲା–ମନଛାଣି ଫଳ । ତମ ମନ ଯେମିତି ବଡ଼, ଭଗବାନ ସେଇମିତି ଲକ୍ଷ୍ମୀଟିଏ ଦେଇଛନ୍ତି । ବୋହୂକୁ ଦେଖିଲେ ଛାଡ଼ି ଯିବାକୁ ଇଚ୍ଛା ହେଉନି । ଠାକୁରେ କୁଳ ଉଜ୍ଜ୍ୱଳ କରନ୍ତୁ । ସେମାନେ ସୁଖ ସଂସାର କରନ୍ତୁ । ପାକଲା ବାଇରେ କଲ୍ୟାଣ କରୁଛି ...

ଶ୍ରାବଣୀର ମନ ପୂରିଉଠେ, ପ୍ରତିଜ୍ଞା କରେ, ସମସ୍ତଙ୍କୁ ସ୍ନେହରେ ସନ୍ତୁଷ୍ଟ କରିବ । ହସନ୍ତ ମୁଖରେ ମିଠା ବାଣ୍ଟିବ । କିନ୍ତୁ କେଇଟା ଦିନରେ ଏମିତି କ'ଣ ସବୁ ଅଘଟଣ ଘଟି ଯାଉଛି ! ଭଗବାନ କ'ଣ ସୁଖ ସହିଲେ ନାହିଁ ? ସୁଖ କେତୋଟି ଦିନ ଆସିଥିଲା ସ୍ନିଗ୍ଧ ସକାଳର ସୂର୍ଯ୍ୟୋଦୟ ଭଳି । ତା' ପରେ ଘୋଟି ଆସିଛି ଦୁର୍ଦ୍ଦିନର ଅନ୍ଧକାର ।

ସ୍ୱାମୀ । କୋଟିକରେ ଗୋଟିଏ । ତା' ଆଖିରେ ଏଭଳି ସ୍ୱାମୀ ସମଗ୍ର ସୃଷ୍ଟିରେ ନ ଥିବେ, ସବୁଠୁଁ ସୁନ୍ଦର । ତାକୁ ଦେଖିଲା ଦିନରୁ ଭୋକ ଉଭେଇ ଯାଇଛି, ଶୋଷ ଅପସରି ଯାଇଛି, ଆଖିରୁ ନିଦ ଲିଭିଛି, ଦିନ ରାତିର ପାର୍ଥକ୍ୟ ଦୂରେଇ ଯାଇଛି । ସୁଖ ଦିନରେ କଲିକତା–ଭୂତ ମୁଣ୍ଡରେ ପଶିଲା ଠିକ୍ ଯେମିତି ଅଯୋଧ୍ୟା ନଗର ରାମ-ଅଭିଷେକ ପାଇଁ ଆନନ୍ଦରେ ଅଧୀର ହେଉଥିଲା ବେଳେ ମନ୍ଥରା କୂଟ କରି ସୁଖ ଛଡ଼େଇ ନେଇ ରାମଙ୍କୁ ବନବାସୀ କରିଥିଲା । ଶ୍ରାବଣୀ ନିଜକୁ ଅଭିଶପ୍ତ ମନେକଲା । ମନକୁ ନିୟନ୍ତ୍ରଣ ନ କରି ଅଧିକ ଆଶା, ଅଭିଳାଷ ପାଇଁ ଡେଇଁଲେ ଏମିତି ଦୁଃଖ, ଯନ୍ତ୍ରଣା ଭୋଗିବାକୁ ହୁଏ; ଦୁର୍ଦ୍ଦଶା ମାଡ଼ି ବସେ, ସେ ଆଗରୁ କେବେ କଳ୍ପନା କରି ପାରି ନ ଥିଲା । ଏବେ ପସ୍ତେଇ ହେଲେ, ମୁଣ୍ଡ ପିଟିଲେ ଭୁଲ ସୁଧୁରିବ ନାହିଁ । ଗୋଟିଏ ସାମାନ୍ୟ ତ୍ରୁଟିର



Digitized by PPRACHIN, SOA

ପରିମାଣ ଭୟାବହ ହୋଇପଡ଼େ, ଯେମିତି ତୂଣ୍ଡରୁ ଅସହଜତା ବାକ୍ୟ ଥରେ ବାହାରି ଗଲେ ଆଉ ଫେରି ଆସେନା । ସୃଷ୍ଟିକରେ ଅନେକ ଶତ୍ରୁତା, ଅପ୍ରୀତିକର ପରିସ୍ଥିତି । ଅନୁଶୋଚନା କଲେ ଅବସ୍ଥା ସହଜରେ ସୁଧୁରି ଯାଏନାହିଁ, ଆଗାମୀ ଘଟଣା ଚକ୍ରର ନିର୍ଦ୍ଦେଶ ନ ମାନି ଗତ୍ୟ ନାହିଁ । ଶ୍ରାବଣୀ ଥିଲା ଅନୁତପ୍ତ । କିନ୍ତୁ କିଛି କରିବାର ଉପାୟ ନାହିଁ । ଅନିବାର୍ଯ୍ୟତାର ବଶ୍ୟତା ସ୍ୱୀକାର କରିବା ଛଡ଼ା ତା'ର ଅନ୍ୟ ପନ୍ଥାନାହିଁ । ଆଖିରୁ ଲୁହ ପୋଛିଲା । ଲୁଗାକାନି ଲୁହରେ ତିନ୍ତିଲା ।

ସବୁଆଡ଼ ଫର୍ଚ୍ଚା ଦିଶିଲଣି । ଫୁଟ୍‌ପାଥ୍ ରାସ୍ତା କ୍ରମଶଃ କୋଳାହଳ ହୋଇଉଠିଲଣି । ତଥାପି ଶ୍ରାବଣୀ ଆଖିକୁ ଅନ୍ଧାର ଦିଶୁଛି । ରାସ୍ତା ଅନେକ । ଆଗକୁ ବଢ଼ିବାର ଉଦ୍ଦେଶ୍ୟ ନାହିଁ । କେଉଁଆଡ଼େ ଯିବ ? କ'ଣ କରିବ ? ବିପରୀତ ଦିଗମାନଙ୍କରୁ ଯାନବାହାନ ଗୁଡ଼ିକର ଧାଁ ଧପଡ଼, କ୍ଷିପ୍ରତା ଆରମ୍ଭ ହୋଇଗଲଣି । ଦ୍ୱିତାଳ ବସ୍‌ରେ ଲୋକ ଖୁନ୍ଦା ଖୁନ୍ଦି, ଟ୍ରାମ୍ ଦ୍ରୁତ ବେଗରେ ଧାଇଁଛି, ଘଣ୍ଟି ଟିନ୍ ଟିନ୍ ଶବ୍ଦରେ କାନ ଥରୁଛି । ଯାତ୍ରୀ ଅପେକ୍ଷା କରିଛି ଯାନକୁ, ଯାନ ଧାଇଁଛି ସମୟକୁ ଆବୋରି । ଶ୍ରାବଣୀ ବୋକୀ ପାଇଟି ଯାଉଥିଲା । ଏସବୁ ଦୃଶ୍ୟ ପ୍ରତି ତାର ଯ୍ରୁ' ନଥିଲା । ସହରର ଦୃଶ୍ୟ ତାକୁ ଡ଼ରଉଥିଲା ଅହରହ ।

ସମୀପରେ କଳପାଣି । କଳ ମୁହଁରୁ ଝରଝର ସୁଅ । ଲୋକମାନଙ୍କ ପ୍ରବଳ ଭିଡ଼ ସେଇଠି । ପୁରୁଷ, ସ୍ତ୍ରୀ, ପିଲା, ବୁଢ଼ା, ଯୁବକ, ଯୁବତୀ ସମସ୍ତେ ସେଠି ଏକତ୍ରିତ । ସମସ୍ତଙ୍କ ହାତରେ କିଛି ପାଣିପାତ୍ର, ଗରା, ବାଲଟି, ଡାଳ, ମଗ୍ । ପାତ୍ରରେ ପାଣି ପୂରେଇ ଦେହରେ ଢାଳିବା ପାଇଁ ସମସ୍ତଙ୍କର ଉଦ୍ୟମ । ପାଣି ପାଇଁ ଠେଲା ପେଲା ଅବ୍ୟାହତ ରହିଛି । ଦୁଇତିନିଟା ଭେଣ୍ଡିଆ ଯୁବକ ସେମାନଙ୍କ ଅଣ୍ଡରଓୟାର ପିନ୍ଧା ଦେହକୁ ଢାଳେ ଢାଳେ ଜଳରେ ଓଦା କରୁଥାନ୍ତି । ସହରୀ ଗାଧୁଆ ତୁଠ । ଏଠା ଗରିବ ଅଶିକ୍ଷିତ ମଣିଷ ଏବଂ ମାଇପି ଲୋକ ଗୋଟିଏ ସ୍ଥାନରେ ସ୍ନାନ କରନ୍ତି । କାହା ମନରେ ଲଜ୍ଜା, ସଙ୍କୋଚର ସ୍ଥାନ ନାହିଁ । ଏଠି ସହରରେ ସର୍ବବ୍ୟାପୀ ନିର୍ଲଜ୍ଜତା । କିନ୍ତୁ ଗାଁ ଚଳଣି ଭିନ୍ନ ।



Digitized by PPRACHIN, SOA

ମହିଳା କୂଠରେ ପୁରୁଷଙ୍କ ଛାଇ ପଡ଼ିବ ନାହିଁ । ବାପ ଅଜା କାଳରୁ ଦେଖି ଆସିଛି ଗ୍ରାମ୍ୟ ଜୀବନର ଏହି ଅଲିଖିତ ଆଇନ୍, ପ୍ରଚଳିତ ପ୍ରଥା । ସ୍ୱୀର ଲଜ୍ଜା ଗାଁର ଆଭିଜାତ୍ୟ । ପାହାନ୍ତା ପହର, ଘଡି ଜାଙ୍ଗୁଲୁ ଜାଙ୍ଗୁଲୁ । ଫୁକିଆ ତାର ଛପି ଛପି ବାଉଁଶ ଗଛ ଫାଙ୍କ ଦେଇ ଆକାଶକୁ ଆଲୁଅ-ବତୀ ଦେଖେଇ ଥାଏ । ପଲ୍ଲୀବଧୂଙ୍କର ଗାଧୁଆ ବେଳ । କେହି ଦେଖୁନେବ ନାହିଁ, କାହାର ନଜର ପଡ଼ିବ ନାହିଁ । ଧରଣୀ ସକାଳ ଛୁଇଁବା ଆଗରୁ ବୋହୂ ସ୍ନାନକାମ ଶେଷକରି ଘରେ ପହଞ୍ଚି ଥାଏ । ନିଜକୁ ସଫା ସୁତୁରା ରଖି ଗୃହକର୍ମରେ ନିଜକୁ ଖଟାଇ ଦିଏ । ନିରଳସ ଜୀବନ ତା'ର । ନବନିର୍ମିତ କୁନି ସଂସାରରେ ହଜାଇ ଦିଏ ନିଜକୁ । କେତେ ସୁନ୍ଦର ସତେ ସେ ଜୀବନ ! କେତୋଟି ଦିନ ମାତ୍ର ଗାଁ ଗଉଁଳରେ ବୋହୂ ହୋଇ ସ୍ୱର୍ଗୀୟ ସୁଖ ଅନୁଭବ କରିଥିଲି । ସତରେ କ'ଣ ସେ ଆଉ ତା' ଦୁନିଆକୁ ଫେରିବ ?

ଏ ସହର ଗୋଟିଏ ଅଜବ ଦୁନିଆ । ମଫସଲ ମାଇପି ଏଠାରେ ଗୋଟିଏ ଚିଡ଼ିଆଖାନାର ଜୀବ । ସବୁ ଅଡୁଆ ଅଡୁଆ ଲାଗୁଛି ତାକୁ । ସକାଳର ନିତ୍ୟକର୍ମ ପାଇଁ ଦେହ ଦାବୀ କଲାଣି । ମୁନ୍ଦିଏ ପାଣି ପାଇଲେ କୁଳକୁଞ୍ଚା କରନ୍ତା, ମୁହଁ ଧୁଅନ୍ତା । କିନ୍ତୁ କରିବ କିପରି ? ଜନ ଗହଳି, ଠେଲା ଠେଲିକୁ ତା'ର ପ୍ରାଣେ ଭୟ । ଗହଳି କମୁ ...

ଗହଳି କମିବାର ଲକ୍ଷଣ ଦିଶୁନି, ବରଂ ବଢୁଛି । ପାଣିକଳର ନିକଟତର ହେଲା । ଦେଖିଲା ପାଖରେ ଭୂଇଁ ଭିତରୁ ପାଣିର ଝର ଫିଟିଛି । ଆଶ୍ଚର୍ଯ୍ୟରେ ଆଖି ବିସ୍ଫାରିତ ହେଲା । ପକ୍କା ରାସ୍ତା ଉପରେ ପାତାଳଫୁଟା ଝରଣା ! ସେଠି ଲୋକଙ୍କ ଭିଡ଼ ନଜମି କଳ ମୁହଁରେ ଏତେ ବିବାଦ କାହିଁକି ? ଅପେକ୍ଷାକୃତ ଚଞ୍ଚଳ ମନରେ ହାତକୁ ଆଞ୍ଜୁଳା କରି ପାଣି ତୋଳିଲା, ମୁହଁ ଧୋଇଲା, ପେଟ ପୂରାଇ ପିଇଲା । ଦମ୍ ମାରିଲା । ଦୁଇହାତ ମୁଣ୍ଡରେ ଦେଇ କିଛି ସମୟ ଥକ୍କା ହୋଇ ବସି ରହିଲା । ପରବର୍ତ୍ତୀ କର୍ମପନ୍ଥା ଚିନ୍ତା କରିବାକୁ ଲାଗିଲା । ଚିନ୍ତା ଶକ୍ତିରେ ସ୍ଥାଣୁତା, ଶୂନ୍ୟତା ଅନୁଭବ କଲା । ମନରେ ଅସହାୟତା, ହା ହୁତାଶ । ଏଠି କେତେ ସମୟ ବସିବ ?



Digitized by PPRACHIN, SOA

ସ୍ଥାନର ନାଁ କାହାଠୁ ପଚାରି ବୁଝିବାକୁ ସାହସ ଅଣ୍ଟୁ ନଥିଲା ତା'ର । ପୁରୁଷ ପୁଅକୁ ପଚାରିବା ଅର୍ଥ ରଡ଼ ନିଆଁକୁ ହାତ ବଢ଼ାଇଲା ଭଳି । ଚେଙ୍କା ଖାଇଛି । ପୁରୁଷ ଲୋକ ଦେଖିଲେଇ ଡର ଲାଗୁଛି ଯେମିତି ଟାକୁ କିନା କିଏ ତାକୁ ଗିଳି ଦେବ ? କ'ଣ ସ୍ୱାଦ ଅଛି ତା ସୁଡୌଳ ମାଂସଳ ଶରୀରରେ ? ସବୁ ଝିଅଙ୍କ ପ୍ରତି କ'ଣ ଏମିତି ପୁରୁଷମାନଙ୍କର ଲୋଲୁପ ଦୃଷ୍ଟି ? ସେମାନେ ପର ନାରୀ ପ୍ରତି କାହିଁକି ଏମିତି ଲୋଭାକୃଷ୍ଟ ହୁଅନ୍ତି ?

କଲିକତା ସହରର ଭୟାବହତା ସମ୍ବନ୍ଧରେ ବହୁଗପ ଶୁଣିଥିଲା । ଏଠି ମଧ୍ୟାହ୍ନେ ଅନ୍ଧକାର, ବିଚବଛାର ରାସ୍ତା ଉପରେ ଚୋର, ଡାକୁ ଡକାୟତଙ୍କ ଦୌରାତ୍ମ୍ୟ, ରାସ୍ତା ଉପରୁ ଏକଲା ଝିଅ ବୋହୂମାନଙ୍କୁ ଟେକି ନିଅନ୍ତି ଶୂନ୍ୟେ, ଶୂନ୍ୟେ । ପ୍ରବଳ ଲୋକ ଗହଳି ସତ୍ତ୍ୱେ ରାସ୍ତା ଭୟସଙ୍କୁଳ । ସହରୀ ହିଂସ୍ର ଜନ୍ତୁଙ୍କ ସଂଖ୍ୟା ଅପରିମିତ । ହିଂସ୍ର ମୁଖାପିନ୍ଧି ମଣିଷ ମାତି ଉଠେ ବଣ୍ୟ ଜନ୍ତୁ ଭଳି । ସହର ନୁହେଁ ତ, ଅତୀବ ମନୁଷ୍ୟର ଆଧୁନିକ ଅରଣ୍ୟ । ଏମିତି ଅନେକ ଚିନ୍ତା ଶ୍ରାବଣୀ ମୁଣ୍ଡକୁ ଅସ୍ତବ୍ୟସ୍ତ କଲା । ଗାଁରେ ଯେଉଁ ସବୁ ଲୋମହର୍ଷୀ ଗପ ଶୁଣି ଭୀତି ଅନୁଭବ କରୁଥିଲା, ଏବେ ସେ ବାସ୍ତବରେ ଦେଖୁଛି । ମନରେ କୋହୁଆ ଭୟ ଜାତ ହେଲା । ଚୁପ୍ ରହିଲା । ମନକୁ ବୁଝାଇଲା ।

ଦୋକାନମାନଙ୍କ ସମ୍ମୁଖ ଦରଜାରେ, ସାଇନବୋର୍ଡରେ ଅନେକ ଲିପିରେ ଜାଗାର ନାଁ ଲେଖାଥିବ । ଇଂରାଜୀରେ ଏବଂ ବଙ୍ଗଳାରେ । ଉଭୟ ଭାଷା ତା ପାଇଁ ସମାନ । ବଙ୍ଗଳାଭାଷା ଉଚ୍ଚାରଣ କରି ପାରୁନଥିଲେ ମଧ୍ୟ ବୁଝିବାରେ କୌଣସି ଅସୁବିଧା ହେଉନଥିଲା । ଲିପି ଭିନ୍ନ ହେଲେ ମଧ୍ୟ ପ୍ରତିବେଶୀ ଭାଷାରେ ରହିଛି ଅନେକ ସାମଞ୍ଜସ୍ୟ । ମଣିଷର ଭାବ ଏକ, କିନ୍ତୁ ଭାଷା ଭିନ୍ନ । ତେବେ ସ୍ଥାନ ନାଁ ବୁଝିବା ଆବଶ୍ୟକ ନଥିଲା । ଉଦ୍ଦେଶ୍ୟକୁ ଆଖି ଆଗରେ ରଖି ଆଗ ରାସ୍ତାକୁ ପାଦ ଧୀରେ ଧୀରେ ବଢ଼ାଇଲା । ଶିଥିଳ ପାଦରେ ଗତିକଲା ଗଙ୍ଗାକୂଳର ଉତ୍ତର ବାହିକା ଅଞ୍ଚଳ ଆଡ଼କୁ । ହୃଦୟ କାନ୍ଦୁଥିଲା, ଝୁରୁଥିଲା ମନ, ଝରୁଥିଲା ଶ୍ରାବଣ । 



Digitized by PPRACHIN, SOA

ଶ୍ରାବଣୀ ତେବେ ଗଲା କୁଆଡ଼େ ? ବୁଲି ବୁଲି, ଖୋଜି ଖୋଜି ଦେବକାନ୍ତ ନୟାନ୍ତ ହେଲଣି । ଶ୍ରାବଣୀର ପତ୍ତା ନାହିଁ, ତା'ର କୌଣସି ଚିହ୍ନବର୍ଣ୍ଣ ନାହିଁ । ଗଳି ଉପଗଳି, ସହରର ମୁଖ୍ୟରାସ୍ତା, ଶାଖାରାସ୍ତା, ପ୍ରତି ଅଳିସନ୍ଧି ପାଦରେ ଖୋଜି ଖୋଜି ଥକି ପଡ଼ିଲଣି ଦେବକାନ୍ତ । ପ୍ରିୟାର ସନ୍ଧାନ ମିଳୁନି । ମିଳିବାର ସମ୍ଭାବନା ମଧ୍ୟ ଦିଶୁନି । କେବଳ ମିଳିବାର ଆଶାକୁ ସମ୍ବଳକରି ସେ ଅନ୍ଧାରରେ ବାଡ଼ି ବୁଲାଇଲା ଭଳି ଏଠି ସେଠି ଖୋଜି ଚାଲିଛି । ବେଳେ ବେଳେ ଶ୍ରାବଣୀ ଉପରେ ଦୋଷ ଲଦିଦେଇ ଚିଡ଼ି ଉଠୁଛି । କାହିଁକି ଏମିତି ଦୁର୍ଭାଗ୍ୟକୁ ଜାଣି ଜାଣି ବରଣ କଲା ସେ ? ସ୍ତ୍ରୀ ଲୋକ ମାନେଇ ଏମିତି ଧୈର୍ଯ୍ୟହୀନା । ଟିକିଏ ଧୈର୍ଯ୍ୟଧରି ସେଇ ରାଜଘାଟ ଷ୍ଟେସନରେ ଅପେକ୍ଷାକରି ରହିଥିଲେ ଏମିତି ବିପତ୍ତି ଆସିଥାନ୍ତା କାହିଁକି ? ଅଦୂରଦର୍ଶିତାର ପରିଣାମ । ଅଧୈର୍ଯ୍ୟ, ତରବରିଆ କାର୍ଯ୍ୟକଳାପ, ଚଞ୍ଚଳ ସିଦ୍ଧାନ୍ତ, ଏମିତି ଭୟାବହ ପରିସ୍ଥିତି ସୃଷ୍ଟି କରେ । ସାମାନ୍ୟ କଥାରେ, କାର୍ଯ୍ୟରେ କଠୋର ପରିଣାମ ଭୋଗିବାକୁ ହୁଏ । ସଂଯମ, ଧୈର୍ଯ୍ୟ ଏବଂ ସହିଷ୍ଣୁତାହିଁ କୃତକାର୍ଯ୍ୟର ଚାବିକାଠି । ଶ୍ରାବଣୀ ସରଳା, ଅବଳା, ଗାଉଁଲି ଝିଅ । ଗୃହିଣୀର ସବୁ ସୁଗୁଣରେ ପରିପୂର୍ଣ୍ଣ, କେବଳ ତା'ର ଅଭାବ ଅଛି ଅଭିଜ୍ଞତା, ଦୁନିଆକୁ ପ୍ରକୃତ ରୂପେ ଚିହ୍ନିବାର ଶକ୍ତି । ସତେ କ'ଣ ସେ ଆଉ ଶ୍ରାବଣୀକୁ ଖୋଜି ପାଇବ ? ଦୈବାତ୍ ସେ ହସ୍ତଗତ ହୋଇଗଲେ ଏହା ଏକ ପରମ ସୌଭାଗ୍ୟର କଥା । ତଥାପି ମନର ଆଶାକୁ ପରିତ୍ୟାଗ କରି ପାରିନି ଦେବକାନ୍ତ । ସେ ଏଠି ରହି ଖୋଜିବ ତା ସୁହାଗିନୀ ସ୍ତ୍ରୀକୁ, ଦେହର ଶେଷ ରକ୍ତବିନ୍ଦୁ ଥିଲା ପର୍ଯ୍ୟନ୍ତ ...

ଆହାର ଚିନ୍ତା ବିଲ୍‌କୁଲ୍ ପରିତ୍ୟାଗ କରି ଦେଇଥିଲା ଦେବକାନ୍ତ । ପେଟର ଜ୍ୱାଳା, କ୍ଷୁଧାର ତାଡନାରେ ଯେତେବେଳେ ଯୋଉ ଖାଦ୍ୟ ଅଖାଦ୍ୟ ମିଳିଲା ସେ ଉଦରସ୍ଥ କରିବାକୁ କୁଣ୍ଠା କରିନଥିଲେ ।



Digitized by PPRACHIN, SOA

ଏଇ ସାତଟି ଦିନ ଭିତରେ ତା'ର କାଙ୍ଗାଳର ବେଶ । ଦେହରେ ଯେଉଁ ଫୁଲ୍‌ପ୍ୟାଣ୍ଟ ଏବଂ ପୂରାହାତ କୁର୍ତା ପିନ୍ଧିଥିଲା ତାହା ଯେମିତି ଦୟନୀୟ ଭାବେ ଝୁଲୁଛି, ଧୂଳି, ମଳି, ଝାଳ ଖାଇ ଅପରଛନିଆ ଦିଶୁଛି । ସେଇ ପୋଷାକ ତା'ର ଏକମାତ୍ର ସମ୍ବଳ । ପୋଷାକର ଅବସ୍ଥା ପ୍ରତି ତା'ର ଆଦୌ ନିଘା ନଥିଲା । ହୃଦୟର ତାରଗୁଡ଼ିକ କେଉଁଠି ଛିଡ଼ି ଯାଇଥିବାରୁ ମନ ଆକାଶଟି ନିଷ୍ପ୍ରଭ, ଅଙ୍ଗଶ୍ରୀ ମଳିନ, ଶିରରେ ହତଶ୍ରୀର ବାନା ଉଡୁଥିଲା । କେବଳ ପିଣ୍ଡକୁ ଜୀଇଁ ରଖିବା ଉଦ୍ଦେଶ୍ୟରେ ପେଟକୁ ସାମାନ୍ୟ ଖାଦ୍ୟ ପାଇଁ ଅନେକଙ୍କୁ ଖୁବ୍ ନେହୁରା ହୋଇ ଗୁହାରି ଭିକ୍ଷା କରିଛି, ଶ୍ରମ ବିନିମୟରେ ପାରିଶ୍ରମିକ ପାଇଁ ନିବେଦନ କରିଛି; କିନ୍ତୁ ସବୁ ବୃଥା । ସମସ୍ତଙ୍କ ମୁହଁରୁ ନାସ୍ତିବାଣି, ଦୂର୍ ଦୂର୍ ଭାବ ମୁହଁ ଚିହିଁଡ଼ା, ନାକଟେକା ବ୍ୟବହାର ପାଇଛି । ଖାଦ୍ୟ ବିକ୍ରୟ ସ୍ଥାନମାନଙ୍କରେ ମୁହଁ ଗଳାଇଲେ ବୁଲା କୁକୁରକୁ ଯେମିତି ଘଉଡ଼ା ଯାଏ, ସେ ସେଇ ଅନୁଭବ ପାଇଛି । ଶିକ୍ଷାଗତ ଯୋଗ୍ୟତାର କିଛି ମୂଲ୍ୟ ନାହିଁ । ଜ୍ଞାନଗ୍ରାହୀଙ୍କର ସ୍ଥାନ ନାହିଁ । ଜ୍ଞାନର ମୂଲ୍ୟାଙ୍କନ କେବଳ ଜ୍ଞାନୀ ସମାଜରେ ହୁଏ । କ୍ଷୁଧାସଙ୍କଟ କାଳରେ ସବୁ ସମାନ, ଜ୍ଞାନ, ଅଜ୍ଞାନ ସବୁର ଗୋଟିଏ ଚିନ୍ତା-ଅନ୍ନ ।

ସମ୍ମୁଖରେ ତାରକେଶ୍ୱରୀ ବସ୍ତ୍ରାଳୟ, ଫୁଟବଲ ଖେଳାଳୀ ନିତାଇ ଶାହା ବର୍ତ୍ତମାନ ଲକ୍ଷପତି । କଲିକତା ସହରର ଆଦ୍ୟଠୁଁ ପ୍ରାନ୍ତବିନ୍ଦୁ ପର୍ଯ୍ୟନ୍ତ, ପ୍ରତି ବିନ୍ଦୁରେ ଇତିହାସ । ଦେବକାନ୍ତ ଇତିହାସ ଅଧ୍ୟୟନ କରିଛି । ଇତିହାସର ଉପାଧ୍ୟାୟର ଛାତ୍ର, ସମ୍ମାନ ସୂଚକ ଡିଗ୍ରୀ ମଧ୍ୟ ହାସଲ କରିଛି । ଆଧୁନିକ କଲିକତାର କ୍ରମବିକାଶ ତା ଜିହ୍ୱାଗ୍ରେ । ବେପାର କରିବା ଉଦ୍ଦେଶ୍ୟ ନେଇ ଇଂରେଜମାନେ ଆସିଥିଲେ ଆମ ଦେଶକୁ । ଅଙ୍ଗୁଳି ପ୍ରବେଶାତ୍ ବାହୁ ପ୍ରବେଶ । କ୍ରମେ ବେପାର ଗୌଣ ହୋଇଗଲା, ସାମ୍ରାଜ୍ୟ ପ୍ରତିଷ୍ଠା ମୁଖ୍ୟ ଉଦ୍ଦେଶ୍ୟ ହୋଇ ଉଠିଲା । ଇତିହାସର ଏହା ଏକ ଅନାଲୋଚିତ ଅଧ୍ୟାୟ । ଏକ ସାମାନ୍ୟ ଘଟଣାରେ ଇତିହାସର ପୃଷ୍ଠା ଓଲଟ ପାଲଟ ହୋଇଯାଇଥିଲା, ବ୍ରିଟିଶ ସାମ୍ରାଜ୍ୟ ପ୍ରତିଷ୍ଠା ଲାଭ କଲା କାରଣ ବେଙ୍ଗଲର ନବାବ ସିରାଜଉଦ୍ଦୌଲା ଗୋଡ଼ରେ



Digitized by PPRACHIN, SOA

ସାଞ୍ଜୁ କିପରି ପିନ୍ଧାଯାଏ ଏବଂ ଓହ୍ଲାଯାଏ ଜାଣିନଥିଲେ । ଐତିହାସିକ ପଲସୀ ଯୁଦ୍ଧର ଲୋମହର୍ଷଣକାରୀ କାହାଣୀ । ସିରଜଙ୍କ ପ୍ରଧାନ ସେନାପତି ମିରଜାଫର ବିଶ୍ୱାସଘାତକତା କରି ଇଂରେଜମାନଙ୍କ ସହିତ ହାତ ମିଳାଇ ଷଡ଼ଯନ୍ତ୍ରରେ ଲିପ୍ତ ରହିଲେ । ସିରଜ ଥିଲେ ଯୋଦ୍ଧା, ଜାତିପ୍ରେମୀ ଏବଂ ସ୍ୱାଭିମାନୀ । ଇଂରେଜମାନଙ୍କ ଯୁଦ୍ଧ ଆହ୍ୱାନକୁ ଏଡ଼ି ନ ପାରି ନିଜେ ବୀର ସାଜି ରଣାଙ୍ଗନରେ ଅବତୀର୍ଣ୍ଣ ହେଲେ । ତାଙ୍କର ସୈନ୍ୟବଳ ଥିଲା ଅମାପ, କିନ୍ତୁ ଇଂରେଜମାନଙ୍କ ଗୋଳାବାରୁଦର ସମ୍ମୁଖୀନ ହେବା କଷ୍ଟକର । ସିରଜଙ୍କ ସେନା ଛାଉଣି ଛତ୍ରଭଙ୍ଗ ହେଲା ଏବଂ ସେ ନିଜ ଜୀବନ ରକ୍ଷା କରିବା ପାଇଁ ହୁଗୁଳି ନଦୀ ପାର ହେବା ପାଇଁ ଚେଷ୍ଟା କଲେ । ଦୁର୍ଦ୍ଦାନ୍ତ ଗୋରା ସୈନ୍ୟ ତାଙ୍କୁ ପିଛା କରୁଥାନ୍ତି । ନଦୀ ଆରପାରିରେ ନବାବଙ୍କ ସୈନ୍ୟମାନେ ଶତ୍ରୁ ସଂହାର କରି ବିଜୟୋଲ୍ଲାସରେ ନବାବଙ୍କ ଆଗମନୀକୁ ଅପେକ୍ଷା କରିଥାନ୍ତି । ନଦୀକୂଳରେ ନୌକାଟିଏ ନବାବଙ୍କୁ ପାର କରିଦେବା ପାଇଁ ଅପେକ୍ଷା କରିଛି । କିନ୍ତୁ ନବାବ ନୌକା ପର୍ଯ୍ୟନ୍ତ ଯାଇପାରୁଛନ୍ତି କେଉଁଠି ? ଆଗରେ ପଙ୍କର ଗହ୍ୱର, ପାଣିଧାର ପର୍ଯ୍ୟନ୍ତ ପଙ୍କରେ ପରିପୂର୍ଣ୍ଣ, ଗୋଡ଼ରେ ସାଞ୍ଜୁ ସୁଦୃଢ଼ ରହିଛି । ସାଞ୍ଜୁକୁ ନ ଉତାରି ପଙ୍କରେ ପ୍ରବେଶ କରିବା ମୂର୍ଖତା । ଅତଏବ ନବାବ ପାଦରୁ ସାଞ୍ଜୁ ଉତାରିବା ପାଇଁ ପ୍ରବଳ ଚେଷ୍ଟା କଲେ । କିନ୍ତୁ ସାଞ୍ଜୁ ଖୋଲି ହେଉଛି କେଉଁଠି ? କେଉଁ ଏକ ଅଜଣା ସ୍ଥାନରେ ଏହାର ଚାବି । ଯୋଦ୍ଧା ସିରଜ ଯୁଦ୍ଧରେ ନିପୁଣ ଥିଲେ ମଧ୍ୟ ବିଚରା ଜାଣି ନଥିଲେ ସାଞ୍ଜୁକୁ କିପରି ପିନ୍ଧାଯାଏ ଏବଂ ଖୋଲାଯାଏ । ସେଥିପାଇଁ ନିୟୋଜିତ ଥିଲେ ସ୍ୱତନ୍ତ୍ର କର୍ମଚାରୀ । ସିରଜ ପ୍ରାଣାନ୍ତକ ଉଦ୍ୟମ କଲେ ଶେଷ ପର୍ଯ୍ୟନ୍ତ । ନା, ସେ ପାରୁ ନାହାନ୍ତି । ପଛଆଡ଼ୁ ରକ୍ତମୁଖା ଫିରିଙ୍ଗି ସୈନ୍ୟମାନେ ବିଜୟର ବୈଜୟନ୍ତୀ ଉଡ଼ାଇ ମାଡ଼ି ଆସିଲେ । ଅଗତ୍ୟା ସେଇ ସାଞ୍ଜୁପିନ୍ଧା ଶରୀରରେ ନବାବ ନିଜକୁ ନିକ୍ଷେପ କଲେ ପଙ୍କ ଭିତରକୁ । ପଙ୍କ ଟାଣୁଥିଲା ଭିତରୁ ଭିତରକୁ । ସଲୀଳ ସମାଧିର ଆହ୍ୱାନ । ଅତି ଦୟନୀୟ ଭାବେ ସେଇ ପଙ୍କ ଭିତରେ ଧରା ପଡ଼ିଲେ ସିରଜ ଏବଂ ଏହି ଅବସ୍ଥାରେ କୃତଘ୍ନ ମିର୍‌ଜାଫର ସିରଜଙ୍କ ଶିରଚ୍ଛେଦ କଲା । ସିରଜଙ୍କ ପରାଜୟର ପ୍ରକୃତ କାରଣ ଆଜି ବିସ୍ମୃତିର ବାଲୁଚର



Digitized by PPRACHIN, SOA

ଭିତରେ ଅବଲୁପ୍ତ । ସିଗଲ ସାଙ୍କୁ ବ୍ୟବହାରର ସାମାନ୍ୟ କୌଶଳ କଥାଟି ଜାଣିଥିଲେ ହୁଏତ ଇତିହାସର ମୋଡ଼ ବଦଳି ଯାଇଥାନ୍ତା । ଜୀବନ-ଯୁଦ୍ଧର ସର୍ବସଫଳତା ପାଇଁ ହେୟ ମନେ କରୁଥିବା କ୍ଷୁଦ୍ର ପଦାର୍ଥ ବିଷୟରେ ଜ୍ଞାନ ଯେ ଏକାନ୍ତ ପ୍ରୟୋଜନ, ଏହା ଥିଲା ଇତିହାସର ପରାମର୍ଶ । ଏମିତି ନଗଣ୍ୟ ଘଟଣାରେ ଜୀବନର ମୋଡ଼ ବଦଳିଯାଏ—ଯେମିତି ସେ ନିଜେ ଆଜି ସାମାନ୍ୟ ଘଟଣାର ଶିକାର ହୋଇଛି, ଟିକିଏ ଅସାବଧାନତାର ରୂପ ଏମିତି ଭୟାବହ ହୋଇ ଉଠିଛି ନବଦମ୍ପତିଙ୍କ ପକ୍ଷେ ।

ଦେବକାନ୍ତ ନିଜକୁ ପ୍ରକୃତିସ୍ଥ କଲା । ଫେରି ଆସିଲା ଇତିହାସ ପୃଷ୍ଠାରୁ ତା ବାସ୍ତବ ଜଗତକୁ । ଦିନ ବ୍ୟାପୀ ସେ ଗ୍ଲୁରଖୁଥିଲା ଅନିର୍ଦ୍ଦିଷ୍ଟ ପଦଯାତ୍ରା । ସହରର ଅନୁଭୂତି ବ୍ୟାପକରୁ ବ୍ୟାପକତର ହେଉଥିଲା ତାର । ପ୍ରତ୍ୟେକ ଘଟଣା ଏଠି ରହସ୍ୟ ପୂର୍ଣ୍ଣ, ରୋମାଞ୍ଚମୟ । ଏଠି ପ୍ରତିଟି ଚରିତ୍ର ଉପରେ ଉପନ୍ୟାସ ରଚିତ ହୋଇପାରେ । ସତ୍ୟ ଘଟଣା କାଳ୍ପନିକ ରଚନା ଠାରୁ ଅଧିକ ଅଦ୍ଭୁତମୟ । ଅନେକ ଅଜବ କଥା ନିଜେ ଦେଖୁଛି, ଅନ୍ୟେ ନିଭେଉଛି, ନିଜେ ମଧ୍ୟ ବନି ଯାଉଛି ଅଦ୍ଭୁତ ବାସ୍ତବତାର ନାୟକ । ଏହି କଲିକତା କାହାପାଇଁ ତ ପ୍ରାଣ ଚଞ୍ଚଳଭରା ଉଦ୍ଦୀପନାମୟୀ ନଗରୀ, ଆଉ କାହାପାଇଁ ହୁତାଶମୟ ଧୁ ଧୁ ମରୁବାଲି । ଏଠି କାହାର ପୁଷମାସ କାହାରବା ସର୍ବନାଶ । ଏଠି ମୃତ୍ୟୁ ଅଛି, ଏଠି ସୃଷ୍ଟିର ରହସ୍ୟ ରହିଛି, ଧ୍ୱଂସର ଧ୍ୱନି ଅହରହ ବିରାଜୁଛି । କାହାପାଇଁ ଏହା ଏକ ଆଶୀର୍ବାଦ, କାହାପାଇଁ ଏହା ଏକ ଅଭିଶାପ । କିଏ ତରୁଛି ତ ଆଉ କିଏ ମରୁଛି । ଏଠି ସଭ୍ୟତାର ଆଲୋକ ଜଳୁଛି, ବର୍ବରତା ତାଣ୍ଡବ ନୃତ୍ୟ କରୁଛି । ଏଠି ସବୁ ଅଛି, ଏଠି କିଛି ନାହିଁ ; ଏଠି ଜୀବନ ଶୂନ୍ୟ ।

ଅଲିପୁର ଚିଡ଼ିଆଖାନା ଅଞ୍ଚଳ ବୁଲି ଶ୍ରାବଣୀକୁ ଖୋଜିଛି, ଚିଡ଼ିଆଖାନା ସମ୍ମୁଖ ଦ୍ୱାରରେ ଅଗଣିତ ଦର୍ଶକଙ୍କର ଭିଡ଼ । ଛୁଆପିଲା, ଯୁବକ ଯୁବତୀଙ୍କର ହର୍ଷରୋଳ । ଜନ୍ତାର ଜନ୍ତୁମାନଙ୍କ ପାଇଁ ଗଜାବୁଟ, ଲିଆ, ମୁଢ଼ି, ଫଳାଦି ବାହାରେ ବିକ୍ରି ହେଉଛି । ଗଜାବୁଟ ଠୁଙ୍ଗାଟି ପିଲାଟି ହାତରୁ ଖସିପଡ଼ି ଭୂଇଁରେ ବିଞ୍ଚି ହୋଇଗଲା । କେହି ନେଲେନି ।



Digitized by PPRACHIN, SOA

ପରିତ୍ୟକ୍ତ ପଦାର୍ଥ । ମୂଲ୍ୟ କ'ଣ ? ଦୂରରୁ ଲକ୍ଷ୍ୟ କରିଥିଲ ଦେବକାନ୍ତ । ଆଖି ପିଛୁଳାକେ ସାଉଁଟି ନେଇଥିଲ । ପାଖ କଳ ପାଣିରେ ସେଗୁଡ଼ିକୁ ଧୋଇ ଚୁପ୍ ଚୁପ୍ ଖାଇଥିଲ ...

ସେ ଦିନ ସନ୍ଧ୍ୟାରେ ହାଜର ହୋଇଥିଲ ଦକ୍ଷିଣେଶ୍ୱର କାଳିବାଡ଼ିରେ । ମହାକାଳୀ ଏଠି ପୂଜାପାଉଛନ୍ତି । ମାତୃପୂଜା ଆଜି ବିଶ୍ୱ ବିଖ୍ୟାତ । ଏଠି ଦିନେ ରାମକୃଷ୍ଣ ନିକାଞ୍ଚନରେ ବସି କାଳୀ ସାଧନା କରୁଥିଲେ । ମା' କାଳୀ ତାଙ୍କ ହାତରୁ ପ୍ରସାଦ ଗ୍ରହଣ କରୁଥିଲେ । ମୁଖ୍ୟମନ୍ଦିର ଭିତରେ ମା' କାଳୀଙ୍କର ଉଗ୍ରରୂପ । ରକ୍ତମୁଖା କାଳୀ, ଘଡ଼ିକେ ପ୍ରାୟ ଜିଭ ପାଟି ଗହ୍ୱରରୁ ବାହାରି ଆସି ଦୁନିଆଟାକୁ ଏକା ସୋଡାକେ ଘୁଟି ଦେବେ ଯେମିତି । ପ୍ରକୃତି ଏଠି କୋପୀ, ଭୟାନକ । ସୃଷ୍ଟିକର୍ତ୍ତ୍ରୀ ଏଠି ସଂହାର-କର୍ତ୍ତ୍ରୀ, ଶିଷ୍ଟ ପାଳନ ଏବଂ ଦୁଷ୍ଟ ଦଳନ ପାଇଁ ଆବିର୍ଭୂତା ।

କାଳିବାଡ଼ିର ପ୍ରକାଣ୍ଡ ପ୍ରାଙ୍ଗଣରେ ଗଙ୍ଗାକୁ ପଛକରି ବାରଗୋଟି ଏକ ରକମର ଶୈବ ମନ୍ଦିର । ମନୋରମ ପରିବେଶ । ଭକ୍ତ ଜନତାଙ୍କ ସୁଅ ଛୁଟିଛି । ସନ୍ଧ୍ୟା ଆଳତି, ଘଣ୍ଟି ଘଣ୍ଟ, ବାଦ୍ୟ ଧୂପରେ ସ୍ଥାନ ଉଛୁଳୁଛି । ଅଗଣିତ ନରନାରୀଙ୍କ ମୁହଁରୁ ଭକ୍ତି-ଭଜନ, ଜଣାଣ ନିବେଦନ ଏକାସ୍ୱରରେ ଶକ୍ତିରୂପିଣୀ ମା'ଙ୍କ ଆଡ଼କୁ ଧାବିତ । ଏଠି ସମସ୍ତେ ମା'ଙ୍କ କରୁଣାପ୍ରାର୍ଥୀ, କୃପାଭିକ୍ଷୁ । ଦେବକାନ୍ତର ଖୋଜିଲ ଆଖି ଘୂରିବୁଲୁଛି । ଭକ୍ତ ମାଳ ମାଳ ।

ସନ୍ଧ୍ୟା ଆଳତି ଶେଷ ହେଲଣି । ବାଉଁଶ ଡାଲାରେ ଭକ୍ତମାନଙ୍କ ଅର୍ପିତ ଭୋଗ ସାମଗ୍ରୀ ପୁନଶ୍ଚ ବଣ୍ଟାହେବା ସ୍ଥାନକୁ ଫେରି ଆସିଲଣି । ଦେବକାନ୍ତ ଆଖି ଆଗରେ ଭୋଗ ଡାଲାଟି । ସୁସ୍ୱାଦୁ ଜିନିଷ– କଦଳୀ, ନଡ଼ିଆ କୋରା । ପ୍ରଲୋଭନ ସମ୍ଭାଳି ପାରିଲନି ଦେବକାନ୍ତ । ପେଟର ଦାଉ ମଧ୍ୟ ଅସହ୍ୟ ହେଲଣି । ଭଲ, ମନ୍ଦ ବିଚାର କରିବାକୁ ସମୟ ନାହିଁ । କ୍ଷୁଧା ନିବାରଣ ଏକାନ୍ତ ପ୍ରୟୋଜନ । ପଡ଼ୁ ପଛେ ଠାକୁରାଣୀଙ୍କ



Digitized by PPRACHIN, SOA

ଅଭିଶାପ । ସେ କ'ଣ ତା ପ୍ରତି ଅନ୍ୟାୟ କରିନାହାନ୍ତି ? ଅନାହାର, ଅର୍ଦ୍ଧାହାରରେ ସେ ଅଧାପ୍ରାଣ ହେଲଣି । ବିଦ୍ରୋହାତ୍ମକ ମନ, ଈଶ୍ୱର ଶକ୍ତିର ଅସ୍ତିତ୍ୱ ଉପରେ ସେ ଯେମିତି ସନ୍ଦିହାନ !

ପ୍ରଚୁର ଗହଳି ଭିତରେ ଖୁବ୍ ସାବଧାନ ଏବଂ ସନ୍ତର୍ପଣରେ ଭୋଗ ଠୁଙ୍ଗାଟିଏ ଚିଲଭଳି ଝାମ୍ପିନେଲା । ଚଟାପଟ ଧାଇଁଗଲା ନିକଟସ୍ଥ ଗଙ୍ଗାକୂଳକୁ । ମନ ଶାନ୍ତ କରି ସେଗୁଡ଼ିକୁ ଗର୍ଭସାତ କଲା, କ୍ଷୁଧା ମୋଚନ କଲା । ପେଟ ଭରି ପାଣି ପିଇଲା । ଆଗ ଦେହ ରହୁ, ଅନ୍ୟ କଥା ପଛେ ଚିନ୍ତା କରାଯିବ ।

ଗଙ୍ଗାଜଳ ଛୁଇଁ ଥଣ୍ଡାପବନ ଆସ୍ତେ ଆସ୍ତେ ବୋହୁଥିଲା ମନ୍ଦିରର ମଣ୍ଡପ ଆଡ଼କୁ । ବୈଶାଖର ଗଙ୍ଗାକୂଳିଆ ପବନ । ଉଚ୍ଚ ମଣ୍ଡପ ଉପରେ ଥକ୍କା ମାରି ବସିରହିଲା ଦେବକାନ୍ତ । କ୍ଲାନ୍ତ ଆଖିକୁ କିଏ ଯେମିତି ମୁଦି ଦେଉଥିଲା । ମନେ ହେଉଥିଲା, ମନ୍ଦିରରେ ନାନାବାଦ୍ୟ ଗୀତ ଗୁଞ୍ଜରିତ ହେଉଛି ... ଶୋଇପଡ଼ ଶିଶୁ, ଶୋଇପଡ଼ ।





Digitized by PPRACHIN, SOA

ଏଣେ ଶ୍ରାବଣୀ କାକୁସ୍ତ ମନରେ ସ୍ୱାମୀଙ୍କୁ ଖୋଜି ଖୋଜି ରବୀନ୍ଦ୍ର ସରୋବର ଅତିକ୍ରମ କରି ଦକ୍ଷିଣ ଅଞ୍ଚଳକୁ ଚାଲି ଆସିଥିଲା । ଯାଦବପୁର ଇଲାକା, ଚଳି ଅଞ୍ଚଳ । ସହରର କ୍ରମବର୍ଦ୍ଧିଷ୍ଣୁ କ୍ଷେତ୍ରଫଳ, ଆକାର, ଆୟତନ ସୀମା ଅଞ୍ଚଳମାନଙ୍କରେ କାୟାବିସ୍ତାର କରୁଛି । ନଗରାଞ୍ଚଳରେ ବିସ୍ଫୋରଣ ମୁଖୀ ଜନସଂଖ୍ୟା ସନ୍ନିକଟ ସୀମା ଅଞ୍ଚଳକୁ ଅଧିକାର କରି ବସୁଛି ଯେମିତି ବନ୍ୟାର ଉନ୍ମତ୍ତ ଜଳରାଶି ବନ୍ଧବାଡ଼ ଭାଙ୍ଗି ସମତଳ ଅଞ୍ଚଳକୁ ବ୍ୟାପିଯାଏ । ଏଠି ମଧ୍ୟ ସହର ବ୍ୟାପୁଛି ଦ୍ରୁତ ବେଗରେ, ଅନେକ କୋଠା ବାଡ଼ି ନିର୍ମାଣାଧୀନ । ଅହରହ କାମ ଚାଲିଛି ଜୋରସୋରରେ । ଶ୍ରମିକ, ମଜୁରିଆ, ଠିକାଦାର, ଖଟିଖିଆ, ଯନ୍ତ୍ରୀ ଏବଂ ଯନ୍ତ୍ରମାନେ କାର୍ଯ୍ୟରତ । ମୂଲିଆଣୀ-ମାନେ ମଧ୍ୟ ଅଣ୍ଟାରେ ଲୁଗାଭିଡ଼ି ଖଟୁଛନ୍ତି ... ସିମେଣ୍ଟ କାମ, ଇଟା ପଥର ଉପରକୁ ଉଠାଇବା ଆଦି ଦୈହିକ କାମ ।

ସ୍ତ୍ରୀଲୋକମାନଙ୍କ କାର୍ଯ୍ୟତତ୍ପରତା ଓ ଶାରୀରିକ ବଳ ଦେଖି ଶ୍ରାବଣୀ ସେମାନଙ୍କ ସହିତ କାମ କରିବାକୁ ମନ ବଳାଇଲା । ହାତ ପତେଇ କାହାକୁ ମାଗିବା ଅପେକ୍ଷା କାମକରି ଦିପଇସା ଖିଆଇଲେ ଉଦର ପୀଡ଼ା ଉପଶମ ହୁଅନ୍ତା । ଜୀବନର ଇନ୍ଧନ ପାଇଁ ଖାଦ୍ୟ ଅପରିହାର୍ଯ୍ୟ, ପହିଲେ ଜୀବନ ବଞ୍ଚେଇବା ନିହାତି ଦରକାର । ବଞ୍ଚିଲେ ସିନା ସମ୍ଭବ ! ବଞ୍ଚିବା ଜୀବନର ଧର୍ମ । ଖଟି ଖାଇବା, ଶ୍ରମକରି ଜୀବିକା ନିର୍ବାହ କରିବା ସାମାଜିକ ନୀତି । ଲହୁ ନିଗିଡ଼ା ଖଟଣିରେ ଥାଏ ଜୀବନର ଆନନ୍ଦ, ଆତ୍ମସନ୍ତୋଷ । ଏଠି ଶ୍ରମିକ ମେଳରେ କାମ କରିବାକୁ ଶ୍ରାବଣୀ ଆକର୍ଷିତା ହେଲା । ମାନପୁରର ସନାତନ ବଡ଼ ଜେନା ଘରର ବୋହୂ କିମ୍ବା ଶିକ୍ଷିତ ଦେବକାନ୍ତର ସହଧର୍ମିଣୀ ବା ସମସରପୁର ପଲ୍ଲୀର ଜଗନ୍ନାଥ ପରିଡ଼ାର କନ୍ୟା ଦିନେ ମୂଲ ଲାଗିବ, ସେ କଥା ଶ୍ରାବଣୀ ସ୍ୱପ୍ନରେ ସୁଦ୍ଧା ଚିନ୍ତାକରି ନଥିଲେ ମଧ୍ୟ ଏଠି ପରିସ୍ଥିତି ତାକୁ ବାଧ୍ୟ କଲାଣି । ତା ପରି



Digitized by PPRACHIN, SOA

ଅନେକ ସ୍ତ୍ରୀ ଓ ଝିଅ ମୁଣ୍ଡଝାଳ ତୁଣ୍ଡରେ ମାରି ଖଟୁଛନ୍ତି ; ଦେହରୁ ଝାଳ ଡାଳି, ଆଖିରୁ ଲୁଣିଆ ଲୁହ ନିଗାଡ଼ି ଦୁଃଖ ମୋଚନ କରୁଛନ୍ତି । ଦୁଃଖରେ ପଡ଼ିସିନା ଝିଅମାନେ କାମ କରୁଛନ୍ତି ! ପେଟ ପାଇଁ ସିନା ସଭିଙ୍କ ଚିନ୍ତା !

ଆଉ କୁଣ୍ଠା ନକରି ଶ୍ରାବଣୀ ଦେହର ଶୀର୍ଣ୍ଣ ଲୁଗାକୁ ସଜାଡ଼ି ନେଇ ।

ପୁରୁଷ ଦୃଷ୍ଟିକୁ ଆକର୍ଷିତ କରାଉଛି ଦେହର କୌଣସି ମାଂସଳ ଅଂଶ ଦିଶୁ ନାହିଁତ ! ଭଲଭାବେ ସଜାଡ଼ି ନେଇ ନିଜକୁ ।

ଶ୍ରମିକ ସର୍ଦ୍ଦାର କାମ ତଦାରଖ କରୁଥିଲା । ରହି ରହି ମଝିରେ ମଝିରେ ଗର୍ଜ୍ଜନଟାଏ କରି ଦେଉଥିଲା । ବଳିଷ୍ଠ ବପୁ, ନିଶୁଆ ଲାଲ୍ ବର୍ଣ୍ଣର ଆଖି ଦିଓଟି ଯେମିତି ରୁକ୍ଷତାରେ ପୂର୍ଣ୍ଣ । ଦିନବେଳେ ବି ନିଶାଗ୍ରସ୍ତ ମନେ ହେଉଛି । କଣ୍ଟ୍ରାକ୍ଟରର ପୋଷା ମାନି ଯେମିତି ଆଦେଶ ଜାହିର କରୁଛି ! ମୂଲିଆ ମୂଲିଆଣୀମାନେ ତାର ଗୁରୁ ଗର୍ଜ୍ଜନରେ ଭୀତ ତ୍ରସ୍ତ । ଏପରି ଲୋକକୁ ଶ୍ରାବଣୀ ଖୁବ୍ ଭୟ କରେ ।

ପ୍ରଥମେ ଦ୍ୱିଧା ବୋଧ କରୁଥିଲା ଶ୍ରାବଣୀ । କିନ୍ତୁ କାମ ନକଲେ ନ ଚଳେ । ତେଣୁ ମଥାବନତ ଭଙ୍ଗୀରେ ଶ୍ରାବଣୀ ସେଇ ନିଶୁଆ ଶ୍ରମିକ ସର୍ଦ୍ଦାର ପାଖେ ଛିଡ଼ା ହେଲା । ମନର ଅକୁହା ଭାଷା ମୁହଁରେ ଲହଡ଼ି ଭାଙ୍ଗୁ ଥିଲା ।

: କ'ଣ କିଲୋ ? କି କାମ ଅଛି ତୋର ଏଠି ? ମୁଛବାଲା ସର୍ଦ୍ଦାର ମୁହଁରେ କଠୋରତାର ଚିହ୍ନ । ଶ୍ରାବଣୀ ବୁଝିଲା, ଶ୍ରମିକମାନଙ୍କଠୁଁ କାମ ଆଦାୟ କରିବା ପାଇଁ ଗୋଠ ନିୟନ୍ତ୍ରଣର ଦାୟିତ୍ୱ ବୋଧହୁଏ ଏହି ମୁଛବାଲା ସର୍ଦ୍ଦାରର ।

ସେ ହତ୍‌ବତ୍‌ହେଇଗଲା । ପାଟିରୁ କଥା ବାହାରୁ ନଥିଲା ତା'ର । କିନ୍ତୁ ଉପାୟ କ'ଣ ? କାମ କରିବାକୁହିଁ ପଡ଼ିବ । ପାଦ କାଢ଼ିଲାଣି ଯେତେବେଳେ ପଛେଇବ କାହିଁକି ? ଭାଗ୍ୟ ଯେତେବେଳେ ଭଗାରି



Digitized by PPRACHIN, SOA

ହୋଇଛି, ଦୋଷ ବା ଦେବ କାହାକୁ ? ଥଙ୍ଗ ଥଙ୍ଗ ହୋଇ କହିଲା– କାମ କରିବି ।

ପାଦଠୁ ମୁଣ୍ଡ ପର୍ଯ୍ୟନ୍ତ ସର୍ଦ୍ଦାର ଆଖି ପହଁରେଇ ନେଲା । ଶ୍ରମିକ ଶ୍ରେଣୀର ଝିଅ ଭଳି ତ ଦିଶୁନି । ଗୋରା ଟକ୍ ଟକ୍ ଦିହରେ ରୂପ ଲାବଣ୍ୟ ଫୁଟୁଛି । ତଥାପି କାମ କରିବାକୁ ମନ କରିଛି । ସେଥିରେ ଯାଏ ଆସେ କ'ଣ ? ସେ ଗୁହେଁ ଠିକାଦାର ପାଇଁ କାମ ଆଉ ତା'ର ମହାସୁଲ । ଆଜି ତଳେଇ କାମ । ଆବଶ୍ୟକ ଅନୁଯାୟୀ ଶ୍ରମିକଙ୍କ ସଂଖ୍ୟା କମ୍ ଅଛି । ଯାକୁ କାମ କରିବାକୁ ମନା ନାହିଁ, ତେବେ ଡ଼େରି ହୋଇଗଲାଣି । କହିଲା– ଦିନ ବାରଟା ହେବାକୁ ବସିଲାଣି । ଆଉ ଘଡ଼ିଏ ପରେ ପୁଣି ଘଣ୍ଟାଏ ବିଶ୍ରାମ । କେତେ ଲାଭ ମିଳିବ ମାଲିକକୁ ?

: ଯାହା ଦେବ ପଛକେ ଆପତ୍ତି କରିବିନି– ଚଲମୁହାଁ ହୋଇ ତରଳ ଆଖିରେ କହିଲା ଶ୍ରାବଣୀ ।

: ତୋତେ ଆଜି ଅଧା ମଜୁରି ମିଳିବ, ବୁଝିଲୁ ? ମଜୁରିର ମୂଲ ମାଗିବା ଶ୍ରାବଣୀର ଉଦ୍ଦେଶ୍ୟ ନଥିଲା । ପେଟର ଅତ୍ୟାଗ୍ନରକୁ ସମ୍ଭାଳିବା ପାଇଁ ତା'ର ମାତ୍ର ଆବଶ୍ୟକ ଥିଲାକିଛି ପଇସା । ତେଣୁ ବାଧ୍ୟ ହୋଇ ସମ୍ମତି ଦେଲା ।

: ଯା ତେବେ, ଏଠୁ ଇଟା ଉଠା, ସେଠୁ ଗୋଡ଼ି ମାପକରି ଠୁଳ କର, କାମ ଅନେକ ... ହଁ, କହି ଦେଉଛି, ଚଟାପଟ କାମ ନ କଲେ ବାହାର କରିଦେବି, ବୁଝିଲୁ ?

ଶ୍ରାବଣୀ କାମରେ ଯୋଗ ଦେଲା ଆଗ୍ରହର ସହିତ । ତା'ପାଇଁ ଏହା ଅକଡ଼ିଆ କାମ । ଅଡୁଆ ଲାଗୁଥିଲା ନିଜକୁ । ମୁଣ୍ଡର ଲୁଗା କାନ୍ଧକୁ ଖସି ପଡୁଥିଲା, ଛାତିର ଲୁଗା ସ୍ଥାନାନ୍ତରିତ ହୋଇ ପଡୁଥିଲା । ଏଠି ଚିହ୍ନା-ପରିଚ ନାହିଁ କାହା ସଙ୍ଗେ । ସମସ୍ତଙ୍କ ଆଖି ତାରି ଆଡ଼କୁ ଧାଇଁ



Digitized by PPRACHIN, SOA

ଆସୁଥିଲା । ସହ ଶ୍ରମିକ, ଶ୍ରମିକାମାନଙ୍କ ଆଖିରେ କୌତୂହଳର ଚିହ୍ନ, ସେମାନଙ୍କ ପ୍ରଶ୍ନିଳ ଆଖିରେ ଏ ନବାଗତା ନାରୀଟି କିଏ ? ନୂଆ ନୂଆ ବାସୁଛି ସେମାନଙ୍କୁ ... ।

ଦିବାଶେଷ ବେଳକୁ ଦୈହିକ, ହାଡ଼ଭଙ୍ଗା ପରିଶ୍ରମର ସମାପ୍ତି ଘୋଷିତ ହେଲା । ଶ୍ରାବଣୀ ଅଣ୍ଟା ସଳଖେଇଲା । ମୁଛବାଲା ସର୍ଦ୍ଦାରର ଦେଖା ନାହିଁ । କେତେବେଳୁ କୁଆଡ଼େ ସେ ଚାଲି ଗଲଣି । କୁଳି କଣ୍ଡରଗଟି ବାବୁ ପାଖେ ଭିଡ଼ ଜମିଲଣି । ଅସଲ ମାଲିକ ନାହାନ୍ତି, ଅଛନ୍ତି ତାଙ୍କ ବାହାନ କୁଳି କଣ୍ଡରଗଟି ବାବୁ । ସେଇଠି ପଇସା ଦିଆହୁଏ, ଦିନକ ଖଟଣିର ପାରିଶ୍ରମିକ ; ଟଙ୍କା ନୁହେଁତ, ରକ୍ତ ବଦଳରେ ରସ, ଜୀବନର ନିର୍ଯ୍ୟାସ !

ଶ୍ରାବଣୀର ପାଳି ପଡ଼ିଲା । ଯୁବ କଣ୍ଡରଗଟି ବାବୁ ହାତକୁ ପଇସା ବଢେଇ ଦେଲା । ଶ୍ରାବଣୀ ଲୁହଜଳା ଆଖିରେ ଗଣିଲା,– ପାଞ୍ଚ ଟଙ୍କା । ମନ ଭରି ଗଲା ଅପାର ଆନନ୍ଦରେ । ଉଦର– ରାକ୍ଷସ ବହୁଦିନ ହେଲା ଭୋକିଲା ଅଛି ; ସନ୍ତୁଷ୍ଟ ହେବ ଆଜି । ଚଞ୍ଚଳ ପାଦରେ ଗଲା ନିକଟସ୍ଥ ଗୁଳିଆ ଦୋକାନକୁ । ସେଠୁ ଖରିଦ କରିନେଲା ଦୁଇଟଙ୍କାର ପକୁଡ଼ି, ଗୁଲୁଗୁଲା, ଆଳୁ ତରକାରୀ । ସେ ଗୁଡ଼ିକ ପତ୍ରରେ ଗୁଡ଼େଇ ପୁଡ଼େଇ ଚୁପ୍ ଚାପ୍ ଚାଲିଗଲା ପାଖ ଗଛ ମୂଳକୁ । ମୋଟା ଝଙ୍କାଳିଆ ଗଛଟିଏ ; ଗଛ ମୂଳକୁ ଆବଦ୍ଧ କରି ରଖିଛି ସିମେଣ୍ଟର ଗୋଲାକାର ଚାନ୍ଦିନୀଟିଏ । ଆକାଶକୁ ଚାହିଁ ଗଛଟି ଛତା ମେଲିଛି । ଘଞ୍ଚ ପତ୍ର ଭିତରେ ପକ୍ଷୀମାନଙ୍କ କଳରବ ସ୍ଥାନଟିକୁ ମୁଖରିତ କରୁଛି । ଚାନ୍ଦିନୀ ଉପରେ ବସି ସ୍ଥାନ ଅସ୍ଥାନ ନିର୍ବିଶେଷରେ ଶ୍ରାବଣୀ ଖାଦ୍ୟ ଗିଳିବାକୁ ଚେଷ୍ଟା କଲା । ଭୋକଟା ଯେମିତି ହଠାତ୍ ଅନ୍ତର୍ହିତ ହୋଇଯାଇଛି । ଠିକଣା ଜାଗାରେ ପହଞ୍ଚି ସାରିଲା ପରେ ଯେମିତି ସ୍ଥାନପ୍ରତି ଆକର୍ଷଣ ଉଭେଇ ଯାଇଥାଏ, ଖାଦ୍ୟକୁ ହାତରେ ଧରି ସାରିଲା ପରେ ସେମିତି ଭୋକ ଉଭେଇ ଯାଇଥିଲା ଶ୍ରାବଣୀର । ମନ ପେଟର ନିୟନ୍ତ୍ରଣକାରୀ । ମନରେ ନିଆଁ ଲାଗିଲେ ପେଟ ପାକସ୍ଥଳୀ, କ୍ଷୁଧା-ପୀଡ଼ା ଅନୁଭବ କରିପାରେ ନାହିଁ । ନିର୍ଭୃତ ମନ



Digitized by PPRACHIN, SOA

ଭିତରେ ଛବିଟି ଆଖି ଆଗରେ ଚଳଚିତ୍ର ଆଙ୍କୁ ଥିଲା । ସ୍ୱାମୀ ଚିନ୍ତା ପୁଣି ଘୋଟି ଆସିଲା ଅଦିନ ମେଘ ଭଳି । ସତ ଚେଷ୍ଟା ସତ୍ତ୍ୱେ କୋହକୁ ଦମନ କରିପାରି ନଥିଲା ସେ । ଆଖିରେ ପୁଣି ସେଇ ଶ୍ରାବଣର ବାରି ଧାର । ଦରଖିଆ ଛଚଖିଆ ପଚରରେ ପଡ଼ି ରହିଲା ବର୍ଜିତ ପଦାର୍ଥ ଭଳି ।

ଫୁଲସଞ୍ଜ ମାଡ଼ିଆସୁଥିଲା ଧୀରେ ଧୀରେ । ନିକଟସ୍ଥ ସହରପଟୁ ରାତିର ଆଲୋକ ଆଭା ଦିଶିଲାଣି । ଏଠି ଅନ୍ଧାର । ବିଜୁଳି ଆଲୁଅର ବ୍ୟବସ୍ଥା ନାହିଁ, ନିକଟର ଖାଲୁଆ ଅଞ୍ଚଳରେ ଶ୍ରମିକ ବସ୍ତି । ଛୋଟ ଛୋଟ କୁଡ଼ିଆ, ଅସ୍ଥାୟୀ ମାଟିଘର । ରାତିଟି କେଉଁଠି କିପରି କଟିବ ଚିନ୍ତା କରି ନ ଥିଲା ଶ୍ରାବଣୀ । ଏମିତି ଅନାଥିନୀ ଭବେ କେତୋଟି ରାତି କଟିଲାଣି ବୃକ୍ଷ ମୂଳରେ, ଖୋଲା ଆକାଶ ତଳେ, ସହରର ଫୁଟପାଥରେ, ବିଜୁଳି ଖୁଣ୍ଟ ତଳେ, ଆଜିବି ଏମିତି କଟିବ । ଖଟଣିରେ ଦେହମୁଣ୍ଡ ଦରଜ, ଗୋଡ଼ ହାତରେ ବ୍ୟଥା, ଘୋଳାବିନ୍ଧା ଆରମ୍ଭ ହୋଇଗଲାଣି ।

ରାତି ବଢ଼ିଲା । କୋଳାହଳ ହ୍ରାସ ପାଇଲାଣି । ନିର୍ଜନତା କ୍ରମେ ବ୍ୟାପୁଛି । ଅନ୍ଧାର ଆକାଶରେ କଳାବଉଦର ସ୍ତରସ୍ତର ପଟୁଆର । ଡାଳପତ୍ର ମେଲିଥିବା ମସ୍ତବଡ଼ ନିମଗଛଟିରେ ବଗ ବଗୁଲୀ ଗୁଡ଼ିଏ ଆଶ୍ରୟ ନେଇଥିଲେ । ରାତିର ନିର୍ଜନତାକୁ ଭଙ୍ଗକରି ବେଳେ ବେଳେ ପକ୍ଷୀସାବକମାନେ ସେମାନଙ୍କ ଅସ୍ତିତ୍ୱ ପ୍ରଚାର କରୁଥିଲେ । ପଲେ ବାଦୁଡ଼ୀ ଡେଣା ଫଡ଼ ଫଡ଼ କରି ଏଣେ ତେଣେ ଉଡୁଥିଲେ । କ୍ରମେ ପଶ୍ଚାତ୍ ଭାଗ ଶ୍ରମିକ ବସ୍ତିରେ ନିଃଶବ୍ଦତାର ରାଜତ୍ୱ ବିସ୍ତାରିତ ହେଲା । ଗାଁ ମଶାଣି ଭଳି ସବୁଆଡ଼ ଶୂନ୍ ଶାନ୍ । ଶ୍ରମକ୍ଲାନ୍ତ ଶରୀରଗୁଡ଼ିକ ଶୋଇ ରହିଥିଲେ ବସ୍ତିର କୁଜି ଘରଗୁଡ଼ିକରେ । ଝିଁକାରୀର ସ୍ୱର ମାଧ୍ୟମରେ ନିଶା ଗଳୁଁଥିଲା । ବୃକ୍ଷମୂଳ ଗ୍ରନ୍ଥିନୀ ଉପରେ ଠୁଙ୍କା ହୋଇ ବସି ଭରି ମୁଣ୍ଡଟିକୁ ଦୁଇ ଆଣ୍ଠୁ ସନ୍ଧିରେ ରଖିଥିଲା ଶ୍ରାବଣୀ ଦିନର ଶ୍ରମଭାର ଲାଘବ କରିବା ଉଦ୍ଦେଶ୍ୟରେ । ଛନକା ଛନକା ଲାଗୁଥିଲା ତାକୁ । ଆଖିରେ ଛାଇ ନିଦର ଆସର ।



Digitized by PPRACHIN, SOA

ପଛଆଡୁ କାହାର ତୁଣ୍ଡ ଶବ୍ଦ ଶୁଣି ଶ୍ରାବଣୀ ଚମକି ଉଠିଲା । ଭୂତ ପରି ଭୀମକାୟ କଳା ମଣିଷଟେ ତା ଆଡ଼କୁ ମାଡ଼ି ଆସୁଛି ତାକୁ ଝାମ୍ପି ନେବା ପାଇଁ । ଲୋକଟା ଖୁବ୍ ନିକଟ ହୋଇଗଲଣି । ମୁହଁରେ ଅଶ୍ରାବ୍ୟ, ଅବାନ୍ତର, ଅଶ୍ଳୀଳ ଭାଷା ।

ଗଛର ଗଣ୍ଡି ଦେହରେ ନିଜକୁ ସମ୍ପୂର୍ଣ୍ଣ ଭାବେ ଆଉଜି ରଣ୍ଡି ଚିତ୍କାର କଲା । କିଏ ତୁ ? କ'ଣ ତୋର ଉଦ୍ଦେଶ୍ୟ ? ? କାହିଁକି ଏଠିକୁ ଆସିଛୁ ? ? ?

ଏତ ସେଇ କୁଲି ସର୍ଦ୍ଦାର ଶଙ୍କର, ଯିଏ ତାକୁ କାମ ଦେଇଥିଲା । କାମ ସରିଲା ପରେ ସଞ୍ଜବେଳେ ଆସି ତାକୁ ପଚାରିଥିଲା– ଏଠି ଏକା ନିମଗଛ ମୂଳେ କ'ଣ କରୁଛୁ ? ତୋର ଆଉ କିଏ ଅଛି ?

ଶ୍ରାବଣୀ କିଛି କହି ନ ଥିଲା । ଚୁପ୍ ହୋଇ ବସି ରହିଥିଲା ନିମଗଛ ମୂଳେ । ମୁହଁ ମୋଡ଼ିଥିଲା ତାକୁ ।

ଶଙ୍କର ଉପରେ ପଡ଼ି କହିଥିଲା– ପାଖରେ ମୋର ଘର ଖାଲି ପଡ଼ିଛି । କେହି ନାହାନ୍ତି ସେଠି । ଆ, ମୋ ଘରେ ରହିବୁ । କିଛି ଅସୁବିଧା ହେବନି ତୋର । ଶଙ୍କର ଏମିତି ବହୁତଙ୍କୁ ରଖେ ।

ଶ୍ରାବଣୀ ମୁହଁ ବିକୃତ କରି ଶଙ୍କରକୁ ନିରଖ କରିଥିଲା । କାହାର ଅଯାଚିତ ଆଶ୍ରା ସେ ଲୋଡ଼ିବନି । ସେ ଏଇ ନିମଗଛ ମୂଳେ ରାତି ବିତେଇବ । ଏମିତି କେତେ ରାତି ସେ ବିତେଇ ସାରିଛି । ଆଜି କାହିଁକି ଶଙ୍କରର ସାହାଯ୍ୟ ନେବ ? ଆଜିକାଲିକା ଲୋକକୁ କ'ଣ ବିଶ୍ୱାସ ଅଛି ? ପୁରୁଷମାନଙ୍କ ଉପରେ ତା'ର ଆଉ ଆସ୍ଥା ନାହିଁ । ସେମାନଙ୍କ ମୁହଁ ଆଉ ମନ ମଧ୍ୟରେ ଅନେକ ପ୍ରଭେଦ ଥାଏ । ଏମାନଙ୍କ ଘରି ଖୁରକୁ ନମସ୍କାର । ଦୂରେଇ ରହିବା ଭଲ ।



Digitized by PPRACHIN, SOA

ଶ୍ରାବଣୀର ମୁହଁ ମୋଡ଼ା ଦେଖି ଶଙ୍କର ବାଟ କାଟିଥିଲା । ଏଣୁ ତେଣୁ ଗର୍ ଗର୍ ହୋଇଥିଲା । ଲୋକଟା ଭଲ ବୋଲି ମନେ ହେଉ ନଥିଲା ଶ୍ରାବଣୀର । ଭାଷାରେ ରୁକ୍ଷତା, ଟାଣ ଟାଣ କଥା । ମୂର୍ଖ, ଗୁଣ୍ଡା ଲୋକ । ଶ୍ରାବଣୀ ଭୃକ୍ଷେପ କରିନଥିଲା । ପାଖରେ କନ୍ତରଟିର ଅସ୍ଥାୟୀ ଘର । କିଛି ଅସୁବିଧା ହେଲେ ସେ ଚିତ୍କାର କରିବ, ସେଠିକୁ ଧାଇଁବ । ଆତ୍ମରକ୍ଷା କରିବା ପାଇଁ ସାହସହିଁ ପ୍ରଥମ ସହାୟ । ଏଇ କେତୋଟି ଦିନର ଅଭିଜ୍ଞତା ତାକୁ ଅଧିକ ସାହସିନୀ କରିଛି, ହିମ୍ମତକୁ ଅନୁପ୍ରେରଣା ଦେଇଛି । ତା'ର ଆତ୍ମ ସାହସ ବୃଦ୍ଧି ପାଇଛି ।

ଶଙ୍କର ଖୁବ୍ ନିକଟକୁ ଧାଇଁ ଆସିଲାଣି ।

ଲୋକଟାର ଭାଷା ଖୁବ୍ ଅଖାଡୁଆ ଏବଂ ଅସଂଯତ ଥିଲା । ଗ୍ରଡଳି ମଦର ଉତ୍କଟ ଦୁର୍ଗନ୍ଧ ଏବଂ ଦୁର୍ଭାଷାର ସମ୍ମିଶ୍ରଣରେ ପରିସ୍ଥିତିର ବିଷମତା ପ୍ରମାଣିତ ହେଉଥିଲା । ଶ୍ରାବଣୀ ଜଡ଼ ପାଲଟି ଯାଇଥିଲା, ଭୟରେ ତା' ଶରୀର କମ୍ପାପାଣି । ଦେହର ରକ୍ତ ଯେମିତି ଜମାଟ ବାନ୍ଧି ଯାଉଛି ! ନିର୍ଜନ ରାତିର ନିଛାଟିଆ ସ୍ଥାନରେ ମହା ବିପତ୍ତିଟିଏ ମାଡ଼ି ଆସୁଛି ଯେମିତି । ଗୋଟାଏ ବେପରୁଆ ମନୋଭାବ ନେଇ ନିମଗଛ ମୂଳେ ରାତିଟି କଟାଇ ଦେବ ବୋଲି ସିନା ଦମ୍ଭ ଧରିଥିଲା, କିନ୍ତୁ ଶ୍ରମିକ ସର୍ଦ୍ଦାରର ସନ୍ଧ୍ୟାବେଳ ବ୍ୟବହାରରେ ସେ ଭୟଭୀତା ହୋଇ ଯାଇଥିଲା । ଆଶଙ୍କା କରୁଥିଲା ମନେ ମନେ, ଲୋକଟା ଭଲ ନୁହେଁ । କିଛି ଯଦି ଗୋଟାଏ କରିବସେ ?

ଲୋକଟା ସତକୁ ସତ ଆଡୁ ସାଡୁ ବକି ଖୁବ୍ ପାଖକୁ ମାଡ଼ି ଆସିଲାଣି । ମନେ ହେଉଛି ସେଇ ସଞ୍ଜବେଳୁ ତା ପ୍ରତି ନଜର ରଖିଛି । ଚଣ୍ଡିଯାଏଁ ମଦ ପିଇ, ଅଶ୍ରାବ୍ୟ ଭାଷା କହି କହି ମାଡ଼ି ଆସୁଛି । ଅନ୍ୟ ଉପାୟ ନ ଦେଖି ଶ୍ରାବଣୀ ନିଜ ଦେହର ସବୁ ବଳ ଖଟାଇ ଆହୁରି ଜୋରରେ ଚିତ୍କାର କଲା– କାହିଁକି ଏଠିକୁ ଆସୁଛୁ ? କ'ଣ ତୋର କାମ ମୋ ପାଖେ ? ଦୂର୍ ହ ଏଠୁ । ବଜାରୀ, ଗୁଣ୍ଡା, ତମର କ'ଣ ମା' ଭଉଣୀ ନାହାନ୍ତି ?



Digitized by PPRACHIN, SOA

ନିମ ଗଛର ଠିକ୍ ଅନ୍ୟ ପାଖରେ ରହି କହିଲା ଶଙ୍କର– କାହିଁକି ତୁଚ୍ଛାଟାରେ ଏଡ଼େ ପାଟିଟା କରୁଛୁ ଲୋ ନାଗରୀ ? ତୁ କ'ଣ ଜାଣି ନାହୁଁ ଏଠି ତୋ କଥା ଶୁଣିବାକୁ ମୋ ଛଡ଼ା କେହି ନାହିଁ ! ଚିହ୍ନିନୁ ପରା ମୋତେ ? ମୁଁ ପରା ଏଠାକାର ଶ୍ରମିକ ସମ୍ରାଟ ଶଙ୍କର– ଯିଏ ତତେ ଆଜି କାମ ଦେଇଥିଲା ! ଭୁଲି ଗଲୁଣି କ'ଣ ସକାଳ ବେଳର କଥା ? ମୋତେ କାହିଁକି ଡ଼ରୁଛୁ ଲୋ ସୁନ୍ଦରୀ ? ଶଙ୍କର ଥାଉ ଥାଉ ତୁ କ'ଣ ଗଛମୂଳେ ରତିଟା କଟେଇବୁ ? ମୋର ଘରଟା ଖାଲି ପଡ଼ିଛି । ଚାଲ୍ ସେଠି ରହିବୁ । ଶଙ୍କର ତୋର କିଛି ଅଭାବ ରଖିବନି । ଏଠି ଖୋଲାଟାରେ କାହାକୁ ଅପେକ୍ଷା କରିଛୁ ? କିଏ ତୋ ପାଖକୁ ରତିରେ ଆସିବ ? ମନେରଖ, ଏଟା ଶଙ୍କରର ଜାଗା, ଶଙ୍କରର ରାଜ୍ୟ, ଏ ନିମଗଛ, ଏ ସ୍ଥାନ, ଖଣ୍ଡମଣ୍ଡଳରେ କେବଳ ଶଙ୍କରର ପ୍ରଭୁତ୍ୱ । ଏଠିକି କେହି ଆସିବେନି, କାହାକୁ ଅପେକ୍ଷା କରିବା ଦରକାର ନାହିଁ । ଚାଲିଆ ଏଥର ମୋ ଘରକୁ । ତୋର ସବୁ ସୁବିଧା କରିଦେବି । ଏଠି ସେଠି ବୁଲି ଧନ୍ଦା କରିବା ଅପେକ୍ଷା, ଗୋଟିଏ ଜାଗାରେ ଥୟ ହୋଇ ରହିଲେ ଭଲ । ଜଣକୁ ଆଦରି ରହ । ବାରଦ୍ୱାର ଶୁଣ୍ଢିପିଣ୍ଡା ହୋଇ ବୁଲିବା କ'ଣ ଦର୍କାର ? ଆ ... ମୋ କୋଳକୁ ଆ ... । ଶଙ୍କର ବୁଢ଼ା ଭଳି ଦିଶିଲେ ବୁଢ଼ା ନୁହଁ ମ । ନିଶ ଦାଢି ପାଚିଗଲେ କ'ଣ ଲୋକେ ବୁଢ଼ା ହୋଇଯାନ୍ତି ? ଥରେ ଶଙ୍କରକୁ ପରଖି ଦେଖ ଲୋ ସୁନ୍ଦରୀ ... ।

ଶ୍ରାବଣୀ ପୁଣି ଚିତ୍କାର କଲା– ଏଠି ସବୁ କିଏ ଅଛ ? ଏ ଦୁଷ୍ଟ ଲୋକଟା ମୋ ସହିତ ଗୁଣ୍ଡାମି କରୁଛି । ଇଜ୍ଜତ ନେବାପାଇଁ ଚକ୍ରାନ୍ତ କରୁଛି ।

: କହିଲି ପରା ଚିଲ୍ଲେଇ କିଛି ଲାଭ ନାହିଁ । ତୁ ଯେତେ କୁହାଟିଲେବି ଶଙ୍କର ଆଗକୁ କେହି ଆସିବେ ନାହିଁ । ତା ଆଗରେ ଠିଆ ହେବାପାଇଁ, ତା ବିରୁଦ୍ଧରେ ପାଟି ଖୋଲିବା ପାଇଁ କୋଉ ଶଳାର ହିମ୍ମତ ଅଛି ! ଏଥର ସାଫ୍ ସାଫ୍ କହି ଦେଉଛି । ଯିଏ ଏଠି ଶଙ୍କର କଥା ନ ମାନେ, ତା'ର ଆୟୁଷ ଶେଷ ହେଲା ଜାଣ । ଶଙ୍କର ନାଁ ଶୁଣି



Digitized by PPRACHIN, SOA

ଲୋକେ କବାଟ କିଳନ୍ତି । ପାଞ୍ଚ ମାଗେ ପଚିଶ ମାଗେ ସମସ୍ତେ ଦେବାକୁ ବାଧ୍ୟ । କୋଉ ବୋପାର ଜାଗା ନୁହେଁ, ଏଠି ସର୍କାର କୋଠା ଗଢୁଛି । ଏ ଗାଁ ଆମ ବାପ, ଅଜା କାଳର । ଶଳା କନ୍ତରଟି ଆସି ଆମ ଜାଗାରେ ଘର କରି ଜୁଲମ କରୁଛି ଆମ ଉପରେ ? ଶଙ୍କରକୁ ଖୁସାମତ ନ କଲେ, ସେ ତିଷ୍ଠି ପାରିବଟି ଏଠି ? ଏକା ଧାକ୍କାକେ ନିକାଲି ଦେବି ଶାଲାକୁ । ... ଏଇ ଯୋଉ ମେଣ୍ଢାପଲ ମଜୁରିଆମାନେ, ଶାଲା ଦରିଦ୍ରଙ୍କର କ'ଣ ଅଛି ? ଶଙ୍କର ଦୟା କଲାରୁ କାମ ପାଉଛନ୍ତି, ବଞ୍ଚୁଛନ୍ତି, ସବୁ ଶଙ୍କରର ଦୟାରୁ ।

ଶଙ୍କର ମୁହଁରୁ ବାହାରୁଥିଲା ଏଣୁ ତେଣୁ ଅବାନ୍ତର କଥାଗୁଡ଼ିଏ । ନିମଗଛ ଆରପଟେ ତା' ଦେହ ହଲୁଥିଲା, ମୁଣ୍ଡ ଘୂରୁ ଥିଲା । ପୁଣି କହିଲା– ଆଲୋ ସୁନ୍ଦରୀ, ତୋ ଅଣ୍ଡିରା ଯଦି ତୋର ପସନ୍ଦ ନହେଲା, ବ୍ୟସ୍ତ କାହିଁକି ହେଉଛୁ ? ଶଙ୍କର ଗଇଜକୁ ଆସିଛୁ । ଠିକ୍ କରିଛୁ । ଶଙ୍କର କାହାକୁ ନିରାଶ କରେନି । ତୋତେ ଦେଖିଲା ବେଳୁ ତୋଠି ମୋ ମନ ଲାଖି ରହିଛି । ଶଙ୍କର ସତ କହେ । ଏମିତି ଯୁଆନ୍ ଝିଅ ଏ ଶ୍ରମିକ ଗୋଠରେ ସେ କେବେ ଦେଖି ନାହିଁ । ତତେ ଦେଖି ଦିଲ୍‌ଖୁସ୍ ହୋଇଯାଉଛି ମୋର । ଆ, ଆଉ ଗୁମାନ କରୁଛୁ କାହିଁକି ? ଆଲୋ ଗୋରୀ ; ଆ ... ମୋ ବାହୁବନ୍ଧନକୁ । ତତେ ମୁଁ କଥା ଦେଉଛି, କାଲିଠୁ ତୁ ଆଉ ଏ ମୂଲିଆଣୀ କାମ କରିବୁ ନାହିଁ, ଖାଲି ଖାଲି ବସି ପଇସା ନେବୁ, ବୁଝିଲୁ ?

ଶ୍ରାବଣୀ ପୁଣି ବଡ଼ ପାଟିରେ ଚିତ୍କାର କଲା– ଗୁଣ୍ଡା, ଗୁଣ୍ଡା, ବଦ୍‌ମାସ୍ । କିଏ ଏଠି ଅଛ ? ଏ ମଦୁଆ ଗୁଣ୍ଡାଟା ମୋତେ ମାରି ଦେବ ... ।

ମଦ ବିଷ ଆହୁରି ମୁଣ୍ଡ ଉପରକୁ ଉଠିଲା । ନିଶା ଶୀର୍ଷସ୍ଥାନ ଛୁଇଁଲା । ଗର୍ଜିଲା– ଏତେ ବୁଝେଇ କହିଲି, ତଥାପି ତୋର ଟାଣ ଭାଙ୍ଗିଲା



Digitized by PPRACHIN, SOA

ନାହିଁ ? ମିଛୁଟାରେ ମୁଁ କ'ଣ କାମ ଯୋଗେଇ ଥିଲି ଶାଳୀକୁ ? ଶଙ୍କରର ମହାସୁଲ କ'ଣ ମୋଫତ ? ଶଙ୍କର ଯାହାକୁ ଦିଏ ତାଠୁ ନିଏ, ମନେ ରଖ୍ଥା ... ତୋଠୁ ମହାସୁଲ ଆଦାୟ ନକରି ମୁଁ କେବେ ଛାଡୁନି ... ।

ଶ୍ରାବଣୀର ସୁଉଚ୍ଚ ବକ୍ଷ ଆଡ଼କୁ ମାତାଲର ହାତ ପ୍ରସାରିତ ହେଲା ମାତ୍ରେ ସେ ସବୁ ଶକ୍ତି ବିନିଯୋଗ କରି ଅସଭ୍ୟ ହାତକୁ ଛିଞ୍ଚାଡ଼ି ଦେଲା । ଏତିକିବେଳେ ପିଠି ପଟ ବ୍ଲାଉଜର ଖଣ୍ଡେ ଅଂଶ ଶଙ୍କର ଟାଣି ନେଲା । ବ୍ଲାଉଜଟି ଚିରି ଗଲା ଏବଂ ନଖ ଆଞ୍ଚୁଡ଼ା ଦାଗ ରହିଗଲା ଶ୍ରାବଣୀ ପିଠିରେ ।

ଶ୍ରାବଣୀ ଶେଷ ଶକ୍ତି ଖଟାଇ ମାତାଲକୁ ଖୁବ୍ ଜୋରରେ ତା ଆଗରୁ ଠେଲି ଦେଲା ଏବଂ ପ୍ରାଣ ବିକଳରେ ନିକଟସ୍ଥ ଠିକାଦାରର ଅସ୍ଥାୟୀ ଘର ଆଡ଼କୁ ଅନ୍ଧାରରେ ଦୌଡ଼ିବାକୁ ଲାଗିଲା ।

ପଡ଼ି ଉଠି ପଛେ ପଛେ ଧାଇଁଥିଲା ଦୁର୍ଦ୍ଦାନ୍ତ ଶଙ୍କର । ଜଣେ ନାରୀର ଆର୍ତ୍ତ ଚିତ୍କାର ଏବଂ ଶଙ୍କରର ଅଶ୍ଳୀଳ ହୁଙ୍କାର ନିଶାକାଳର ନିସ୍ତବ୍ଧତା ଭଙ୍ଗ କରିଥିଲା । ବୁଲା କୁକୁର କେତୋଟି ବସ୍ତିସାରା ସତର୍କ ଧ୍ୱନି ଦେଇ ସାରିଥିଲେ । ଯୁବ ଠିକାଦାର ବିଳମ୍ବରେ ହିସାବ ପତ୍ର ଶେଷକରି ଏଇମାତ୍ର ଶଯ୍ୟା ଧରିଥିଲା । ଛାଇ ନିଦ ମାଡ଼ି ଆସୁଥିଲା ଆଖିକୁ । ଶବ୍ଦଗୋଳ ଶୁଣି ତା'ର ନିଦ ଭାଙ୍ଗିଗଲା । ଏତେ ରାତିରେ କିଏ ପାଟି କରୁଛି ? ଶୁଭଯାଉଛି ଜଣେ ନାରୀର ଆର୍ତ୍ତସ୍ୱର । ଘରେ ଅବା ଖଣ୍ଡ କେଉଁଠି ପଶିଛି କିମ୍ବା କେଉଁ ଅନିଚ୍ଛୁକ ସ୍ତ୍ରୀର ସତୀତ୍ୱ ଅପହରଣ କରୁଛି । ଧଡ଼ପଡ଼ ହୋଇ ଉଠି ଟର୍ଚ୍ଚ ଲାଇଟ ଏବଂ ଲାଠିଟି ହାତରେ ଧରି ବାହାରକୁ ଆସି ଦେଖନ୍ତି, ଉନ୍ମତ୍ତ ଶଙ୍କରର କାଣ୍ଡ ! ଯୁବତୀଟିଏ ଶରଣାଗତ, ରାକ୍ଷସ ରୂପରେ ଶଙ୍କର ସ୍ତ୍ରୀଲୋକ ପଛରେ ଧାବିତ ।



Digitized by PPRACHIN, SOA

ଯୁବ ଠିକାଦାରକୁ ଦେଖି କ୍ରୋଧ ଥରରେ ଶଙ୍କର ମାଡ଼ି ଆସିଲା ତା ଆଡ଼କୁ, ଯେମିତି ନର ଖାଦକ ଶିକାରକୁ ଛାଡ଼ି ପ୍ରତିବନ୍ଧକାରୀକୁ ପ୍ରଥମେ ଆକ୍ରମଣ କରି ବସେ । ଚିହ୍ନି ପାରିଲା କୁଳି କଣ୍ଟ୍ରାକ୍ଟ ବାବୁକୁ । ବକିଲା– ଶାଲା ବିଦେଶୀ, କେଉଁଠୁ ଆସି ଏଠି ହାକିମାତି କରୁଛି । ବେହିପ୍ତ, କାମ ନଉଛି ବେଶୀ, ଠକୁଛି ଲୋକଙ୍କୁ, ପଇସା ଗଣିଲା ବେଳକୁ ମୁହଁ ମୋଡ଼ୁଛି । ଯେମିତି ବୋପା ପଇସା ହାତରୁ ଗଣୁଛି ! ଆବେ ଏଟା ଶଙ୍କରର ଇଲାକା, ଏଠି ଶଙ୍କରକୁ ସରିଖଣ୍ଡ ମାପ୍ । ଏଠି ଯିଏ ଠିକାଦାର ହୁଏ, ତାକୁ ଶଙ୍କରର ସେବା କରିବାକୁ ପଡ଼େ । ତୁବେ ଗୋଟେ କିବା ନୂଆବାବୁ ଆଇଚୁ ? ଶଙ୍କରର ଦାନା ମାରୁଚୁ ? ମନେ ମନେ ଖୋଜୁଥିଲି ତତେ । ଏମିତି ବେଳେ ଆସି ହାବୁଡ଼େ ପଡ଼ିଛୁ ......

ଶଙ୍କରର ଦୌରାମ୍ୟ ବିଷୟରେ ଅବହିତ ଥିଲା ନୂଆ ଯୁବ ଠିକାଦାର ବାବୁ ଜଣକ । ତା'ର ଗତିରୂପ ଶୁଣିଥିଲା, ସ୍ୱଚକ୍ଷୁରେ ଦେଖି ନଥିଲା । ଆଜି ଖୋଲା ଖୋଲି ଧରା ପଡ଼ିଛି ସାମ୍ନା ସାମ୍ନି ।

ଶଙ୍କର ଆଗକୁ ମାଡ଼ି ଆସୁଥିଲା । ତା ଅଗ୍ରଗତିକୁ ଯୁବକ ପ୍ରତିରୋଧ କଲା । ଶଙ୍କରର ନିଶା ମିଶ୍ରିତ କ୍ରୋଧ ପ୍ରଚଣ୍ଡ ଆକାର ଧାରଣ କରିଥିଲା । ତା ପିତ୍ତ ମୁଣ୍ଡକୁ ଚଢିଗଲା ଏବଂ ସେ ଉତ୍ୟକ୍ତ ହୋଇ କୁଳି କଣ୍ଟ୍ରାକ୍ଟ ବାବୁର ବେକକୁ ଦି'ହାତରେ ଚିପି ଧରିଲା । ଏହି ମୁହୂର୍ତ୍ତରେ ଯୁବକଟି ଶଙ୍କର ମୁଣ୍ଡରେ ଲାଠିଟି ପ୍ରୟୋଗ କରିଥିଲା । ତା'ର ବପୁବାନ ଶରୀରଟି ଗୋଟିଏ ପାହାରରେ ଚେତା ହରାଇଥିଲା ।

ତୁଣ୍ଡଗୋଳ ଶୁଣି ସ୍ଥାନର ଶ୍ରମିକ ଭାଇମାନେ ନିଦ୍ରା ପରିହାର କରି ଧାଇଁ ଆସିଥିଲେ ଘଟଣା ସ୍ଥଳକୁ । ପରମ କ୍ରୋଧରେ ସେମାନେ ବିଧା ଗୋଇଠା ଲଦି ଦେଇଥିଲେ ଗୁଣ୍ଡାର ଭୂତଳଶାୟୀ ଶରୀର ଉପରେ । ଏ ଗୁଣ୍ଡା ବଦମାସ୍ ଲୋକଟା ଉପରେ ଅତୀତର ରାଗ ସେମାନେ ସୁଝାଉଥିଲେ । ସେମାନଙ୍କ ପାଟିରୁ ସମବେତ ଭାବେ ବର୍ଷଣ ହେଉଥିଲା ଅନେକ ଅଭିସମ୍ପାତ– ବଦମାସ, ନିଜର ମା' ଭଉଣୀ ନାହିଁ ନା କ'ଣ ?



Digitized by PPRACHIN, SOA

ଖତମ୍ କରିଦିଅ ଶଳାକୁ ଏଠି, ଶଳାର ଦାଦାଗିରି, ଗୁଣ୍ଡାଗିରି ଶେଷ ହୋଇଯାଉ ।

ସେ ଜୀବିତ କି ମୃତ ଜାଣିବାକୁ କାହାର ଇଚ୍ଛା ନଥିଲା । ମଲ୍ଲୁ ! ସମସ୍ତଙ୍କୁ ତା ଦାଉରୁ ରକ୍ଷା ମିଳୁ । ସମସ୍ତେ ସୁଯୋଗ ଖୋଜୁଥିଲେ, ଆଜି ତା'ର କପାଳ ଫାଟିଲା ।

ଶ୍ରାବଣୀର ପିଠି ଦୁର୍ବୃତ୍ତର ନଖାଘାତରେ ଶମ୍ଭୁଡ଼ି ହୋଇଯାଇଥିଲା । ସତୀତ୍ୱର ସୁରକ୍ଷା ପାଇଁ ତା'ର ଆଜି ପ୍ରଥମ ପରୀକ୍ଷା । ଏଠି ଏକୁଟିଆ ଝିଅମାନେ ବଞ୍ଚିବା ଭରି କଷ୍ଟ । ଘରସାହତା ଚିଜ ବାହାରେ ପଡ଼ିଲେ ସମସ୍ତେ ତା ପ୍ରତି ଏମିତି ହୁଅନ୍ତି ଲୋଭକୃଷ୍ଟ । ବାହାରେ ଯେତେ ସଯତ ଆଉ ସାବଧାନରେ ଚଳିଲେ ମଧ୍ୟ ସହରୀ ବାଘ ଓ ଦୁନିଆ ଦାଉରୁ ରକ୍ଷା ପାଇବା କଷ୍ଟକର ବ୍ୟାପାର, ଆୟାସସାଧ୍ୟ ମଧ୍ୟ । ଜାଣି ଜାଣି ସେ ନିଜକୁ ବିପନ୍ନ କରିନି । ତାକୁ ବିପନ୍ନ କରିଛି ତା ମନ, ଅଭିଳାଷ, ଅଧିକ ସୁଖର ଲାଳସା, ବାହାର ଭ୍ରମଣର ଦୁର୍ବାର ଆଶା । ମନ ସଙ୍ଗେ ନାଚି, ମାତି, ସ୍ୱାମୀକୁ ମନାଇଁ ଧାଇଁ ଆସିଥିଲା କଲିକତା ସହରକୁ ଆନନ୍ଦ ଉପଭୋଗ କରିବାକୁ । ଏବେ ଫଳ ଭୋଗୁଛି । ଇଚ୍ଛାକୁ ଆୟତ୍ତ ନକଲେ ଫଳ ଏମିତି ବିଷମ ହୁଏ । ମନକୁ ନିୟନ୍ତ୍ରଣ ନ କଲେ ଦୀର୍ଘବ୍ୟାପୀ ପରିଣାମ ଭୋଗିବାକୁ ପଡ଼େ । ଶ୍ରାବଣୀ ମନକୁ ତିରସ୍କାର କଲା, ନିଜକୁ ଧିକ୍କାରିଲା ପୁନଃ ପୁନଃ ।

ହାଏ ଭଗବାନ ! ଖୁବ୍ ଅଳ୍ପକେ ମହା ବିପତ୍ତିରୁ ରକ୍ଷା ପାଇଛି । ଉଦ୍ଧାରକାରୀ ଲୋକଟି ହଏତ ଆଉ ଟିକିଏ ବିଳମ୍ବ କରିଥିଲେ ସବୁ ସର୍ବନାଶ ହୋଇଥାନ୍ତା । ତା ପରେ ? ମୃତ୍ୟୁ, ମୃତ୍ୟୁ ... ବରଂ ମରଣ ଶ୍ରେୟସ୍କର ; କିନ୍ତୁ ତା ସତୀତ୍ୱ କଳଙ୍କିତ ନ ହେଉ ।

ଆଜିକାଲି କାଳରେ ଧର୍ଷଣ କଲେ ଆସାମୀ ପାଇଁ କର୍ଷଣ ନାହିଁ । ବରଂ ଧର୍ଷିତା ହୁଏ କର୍ଷିତା । ଆସାମୀ ମୃତ୍ୟୁଦଣ୍ଡ ପାଇଲେ ମଧ୍ୟ ଧର୍ଷିତାର ଲୁଣ୍ଠିତ ଦ୍ରବ୍ୟ ଚିରଦିନ ଲାଗି ଅପହୃତ ହୋଇଯାଏ । ତେଣୁ



Digitized by PPRACHIN, SOA

ତା' ନିଜ ଜୀବନ ପ୍ରତି ଭୟ ନଥିଲା । ପ୍ରାଣ ପ୍ରତି ଲୋଭ ନଥିଲା । ଲୋଭ ଥିଲା କେବଳ ତା ଦେହରେ ଥିବା ତା ସ୍ୱାମୀର ସମ୍ପତ୍ତି ପ୍ରତି । ତା ନାକ ପୁଡ଼ାରେ ପବନ ଯା'ଆସ କରୁଥିବା ପର୍ଯ୍ୟନ୍ତ ସ୍ୱାମୀ ସମ୍ପଦଟିକୁ ଖୁବ୍ ସୁରକ୍ଷିତ ରଖିଥିବ । ଏହା ତା ନାରୀ ଜୀବନର ଏକମାତ୍ର ପଣ, ପ୍ରତିଜ୍ଞା ; ଈଶ୍ୱରଙ୍କ ପାଖେ ମିନତି, ମାଗୁଣି ।

ଶ୍ରାବଣୀ ଥିଲା ଅତ୍ୟନ୍ତ ଈଶ୍ୱର ବିଶ୍ୱାସୀ । ଈଶ୍ୱର ନାହାନ୍ତି ବୋଲି କିଏ କହି ପାରିବ ? ଭଗବାନ କୌଣସି ଉପାୟରେ ନିର୍ଦ୍ଦୋଷୀକୁ ରକ୍ଷା କରିବେ, ଦୁଷ୍ଟକୁ ଦଳନ କରିବେ, ଶିଷ୍ଟକୁ ପାଳନ କରିବେ– ଏହା ତା'ର ଦୃଢ଼ ବିଶ୍ୱାସ । ତା ମନରେ ଉଭାସିତ ହେଉଥିଲା ଦ୍ରୌପଦୀଙ୍କ ବସ୍ତ୍ର ହରଣ କଥା । ଶୂନ୍ୟରୁ ଭଗବାନ ବସ୍ତ୍ର ପଠାଇ ଦ୍ରୌପଦୀ ଭଳି ନାରୀକୁ ନିର୍ଯ୍ୟାତନାରୁ ରକ୍ଷାକଲେ ସିନା ! ବିଭିନ୍ନ ରୂପ; ଉପାୟରେ ଭଗବାନ ଏମିତି ଦଳିତ, ଦୁର୍ବଳକୁ ରକ୍ଷା କରନ୍ତି ! ଶ୍ରାବଣୀର ଆତ୍ମ ବିଶ୍ୱାସ ଜାଗି ଉଠୁଥିଲା ମନ ଭିତରେ । ଦିନେ ନା ଦିନେ ତା'ର ବିଶ୍ୱାସ ସଫଳ ହେବ । ଇଚ୍ଛା ହେଉଥିଲା ଈଶ୍ୱର ପ୍ରେରିତ ରକ୍ଷାକାରୀ ଲୋକଟିର ଚରଣ ସ୍ପର୍ଶ କରି ନମସ୍କାର କରିବାକୁ । ଭକ୍ତି ଆଉ କୃତଜ୍ଞତାରେ ତା'ର ଆଖି ଉଚ୍ଛୁଳି ଉଠିଥିଲା । ଏମିତି ଭଲ ଏବଂ ମନ୍ଦ ଲୋକର ସମଷ୍ଟିରେ ସଂସାର ଗଢ଼ା ।

ଘରୁ ଆସିଲା ବେଳେ ଶାଶୂ ଯେଉଁ ସର୍ବସଙ୍କଟହାରିଣୀ ମନ୍ତ୍ରର ଡ଼େଉଁରିଆଟିକୁ ତା ଡ଼ାହାଣ ବାହୁରେ ବାନ୍ଧି ଦେଇଥିଲେ, ତାକୁ ବାରମ୍ବାର ଛୁଉଁଥିଲା ଶ୍ରାବଣୀ । ମନେ ମନେ କୋଟି ନମସ୍କାର କଲା ସ୍ନେହଶୀଳା ଶାଶୂଙ୍କୁ । ତାଙ୍କ ମଧୁର ବଚନ, ମିଠାବୋଲା ସ୍ନେହ ଏବଂ ଟିକି ବୋହୂ ପ୍ରତି ଆନ୍ତରିକ ମମତା ମନେ ପକାଇ ଆଖିକୁ ଅଧିକ ଆର୍ଦ୍ର କଲା । ହସନ୍ତ ମୁହଁରେ ସାହିର ସମସ୍ତଙ୍କୁ ଶ୍ରଦ୍ଧା ବାଣ୍ଟନ୍ତି । ସେ ଶାଶୂ ନୁହଁନ୍ତ, ବୋହୂର ସାଥୀ ସଙ୍ଗାତ ନୁହଁନ୍ତ, ଜଣେ ଦେବତୀ, ମାତୃତ୍ୱର ମୂର୍ତ୍ତିବନ୍ତ ଚେହେରା । ଗୋରା ମସ୍ତକରେ ସୁସ୍ପଷ୍ଟ ସିନ୍ଦୂର ଟୋପା, ପ୍ରାତଃ ସୂର୍ଯ୍ୟର ରକ୍ତାଭ ଶୋଭା ଭଳି । ସରୁ ଲମ୍ବା ନାକ, ଗୋଟିଏ ପୁଡ଼ାର ଉପରି ଭାଗରେ ସୁନାର ଛୋଟ ଡ଼ଉରଟିଏ । ଶୁଭ୍ର, ସଜ୍ଜିତ, ସୁନ୍ଦର ଦାନ୍ତଗୁଡ଼ିକରେ ହସ



Digitized by PPRACHIN, SOA

ଲହଡ଼ା ମାରେ । ମା'ର ସବୁ ଗୁଣଗୁଡ଼ିକ ତାଙ୍କରିଠି ଠୁଳ । ଏମିତି ମା' ସେ କେବେ କେଉଁଠି ଦେଖି ନାହିଁ । ଦଇବ ଦୟା କଲେ ପୁଣି ତାଙ୍କ ସେବା କରିବାର ସୁଯୋଗ ପାଇବ ; ସ୍ନେହ ପାଇବ ; ତାଙ୍କରିମାନଙ୍କ ସ୍ନେହରେ, ସ୍ୱାମୀର ସରଗରେ ସ୍ୱର୍ଗ ତୋଳିବ ; ସୁଖ ସଂସାର ଧରି ଦିନାତି-ବାହିତ କରିବ ।

ଏଇମାତ୍ର ଘଟିଥିବା ଦୁର୍ଘଟଣା ଦେହରେ ପ୍ରବଳ ପୀଡ଼ା ଦେଉଥିଲା, ମନରେ ପ୍ରଚଣ୍ଡ ଆଘାତ ଆଣୁଥିଲା । ତା' ଦେହ ଥରୁଥିଲା ବରଡ଼ା ପତ୍ର ପରି, ପବନରେ ପତ୍ର ହଲିଲା ଭଳି । ସର୍ବାଙ୍ଗରେ ଆତଙ୍କର ସ୍ରୋତ । ତଣ୍ଟି ଶୁଖି ଯାଉଥିଲା । ଜିଭ ପାଟି ଅଠା ହୋଇଯାଇଥିଲା, ମୁଖ ଗହ୍ୱରରୁ କୌଣସି ବଚନ ପ୍ରକାଶ ପାଉନଥିଲା । ଭାଷା ଉଚ୍ଚାରଣ କରିବା ଅବସ୍ଥାରେ ସେ ନଥିଲା । ଦେହ ଥିଲା ବିବସ୍ତ୍ର ପ୍ରାୟ । ସନ୍ଧସ୍ଥଳ, ବକ୍ଷାଞ୍ଚଳ ଏବଂ ନାଭିମୂଳରେ ଛିନ୍ନ ବସ୍ତଟି ଯାହା ଆଉଚଣ କରିଥିଲା ; ଶ୍ରାବଣୀ ଦିଶୁଥିଲା ସଦ୍ୟବାତ୍ୟାକ୍ରାନ୍ତ, କର୍ଷିତ ବୃକ୍ଷଟିଏ ଭଳି । ଗୁଣ୍ଡାଙ୍କୁ ଭର୍ତ୍ସନା କରୁଥିଲା– ଅଳପେଇସା ମରୁ, ତା ବଂଶ ବୁଡୁ, ନର୍କ ଭୋଗୁ...

ଶ୍ରମିକ ଭଇ ଜଣେ ଚିହ୍ନିପାରିଲା । ଝିଅଟି ତାଙ୍କ ସହିତ ଆଜି କାମ କରୁଥିଲା । ଏତେ ରାତିରେ ସେ ଏଠି କାହିଁକି ବସିଥିଲା ? କ'ଣ କରୁଥିଲା ନିଛାଟିଆ ନିର୍ଜନ ରାତିରେ ?

ମୂଲିଆଣୀ କେତୋଟି ଆସି ଲୋକ ଘେରରେ ଯୋଗ ଦେଲେଣି । ସେମାନଙ୍କ ଅନେକ ପ୍ରଶ୍ନ, ପ୍ରଶ୍ନରେ କୌତୁହଳ ।

କା'ଆଗେ କହିବ ଏ ବେଦନା ବିଦଗ୍ଧ ଆତ୍ମକଥା ? କିଏ ବା ବିଶ୍ୱାସ କରିବ ତାର ଦୁରବସ୍ଥା, ଦୁର୍ଯୋଗ, ଆଉ ଦୁର୍ଭାଗ୍ୟ ? ଏମାନଙ୍କ ପାଇଁ କ'ଣ ବା କୈଫୟତ ଅଛି ତାର ? ରାତି ଅଧରେ ଏମିତି ବାହାରେ ବିଚରଣକାରୀ ମାଇପି ଜିଲାର ଚରିତ୍ର ସନ୍ଦେହମୁକ୍ତ ନୁହେଁ । ଶ୍ରାବଣୀ ଚୁପ୍ ରହିଥିଲା, ମୁହଁରେ କେବଳ ମୌନତା, କରୁଣତାର କାହାଣୀ ।



Digitized by PPRACHIN, SOA

ଜଣେ ଶ୍ରମଜୀବୀ ସ୍ତ୍ରୀ ସ୍ନେହାର୍ଦ୍ର କଣ୍ଠରେ ସମବେଦନାର ସ୍ୱର ତୋଳି କହିଲା– କାହିଁକି ଆଉ ପଛକଥା ଭାବୁଛ ଭଉଣୀ । ରାତିରେ ଏମିତି କ'ଣ ଝିଅମାନେ ବାହାରେବୁଲନ୍ତି ? ଗରୀବ ଗୁରୁବା ଲୋକ ଆମେ, ଖଟି ଖାଇବା ଆମର କାମ । ମହତ ସରିଲେ ସବୁ ସରିଲା, କେହି ପିଠିରେ ପଡ଼ିବାକୁ ନାହିଁ । ଏଠି ଗୁଣ୍ଡା, ବଦମାସଙ୍କ ରାଜତ୍ୱ, ନାଲିଆଖି, ଧମକ, ଅତ୍ୟାଚାର । ଦିନବେଳେ ସ୍ତ୍ରୀ ଭଉଣୀଙ୍କୁ ଟେକି ନେଉଛନ୍ତି । ଗରିବ ମାଇପ ସମସ୍ତଙ୍କ ଶାଳୀ । ଇଜ୍ଜତ୍‌କୁ ଡରି, ଆଖି କାନ ପାଟି ବୁଜି ଘରେ ରହିବା କଥା । ତେବେ ଆଉ ସେ କଥା ଭାବନା, ଶୋଚନା କରନା, ରାଇକଥା ରାଇ । ଭାଗ୍ୟ ଭଲ ଭଉଣୀ ! ମଡ଼ୁଆ ହାବୁଡ଼ରୁ ରକ୍ଷା ପାଇଲ, ନୋହିଲେ ଦୁର୍ଦ୍ଦାନ୍ତ ଲୋକଟା କଞ୍ଚା ଗିଳିଦେଇ ଦେଇଥାନ୍ତା । ଏଠି ତା ନା ଶୁଣିଲେ ଗର୍ଭିଣୀ ଗାଈ ବାଟ ଛାଡ଼ି ଦିଏ । ଏମିତି ବିପରିତିରୁ କେବେ କ'ଣ କିଏ ରକ୍ଷା ପାଇପାରେ ? ଧନ୍ୟ କହିବ ନୂଆ କଲରଟି ବାବୁକୁ । ଧନ୍ୟ ତାର ସାହସ । ଶଙ୍କରକୁ ସେଇ ହିଁ ଏକା ଶିକ୍ଷା ଦେଇ ପାରିଲା । ମନ୍ତ୍ର ଏଥର......

କେତେଜଣ ଶ୍ରମିକ ମତ ଦେଲେ– ଆମେ ସମସ୍ତେ ମେଳି ହେଲେ ଶଙ୍କର ଆମର କ'ଣ କରିବ ? ଆମେ ଖଟି ଭେଇବୁ, ସେ ଆମଠୁ ନବ ମହାସ୍ଥଳ !

: ଘର କେଉଁଠି ? ସ୍ୱାମୀ କ'ଣ କରନ୍ତି ?

ଶ୍ରାବଣୀ ପାଇଁ ଏହା ଏକ ବଡ଼ କଠିନ ଏବଂ ପୀଡ଼ାଦାୟକ ପ୍ରଶ୍ନ । ସେ ଆଜି ଗୋଟିଏ ଠିକଣା ନଥିବା ଚିଠି । ଘୂରି ବୁଲୁଛି ଦ୍ୱାର ଦ୍ୱାର । ସ୍ୱାମୀ ଦର୍ଶନାଭିଳାଷୀ । ମନଖୋଲି କା ଆଗେ ଯନ୍ତ୍ରଣା ପ୍ରକାଶ କରିବାକୁ ଭରସା ପାଉନି । ମୂକ ହୋଇ ରହିବା ଛଡ଼ା ତା'ର ଗତ୍ୟନ୍ତର ନାହିଁ । ଅସହାୟତା ତାକୁ ନିଷ୍ପ୍ରାଣ, ନିସ୍ପନ୍ଦ କରି ଦେଇଛି ।

ଆଉ ଜଣେ ସମଧର୍ମୀ ଶ୍ରମ ମହିଳା ମେଳ ଭିତରୁ ବାହାରି ଆସି ଶ୍ରାବଣୀର ନିକଟତମ ହୋଇ ତା ଦେହର ଛିନ୍ନ ଅଙ୍ଗବାସକୁ ଆଶ୍ୱାସନା



Digitized by PPRACHIN, SOA

ଭଙ୍ଗୀରେ ସଜାଡ଼ି ଦେଇ ଏବଂ କହିଲ,– ଆସ ଥାଳି ଗତିକ ଥାମ ଲୁଡ଼ିଆରେ ରହିଯିବ । କାଲିକୁ ଯାହା ବ୍ୟବସ୍ଥା କରିବ ପଛକେ ।

ଶ୍ରାବଣୀ ମନା କରି ପାରି ନଥିଲା ।

ମୁଣ୍ଡଚ୍ଛୁଆଁ, ନୁଆଁଣିଆ ଅଳ୍ପସ୍ଥାୟୀ ଘର । ଗରୀବ ଦୁନିଆର ସର୍ବ ସରଞ୍ଜାମ ସେଇ କ୍ଷୁଦ୍ର ବଖୁରିଟିକକରେ । ବାପ, ପୁଅ, ସ୍ତ୍ରୀ, ଝିଅ ବୁଢ଼ାବାପ ସମସ୍ତେ ଶୁଅନ୍ତି ଗୋଟିଏ ଘରେ । ଏକାଠି ଖାଆନ୍ତି ଟଙ୍କ ବାସନରେ । ରନ୍ଧା ସେଇଠି, ବଢ଼ା ସେଇଠି, ଖଟି ଖାଇବାର ସଂସାର ସେଇଠି । ସ୍ୱାମୀ ଯେଉଁଠି ପାଖରେ, ସ୍ୱର୍ଗ ସଂସାର ନୁହେଁ ତ ଆଉ କ'ଣ ?

ଆଖିକୁ ନିଦ ନାହିଁ, ତନ୍ଦ୍ରା ସ୍ପର୍ଶ କରୁନି । ମନରେ ଅଖଣ୍ଡ ଚିନ୍ତା ; ଆଖି ବୁଜିଲେ ଅନ୍ଧାର, ଆଖି ଖୋଲିଲେ ଅନ୍ଧାର, ଖାଲି ଅନ୍ଧାର, କଜ୍ଜାନ୍ଧାର, ନିସ୍ତାର ନାହିଁ ।

କାଲିର ଚିନ୍ତା । ଏ ସ୍ଥାନରେ ମୁହୂର୍ତ୍ତେ ରହିବା ବିପଦ । ସର୍ଦ୍ଦାର ଶଙ୍କରର ନିଶା ଛାଡ଼ିଲେ ପ୍ରତିଶୋଧ ନେବା ପାଇଁ ଧାଇଁ ଆସିବ କିମ୍ବା କେଉଁଠି ଲୁଚି ବସିଥିବ, ସୁଯୋଗ ପାଇଲେ ଗଗ ସୁଝାଇବ । ଆଉ ଥରେ ରାକ୍ଷସ ହାବୁଡ଼ରେ ପଡ଼ିଲେ ବର୍ତ୍ତିବା ଅସମ୍ଭବ । ଗତି ନପାହୁଣୁ ଏଠୁଁ ବାଟ କାଟିବା ଉଚିତ । ଯିବ ବହୁ ଦୂରକୁ, ସହରର ଅନ୍ୟ ଅଞ୍ଚଳକୁ ଯେଉଁଠି ଦୁର୍ଦ୍ଦାନ୍ତ ଶଙ୍କର ନଥିବ





Digitized by PPRACHIN, SOA

ପ୍ରିୟତମା ପ୍ରାଣେଶ୍ୱରୀକୁ ଖୋଜି ଖୋଜି ଦେବକାନ୍ତ ନୟାନ୍ତ ହେଲଣି । ସହରର ପ୍ରତି ଘମାଘୋଟ ଅଞ୍ଚଳ ବୁଲି ଦେଖିଲଣି । ଚୌରଙ୍ଗୀ, ଧରମ୍‌ତଲ୍ଲ, ଡାଲହାଉସୀ ସ୍କୋୟାର, ସିଆଲ୍‌ଦା, ନିଉମାର୍କେଟ, ଦମ୍‌ଦମ୍ ଅଞ୍ଚଳ । ଦେଖୁଛି ଅନେକ କିସମର ନାରୀ—ଅତ୍ୟାଧୁନିକା, ସର୍ବାଧୁନିକା ; ଆଧୁନିକତା ନାଁରେ ଯେଉଁମାନେ ନାରୀର ସୂକ୍ଷ୍ମାଙ୍ଗକୁ ଆକର୍ଷିତ କରିବା ପାଇଁ ଉତ୍କଟ ପ୍ରଶ୍ରୟ କରନ୍ତି, ଲଜ୍ଜତକୁ ଖାତିର ନ କରି ବସ୍ ଟ୍ରାମ୍‌ରେ ବସ୍ତା ଲଦି ହେଲ ଭଳି ଯାତାୟାତ କରନ୍ତି । ସ୍ଥାନ, କାଳରେ ନାରୀ ଲଜ୍ଜାର ସଜ୍ଞା ପରିବର୍ତ୍ତନ ହେଉଛି । ଏଠି ସ୍ତ୍ରୀ ଲଜ୍ଜା ଆଉ ଭୂଷଣ ହୋଇ ନାହିଁ, ନାରୀ ସୌନ୍ଦର୍ଯ୍ୟ ଘରର ଶ୍ରରିକାନ୍ଥ ଭିତରେ ଆଉ ସୀମାବଦ୍ଧ ନୁହେଁ । ନାରୀ ସୋନ୍ଦର୍ଯ୍ୟକୁ ଘୋଡ଼ାଇ ରଖିଲେ ସିନା ତା'ର ଶୋଭା ବର୍ଦ୍ଧିତ ହୁଏ । ସହରୀ ସଭ୍ୟତାରେ କିନ୍ତୁ ଏହା ପ୍ରଯୁଜ୍ୟ ନୁହେଁ । ସମୟ ବଡ଼ ଲେଉଟାଇଲଣି । ପ୍ରତି ମୁହୂର୍ତ୍ତରେ ବିବର୍ତ୍ତନବାଦ ନୂଆ ନୂଆ ଖେଳ ଦେଖାଉଛି । କିନ୍ତୁ ଶ୍ରାବଣୀର ସେଇ ଓଢଣା ଢଙ୍କା ମୁହଁ, ଚୁପ୍ ଚୁପ୍ କଥା, ଆକର୍ଷଣୀୟ ଲୁଗା ଢଙ୍କା ଅଙ୍ଗଲତା ଦେବକାନ୍ତର ଅପାଶୋଗ ରହିଛି । ମାତ୍ର କେତୋଟି ଦିନର ମିଳନ, କେତେ ଆକର୍ଷଣ ସେଥିରେ ! ସୃଷ୍ଟିର କଅଣ କିମିଆ ? ଯୁବକ ଯୁବତୀ । ଅଜଣା, ଅଚିହ୍ନା । ବିବାହର ବୈଦିକ ମନ୍ତ୍ର ବାନ୍ଧିଦିଏ ଏକତ୍ର । କାଲିର ସାତ ପର ଯୋଡ଼ି ହୁଅନ୍ତି ସବୁଠୁଁ ନିଜର । ସହସ୍ର ଯୋଜନ ଦୂରତାକୁ ନିକଟ କରିଦିଏ ନିମିଷକ ମଧ୍ୟରେ, ଉଭୟଙ୍କୁ ଯୋଡ଼ି ଦିଏ ଯୋଗସୂତ୍ର । ସେ ବନ୍ଧନ ସହଜେ ଛିଣ୍ଡେନା । ବଡ଼ ଅଦ୍ଭୁତ ଏ ହିନ୍ଦୁ ସାମାଜିକ ରୀତି । ପଶ୍ଚାତ୍ୟ ସଭ୍ୟତା ପାଇଁ ଏହା ଏକ ପରମାଶ୍ଚର୍ଯ୍ୟର ବିଷୟ । ହିନ୍ଦୁ ଧର୍ମରେ ସ୍ୱାମୀ ସ୍ତ୍ରୀର ସମ୍ପର୍କ କେତେ ସ୍ୱର୍ଗୀୟ ! କେତେ ପବିତ୍ର ! ଯେ ଅନୁଭବୀ ସେହିଁ ବୁଝେ । ଯେଉଁ ଦିନ ସେ ବାସର ଗତିରେ ଶ୍ରାବଣୀକୁ ଖୁବ୍ ନିକଟରେ ପାଇଥିଲ, ସେ ଅନୁଭବ କରିଥିଲ ସତେ ଯେମିତି କୋଉ ଯୁଗରୁ ତା ସହିତ ସମ୍ପର୍କ !



Digitized by PPRACHIN, SOA

ଯଦି ପୂର୍ବଜନ୍ମ, ପରଜନ୍ମ ବୋଲି ବିଶ୍ୱାସଟିଏ ନଥାନ୍ତା ଦୁଇଜଣଙ୍କ ମଧ୍ୟରେ ଏମିତି ଘନିଷ୍ଠତା ହୋଇ ପାରନ୍ତା ଅବା କିପରି ? କାହିଁକି ସେ ଆଜି ଗୋଟିଏ ଝିଅ ପାଇଁ ଚିନ୍ତିତ, ବ୍ୟଥିତ ଏବଂ ଭରକ୍ରାନ୍ତ ? ସେ ଅନୁଭବ କରୁଥିଲା, ପତିପତ୍ନୀ ସମ୍ପର୍କ ଅବିଛେଦ୍ୟ, ସମ୍ପର୍କ ଜନ୍ମଜନ୍ମାନ୍ତର ପାଇଁ । ଦାମ୍ପତ୍ୟ ସମ୍ପର୍କରେ ଥାଏ ସ୍ୱର୍ଗୀୟତା, ଥାଏ ପବିତ୍ରତା, ଥାଏ ସୃଷ୍ଟିର ମହତ୍ତ୍ୱ ଓ ମହକ ଯେଉଁଠି ରହିଛି ଜୀବୋତ୍ପତ୍ତିର ମୂଳମନ୍ତ୍ର ବଂଶ ବିକାଶର ମୂଳତତ୍ତ୍ୱ । କିନ୍ତୁ ଯେଉଁଠି ଥାଏ ଚରିତ୍ର ସ୍ଖଳନ, ଯେଉଁଠି ଥାଏ ଆସୁରିକ ଚିନ୍ତା, କେବଳ ଶାରୀରିକ ସଙ୍ଗମ, ଯୌନତୃପ୍ତି ସେଠି ନଥାଏ ଅମୃତ, ନଥାଏ ଅମରତ୍ୱ, ନ ଥାଏ ସ୍ୱୟଂସତ୍ତା, କେବଳ ହିଁ ଥାଏ ପଶୁର ଚିନ୍ତା । ଯେଉଁ କାରଣ ଯୋଗୁଁ ମଣିଷ ପଶୁଠୁଁ ଭିନ୍ନ ତା ହେଉଛି 'ମଗଜ' ବା ସଚ୍ଚରିତ୍ରବତ୍ତା ଦୁଶ୍ଚରିତ୍ର ଗୋଟାଏ ଅଗ୍ନି ସ୍ଫୁଲିଙ୍ଗ ; ହଠାତ୍ ଜଳି ଉଠେ, କ୍ଷଣକେ ଲିଭିଯାଏ, ରଖିଯାଏ କ୍ଷତ ଚିହ୍ନ– ପାଉଁଶ ପୁଳିଏ ।

ଅନେକ ଦର୍ଶନତତ୍ତ୍ୱ ଶିକ୍ଷିତ ଦେବକାନ୍ତ ମନକୁ ସ୍ପର୍ଶ କରୁଥିଲା । ବର୍ତ୍ତମାନ ସେ କଠୋର ବାସ୍ତବତାର ସମ୍ମୁଖୀନ । ହୃଦୟରେ ଅନୁତାପର ଜ୍ୱାଳା –କାହିଁକି ସେ ଜାଣି ଜାଣି ସ୍ତ୍ରୀକୁ ହାତଛଡ଼ା କଲା ?

ମନକୁ ଛୁଇଁଲା ବୋଉ କଥା ! କାନେ କାନେ ବୋଉ କହିଥିଲା, ଭୁଆସୁଣୀ ବୋହୂ, ପିଲାଝିଅ, ବାହାର ଦେଖିନି । କହନ୍ତି କଲିକତା ଖରାପ ଜାଗା । ଗୋଡ଼େ ଗୋଡ଼େ ଜଗିଥିବୁଟି !

ଦେବକାନ୍ତ ହସି ହସି କହିଥିଲା– ସାବି ସିନା ପିଲା, ମୁଁ କ'ଣ ଆଉ ପିଲା ହୋଇଛି ! ଏମ୍: ଏ: ପଢ଼ିଛି, ସହରରେ ରହି ପାଠ ପଢ଼ିଛି । ସେ ସିନା ସହର ଦେଖିନି, ମୁଁ କ'ଣ ଦେଖିନି ନା ମୋତେ ସହର ନୂଆ ! ବୋଉ କଥାକୁ ସେଦିନ ଦେବକାନ୍ତ ଉଡ଼ାଇ ଦେଇଥିଲା ଉଏଁ, ଉଏଁ । ଆଜି କିନ୍ତୁ ମନେ ପଡ଼ୁଛି ବୋଉ କଥାର ଗୁରୁତ୍ୱ, ତାର ଚେତାବନୀ । ଅଭିଜ୍ଞ ଗୁରୁଜନମାନଙ୍କ ଉପଦେଶକୁ ଭ୍ରୂକ୍ଷେପ ନକରି ହେୟ ମନେ କଲେ ଏମିତି ଅସୁବିଧାରେ ପଡ଼ନ୍ତି ମଣିଷ ।



Digitized by PPRACHIN, SOA

ଏବେ କ'ଣ ହେଇ ? କ'ଣ କୈଫିୟତ ଦେବ ସେମାନଙ୍କୁ ? କେଉଁ ମୁହଁରେ ସେମାନଙ୍କ ଆଗରେ ଠିଆ ହେବ ? ପିତାମାତାଙ୍କ ଅନୁମତି ନେଇ ମାତ୍ର ଦିନ ଗ୍ରରିଟା ପାଇଁ ଶ୍ରାବଣୀକୁ ସାଙ୍ଗରେ ଧରି ଆସିଥିଲ । ପନ୍ଦରଦିନ ବିତି ଗଲଣି । ଗାଁରେ ବାପା ବୋଉ ଅଧୈର୍ଯ୍ୟ ହେଉଥିବେ, ବ୍ୟସ୍ତ ହେଉଥିବେ । ବୋଉ ଉଦ୍‌ଗ୍ରୀବ ହୋଇ ଗ୍ରହିଁ ବସିଥିବ ସେମାନଙ୍କ ଫେରନ୍ତା ବାଟକୁ, ବାପା ସବୁଦିନ ବସ୍ ବେଳକୁ ଅପେକ୍ଷା କରି ରହୁଥିବେ ; ଟିକିନୀ କୁଆଁକୁ ଗ୍ରଭଳ ଦେଉଥିବ, ହନୁମାନ ପ୍ରଶ୍ନ କରୁଥିବ ; ଭଇ ଭଉଜ କେତେବେଳେ ଆସିବେ ।

କିପରି ସେମାନଙ୍କ ଦୁଷ୍ଚିନ୍ତା ଦୂର କରିବ ? ପତ୍ର ଲେଖିବ ? କ'ଣ ଲେଖିବ ? ଶ୍ରାବଣୀ ନିରୁଦ୍ଦିଷ୍ଟ ? ନାଃ, ଅକାରଣରେ ସେମାନଙ୍କ ମନରେ ଦୁଃ-ସମ୍ବାଦର ଆଘାତ ଦେବନି । ଇଚ୍ଛା ହେଉଥିଲ, ବିନା ଟିକଟରେ ଘରକୁ ପଳାଇବା ପାଇଁ । କିନ୍ତୁ ଏହା ତାର ଅଯୋଗ୍ୟତା ପ୍ରମାଣ କରିବ । ପତ୍ର ଦେଇ ସେମାନଙ୍କ ମନରେ ଅଧିକ ଅସ୍ଥିରତା ଏବଂ ଆଶଙ୍କା ସୃଷ୍ଟି କରିବା ଅନୁଚିତ । ବରଂ ଏପରିସ୍ଥଳେ ଚୁପ୍ ରହିବା ଭଲ । ସେ ଉପାୟହୀନ । ଯେଉଁ ପର୍ଯ୍ୟନ୍ତ ସେ ଶ୍ରାବଣୀକୁ ଖୋଜି ନ ପାଉଛି ସେ ପର୍ଯ୍ୟନ୍ତ ସେ ଗାଁକୁ ଫେରୁନାହିଁ । ଏହା ତାର ସିଦ୍ଧାନ୍ତ, ଦୃଢ଼ ନିଷ୍ପତ୍ତି ।

ପୁଣି ସେଇ ପେଟ ଦାଉ ହାଉ ହାଉ ହେଲଣି । ପେଟ ଆଉ ପାଟି ନଥିଲେ ଜୀବନ ଷାଣ୍ଡୁ ପାଲଟି ଯାନ୍ତାଣି ପର ! ଏଇ ଅନ୍ନ ଚିନ୍ତା ପାଇଁ ସିନା ମଣିଷର ଏତେ ଉଦ୍ୟମ, ଆୟୋଜନ, ଅଭିଯାନ ଏବଂ ବାଦ ବିବାଦ । ସୁଖରେ ମୁଠିଏ ଖାଇ ଆରାମ ଓ ଆଳସ୍ୟରେ ବଞ୍ଚିବ ବୋଲି ସିନା ସାମାନ୍ୟ ଗ୍ରକିରୀ ଖଣ୍ଡିଏ ପାଇଁ ସେ ଧାଇଁ ଆସିଛି ସୁଦୂର କଲିକତା ନଗରୀକୁ । ଆଜିକାଲି ଶିକ୍ଷାୟତନରେ ଗ୍ରକିରୀ ଅଭିମୁଖୀ ଶିକ୍ଷା । ପାଠପଢ଼ା କେବଳ ସୁଖ ଜୀବନ, ଆଳସ୍ୟ ଏବଂ ଆରାମ ପାଇଁ ଉଦ୍ଦିଷ୍ଟ । ଉଚ୍ଚ ପଙ୍ଖା ତଳେ ଟେବୁଲ ଚୌକିରେ ବସି କାଗଜ ଗ୍ରଷ ପାଇଁ ଉଚ୍ଚ ପାଠ ପଢାର ଉଦ୍ଦେଶ୍ୟ । ସେଥିରେ ପୁଣିଥାଏ ପିତାମାତାଙ୍କ ପ୍ରେରଣା ।



Digitized by PPRACHIN, SOA

ପୁଅ ଦେହରେ ବାବୁଆନୀ ଛାପ ଲଗିଲେ ପିତାମାତା ଅପାର ଆନନ୍ଦ ପା'ନ୍ତି । ଏହା ଦୀର୍ଘକାଳ ଇଂରେଜ ଶାସନର ଅବଦାନ ଆମ ସମାଜ ପ୍ରତି । ସେଇଥିପାଇଁ ସୃଷ୍ଟି ହୋଇଛି ଆଜିର ବେକାରୀ ସମସ୍ୟା । ଝାଳ ନିଗିଡ଼ା ପରିଶ୍ରମ ପାଇଁ ଆଜିର ଶିକ୍ଷିତ ସମାଜ ପରାଙ୍ମୁଖ ।

ଗାଁରେ କେଇମାଣ ଆବାଦୀ, ଅନାବାଦୀ ଜମି ପଡ଼ି ରହିଛି । ବାପ, ଗୋସେଇଁ ବାପ ଅମଳରୁ ସେଇ ମାଟି ପରିବାରର ଭରଣପୋଷଣ କରି ଆସୁଥିଲା । ଏବେ କିନ୍ତୁ ଆସିଛି ଚିରଚରିତ ଗ୍ରାମ୍ୟ ଜୀବନରେ ବ୍ୟତିକ୍ରମ । ପେଟ ପୋଷା ପାଠ । ପାଠ ପଢ଼ିଲେ, ଶିକ୍ଷିତ ବୋଇଲେ ମାଟି ସ୍ପର୍ଶ ମନା, କେବଳ କାଗଜ କଲମ ସହିତ ଧସ୍ତାଧସ୍ତି । ଚାକିରୀ ତାର ଗୋଲାମୀ, ସେଥିରେ କେବଳ ଅଧିକାରୀ ଓ ଅଧସ୍ତନର ସମ୍ପର୍କ । ଚାକିରୀ ମାନେ ହିଁ ବଶମ୍ବଦ ଯେତେ ପଦବୀ ଆଉ ଉଚ୍ଚାସନ ହେଉନା କାହିଁକି । ଦେବକାନ୍ତର ଆଜିର ଦୁରବସ୍ଥା କେବଳ ଚାକିରୀ ଅନ୍ୱେଷଣ ଯୋଗୁଁ । ପିତାଙ୍କ ପ୍ରେରଣାରେ ସେ ପ୍ରାଣମୂର୍ଚ୍ଛା ଚାକିରୀ ଖୋଜିବାରେ ଲାଗି ପଡ଼ିଥିଲା । ବିବାହୋତ୍ତର ଜୀବନରେ ଚାକିରିଟା ଯେମିତି ଜୀବନ ଯୌବନ ଉପଭୋଗ ପାଇଁ ଏକାନ୍ତ ଅପରିହାର୍ଯ୍ୟ ! ତାର ଇଚ୍ଛା ଥିଲା, ମନୋପଯୋଗୀ ଚାକିରୀ ନ ମିଳିଲେ, ଜନ୍ମମାଟି ପଲ୍ଲୀରେ କରିଥାନ୍ତା ମାଟି ସହିତ କର୍ଷଣ, ଆଧୁନିକ ପଦ୍ଧତିରେ ଚାଷ –ଟ୍ରାକ୍ଟର, ପମ୍ପ, ଉନ୍ନତ ବୀଜ, ଉନ୍ନତ ପ୍ରଣାଳୀ, କୃଷି ବିଜ୍ଞାନର ସଦୁପଯୋଗ । କିନ୍ତୁ ପରିସ୍ଥିତିର ଧକ୍କାରେ ସବୁ ଓଲଟ ପାଲଟ ହୋଇ ଗଲଣି, ମୁଣ୍ଡ ଉପରେ ଭୂତ ଭଳି ମାଡ଼ି ବସିଛି ସୁହାଗିନୀ ଶ୍ରାବଣୀର ଚିନ୍ତା । ଏଇଲେ ମିଳିଯାନ୍ତା କି ଶ୍ରାବଣୀ, ଆଖି ବୁଜି ସଳଖେ ଧାଇଁ ଯାନ୍ତା ମାନପୁରକୁ । କହନ୍ତା ବାପା ବୋଉ, ଚାକିରୀ ମିଳିଛି, ମିଳିଛି ବହୁ କଷ୍ଟରେ । ଉଦ୍‌ଗ୍ରୀବ ହୋଇ ଶୁଣନ୍ତେ ସମସ୍ତେ ।

ବୋଉ ମୁହଁରେ ହସର ଫୁଲଝରି ଝଡ଼ି ମେଲି ଉଠନ୍ତା । ହସନ୍ତ ମୁହଁରେ ସନ୍ତୋଷର ସୁଷମା ଫୁଟାଇ ପଚାରନ୍ତା– କୋଉ ଚାକିରୀରେ ପୁଅ ? ଦରମା କେତେ ?



Digitized by PPRACHIN, SOA

ଟିକିନୀ ଭଇ ବେଳରେ ଆସି ଝୁଲି ପଡ଼ନ୍ତା, କହନ୍ତା, ଭଇ ଗୁଳିରୀ ପାଇଲ, ମୋତେ କ'ଣ ଦେବ ଆଗେ କୁହ ।

ଥୟ ଧର, ଗୁକିରୀଟା ଆଗ ପ୍ରକାଶ କରିଦିଏ ।

ଶ୍ରାବଣୀ ମୁଚକି ମୁଚକି ହସୁଥାନ୍ତା, ମନେ, ମନେ କହୁଥାନ୍ତା, କେଡ଼େ ବେହେଲ ...

ନାଟକୀୟ ଭଙ୍ଗୀରେ ଘୋଷଣା କରନ୍ତି— ଶୁଣ ତେବେ, ଗୁକିରୀଟା ଆଜି ଏଇଠି, ବାପାଙ୍କ ପାଖେ, ଗୁହାଳରେ, ଗୋରୁ ଗାଈଙ୍କ ପାଖେ, ଆମ ବିଲ ଗହିରରେ, ବାଡ଼ି ବଗିଚାରେ ...

କେହି ହଠାତ୍ କିଛି ବୁଝିପାରୁ ନଥାନ୍ତେ । ଦେବର କ'ଣ ପାଗଳାମି ?

ସମଝେଇବାକୁ ଡ଼େରି ଲଗନ୍ତାନି । ସତରେ ଆମେ କର୍ମକୁଣ୍ଠ । ଆମେ ଦି' ଅକ୍ଷର ପଢ଼ିଛେ ବୋଲି, ଶିକ୍ଷିତ ବୋଲି ନାଗର ପିଟୁଛେ । ସ୍ୱର୍ଣ୍ଣ ମାଟିକୁ ଅବହେଳା କରି ଗୁକିରୀ ନାଁରେ ଭୁଆଁ ବୁଲୁଛେ । ସୁନାର ମାଟି ଆଜି ଆହ୍ୱାନ କରୁଛି ଲକ୍ଷ୍ୟଭ୍ରଷ୍ଟ ଯୁବ ସମାଜକୁ, ମୃତ୍ତିକାକୁ କର ଶସ୍ୟଶ୍ୟାମଳା, ସୁବର୍ଣ୍ଣ ଉତ୍ପନ୍ନ କର, ବିଜ୍ଞାନର ଅବଦାନ ଗ୍ରହଣ କର, ସରକାରୀ ସାହାଯ୍ୟର ସୁଯୋଗ ନିଅ, ପ୍ରକୃତିର ଦାନକୁ ଉପଯୁକ୍ତ ବିନିଯୋଗ କର, ଦାରିଦ୍ର୍ୟ ଦୂରକର, ସୁନା ସଂସାର ସୃଷ୍ଟିକର ; ସୁଖ, ଶାନ୍ତି, ସମୃଦ୍ଧିରେ ନିଜକୁ ଭସାଇ ଦିଅ ...

ଦେବକାନ୍ତ କଳ୍ପନା ଗଗନରୁ ଫେରିଲ ବାସ୍ତବ ଜଗତକୁ । ଏମିତି ପରାନ୍ନଭୋଜୀ, ଅକର୍ମଣ୍ୟ ଜୀବନ ଆଉ କେତେ ଦିନ ? ଆଉ ନୁହେଁ । ହୃଦୟରେ ଜାଗି ଉଠିଲଣି ପଲ୍ଲୀ ଚେତନା, ସମୟର ଆହ୍ୱାନ ମନରେ ପ୍ରତିଧ୍ୱନିତ ହେଲଣି । ଖାଲି ଶ୍ରାବଣୀକୁ ସାଥୀରେ ପାଇଲେ ସେ ନିଶ୍ଚିନ୍ତ ହେବ ଏଠୁଁ । କେବେ ନିସ୍ତାର ପାଇବ ଏ ମହାକାନ୍ତାରରୁ ?



Digitized by PPRACHIN, SOA

ଶ୍ରାବଣୀକୁ ଆଉ କେଉଁଠି ନପାଇ ଦେବକାନ୍ତ ପୁଣି ଗଲା ହାବଡ଼ା ଷ୍ଟେସନକୁ । ସେଇ ହାବଡ଼ା । ଅନ୍ୟ ସ୍ଥାନ ଅପେକ୍ଷା ଏଠି ସେ ମିଳିବାର ଅଧିକ ସମ୍ଭାବନା । ତା' ଭଳି ସେ ମଧ୍ୟ ଏମିତି ସ୍ୱାମୀକୁ ଖୋଜି ଖୋଜି ଏଠାକୁ ଆସିଥାଇ ପାରେ । କେଉଁଠି ବସି କାନ୍ଦୁଥିବ ପଥ ଅବା ଷ୍ଟେସନ ଛୁଆଁ ରେଳଗାଡ଼ି ଗୁଡ଼ିକ ଲକ୍ଷ୍ୟ କରୁଥିବ ବୋଧେ ।

ନିରଶ, ନିଷ୍ପ୍ରଭ ନୟନରେ ଦେବକାନ୍ତ ନିରୀକ୍ଷଣ କରିନେଲା ଷ୍ଟେସନର ପ୍ରତି ସ୍ଥାନକୁ, ପ୍ରତି ବିନ୍ଦୁକୁ । ଶ୍ରାବଣୀର ଚିହ୍ନ, ବର୍ଣ୍ଣ, ଗନ୍ଧ ନାହିଁ, କେବଳ ଅନ୍ୱେଷଣର ପୀଡ଼ାରେ ପ୍ରାଣକୁ ଶାନ୍ତକରିବା ସାର, ଯେମିତି ଗୁଡ଼ିଏ ଅଶ୍ରୁପାତ ହେଲେ ଗୁରୁଦୁଃଖ କେତେକାଂଶରେ ଲଘବ ହୋଇଥାଏ । ଆଖିକୁ ଗୁଡ଼ିଏ ଲୁହ ଆସନ୍ତା ହେଲେ ମୁଣ୍ଡ ହାଲୁକା ହୁଅନ୍ତା ; କିନ୍ତୁ ରୁକ୍ଷ ଆଖିରୁ ଲୁହ ଝରୁନି, ଯେମିତି ଶୁଷ୍କ କାଠରୁ ରସ ନିଗିଡ଼େନି । ଶୁଖିଲା କାଠ ମର୍ଦ୍ଦପରି ଟାଣ, ଦମ୍ଭ, କିନ୍ତୁ ଭିତର ନରମ, ଭିତରେ ଜାଳେଣି ଥାଏ, ସାଏଁ କିନି ଜଳିଯାଏ, ନିଃଶେଷିତ ହୋଇଯାଏ । ଝୁଅ ପିଲା, ଲଜକୁଳୀ ଲତା, ଚଟ୍‌କିନା ତଗଳି ଯିବ, ନରମି ଯିବ । ଦେବକାନ୍ତ ମରଦ ପୁଅ, ଯୁବକ, ଦାମ୍ଭିକତାର ପ୍ରତୀକ । ଜୀବନ ଝଂଜାରେ ଦବୀ ଯିବ ନାହିଁ ; ଟଳି ପଡ଼ିବ ନାହିଁ । ଏମିତି ଅନେକ କଷ୍ଟ ଆସେ, ପ୍ରତିବନ୍ଧକ ବାଟ ଓଗାଳେ, ଦୁର୍ଯୋଗ ଦେହର ବଜ୍ରାଘାତ କରେ, ତଥାପି ସେଗୁଡ଼ିକୁ ସମ୍ଭାଳିବା, ପ୍ରତିକାରର ପନ୍ଥା ବାହାର କରିବା, ସମାଧାନର ଉପାୟ ଚିନ୍ତା କରିବା, ବୀର୍ଯ୍ୟବାନ ପୁରୁଷର ଲକ୍ଷଣ, ବଳବାନ ପୁରୁଷର କର୍ତ୍ତବ୍ୟ । ଘଟଣାର କୂଟରେ ଶ୍ରାବଣୀ ନିଖୋଜ ହୋଇଛି, ଏମିତି ସହସ୍ରାଧିକ ଘଟଣା ସହରରେ ଘଟୁଛି । ଧୈର୍ଯ୍ୟ, ପ୍ରଚେଷ୍ଟା, ଅନଳସ ଉଦ୍ୟମ ଲକ୍ଷ୍ୟହାସଲର ମୂଳମନ୍ତ୍ର । ହତାଶର ସମୁଦ୍ର ଭିତରେ ଦେବକାନ୍ତ ନିଜେ ନିଜକୁ ପ୍ରବୋଧନା ଦେଉଥିଲା ।

ହାବଡ଼ା ଷ୍ଟେସନ ଜନାକୀର୍ଣ୍ଣ । ପେଟରେ ଆଜି ଅନ୍ନମୁଠିଏ ନ ପଡ଼ିଲେ ଅବସ୍ଥା ଅସମ୍ଭାଳ, ଦେହ ଅଚଳ ହୋଇ ପଡ଼ିବ । କେତୋଟି ଦିନ ଅଖାଦ୍ୟ, ଅନାହାରରେ କଟିଲାଣି । ଉପାର୍ଜନର ପନ୍ଥା ନାହିଁ ।



Digitized by PPRACHIN, SOA

ଆଗରେ ନାଲିକୁର୍ତ୍ତା ପିନ୍ଧା କୁଲିଗୁଡ଼ିଏ ନଜରକୁ ଆସିଲେ । ସେମାନଙ୍କ ମୁଣ୍ଡରେ ସାପ ଚେକେଇ ହୋଇ ଶୋଇଲା ଭଳି ଗାମୁଛାର ଠେକା । ଯାତ୍ରୀମାନଙ୍କ ଭରି ମାଲ ସମ୍ଭାଳି ନେବା ପାଇଁ ମୁଣ୍ଡଟିର ଏହି ସ୍ଥାନଟି । ଷ୍ଟେସନ ପହୁଞ୍ଚା ରେଳଗାଡ଼ିରୁ ବାହାରକୁ, ବାହାରୁ ଗାଡ଼ି ଭିତରକୁ ହାତରେ, ମୁଣ୍ଡରେ ଜିନିଷ ବୋହିବା କୁଲିର ଧନ୍ଦା । କୌଣସି କାମ ନ୍ୟୂନ ବା ନିଉଁଛୁଣିଆ ନୁହେଁ । କାମ କରି ସତ୍ ଉପାୟରେ ଉପାର୍ଜନ କରିବାରେ ଦୋଷ ନାହିଁ ; ବରଂ ସେଥିରେ ଥାଏ ଆତ୍ମତୃପ୍ତି, ସନ୍ତୋଷ । ଦୋଷ ତାର, ଯିଏ ଉଚ୍ଚ ନୀଚ, ବଡ଼ ସାନର ପାର୍ଥକ୍ୟ ଦେଖେ, ଦୋଷ ଥାଏ ମନର ବିଗ୍ରହଧାରରେ । ଶିକ୍ଷାର ଅହଂକାରକୁ ମନରୁ ବାଦ୍ ଦେଲେ ସବୁ କାମ ସୁନ୍ଦର ।

କୁଲିକାମ କରିବାକୁ ମନ ବଳିଲା ଦେବକାନ୍ତର । ହାତରେ ବଳ ଅଛି, ଭେଣ୍ଡା ମଣିଷ । ଅବସ୍ଥାକୁ ଚିହ୍ନି ପେଟ ପାଟି ପାଇଁ ରୋଜଗାର କରିବା ମନା ନାହିଁ । ଏମିତି ଅଭେକା, ମାଗିଖିଆଙ୍କ ପରି ବୁଲିବା ଅପେକ୍ଷା ବରଂ କୁଲି କାମ କରିବା ଅନେକ ଉତ୍ତମ କାର୍ଯ୍ୟ ।

ମନର ପ୍ରସ୍ତାବ ଦେହକୁ ନେଲା । ପ୍ଲାଟଫର୍ମରେ ରେଳଗୁଡ଼ିଏ ଆସି ଛିଡ଼ା ହୋଇଛନ୍ତି । କୁଲିଗଣ ଇତସ୍ତତଃ ଧାଁ ଦୌଡ଼ କଲେଣି ଜିନିଷ ଉତାରିବା ପାଇଁ । ଅପେକ୍ଷାକୃତ କମ୍ ଭିଡ଼ଥିବା ଉଚ୍ଚଶ୍ରେଣୀ ଡବାର ଝରକା ଭିତରେ ମୁଣ୍ଡ ପୁରାଇଲା ଦେବକାନ୍ତ । ଦେଖିଲା, ବାବୁ ଜଣେ, ସାହେବ ରକମର ଦିଶୁଛନ୍ତି, ବ୍ୟାଗ, ବେଡ଼ିଂ, ଆଟାଚି ସଜାଡୁଛନ୍ତି । କୌଣସି ବିଦେଶୀ ପର୍ଯ୍ୟଟକ ବୋଧହୁଏ ।

ଖୁବ୍ ନେହୁରା ହୋଇ କହିଲା– ବାବୁ, କୁଲି ?

: ହଁ, ଜିନିଷ ଉଠା ।

ପରମାଗ୍ରହରେ ପଶିଗଲା କମ୍ପାର୍ଟମେଣ୍ଟ ଭିତରକୁ । ଅଳ୍ପ ଜିନିଷ । ବେଡ଼ିଂ ଓ ଆଟାଚିକୁ ମୁଣ୍ଡରେ ଥୋଇ ବଡ଼ ବ୍ୟାଗକୁ ହାତରେ ଧରିଲା ।



Digitized by PPRACHIN, SOA

କ୍ଷିପ୍ର ପଦରେ ଅନୁଧାବନ କଲା ଯାତ୍ରୀ ପର୍ଯ୍ୟଟକଙ୍କୁ । ଅକ୍ଲେଶରେ ପାର ହୋଇଗଲା ପ୍ଲାଟଫର୍ମ ପରିସରକୁ, ଖୁବ୍ ଦମ୍ଭରେ ଆଗନ୍ତୁକଙ୍କୁ ହାଜର କରାଇ ଦେଲା ଟ୍ୟାକ୍ସି ପାଖରେ ପୋଷାକ କୁଲିଟିଏ ଭଳି ।

ପାରିଶ୍ରମିକ ପଚାରିବାକୁ ପର୍ଯ୍ୟଟକଙ୍କର ଅଭ୍ୟାସ ନଥିଲା ବୋଧହୁଏ । ସଙ୍ଗେ ସଙ୍ଗେ ପକେଟରୁ ଦୁଇଟି ଚକ୍ ଚକ୍ ମୁଦ୍ରା ବାହାର କରି ଦେବକାନ୍ତ ହାତରେ ଧରାଇ ଦେଇଥିଲେ । ପଞ୍ଚାଙ୍ଗୁଳିର ନିରାପତ୍ତା ଭିତରେ ଦୁଇଟି ଟଙ୍କାକୁ ଚିପିଧରି ଦେବକାନ୍ତ ଉଷୁମ ଅନୁଭବ କଲା । ଶୀତଳ ମନ ଗରମ ହୋଇଉଠିଲା । ପିଣ୍ଡରେ ପ୍ରାଣ ପଶିଲା ପରି ଲାଗିଲା ତାକୁ, ଯେମିତି ଭୂଇଁରେ ଛଟପଟ ହେଉଥିବା ଜୀଅନ୍ତା ମାଛକୁ ପାଣିରେ ଛାଡ଼ି ଦେଲେ ସେ ପୁନର୍ଜୀବନ ଲାଭରେ ଚଞ୍ଚଳ ହୋଇଉଠେ । ଏଇ ମୁଦ୍ରା ଦୁଇଟି ଜୀବନର ପ୍ରଥମ ରୋଜଗାର । ଏ ପର୍ଯ୍ୟନ୍ତ ସେ ଥିଲା ପିତାନ୍ନ-ଭୋଜୀ । ଆଜି ଶ୍ରମ କରି ଉପାର୍ଜନ କରିବାର ଆନନ୍ଦ ଥିଲା ତାର ବର୍ଣ୍ଣନାତୀତ । ମନରେ ଭରିଗଲା ଅପୂର୍ବ ଉଲ୍ଲାସ । ଆଃ, ଏଇନେ ପାଖରେ ଶ୍ରାବଣୀ ଥାନ୍ତା କି !

ଛିଃ, ଅବାନ୍ତର, ଅସନା, ବାଜେ କଥା । ସ୍ତ୍ରୀ କ'ଣ କେବେ ପସନ୍ଦ କରନ୍ତା ସ୍ୱାମୀର କୁଲିଗିରି, ବରଦାସ୍ତ କରନ୍ତା ସ୍ୱାମୀର ମୂଲିଆପଣ ? ପତିର ହାକିମ ପଣରେ ଉଚ୍ଚପଦରେ ଫୁଲିବା, ଫୁଲେଇ ହେବା ପ୍ରତି ପତ୍ନୀର ସ୍ୱଭାବ । ଭଲ ହୋଇଛି, ସେ ଭାଗ୍ୟକୁ ଏଠି ନାହିଁ, ନୋହିଲେ ସ୍ତ୍ରୀ ମୁହଁରୁ ଶୁଣିଥାନ୍ତା ଭର୍ତ୍ସନା । ରକ୍ଷା ତେବେ । ଏକଡ଼ ସେକଡ଼କୁ ଗୁହିଁଲା ଦେବକାନ୍ତ ।

ମନପ୍ରାଣ ଚଞ୍ଚଳ ହୋଇଉଠିଲାଣି ଅଧିକ ରୋଜଗାର ପାଇଁ । ସୁବିଧା ଉପାୟଟିଏ, ଆତ୍ମମର୍ଯ୍ୟାଦା କଥା କିଏ ଚିନ୍ତାକରୁଛି ? କେହି ବାଧା ଦେବାକୁ ନାହିଁ, ତା ସମ୍ମାନ ଟଳେ ପଡ଼ିଯାଉନାହିଁ ।

ଦେହକୁ ଟିକିଏ ବଳ ଆବଶ୍ୟକ । ଜଳଖିଆ ଦୋକାନ ପାଖରେ ହାଜର ହେଲା । ପୋଷାକ ଖରିଦଦାର ଭଳି ବରାଦ ଦେଲା– ବରା,



Digitized by PPRACHIN, SOA

ପଳୁଚି, ଘ୍ୱ' । ମହାନନ୍ଦରେ ଠିଆ ଠିଆ ଘିଛିବାକୁ ଲାଗିଲା । ମନଶ୍ଚକ୍ଷୁରେ ପୁଣି ଉଙ୍କିମାରି ସମ୍ମୁଖରେ ଛିଡ଼ା ହେଲା ଶ୍ରାବଣୀ, ତା'ର ଚପଳ ଘହାଣୀ, କରୁଣ ଚିତ୍ର । ତମେ ଏଠି ମନ ଖୁସିରେ ଖାଉଛ, ମୁଁ ଭୋକ ଉପାସରେ ସଢୁଛି, ମରୁଛି । ମୋ କଥା କ'ଣ ପାଶୋରି ଗଲ ?

ଭାବନାରେ ଛେଦ ପଡ଼ିଲା, ଯେତେବେଳେ ପଛଆଡୁ ଜଣେ କିଏ ମାରିଲା ଶକ୍ତ ଧକ୍‌କାଟିଏ । ହାତରୁ ଖସି ପଡ଼ିଲା ଘ୍ୱ' କପ୍‌ଟି । ଦୈବାତ୍ ଭାଙ୍ଗି ନାହିଁ । ଗରମ ଘ୍ୱ' ପଡ଼ି କୁର୍ତ୍ତାରେ ରଙ୍ଗ ବୋଳି ଦେଲା ।

କିଏ ?

ନିଜକୁ ଦେଖିଲା, ଉତ୍ୟକ୍ତ, ଉତ୍ତେଜିତ କୁଲିମାନଙ୍କ ଘେର ଭିତରେ । ବଳୁଆ, ଟାଗଡ଼ା, ମୁଛଧାରୀ କୁଲି ଜଣେ କ୍ରୁଦ୍ଧ ଗର୍ଜ୍ଜନ କରି ଖୁବ୍ ପାଖକୁ ଭିଡ଼ି ଆସିଲା ଏବଂ କର୍କଶ, କଡ଼ା ଗଳାରେ ଜେରା କଲା— କିରେ କେବେଠୁଁ ଏ ଧନ୍ଦା କଲୁଣି ?

ସମବେତ ଆକ୍ରମଣର ଧ୍ୱନି ଏକ ସ୍ୱରରେ ଉଚ୍ଚାରିତ ହେଉଥିଲା । ଯୋଡ଼ ହସ୍ତରେ ଦେବକାନ୍ତ ନଇଁ ସଇଁ କହିଲା— "ନାଇଁ ଭାଇ, ପଇସା ନ ଥିଲା । ଖାଲି ପେଟ ପାଇଁ ଆଜିଠୁଁ ଏ କାମ ଧରିଛି, ଥରଟିଏ ମାତ୍ର ... "

ଛିଗୁଲେଇ ହୋଇ ଦାନ୍ତ କାମୁଡ଼ି କହିଲା ଜଣେ କୁଲି— ଥରଟିଏ ମାଇ ଅଫିସରେ ନାଁ ରେଜିଷ୍ଟ୍ରି କରିଛୁ ? ମାରବେ ଶଳାକୁ, ଘ୍ୱହିଛ କ'ଣ ?

ସଂଗଠିତ ଭାବେ କୁଲିମାନେ ମାରିବାକୁ ଉଠି ଆସିଲେଣି । ଘଡ଼ଘଡ଼ି ପରେ ବୃଷ୍ଟି ଅବଶ୍ୟମ୍ଭାବୀ । ପଚାଶ ପ୍ରାୟ କୁଲିଙ୍କଠୁଁ ଗୋଟିଏ ଲେଖାଏଁ ବିଧା ଖାଇଲେ ତା ହାଡ଼ ମାଂସ ଗୁଣ୍ଡ ହୋଇ ମାଟିରେ ମିଶିଯିବ, ସରା ରହିବ ନାହିଁ । ଆତ୍ମରକ୍ଷାର ଅସ୍ତ୍ର କ'ଣ ତା ପାଖେ ଅଛି ? ଶାରୀରିକ ବଳ କଷାକଷି ପାଇଁ ମାନସିକ ଅବସ୍ଥାରେ ନଥିଲା ସେ । ସୁଇ,



Digitized by PPRACHIN, SOA

କଲେଜର କୁସ୍ତି, କସରତ୍ ଘରେଇଗଜନ, କ୍ରୀଡ଼ା କୌତୁକ ଆଜି ଅତୀତର ଘଟଣା ତା ପାଇଁ । ଇଚ୍ଛା ହେଉଥିଲା ଫିଲ୍ମର ହିରୋ ଭଳି ଦୁଇ ଗୁଡ଼େଟି ମୁଖ୍ୟ ମାରି ଏମାନଙ୍କୁ ଉଚିତ ଶିକ୍ଷା ଦେବାକୁ, କିନ୍ତୁ ପରିସ୍ଥିତିକୁ ଚାହିଁ ସଂଯମ ରକ୍ଷା କଲା । ବରଂ ଅଧିକ ଶତ୍ରୁତା, ହଟଗୋଳ ଏବଂ ଆଇନ ଶୃଙ୍ଖଳା ଭଙ୍ଗପାଇଁ ପୋଲିସର ସମ୍ମୁଖୀନ ହେବାହିଁ ସାର ।

କ'ଣ ବେ ଏମିତି ଭଦ୍ରଲୋକ ସାଜି ଚୁପ୍ ହୋଇ ଠିଆ ହୋଇଛୁ ? ଏକାଧିକ ସ୍ୱର । ଆରମ୍ଭ ହୋଇଗଲା ଠେଲା ପେଲା । ଆଉ ରକ୍ଷା ନାହିଁ । ଅନ୍ୟ କିଛି ଉପାୟ ନଦେଖି ଖୁବ୍ ଟାଣ ଇଂରାଜୀ ଭାଷାରେ ପ୍ରୟୋଗ କଲା ଆତ୍ମରକ୍ଷାର ଅସ୍ତ୍ର । ଅବୋଧ୍ୟ ଇଂରାଜୀ ଭାଷା ଭୂଷି ଦେଇଥିଲା ମୂର୍ଖ କୁଲିମାନଙ୍କ ଦେହରେ କମାଣ ସଦୃଶ । ସମସ୍ତେ ହୋଇ ଯାଇଥିଲେ ସ୍ତବ୍ଧ । ଉତ୍ତେଜିତ ଆଖି ଗୁଡ଼ିକ ହଠାତ୍ ନରମ ହୋଇ ପୁନଶ୍ଚ ବିସ୍ତାରିତ ହେବାକୁ ଲାଗିଥିଲା । ନିଆଁରେ ପାଣି ପଡ଼ିଲା ଭଳି ଅନୁଭୂତ ହେଲା । କୁଲିମାନେ ଥିଲେ ସ୍ତମ୍ଭୀଭୂତ ।

ଲୋକଟି ତେବେ ଉଚ୍ଚ ଶିକ୍ଷିତ । କୁଲିଗିରି କାହିଁକି କରୁଛି ? ସମସ୍ତଙ୍କ ମୁହଁରେ ମହାଶ୍ଚର୍ଯ୍ୟର ଚିହ୍ନ ।

କୁଲିମାନଙ୍କ ଆକ୍ରୋଶ ଭାବ ହଠାତ୍ କମି ଆସିଲା, ଉଗ୍ର ଜନତା ହୋଇଥିଲା ଶିଷ୍ଟ । ସେମାନଙ୍କ ମନରେ ଦୟାଭାବ ଉଦ୍ରେକ ହେଲା ଏ ଶିକ୍ଷିତ ଯୁବକଟି ପ୍ରତି । ସେମାନଙ୍କ କଠୋର ମନୋଭାବର ପରିବର୍ତ୍ତନ ଦେଖି ଦେବକାନ୍ତ ଶାନ୍ତ ଗଳାରେ ତା ଦୁଃଖ ପ୍ରକାଶ କଲା, ତା ଦୁର୍ଦ୍ଦଶାର କାରଣ ସଂକ୍ଷେପରେ ବୟାନ କଲା । ସମସ୍ତେ ତା ଆଡ଼କୁ ସ୍ତିମୀତ ନୟନରେ ଚାହିଁ ରହିଥିଲେ କିଂକର୍ତ୍ତବ୍ୟ ବିମୂଢ଼ ଭାବର ଅବତାରଣା ଢଙ୍ଗରେ ।

ଅପ୍ରୀତକର ଅବସ୍ଥାକୁ ସୁଧାରିବା ଢଙ୍ଗରେ ଜଣେ କୁଲି ସାହସ କରି ପଚାରିଲା– ଆଜ୍ଞା, ଆପଣେ କୋଉ କ୍ଲାସ ଯାଏଁ ପାଠ ପଢ଼ିଛ ?



Digitized by PPRACHIN, SOA

ନମ୍ର ଭାବରେ କହିଲା ଦେବକାନ୍ତ– ଏମ୍. ଏ, ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଶ୍ରେଣୀ । ଯାଠୁ ଆଉ ଅଧିକ ପାଠ ଆମ ଦେଶରେ ନାହିଁ ।

: ଆରେ ବାପରେ ! ଏତେ ଗୁଡ଼େ ପାଠ ପଢ଼ି କୁଲି କାମ କରୁଛ ?

: ଉପାୟ କ'ଣ ? ସମୟ ପଡ଼ିଲେ ଭଗବାନ ଗଧ ପାଦ ଧରନ୍ତି, ନଳଗଙ୍ଗା ଘାସ କାଟନ୍ତି । ମୁଁ ଆଉ ଅଧିକ ଖରାପ କାମ କ'ଣ ବା କଲି ? ଏଠାର କାନୁନ ମୋତେ ଜଣା ନଥିଲା । କୁଲି କାମ କଲେ ରେଜିଷ୍ଟ୍ରିଭୁକ୍ତ ହେବାକୁ ପଡ଼େ ବୋଲି ମାଲୁମ ନଥିଲା ମୋତେ ।

କଥାଟା ତାହେଲେ ଅଡୁଆ ହୋଇଗଲା । ଭୁଲବଶତଃ ସେମାନେ ଶିକ୍ଷିତ ଲୋକଟାକୁ ଅପଦସ୍ତ କରିଛନ୍ତି । ଉତ୍ତେଜନା ବଶତଃ ଗୋଟେ ଅଧେ ଧକ୍କା, ବେକିଆ ଲାଗି ଯାଇଛି । ଅସଂଯତ, ଅଶ୍ଲୀଳ ଭାଷା କେତୋଟି ମଧ୍ୟ ପ୍ରୟୋଗ ହୋଇଛି ଖୁବ୍ ରୁକ୍ଷ ଭାବେ ।

ସମ୍ବେଦନଶୀଳ ହୋଇ ପଶ୍ଚାତାପ ଗଳାରେ କୁଲି ସର୍ଦ୍ଦାର କହିଲା– ତମେ ଆଉ ବାବୁ କୁଲି କାମ କର ନାହିଁ ।

ଦେବକାନ୍ତ କହିଲା– "ଭାଇମାନେ, ତେବେ ଆଉ କ'ଣ କାମ କରି ପାରିବି ମୁଁ ? ଏହାଛଡ଼ା ମୋର ଆଉ ଅନ୍ୟ ଉପାୟ ନାହିଁ । ମୋର ଏଠି କେହି ସାହା ଭରସା ନାହାନ୍ତି, ପାଠ ପଢ଼ିଛି ବୋଲି କ'ଣ କୁଲି କାମ କରିବାକୁ ମନା ? କାମ ତ ଭଗବାନ । ହାତଗୋଡ଼ ଥାଇ ଯିଏ କାମ ନ କରେ ସେ ପଙ୍ଗୁ, ସେ ମଣିଷର ଶତ୍ରୁ । ତାକୁ ଭଗବାନଙ୍କ ଆଶୀର୍ବାଦ ମିଳେନି ।"

ଓଜନିଆ, ମୂଲ୍ୟବାନ କଥାଗୁଡ଼ିଏ । ସମସ୍ତଙ୍କ ମନକୁ ପାଇଲା । ଯୁବକଟି ଶିକ୍ଷିତ ନୁହେଁ କେବଳ, ଶିକ୍ଷାର ମାନ ବୁଝେ । ତା'ଠି ମଣିଷ– ପଣିଆ ଅଛି । କଥା କହିବାର ପଟୁତା, ବୁଝାଇବା ଭଳି ଦକ୍ଷତା ତା'ର ଅଛି ।



Digitized by PPRACHIN, SOA

"ତା ହେଲେ ତମେ କୁଲି କାମ କରିବ ବାବୁ ? ବଡ଼ ହିନିମାନିଆ କାମ ଆଜ୍ଞା । ଏ କାମ ତମକୁ ସୁନ୍ଦର ସାଜିବ ନାହିଁ, ଛିଃ ..."

ମୂଲିଆ ଆଖିରେ ମୂଲିଆ ନ୍ୟୁନ, ନୀଚ । ମୂଲିଆର ମୂଲ୍ୟବୋଧ ବୁଝୁଛି କିଏ ? ବଡ଼ ଅଜବ ଚିନ୍ତା ...

ଟିକିଏ ଭାବିକରି ସର୍ଦ୍ଦାର ପ୍ରସ୍ତାବ ଦେଲା– ଜାଣିଛ ବାବୁ, ଆମର ଏଠି କୁଲିମାନଙ୍କର ଗୋଟେ ସଙ୍ଘ ଅଛି, ଘର ଅଛି । ସେ କଣରେ, ଷ୍ଟେସନର ଗୋଦାମ ଘର ପାଖରେ । ସର୍କାର ଆମକୁ ଘର ଦେଇଛନ୍ତି । ଆମର ଲେଖା, ପଢ଼ା, ହିସାବ ଆଦି ରଖିବାକୁ ଜଣେ ପାଠୁଆ ଲୋକ ଦର୍କାର । ତମେ ସେଠିକୁ ଚାଲ । କ'ଣ କହୁଚରେ ବିକଳି ଭାଇ ?"

: ତୁ ତ ମୋ କଥାକୁ ମୁହଁରୁ ଛଡ଼ାଇ ନେଲୁ । ମୁଁ ତ ସେଇଆ କହୁଥିଲି । ଖୁବ୍ ଭଲକଥା, ଚାଲ ବାବୁ ସେଠିକି, ଚାଲ, ଚାଲ ... ଏକ ନିଃଶ୍ୱାସରେ କହିଲା ବିକଳି ।

ଅନ୍ୟମାନେ ସମସ୍ୱରରେ ପ୍ରସ୍ତାବକୁ ସମର୍ଥନ କଲେ । ଦେବକାନ୍ତ ଅନୁରୋଧ ଏଡ଼ାଇ ପାରି ନଥିଲା । ଏମିତି ସୁବିଧା ହଠାତ୍ ଆସି ଜୁଟି ଯିବ ବୋଲି ଆଶା କରି ନଥିଲା । କମ୍‌ସେ କମ୍ ପେଟକୁ ମୁଠିଏ ଖାଦ୍ୟ ମିଳିଯିବ, ରାତିରେ ଘଡ଼ିଏ ଶୋଇବାକୁ ସାମାନ୍ୟ ଜାଗା । ଏତିକି ତା ପାଇଁ ଯଥେଷ୍ଟ । ବାରବୁଲା ଭିକାରୀ ଜୀବନରୁ ପରିତ୍ରାଣ ମିଳିବ ତ !

ସାମାନ୍ୟ ସାହସ ଅନୁଭବ କଲା ସେ । ରହିବା ପାଇଁ ଟେନାଏ ଜାଗା, ପେଟ ପାଇଁ ମୁଠାଏ ଅନ୍ନ ମିଳିଗଲେ ଶ୍ରାବଣୀକୁ ଠାବକରି ବାହାର କରିବା ତା' ପକ୍ଷେ କଷ୍ଟକର ହେବ ନାହିଁ ।

ଅନୁରୋଧ କ୍ରମେ ଯନ୍ତ୍ର ଚାଳିତ ପରି ଦେବକାନ୍ତ ସଙ୍ଘ ଅଫିସକୁ ଗଲା । ଆକ୍‌ବେଷ୍ଟସ୍‌ର ଛୋଟ କୋଠରୀଟିଏ । ସେଥିରେ ଚୌକି, ଟେବୁଲ ଏବଂ କେତୋଟି ବେଞ୍ଚ । ସେଇଠି ତା'ର ନିଯୁକ୍ତି, ଚାକିରି;



Digitized by PPRACHIN, SOA

ହେଉ ପଛେ ସାମୟିକ । ସେଥିରେ ଥିଲା ତା'ର ଆନନ୍ଦ, ଆଗ୍ରହ । ବେତନ ପାଇଁ କୌଣସି ଚୁକ୍ତିର ଆବଶ୍ୟକତା ମଣି ନଥିଲା । ସସ୍ନେହରେ ସେମାନେ ନିଯୁକ୍ତି ଏବଂ ଦାୟିତ୍ୱଟିଏ ପ୍ରଦାନ କରିଛନ୍ତି । ଖୁବ୍ ନିଷ୍ଠା ଏବଂ ଆନ୍ତରିକତାର ସହିତ ପାଳନ କରିବ ତା କର୍ତ୍ତବ୍ୟ । ସ୍ୱଳ୍ପକାଳ ମଧ୍ୟରେ ସେମାନଙ୍କର ଯଦି ସେ କିଛି ଉପକାରରେ ଲାଗେ, ଖୁସି ହେବ ।

କୁଲି ସଙ୍ଘ ଘର ଅସଜଡ଼ା, ଅବହେଳିତ ଭାବେ ପଡ଼ି ରହିଥିଲା । ଘର ଭିତରେ ଅଳିଆ, ଅଳନ୍ଧୁ ଏବଂ ଆବର୍ଜନା ପରିପୂର୍ଣ୍ଣ ଥିଲା । ଚଟାଣରେ ଟୁକୁରା କାଗଜ, ପୋଡ଼ା ଉଚ୍ଛିଷ୍ଟ ବିଡ଼ିଖଣ୍ଡ ମାନଙ୍କର ସ୍ତୂପାକୃତି ରୂପ । ଧୂଳିବିଛା ଟେବୁଲ ଉପରେ କାଗଜ, ଖାତା ଏବଂ କୋଡୋଟି ଫାଇଲ ନିର୍ଜୀବ ଭଳି ପଡ଼ି ରହିଥିଲେ । ତା ସାଙ୍ଗକୁ ମୁନଭଙ୍ଗା ପେନ୍ସିଲ ଏବଂ ଶୁଷ୍କ ଡଟ୍ କଲମ । ଘୁରିଆଡ଼ ଆଖି ବୁଲେଇ ଆଣିଲା ଦେବକାନ୍ତ । ଛିଣ୍ଡା ଝାଡୁଧରି ଚଟାଣ ଓଳେଇ ଆଣନ୍ତେ, ଶିଷ୍ଟାଗ୍ରର ଦୃଷ୍ଟିରୁ ଜଣେ ହୃଦୟବାନ କୁଲି ତା ହାତରୁ ଝାଡୁ ଛଡ଼େଇ ନେଇ ସଫେଇ କାମରେ ଲାଗି ପଡ଼ିଲା ।

; ପାଠୁଆ ପିଲାକୁ ଝାଡୁଦାର କାମ ସୁନ୍ଦର ସାଜେନି । ଏସବୁ କାମ ଆମମାନଙ୍କର ।

ଆରମ୍ଭ ହୋଇ ଯାଇଥିଲା କୁଲି ଭାଇମାନଙ୍କ ଦ୍ୱାରା ନିମ୍ନତମ ଆତିଥ୍ୟ— ସାମାନ୍ୟ ଜଳାହାର । ପରମାଗ୍ରହରେ ସେଗୁଡ଼ିକ ଦେବକାନ୍ତ ଗ୍ରହଣ କରିଥିଲା । କୃତଜ୍ଞ ଅନୁଭବ କରିଥିଲା ମନେ ମନେ ।

ମନକୁ ଏଥର ଥୟକଲା ଦେବକାନ୍ତ । କୁଲିମାନଙ୍କ ଦାବୀ-ପତ୍ରଗୁଡ଼ିକ ଉପରେ ନଜର ଫିରକଲା । ଡୋକେ ପିଇ, ଦଣ୍ଡେ ଜୀଇଁବା ଏଇ କୁଲିଭାଇ ମାନଙ୍କ ଜୀବନ । ଲେଖା ଲେଖି ମାଧ୍ୟମରେ ଯଦି କିଛିଟା ଉପକାର ସାଧିତ ହୋଇପାରେ ସେ ଧନ୍ୟ ମନେ କରିବ ନିଜକୁ । ●●●



Digitized by PPRACHIN, SOA

ସେ ଦିନ ଦୁଷ୍ଟ ଦୁର୍ବୃତ୍ତ ହାବଡ଼ରୁ ଅଳ୍ପକେ ରକ୍ଷାପାଇ ଇଜ୍ଜତକୁ ବଞ୍ଚାଇ ଗତି ନ ପାହୁଣ୍ଡୁ ଛୁଟି ଆସିଥିଲା ନଗରର ଅନ୍ୟ ଅଞ୍ଚଳକୁ ଯେଉଁଠି ଶଙ୍କରର ଦୌରାତ୍ମ୍ୟ ନ ଥିବ । ଅସାମାଜିକ ଲୋକର ଲୋଲୁପ ଦୃଷ୍ଟିରୁ ନିଜକୁ ଦୂରେଇ ରଖିବ । ମୂଲିଆଣୀ କାମ ଆଉ କେବେ କରିବ ନାହିଁ । ସେଥିରେ ମଧ୍ୟ ଅଛି ଦୁଷ୍ଟର ବିଷ-ଦୃଷ୍ଟି । ନିଃସହାୟା ନାରୀର ଜୀବନ ପ୍ରତି ପାଦେ ପାଦେ ବିଡ଼ମ୍ବିତ, ବିପର୍ଯ୍ୟସ୍ତ, ନିର୍ଯ୍ୟାତିତ । ଏହା ସେ ଅଙ୍ଗେ ନିଭେଇଛି ।

ମହାନଗରୀର ରାଜଦାଣ୍ଡ, ସେଥିରୁ ପୁଣି ଶାଖା, ପ୍ରଶାଖା ବ୍ୟାପିଛି ଭିତରକୁ ଭିତରକୁ ମାଟି ଭିତରେ ବୃକ୍ଷର ପ୍ରସାରିତ ଚେରଭଳି । ଗଳି ରାସ୍ତାରେ ଗତିକଲା ଶ୍ରାବଣୀ । ଏମିତି କେତେ ଚାଲିବ ? ଯାତ୍ରାର ଶେଷ ବିନ୍ଦୁ କେଉଁଠି ? ଅପରାହ୍ନର ସମୟ । ଅଳ୍ପ ଖରା, ଅଳ୍ପ ଛାଇ । ମୁଣ୍ଡ ଉପର ଆକାଶରେ ଭାସମାନ କଳା, ଧଳା ବଉଦର ସ୍ତରିଭୂତ ଆସ୍ତରଣ । ଥକି ପଡ଼ୁଥିଲା ଶ୍ରାବଣୀ । ଗତି ମନ୍ଥର ହୋଇ ଆସିଲା । ଅଟକି ରହିଲା ଜଣକ ଘରପାଖେ । ଲୁହା ଫାଟକ ଫାଙ୍କରେ ଦୃଷ୍ଟି ବର୍ଦ୍ଧିତ କଲା ଘରର ହତା ଭିତରକୁ ।

ଦୃଶ୍ୟଟି ଆଖିକୁ ଖୁବ୍ ଭଲ ଲାଗିଲା, ଦୃଷ୍ଟି ସ୍ଥିର ରହିଲା । କ୍ଷୁଦ୍ର ଉଦ୍ୟାନଟିଏ, ସେଥିରେ ନାନାରଙ୍ଗର ଫୁଲ । ବାରଣ୍ଡା ଧାରରେ ଫୁଲକୁଣ୍ଡ କେତୋଟି ଖୁବ୍ ଢଙ୍ଗରେ, ଯତ୍ନରେ ସ୍ଥାପିତ । ବାରଣ୍ଡାସାରା ସୁଶୋଭିତ ଫୁଲର ବର୍ଣ୍ଣାଳୀ । ଦୁଇଟି ଫେସନୀ ଚୌକିରେ ସ୍ୱାମୀ ସ୍ତ୍ରୀ ମଉଜରେ ବସି ମିଷ୍ଟାଳାପ କରୁଥାନ୍ତି, ଅବସର ଉପଭୋଗ କରୁଥାନ୍ତି । ସ୍ୱାମୀଙ୍କ ମୁହଁକୁ ମାନିଲା ଭଳି ସରୁ ଚଷମା, ଦେହରେ ହୁଗୁଳା ପଞ୍ଜାବୀ ଓ ପାଇଜାମା । ନାକ ତଳେ ସରୁ ନିଶ । ମୁଣ୍ଡରେ କୁଞ୍ଚକୁଞ୍ଚ ବାଳ,



Digitized by PPRACHIN, SOA

ବେକରେ ଗୋଟିଏ ସୁନା ଚେନ । ଡ଼ାହାଣ ହସ୍ତାଙ୍ଗୁଳିରେ ପଥର ବସା ସ୍ୱର୍ଣ୍ଣ ମୁଦି କେତୋଟି । ହାତରେ ଖଣ୍ଡିଏ ବହି ଧରି ସ୍ୱାମୀ ସମୟାତି-ବାହିତ କରୁଥାନ୍ତି । ମୁହାଁ ମୁହିଁ ବସିଥାନ୍ତି ଭଦ୍ରବେଶୀ ମହିଳା–ସହଧର୍ମିଣୀ, ସେ ମଧ୍ୟ ସମୟର ସଦ୍‌ବ୍ୟବହାରରେ ଲଗିଥାନ୍ତି । କଣ୍ଢାରେ ପଗଗଣି ସ୍ୱଏଟର ବୁଣୁଥାନ୍ତି । ଉଭୟଙ୍କର ବୟସ ତିରିଶ ଭିତରେ ହେବ । ମଝିରେ ମଝିରେ ସେମାନଙ୍କ ମଧ୍ୟରେ କଥୋପକଥନ–ମିଠା କଥା– ମିଠା ଗୁହାଣି–ହସ, ହର୍ଷ । ତାଆନ୍ତୁ ସୂଚିତ ହେଉଥିଲା ସେମାନଙ୍କ ଆର୍ଥିକ ସ୍ୱଚ୍ଛଳତା ।

ପାଖରେ ଖେଳରତ ଥିଲା ଦୁଇବର୍ଷର ସ୍ୱାସ୍ଥ୍ୟବାନ ଶିଶୁଟିଏ । ଗୋଲ ଗୋଲଗାଲ ହୃଷ୍ଟ ପୁଷ୍ଟ ଏବଂ ମା' କୋଳ ପୂରିଲା ଭଳି ଚେହେରା । ଏମିତି ଶିଶୁଟିଏକୁ କୋଳରେ ଧରି, ବକ୍ଷାହାର ଦେଇ କେତେ ସ୍ୱର୍ଗାନନ୍ଦ ଅନୁଭବ କରୁ ନଥିବ ତା ମା' ! ଶ୍ରାବଣୀ ଆକର୍ଷିତା ହୋଇଥିଲା ତା ପ୍ରତି । ଇଚ୍ଛା ହେଉଥିଲା ପାଖକୁ ଧାଇଁ ଯାଇ ଶିଶୁଟିକୁ କୋଳକୁ ଟେକି ଆଣନ୍ତା ଏବଂ ତାର ପୁଚ୍‌କା ପୁଚ୍‌କା ଗାଲରେ ଓଠ ଲଗାଇ ବୋକ ଦିଅନ୍ତା ...

ମନ ଗୁହୁଁଥିଲା ଏଇଠି ରହିଯାନ୍ତା, ଗୃହକର୍ମ କରି ସେମାନଙ୍କୁ ସନ୍ତୁଷ୍ଟ କରନ୍ତା, ଉଦ୍ଦେଶ୍ୟ, ଅଭିପ୍ରାୟ ଜଣାନ୍ତା, ଯଦି ସେମାନେ କିଛି ସାହାଯ୍ୟ କରି ପାରନ୍ତେ ...

ନିଜକୁ ଅଖାଡ଼ୁଆ ଲଗୁଥିଲେ ମଧ୍ୟ ଲୋଭ ସମ୍ବରଣ କରିପାରି ନଥିଲା ଶ୍ରାବଣୀ । ଦଗ୍ଧ ଆଶାକୁ ଧରି ଲୁହା ଫାଟକ ଖୋଲିଲା, ଗଲା ଭିତରକୁ, ବାବୁ ବାବୁଆଣୀଙ୍କ ପାଖକୁ । ବିନୟାବନତ ଭଙ୍ଗୀରେ ଦ୍ୱାର ପାଖରେ ଠିଆ ହେଲା ।

: କ'ଣ କାମ ? ଭଦ୍ରମହିଳାଙ୍କର ପ୍ରଶ୍ନ ।

ଶ୍ରାବଣୀ ନିରୁତ୍ତର । ଏକଦମ୍ ଅଜଣା ଲୋକ ପାଖେ ନିଜ ଉଦ୍ଦେଶ୍ୟତା ହଠାତ୍ କହି ହୁଏ ନାହିଁ । ଏ ସ୍ଥଳରେ ଉତ୍ତରହୀନତାହିଁ



Digitized by PPRACHIN, SOA

ବରଂ ସେ ଉଦ୍ଦେଶ୍ୟର ପ୍ରକାଶକ ଭାବେ କାର୍ଯ୍ୟ ତୁଲାଇ ଥାଏ । ନିରୁତ୍ତର ଶ୍ରାବଣୀ କିଛି ମାଗୁଛି ବୋଧହୁଏ ଅସୁବିଧାରେ ପଡ଼ି । ଭଦ୍ରବ୍ୟକ୍ତି ଜଣକ ମତ ଦେଲେ ।

: ନାଁ, ନାଁ, ଏଠି କିଛି ନାହିଁ, ଅନ୍ୟ ଆଡ଼େ ଦେଖ । ଗୃହିଣୀ ରେକ୍ ଠୋକ୍ ଭାବେ କହି ଉଠିଲେ ।

: ଭିକ ମାଗୁନି ମା ।

: ଆଉ ତେବେ ?

: କିଛି ଗୋଟାଏ କାମ ଖୋଜୁଛି । ଶ୍ରାବଣୀ କଣ୍ଠରେ କରୁଣ ଆବେଦନର ସ୍ୱର ।

: କି କାମ କରି ପାରିବୁ ତୁ ? ଗୃହ ସ୍ୱାମୀଙ୍କର ଆବେଗଭରା ପ୍ରଶ୍ନ ...

: ଘରର ଯାବତୀୟ କାମ– ରନ୍ଧା, ବଢ଼ା, ବଟା, କୁଟା, ଲୁଗାକଚା ଏବଂ ପିଲା ପାଳିବା ପର୍ଯ୍ୟନ୍ତ ...

ଘର କାମ ତୁଲାଇବା ଏବଂ ଗୃହ ସମ୍ଭାଳିବା ପାଇଁ ଚାକରାଣୀଟିଏ ଉପସ୍ଥିତ । ଏ ଘରର ବହୁ ଦିନର ଆବଶ୍ୟକତା । ବିନା ଚାକର ଚାକରାଣୀରେ ଘର ଚଳିବା ଅସମ୍ଭବ । ଗୃହର ସମସ୍ତ ପଦାର୍ଥରେ କଳଙ୍କି ଲାଗିଯିବ, ଘରର ସୁଖ ସମ୍ଭୋଗ ଅନେକାଂଶରେ ଦକ୍ଷ ଚାକର ଚାକରାଣୀ ଉପରେ ନିର୍ଭର କରିଥାଏ । ନୋହିଲେ ଖଟଣି, ରୋଗ, ଅଶାନ୍ତି । ଚାକର ବା ଚାକରାଣୀଟିଏ ଖୋଜି ଖୋଜି ସେମାନେ ନୟାନ୍ତ ହୋଇଛନ୍ତି । ଯଦିବା କେତେବେଳେ ପାଇଛନ୍ତି ତାହା ଅଳ୍ପ ଦିନ ପାଇଁ । କୋଉ ଚାକର ବା ମୁହିଁ କାମୁଡ଼ି ପଡ଼ି ରହୁଛି କେବଳ ଦାନା ଗଣ୍ଡାଏ ଆଉ ସାମାନ୍ୟ ଅର୍ଥ ପାଇଁ ? ଏବେ ପରିସ୍ଥିତି ଯାହା ହେଲଣି ଚାକରଟିଏ ମିଳିବା ଏକ ସମସ୍ୟା । ସେମାନେ ସେଥିପାଇଁ ଅନୁଭବ କରୁଥିଲେ ଜଣେ ବିଶ୍ୱସ୍ତ ଚାକରର ଆବଶ୍ୟକତା । ସେମାନେ ଅଧିକ ଦରମା ଦେବା ପାଇଁ ମଧ୍ୟ ପ୍ରସ୍ତୁତ ଥିଲେ ।



Digitized by PPRACHIN, SOA

ଭଦ୍ରମହିଳା ଆଗ୍ରହୀ ହୋଇ ଉଠିଲେ । ପଚାରିଲେ– ଘର କେଉଁଠି ? ନାମ କ'ଣ ? କେତେ ପଇସା ନେବୁ ?

ଭଦ୍ରବ୍ୟକ୍ତି ଟିକିଏ ଚିନ୍ତା କଲେ ଏବଂ ସ୍ତ୍ରୀକୁ ଆକଟି କହିଲେ– ତୁମେ ଜାଣନି ଶାନ୍ତା, ଅଜଣା, ଅଶୁଣା ଯୁବତୀ ସ୍ତ୍ରୀ ଲୋକକୁ ଘରେ ରଖିବା ବିପଦର ବିଷୟ ।

ଶାନ୍ତା କୁମାରୀ ଗରମ ଗଳାରେ ମୁହଁ ଛିଙ୍ଗାଡ଼ି ପଦେ ଚଢ଼େଇ ଦେଲେ– ତୁମର ସବୁବେଳେ ସେଇ କଥା, ସମସ୍ତଙ୍କୁ ସନ୍ଦେହ, ଅବିଶ୍ୱାସ । ଚାକର ପାଇଁ ତ ଭୁକି ଭୁକି ଥକିଲିଣି । କୌଣସି କଥା ଜୋର୍‌ରେ ନ କହିଲେ ତୁମର କର୍ଣ୍ଣଭେଦ କରେ ନାହିଁ, ଶୁଣ ସତ କଥା କହି ଦେଉଛି । ଆମେ ଦୁହେଁ ତ ଚାକିରୀ କଲେ, ଏ ଘର ଦ୍ୱାର ଆଉ ପିଲାପିଲିଙ୍କୁ ସମ୍ଭାଳିବ କିଏ ? ବିନା ନୌକରରେ ଏ ଘର ଆଉ ଚଳିବ ନାହିଁ । ଖୋଜୁଛି, ଖୋଜୁଛି କହି ମତେ ଭଣ୍ଡେଇବାରେ ଲାଗିଛ । ଚାକର ଏ ଘରୁ ଗଲାଣି ପନ୍ଦର ଦିନ ହେବ । ସେଇ ଦିନଠୁ ଛୁଟି ନେଇ ଘରେ ବସି ପିଲା ପାଳୁଛି, ତମକୁ ରାନ୍ଧିବାଢ଼ି ଖାଇବାକୁ ଦେଉଛି । ଚାକିରୀ ସମ୍ଭାଳିବି ନା ଘର ? ଚାକର ବିଷୟରେ, ଆଜି ଏଇ ମୁହୂର୍ତ୍ତରେ ଚୂଡ଼ାନ୍ତ ନିଷ୍ପତ୍ତି ହୋଇଯାଉ ।

ଶାନ୍ତା କୁମାରୀ ଉତ୍‌କ୍ଷିପ୍ତ ହୋଇ ପଡ଼ିଥିଲେ । ସ୍ୱାମୀ ସୀତାଂଶୁ ନୀରବରେ ସ୍ତ୍ରୀର ବକ୍ର ବାଟୁଳି ଶୁଣିଯାଉଥିଲେ । ଗୃହିଣୀଙ୍କର ଅଭିଯୋଗ ଯୁକ୍ତିଯୁକ୍ତ । ତାଙ୍କ କ୍ରୋଧ-ଉତ୍ତେଜନା ପ୍ରଶମିତ କରିବା ଢଙ୍ଗରେ ଖୁବ୍ ନରମ ଏବଂ ଶ୍ରଦ୍ଧାପୂର୍ଣ୍ଣ କଣ୍ଠରେ ସୀତାଂଶୁ କହିଲେ – ମୁଁ ତ ସେୟା କହୁଛି । ଚାକିରୀ ଛାଡ଼ି ଦିଅ; ଘର, ପୁଅ ଏବଂ ସ୍ୱାମୀର ଯତ୍ନ ନିଅ ।

ଏମିତି କହିଲା ବେଳେ ହସୋଉଜ୍ଜଳ ପୂର୍ବକ କାମିଜ କାଲର୍‌କୁ ହାତରେ ଝାଡୁଁ ଝାଡୁଁ ପୁଣି କହିଲେ– ଚାକିରୀ ସିନା କରିଛ ସଉକରେ । ହେଲେ ସୁଖରେ ବାଧା ଆସିଲେ ଚାକିରୀର ମୂଲ୍ୟ ବା କ'ଣ ? ଆମରତ ଟଙ୍କାର ସେମିତି କିଛି ଅଭାବ ନାହିଁ ... ସେତେବେଳେ ସିନା ଚାକିରୀର



Digitized by PPRACHIN, SOA

ଆବଶ୍ୟକତା ଥିଲା ବୋଲି ତୁମେ ଚାକିରୀ କଲ । ଏବେ କିନ୍ତୁ ଚାକିରୀକୁ ପ୍ରତ୍ୟାଖ୍ୟାନ କଲେ ମୋର ଆପତ୍ତି ନାହିଁ, ବରଂ ଖୁସି ହେବି ... ।

ଶାନ୍ତା କୁମାରୀ ଚିହିଙ୍କି ଉଠିଲେ– କ'ଣ କହିଲ, ଟଙ୍କାର ଆବଶ୍ୟକତା ନାହିଁ ? ଚାକିରୀ ନ କଲେ ଖୁସି ହେବ ? ଏଠି କେବଳ ଟଙ୍କାର ଖେଳ । ଏଠି ଟଙ୍କା ଯାହାର ଅଛି, ସବୁ ତା'ର ଅଛି । ମୋର ହଜାରେ ଟଙ୍କା ଦରମା, ପୁଣି ଭତ୍ତା, ଭିତିରି ଉପୁରି ବି କିଛି ଅଛି । ତମର ଦରମା ବା କେତେ ? ହେଲ ହେଲ ଅଢେଇ କି ତିନି ହଜାର, ଅବଶ୍ୟ ଗସ୍ତ, ଭତ୍ତା ଛାଡ଼ି । ତଥାପି ଟଙ୍କା କେଉଁଠି ଅଣ୍ଟୁଛି ? ମାସ୍ତଆରି ଟଙ୍କା ଆଦୌ କୁଳଉ ନାହିଁ । ଘର ଖର୍ଚ୍ଚର ହିସାବ ରଖନ୍ତ ଯଦି ବୁଝନ୍ତ ... ମୁଁ କ'ଣ ପ୍ରଥମେ ଚାକିରୀ କରିବାକୁ କହୁଥିଲି ? ତୁମେ ଥିଲ ବେକାର, ମୋ ଦାୟିତ୍ୱ ତୁମ ବେକରେ ଝୁଲୁଥିଲା । ଚାକିରୀ, ରୋଜଗାର ପାଇଁ ହାହାକାର କରୁଥିଲ । ମୁଁ ଗୋଡ଼ କାଢ଼ି ବାହାରିଲି । ସମୟ ସୁଧୁରି ଗଲା । ତୁମକୁ ମଧ୍ୟ ତୁମ ମନମୁତାବକ ଚାକିରୀଟିଏ ମିଳିଗଲା । ଖର୍ଚ୍ଚ ମଧ୍ୟ ବଢ଼ିଲ, ବଢ଼ୁଛି । ଅଦ୍ୟାବଧି ଗାଡ଼ି ଖଣ୍ଡିଏ ଖରିଦ କରିବାର କ୍ଷମତା ଆସିନି । ବ୍ୟାଙ୍କ ବାଲନ୍ସ ବଢ଼ିବ କ'ଣ ବରଂ କମୁଛି । ଅଚାନକ ଖର୍ଚ୍ଚ ଗୁଡ଼ିଏ ପହଞ୍ଚି ଯାଉଛି । ଏପରି ସ୍ଥଳେ ମତେ ଉପଦେଶ ଦେଉଛ ଚାକିରୀ ଛାଡ଼ିବା ପାଇଁ ! ଧନ୍ୟ ତୁମର ବୁଝିବା ଶକ୍ତି ... ।

ଗୃହସ୍ୱାମୀ ଭଦ୍ରମହିଳାଙ୍କ ଉତ୍କ୍ଷେପଣ ଗୁଡ଼ିକୁ ବିନା ପ୍ରତିରୋଧରେ ଶୁଣି ଯାଉଥିଲେ । ସହଧର୍ମିଣୀଙ୍କର ଏମିତି କଡ଼ା କଥା ଶୁଣିବା, ସହିବା ତାଙ୍କର ଦେହସୁହା ହୋଇ ଗଲଣି । ଆଜି ଏହା ତାଙ୍କ ପାଇଁ କିଛି ନୂଆ କଥା ନୁହେଁ । ଆଉ ବିଶେଷ ଗୁରୁତ୍ୱ ନଦେଇ ଧୀର ଗଳାରେ କହିଲେ – ତୁମେ ଯାହା ଉଚିତ ମନେ କରୁଛ, କର; ମୋର କୌଣସି ଆପତ୍ତି ନାହିଁ । ସବୁ କଥାରେ ତୁମକୁ ଟିକିଏ ସତର୍କ କରାଇଦେବା କଥା । ମୁଁ ଖାଲି କହୁଥିଲି ଟିକିଏ ବୁଝି ବିଚାରି ନୌକରାଣୀ ରଖିଲେ ଭଲ ହୁଅନ୍ତା, ସ୍ତ୍ରୀ ଲୋକ ନା !



Digitized by PPRACHIN, SOA

: ହଁ, ହଁ, ହଁ; ମୁଁ ଏତେ ବୋକୀ ଆଉ ବୁଡ଼ବକ ହୋଇନି, ମତେ ପୁଣି ଠକିବ କିଏ ? ମୁହିଁ ଚିହ୍ନି ଲୋକ ସଉଦା କରେ । ଭୁଲି ଗଲଣି କି ପଛକଥା ... ?

ମନେ ପଡୁନି ?

: ଓଃ ବୁଝିଲି, ବୁଝିଲି । ସବୁକଥା ମୁଁ ଟିକିଏ ଡେରିରେ ବୁଝେ— କିନା... କହିଲ ଦେଖି ସତରେ କ'ଣ ପ୍ରଥମ ଦେଖାରେ ତମେ ମୋତେ ଚିହ୍ନି ପାରିଥିଲ ?

ଏତେବେଳେ ଯାଇକି ଗୃହିଣୀଙ୍କ ମୁହଁରେ ଚେନାଏ ହସ ଫୁଟି ଉଠିଲା । ଖେଳିଲା ଦମ୍ପତିଙ୍କ ମୁହଁରେ ହସର ଲହରୀ, ଓଠରେ ଫୁଟିଲା ପ୍ରୀତିର ପାଖୁଡ଼ା, ଆଖିରେ ଭାବ ବିନିମୟ । ପରିସ୍ଥିତି ହାଲୁକା ଅନୁଭୂତ ହେଲା । ଉତ୍ତେଜନା ଥମିଲା । ଶ୍ରାବଣୀ ଆଶ୍ୱସ୍ତି ଅନୁଭବ କଲା ।

ସ୍ୱାମୀ ସ୍ତ୍ରୀଙ୍କ ଘରୋଇ ବାର୍ତ୍ତାଳାପ ଶ୍ରାବଣୀ ନୀରବରେ ଶୁଣି ଯାଉଥିଲା ଏତେବେଳେ ଯାଏଁ । ସେମାନଙ୍କ ବ୍ୟାପାରରେ ଆଉ ଅଧିକ ମୁଣ୍ଡ ନ ପୂରାଇ, ସେ ନିରାଶ ହୋଇ ଫେରି ଯାଉଥିଲା । ପଛଆଡ଼ୁ ଭଦ୍ରମହିଳା ପାଟି କରି କହିଲେ— ଏ ଶୁଣ୍ ଶୁଣ୍, ଆସ ଏଠିକୁ ।

ଶ୍ରାବଣୀ ଫେରି ଆସିଲା ବାରଣ୍ଡା ନିକଟକୁ । ହଁ, ତୋ ନା ପଗ୍ଚରୁଥିଲି ପରା ! କ'ଣ ତୋର ନାଁଟି !

: ଶ୍ରାବଣୀ ।

: ଘର ?

: ପଲ୍ଲୀରେ ।



Digitized by PPRACHIN, SOA

କୋଉ ଗାଁ ନାଁ କହିବ ? ନିଜ ବାପଘର ନା ଶାଶୁଘର ? ହଠାତ୍ କିଛି ଠିକ୍ ନକରିପାରି ହଡ଼ବଡ଼େଇ ଗଲା ଶ୍ରାବଣୀ । ସ୍ତ୍ରୀ ଲୋକମାନେ ବିବାହର ବହୁବର୍ଷ ପର୍ଯ୍ୟନ୍ତ ବାପ ଘରକୁ ନିଜ ଘର କହିବା ଏକ ସ୍ୱଭାବ । ଏପରି ସ୍ଥଳେ ସେ କିଛି ନକହିପାରି ଚୁପ୍ ରହିଲା ।

: ଘର ? ପ୍ରଶ୍ନକର୍ତ୍ତୀଙ୍କର ଜିଜ୍ଞାସା ।

ଗୁରୁତର ପ୍ରଶ୍ନଟିଏ ।

ଖୁବ୍ ସଂକ୍ଷେପରେ ଦୁର୍ଦ୍ଦଶା ବୟାନ କରିଥିଲା ଶ୍ରାବଣୀ । ଭାଷାରେ ନମ୍ରତା, ମୁହଁରେ କରୁଣତା ପ୍ରକାଶ ପାଉଥିଲା ତା'ର । ସ୍ୱାମୀ ସ୍ତ୍ରୀ ଦୁହେଁ ତା'ର ଦୁଃଖ ହୃଦୟଙ୍ଗମ କରିଥିଲେ । ଗାଉଁଲି ସ୍ତ୍ରୀ ଜଣେ, ଗ୍ରାମ୍ୟ ସୁନ୍ଦରୀ ଟିଏ । ଅସୁବିଧାରେ ପଡ଼ି ସହରରେ ପାଇଟି ଖୋଜୁଛି । ଦୟାପରବଶ ହୋଇ ସେମାନେ ତାକୁ ପାଖରେ ରଖିଲେ । ପିଲା ପାଳିବାକୁ, ଘର ସମ୍ଭାଳିବାକୁ ସେମାନେ କାମଦାରୁଣୀଟିଏ ଖୋଜୁଥିଲେ । ଆପେ ଆପେ ସୁଯୋଗଟିଏ ଆସି ଧରା ଦେଲା । ଈଶ୍ୱରଙ୍କ ଇଚ୍ଛା ... ମହାନଗରୀର କନ୍ଦର ଭିତରୁ ହଜିଲା ସ୍ୱାମୀଙ୍କୁ ଖୋଜି ବାହାର କରିବାର ଅଭୟ ପ୍ରତିଶ୍ରୁତି ମଧ୍ୟ ପାଇଥିଲା ଶ୍ରାବଣୀ ।





Digitized by PPRACHIN, SOA

ଏଣେ ଗାଁରେ ଦେବବାପା ଓ ବୋଉଙ୍କର ପ୍ରଚଣ୍ଡ ଭାବେଣି । ଦେବ କହି ଯାଇଥିଲା ଚାରି ପାଞ୍ଚଟା ଦିନରେ ଲେଉଟି ଆସିବ । ପନ୍ଦର ଦିନ ଟପିଲାଣି, ପୁଅ ବୋହୂଙ୍କ ଦେଖାନାହିଁ । କୁଆଡ଼େ ଗଲେ ଏମାନେ ଏତେ ଦିନ ହେଲା ? ଦେବବୋଉ ପୁଅ କାନେ କାନେ ମନ୍ତ୍ର ଫୁଙ୍କିଥିଲା– ଦେଖେ ଦେବ, ଝୋଟ ମଙ୍ଗଳା ଯାଇନି, ବୋହୂକୁ ଘରୁ କାଢ଼ି ବିଦେଶ ନଉଛୁ, ଗୋଡ଼େ ଗୋଡ଼େ ତାକୁ ଜଗିଥିବୁ, ସାବଧାନରେ ଥିବୁଟି ! ଭୁଆସୁଣୀ ବୋହୂ ମୋର, ପିଲାଲୋକ, କିଛି ଜାଣିନି ସେ, ଭଲରେ ଭଲରେ ତାକୁ ଫେରାଇ ଆଣିବୁ, ବୁଝିଲୁ ଟି !

ଦିନ ଗଡ଼ିଲାରୁ ଏମାନଙ୍କ ଚିନ୍ତା ବଢ଼ିଲା । ଆଜି କାଲିର ପଢ଼ୁଆ ପିଲାଙ୍କ କଥା କ'ଣ କହିବ ? ଏମାନଙ୍କର ଟିକିଏ ହେଲେ ଦାୟିତ୍ୱ ଜ୍ଞାନ ନାହିଁ । ମନରେ ଯେତିକି ବିରକ୍ତି ଆସୁଥାଏ, ଆଶଙ୍କା ମଧ୍ୟ ସେଇ ଅନୁପାତରେ ବଢ଼ୁଥାଏ । କ'ଣ ଅସୁବିଧା ହେଲା ତେବେ ପୁଅବୋହୂଙ୍କର ? ସୁବିଧା ଅସୁବିଧାରେ ଚିଠି ଖଣ୍ଡେ ପକେଇବାକୁ ଭୁଲିଗଲା ପୁଅ ? ବୋହୂବି କେମିତି ପୁଅକୁ ତାଗିଦ ନକଲା ? କିଛି ଅସୁବିଧା ହେଇଛି ତେବେ । ମା ଜାଗୁଳେଇ ଭରସା ! ପୁଅ ବୋହୂ ଭଲରେ ଭଲରେ ଫେରି ଆସିଲେ ଠାକୁରାଣୀଙ୍କ ପାଖେ ଯାଉଁଳି ନଡ଼ିଆ ଭୋଗ କରିବ । ଗ୍ରାମ ଦେବତୀ ଜାଗୁଳେଇଙ୍କ ଠାରେ ଦେବବୋଉର ଅତୁଟ ବିଶ୍ୱାସ, ପ୍ରବଳ ଭକ୍ତି । ବିପଦ ଆପଦରେ ସେ ଠାକୁରାଣୀଙ୍କ ପାଖେ ପୂଜାର୍ଚ୍ଚନା କରେ ପୁଅ ବୋହୂ ଭଲରେ ଫେରି ଆସିବାପାଇଁ ଏବେ କାମନା କରୁଛି କିନ୍ତୁ ସେମାନଙ୍କ ଫେରନ୍ତା ବାଟକୁ ଚାହିଁ ଚାହିଁ ଆଖିରୁ ପାଣି ମଲାଣି । ଘର ନିସ୍ପନ୍ଦ; ନିଷ୍ପ୍ରାଣ ।

ଦେବ ବାପର ମଧ୍ୟ ମନେ ମନେ ଭାବେଣି ପଡ଼ିଲାଣି । ଦେବ ବୋଉକୁ ଏମିତି ଭୁରୁଡ଼ି ମାରି ଦେଉଛି । ପୁଅ ତମର ମୂର୍ଖ, ଅଶିକ୍ଷିତ ନୁହେଁ, ଏ ଗାଁର ପାଠୁଆ ପୁଅ ; ଏଇ ଇଲାକାରେ ତା ଭଳି କେତେ ଜଣ ଏମ୍. ଏ ପଢ଼ିଛନ୍ତି ?



Digitized by PPRACHIN, SOA

ପୁଅର ଉଚ୍ଚ ଶିକ୍ଷା ଯୋଗୁଁ ସନାତନର ସମ୍ମାନ ବଢ଼ିଛି । ହାଟରେ, ବାଟରେ, ତୁଠରେ କେତେ ଲୋକ ସମ୍ମାନ ସୂଚକ ଢଙ୍ଗୀରେ କହୁଛନ୍ତି, ସନା ଭାଇର ଏବେ ଚିନ୍ତା ଆଉ କ'ଣ ? ଜିଦ୍ କରି ପୁଅକୁ ପାଠ ପଢ଼ାଇଲ ସହଦରେ ରଖି । ଦେବ ହେବ ହାକିମ । ପିଲା ଖଣ୍ଡେ ତ, ହୀରା । କାହାକୁ ସେ ହାତ ନ ଟେକେ ? ଅଳ୍ପଭାଷୀ ସନାତନ ପୁଅର ପ୍ରଶଂସା ଶୁଣି ଆସି ଉଲ୍ଲାସରେ ମୁଗ୍ଧ ହୁଏ । ଦେବ ବୋଉକୁ ପୁଅର ସୁଗୁଣ ଶୁଣାଏ ।

ଆଜି ସନାତନର ଅନ୍ତର ଏବଂ ମୁଖଭାଷା ମଧ୍ୟରେ ଅନେକ ତାରତମ୍ୟ । ସନାତନ ସିନା ମୁହଁରେ ଦେବ ବୋଉକୁ ନିର୍ଭୟବାଣୀ ଶୁଣାଇ ଦେଉଛି, କିନ୍ତୁ ଚା'ର ମନ ଥାଏ ଶଙ୍କାଗ୍ରସ୍ତ । ପୁଅ ବୋହୂ ବାହୁଡ଼ିବାରେ ବିଳମ୍ବ ହେଉଛି କାହିଁକି ? ଡ଼ାକ ପିଅନକୁ ନିତି ଅପେକ୍ଷା କରି ବସିଥାଏ । ପୁଅ ପାଖରୁ ଚିଠି ଆସିଥିବ ପରା । କିନ୍ତୁ ଡ଼ାକ ପିଅନ କାମଦେବ କନ୍ଧିମୁଣ୍ଡରୁ ବାଟ ଭାଙ୍ଗି ଅନ୍ୟ ଆଡ଼େ ଗ୍ଲାଲିଯାଏ । ସନାତନର ମୁହଁରେ ମେଞ୍ଚାଏ ନୈରାଶ୍ୟ ଠୁଳ ହୋଇଯାଏ । କ'ଣ ହେଲା ତେବେ ପୁଅର ? ବିଦେଶରେ ସୁବିଧା ଅସୁବିଧା ନେଇ ସାମାନ୍ୟ ଖଣ୍ଡେ ଚିଠି ଦେବାକୁ ଭୁଲିଗଲା ? ପାଶୋରି ଗଲା କ'ଣ ସାମାନ୍ୟ ତମ ଦାୟିତ୍ୱ ? ଦେବ ତ ସେପରି ଦାୟିତ୍ୱହୀନ ପିଲା ନୁହଁ । ଚିଠି ବାଟରେ ହଜି ଗଲା ନା କ'ଣ ?

ସନାତନର କେଇଦିନ ହେଲା ଦୈନନ୍ଦିନ କାମରେ ମନ୍ଥରତା ଆସିଛି । ବିଲ, ବାଡ଼ି, କ୍ଷେତ, ହଳ, ବଳଦ ଯେଉଁଥିରେ ସେ ଉଲ୍ଲାସରେ ସମୟ ବିତାଏ, ସେଥିରେ ଆଉ ଚଞ୍ଚଳତା ନାହିଁ, କେବଳ ଉଦାସୀନତା । ମନ ମଉଳି ପଡ଼ିଲେ ସବୁ ଜିନିଷ, ସବୁ କର୍ମରେ ନିସ୍ପୃହତା ପ୍ରକାଶ ପାଏ ।

ଦେବବୋଉ ଅଭିଯୋଗାତ୍ମକ ସ୍ୱରରେ କହିଲା – ଏମିତି ସବୁଦିନ ଖାଲି ଡାକବାଲାକୁ ଗ୍ଲହିଁ ରହିଲେ ଚଳିବ ନାହିଁ । ତେଣେ ମୋ ପୁଅ ବୋହୂଙ୍କର କ'ଣ ଅସୁବିଧା ହେଲାଣି ବୁଝ ।



Digitized by PPRACHIN, SOA

୯ରେ ଶ୍ରାବଣ

ଦୀର୍ଘଶ୍ୱାସ ଛାଡ଼ି ସନାତନ କହିଲ– କାହାକୁ ପଗ୍ଭରି ବୁଝିବି ? ଦେବର ଠିକଣା କିଏ ଜାଣିଛି ?

ଦେବବୋଉ କରୁଣ କଣ୍ଠରେ କହିଲ – ମତେ କାହିଁକି ଭରି ଅତୁଆ ଅତୁଆ ଲଗୁଛି । ଦେବକୁ ମୁଁ ଭଲ ଭବେ ଜାଣେ । ଲଫଙ୍ଗା ବଜାରୀ ପିଲ ନୁହେଁ । ଆମ ପାଇଁ ତାର ବେଶୀ ଚିନ୍ତା । ଚ୍ଛକିରୀ ପାଇଁ ବ୍ୟସ୍ତ ହେଉଥିଲ କେବଳ ଆମ ପାଇଁ । ତା'ର ନିଶ୍ଚେ କିଛି ଅସୁବିଧା ହେଇଛି । ଆଉ ଡେ଼ରି କରନି ; କ'ଣ ଗୋଟେ ଏଥର ବ୍ୟବସ୍ଥା କର ; ନୋହିଲେ ତମେ କଲିକତା ଯାଅ, ମୋ ପୁଅ ବୋହୂକୁ ଖୋଜି ଆଣ । ତାକୁ ଆଖିରେ ନ ଦେଖିଲ ପର୍ଯ୍ୟନ୍ତ ପାଟିକୁ ଗୁଣ୍ଡା ରୁଚୁନି, ଆଖିକୁ ନିଦ ନାହିଁ ।

: ବ୍ୟସ୍ତ ହୁଅନି ଦେବ ବୋଉ, ଗୋବିନ୍ଦ ସେନାପତି ପୁଅ ଭଜହରି କଲିକତା ଚଟକଳରେ କାମ କରେ । ତା ଠିକଣା ଆଣିଛି । ଆଜି ତା କତିକି ଚିଠି ଲେଖୁଛି । ସେ ଖୋଜା ଖୋଜି କରି ନିଶ୍ଚୟ ଖବର ପଠେଇବ ।

: ତେବେ ଆଉ ଡେ଼ରି କର ନାହିଁ । ଭଜହରିକୁ ତୁରନ୍ତ ଲେଖ । ଦେବବୋଉ ଆଖିରୁ ଲୁହ ଝରି ପଡୁଥିଲ ।

ଟିକିନୀର ମଧ୍ୟ ସେଇ ଅବସ୍ଥା । ଅଧିକାଂଶ ସମୟରେ ଗ୍ଭଳକୁ ଗ୍ଭହିଁଛି । କାଉ ବସିଥିବ ପରା ! କାଉ ଦେଖିଲେ ଗ୍ଭଉଳ ମୁଠି ଅଗଣାରେ ଥୋଉଛି । ମନେ ମନେ ବାର୍ତ୍ତାବାହୀ କାଉକୁ ପଗ୍ଭରୁଛି– ନନା ନୂଆବୋଉ କେବେ ଆସିବେ ? କିନ୍ତୁ ଗ୍ଭଉଳ ଖୁମ୍ପି କୁଆ ଉଡ଼ିଯାଏ । ଟିକିନୀ ପୁଣି ଗଣନାରେ ଲଗି ପଡ଼େ । ସାଇ ପିଲକୁ ଆଙ୍ଗୁଠି ଧରଏ । ମନେ ମନେ ଅଭିଯୋଗର ଚିଠା ପ୍ରସ୍ତୁତ କରେ । ଏଥର ନୂଆବୋଉ ଆସିଲେ କମା ପାଟି ଫିଟାଇବ ନାହିଁ । ଏମିତି ମିଛ କହିଦେଇ, ଏତେ ଦିନ ଠାକି ଗଲ କଲିକତାରେ ? ଏଠି ଆମେ କେତେ ବ୍ୟସ୍ତ, ଚିନ୍ତିତ, କେବେ ଭବି ଦେଖିଛ ?



Digitized by PPRACHIN, SOA

ଏହିପରି ଆଶଙ୍କା ଏବଂ ଅନାଶ୍ୱସ୍ତିରେ ଦିନ ଗଡ଼ିବାକୁ ଲଗିଲ । ଏମାନଙ୍କ ମନର ଧୈର୍ଯ୍ୟ–ବନ୍ଧ ଦୋହିଲିବାକୁ ବସିଲ । ନିଃସହାୟ ପରିବାରଟିର ମାନସିକ ଦୁରବସ୍ଥା ବୃଦ୍ଧି ପାଇବାରେ ଲଗିଲ । ହୃଦୟ ଭିତରେ ଅସହାୟତାର ସ୍ୱର ବାଜି ଉଠିଲ । ମଣିଷ ଯେତେବେଳେ ଉପାୟହୀନ ହୁଏ, ସେତେବେଳେ ଈଶ୍ୱର ଶକ୍ତିରେ ହିଁ ଆସ୍ଥା ଜନ୍ମାଏ । ଦେବବୋଉର କ୍ରମବର୍ଦ୍ଧିଷ୍ଣୁ ଅସହାୟତା ତାକୁ ଅଧିକ ଈଶ୍ୱରବିଶ୍ୱାସୀ କରିଛି । ପୂଜାର୍ଚ୍ଚନାରେ ସେ ମନୋନିବେଶ କରିଛି । ଠୋଟା ଭୁଆସୁଣୀଙ୍କ ପାଇଁ ପାଞ୍ଚ, ଶଙ୍ଖାସିନ୍ଦୂର, ମାର୍ଜନା, ମର୍ଦ୍ଦନର ବ୍ୟବସ୍ଥା ହୋଇଛି । ଗାଁ ଭଗବତୀଙ୍କ ପାଖେ ଦାଣ୍ଡିପଣା, ଜଳେଶ୍ୱରର ଲିଙ୍ଗଙ୍କ ଉପରେ କାଳୀ ଗାଇ ଦୁଧଢଳା, ଚଉଖଣ୍ଡ ଦେବଦେବୀଙ୍କ ପାଖେ ଅନେକ ମିନତି, ପ୍ରାର୍ଥନା ଗ୍ୱଲୁ ରଖିଛି ଅଭୀଷ୍ଟ ଫଳ ପାଇଁ । ଏମାନଙ୍କ କାରୁଣ୍ୟ ଏବେ ପ୍ରକାଶ୍ୟରେ ଜଣା ପଡ଼ିଲଣି ।

ଗାଇର ଅନେକ ଲେକ ଦେବକାନ୍ତର ଏତାଦୃଶ ନୀରବତାରେ ସମବେଦନା, ସାନ୍ତ୍ୱନା ପ୍ରକାଶ କରିବାକୁ ଧାଇଁ ଆସିଲେଣି । ଦେବର ଖବର କ'ଣ ? ଅନେକଙ୍କ ମୁହଁରୁ ପରସ୍ପର ବିରୋଧୀ ମତ, ଆଶା ଏବଂ ଆଶଙ୍କା ସବୁଗୁଡ଼ିକ ଏକତ୍ରିତ ହୋଇ ଘର ବାୟୁମଣ୍ଡଳରେ ହତାଶର ଧ୍ୱନି ତୋଳୁ ଥିଲ ।

କ୍ରମେ ମହାବାଳୀ ପୋଖରୀ ତୁଠ, ପଞ୍ଚପଡ଼ା ହାଟରେ ହଇଚଇ, ଚୁପ୍‌ଚାପ୍ । ମାସେ ପୂରିଲଣି, ଦେବର ଖବର ଅନ୍ତର କିଛି ନାହିଁ । ମାଇପି ମାନଙ୍କ ମୁହଁରେ ସଭ, କେତେ ଅବାନ୍ତର କଥା, କେତେ ଅଶୁଭ ଅଲକ୍ଷଣା ମନ୍ତବ୍ୟ ... କେତେ ଆହା, ଆଶ୍ୱାସନା ଗୁଞ୍ଜରି ଉଠିଲଣି । ଦାଣ୍ଡର ଆଲେଚନାରୁ କିଛି ସନାତନର ଘର ଛୁଏଁ, କିଛି ବାହାରେ ବାହାରେ ରହିଯାଏ ।

ମୁହଁଖରା ଦୁଃଖୀ ଭରିଯାର ଟାଣ ଟାଣ କଥା– ମଇମର; ମଙ୍ଗୁଳା କନିଅଁକୁ ବୋହୂକରି ଆଣି ଲେକେ ପୁଣି ଏମିତି ଫୁଲେଇ, ଅମରମତା



Digitized by PPRACHIN, SOA

ହୁଅନ୍ତି ! ତୁଛାକୁ ଏତେ, କିଛି ନାହିଁ ଗୋଡ଼ କଚାଡ଼ୁ କେତେ ? ଆମେ କ'ଣ ଆଉ ସୁନ୍ଦରୀ, ଗୋରୀ ବୋହୂ ଦେଖି ନାହୁଁ ? ବୋହୂ ଘରକୁ ଆସୁ ଆସୁ ପୁଅ ସଙ୍ଗେ ପୀରତି କରିବାକୁ କଲିକତା ପଠାଇ ଦେଲେ । ଏମିତି ବୋହୂ ସୁଆଗ, ଦେହଲ କଥା ବାପ ଅଜା କାଳରୁ ଶୁଣି ନ ଥିଲୁ, ଦେଖି ନ ଥିଲୁ ଲୋ ମା' ।

ଚମ୍ପେଇ ନାନୀ ଏ ଘରେ ମାଉସୀ ସେ ଘରେ ପିଉସୀ ରୂପଧରି ବିଚରଣ କରୁଥାଏ ଘରକୁ ଘର । କଥାରେ ନଥା ପକାଇ ପରିସ୍ଥିତିକୁ ମୋଟ କରୁଥାଏ, ସତେ ଯେମିତି ମାନପୁରରେ ଚମକପ୍ରଦ ଘଟଣାଟିଏ ଘଟି ଯାଇଛି !

ଦେବବୋଉ ଦେହକୁ ପଥର କରି ସବୁ ଶୁଣିଯାଏ । ସବୁ ସହିଯାଏ । ଭଗ୍ୟର ବିଡ଼ମ୍ବନା ... । କିଛିଦିନ ତଳେ ଘର ହସୁଥିଲା. ଏଇନେ ଘର ଖାଲି ପଡ଼ିଛି । ପୁଅବୋହୂ ଭଲରେ ଭଲରେ ଫେରି ଆସିଲେ ଅପନିନ୍ଦୁକଙ୍କ ମୁହଁରେ ଆପେ ଆପେ କଳାକନା ବୁଲିବ । ଆସୁ ସେ ସୁଦିନ ... ।

ଗାଁ ସକାଳର ଚିରଚରିତ ଉଦ୍ଘାଟନ ପର୍ବ ଘରେ ଦାଣ୍ଡରେ ଆସର ଜମାଇଥାଏ । ଦାନ୍ତକାଠି ଘେଞ୍ଚେଇବା ଅବସ୍ଥାରେ ଭମର ଦାଦୀ ଭଲମନ୍ଦ ପଗ୍ଧରିବା ପାଇଁ ଆସି ସନାତନ ପାଖେ ଠିଆ ହେଲା । ଏଇ କେତେଦିନ ହେଲା ସନାତନର ମୌନତା, ମନରେ ଉପାୟହୀନତାର ଭାବ ପ୍ରକଟିତ ହେଉଛି । ଭମରଦାଦୀ କହିଲା– କ'ଣ ବସିଛ ସନା ଚୁପ୍ ହୋଇ ? କଅଣ ଗୋଟେ ବ୍ୟବସ୍ଥା କର ଏଥର ।

ଉଦାସିଆ ସ୍ୱରରେ କହିଲା ସନାତନ– ଭଜହରି କତିକୁ ଚିଠି ଲେଖିଛି । କିଛି ଉତ୍ତର ଆସିନି ।

ମୁଁ ଆଉ କ'ଣ କରି ପାରିବି ଭମର ଦାଦୀ ?



Digitized by PPRACHIN, SOA

: ଏଥର ଆଉ ଡେ଼ରି କରନି ସନା । ଥାନାରେ ଖବର ଦିଅ । ସରକାରୀ କଳ, ଅସହାୟର ବଳ । ସେମାନେ ସେଠି ଖୋଜା ଖୋଜି କରି ଦେବର ଖବର ଦେଇ ପାରିବେ ନହିଲେ କଟକ ଯାଅ, ଖବର କାଗଜରେ ନିଖୋଜ ଖବର ଛାପ ... ।

କୋର୍ଟ, କଚେରୀ, ଥାନା, ଛାପାଖାନା ଏତ ମହା ଅଡୁଆ କଥା ସନାତନ ପାଇଁ । ଏ ସବୁର ଧନ୍ଦା ତାକୁ ମାଲୁମ ନାହିଁ । ଅନଭ୍ୟସ୍ତ । ବାଲ୍ୟବେଳରୁ ଗାଁ ଗଣ୍ଡଗୋଳ ଠାରୁ ଦୂରେଇ ଥାଏ । ଭେଣ୍ଡା ବୟସରେବି ନିଜ ଧନ୍ଦାରେ ବ୍ୟସ୍ତ ରହୁଥିଲା । ନ୍ୟାୟ ନିଶାପରେ ସେ କେବଳ ଜଣେ ଦେଖଣାହାରୀ, ଜଣେ ସାଧାରଣ ନୀରବଦ୍ରଷ୍ଟା । ନିଶାପ ମଣ୍ଡପରେ ସପକ୍ଷ ବିପକ୍ଷରେ କିଛି ମତ ନ ଦେଇ ସମ୍ପୂର୍ଣ୍ଣ ନିରପେକ୍ଷ ନୀତି ଧରିଥାଏ । ତା' ମନରେ ମଣିଷର ଦୋଷୀକୁ ଦଣ୍ଡ ଦେବାର ଅଧିକାର ନାହିଁ । ଦୋଷୀହିଁ ଆପେ ଦଣ୍ଡ ଭୋଗିବ, ହୁଏତ ବିଳମ୍ବରେ । ଭୁଲକୁ ମାନିନେବାହିଁ ମଣିଷପଣିଆ । ଏତେ ନ୍ୟାୟ ନିଶାପର କ'ଣ ଆବଶ୍ୟକତା ? କେବଳ ତିକ୍ତତା, ଅଶାନ୍ତି ।

ଭମର ଦାଦୀର ପ୍ରସ୍ତାବରେ ସେ କିଛି ମତ ପ୍ରକାଶ କଲା ନାହିଁ ; ବରଂ ଜ୍ୟୋତିଷ ବାଣୀ ଉପରେ ଭରସା ରଖିଲା । ଚକାପଦା ଗାଁର ଜ୍ୟୋତିଷ– ଦରକାର ବେଳେ ସନାତନ ତାଙ୍କ ପାଖେ ଗଣନା କରେ, ଜାତକ ଦେଖାଏ, ଭଲ କାମ ପାଇଁ ଶୁଭ ବେଳ ନିର୍ଦ୍ଧାରଣ କରେ । ଏ ଅଞ୍ଚଳର ଏକ ପ୍ରକାର ଘରେଇ ଅବଧାନ ସେ । ପୂର୍ଣ୍ଣ ଅବଧାନ ନାମରେ ପରିଚିତ । ଏମିତି ମଝିରେ ମଝିରେ ସପ୍ତାହ ଅନ୍ତରରେ ସେ ଗାଁକୁ ଆସନ୍ତି । ସାଇ ସାଇ ବୁଲନ୍ତି । ବିଶେଷ କରି ମହିଳା ମହଲରେ ଗଣାପାଠ କରନ୍ତି । ହାତରେ ସର୍ବଦା ପଠାଣି ସାମନ୍ତଙ୍କ ପାଞ୍ଜି ଏବଂ ଅଣ୍ଟାରେ ଗୋଲ ଖଡ଼ି ଖଣ୍ଡିଏ ଅଠାଭଳି ଲଗି ରହିଥାଏ । ପ୍ରଶ୍ନକର୍ତ୍ତାଙ୍କର ଜିଜ୍ଞାସା ମାତ୍ରେ ମାଟି– ଭୂଇଁ ଉପରେ ଚକ୍ରକାଟି ଗଣନା ଆରମ୍ଭ ହୋଇଯାଏ ଏବଂ ଫଳ ସହସା ପ୍ରକାଶିତ ହୁଏ । ଆଖିର ଚଷମା ନାକ ଅଗକୁ ଖସି ଆସିଥାଏ । ଅନେକ ସମୟରେ ଗ୍ରାମାଞ୍ଚଳ ନାରୀମାନଙ୍କର ପରାମର୍ଶଦାତା



Digitized by PPRACHIN, SOA

ଭାବେ କାର୍ଯ୍ୟ କରିଥାନ୍ତି । ଗ୍ରହ, ନକ୍ଷତ୍ର, ରାଶିମାନଙ୍କ ସ୍ଥିତି ଠାବ କରି ଭବିଷ୍ୟବାଣୀ ସ୍ଥିର କରନ୍ତି, ଏପରିକି ବ୍ୟାଧିର କାରଣ ନିରାକରଣର ପନ୍ଥା ବତାଇ ଦିଅନ୍ତି । ବ୍ରହ୍ମାଣ୍ଡରେ ଯାହା ଘଟିଛି, ଘଟୁଛି, ଘଟିବ, ସବୁ ଗ୍ରହଯୋଗ । ଏ ବର୍ଷ ପଡ଼ିଛି ପଞ୍ଚଗ୍ରହକୂଟ । ତା ସାଙ୍ଗକୁ ରହିଛି ଧୂମକେତୁର ଆବିର୍ଭାବ ଏବଂ ଶନିଚଳନ । ଦେଶ ପ୍ରତି ଘୋର ଅମଙ୍ଗଳ ସୂଚନା– ଶାସନରେ ଅସ୍ଥିରତା, ରାଜଦ୍ରୋହ, ପ୍ରଜାପୀଡ଼ା, ପ୍ରାକୃତିକ ଦୁର୍ବିପାକ ଆଦି ଘଟଣା ଦେଶରେ ଦୃଶ୍ୟ ହେବ ବହୁଳ ଭାବେ । ଏଇ ମାସେ ହେଲା ପୂର୍ଣ୍ଣ ଅବଧାନଙ୍କର ସଭିଙ୍କ ଆଗରେ ଏଇ ପ୍ରକାର ସତର୍କବାଣୀ ।

ଅସ୍ଥିର ମନରେ ସନାତନ ଦେବକାନ୍ତର ଜାତକ ଧରି ଅବଧାନଙ୍କ ଘରେ ହାଜର ହୋଇଥିଲା । ଦେବର ଜନ୍ମ ଜାତକ ପୂର୍ଣ୍ଣ ଅବଧାନେ ପ୍ରସ୍ତୁତ କରିଥିଲେ । ପୂଜାପାଠ ସାରି ଅବଧାନେ ତାଙ୍କର ଚିରାଚରିତ ବେଶରେ ବାହାରକୁ ଯିବା ପାଇଁ ଉଦ୍ୟତ ହୁଅନ୍ତେ, ଦୃଷ୍ଟି ପଡ଼ିଲା ସନାତନ ଉପରେ ।

: କ'ଣ ଖବର ସନା ? ବହୁଦିନ ହେଲା ଦେଖା ସାକ୍ଷାତ ନାହିଁ ଯେ ! ଆଉ ସବୁ ତମର କୁଶଳ ତ !

: ବଡ଼ ଅସୁବିଧାରେ ପଡ଼ିଛୁ ଆମେ ଅବଧାନେ ।

: କି ଅସୁବିଧା ?

: ଦେବ ଯାଇଛି କଲିକତା । ସାଥିରେ ଯାଇଛି ବୋହୂ । ଗଙ୍ଗାରେ ମା'ର ଅସ୍ଥି ବିସର୍ଜନ କରିବେ, ଶ୍ରାଦ୍ଧ ପକାଇ ଘରକୁ ଫେରିବା କଥା । ସାତଦିନ ଯାଇ ମାସେ ହେଲାଣି । ଏଯାଏଁ ସେମାନେ ଫେରି ନାହାନ୍ତି, ଦେବଠୁଁ ମଧ୍ୟ କିଛି ଚିଠିପତ୍ର ନାହିଁ । ବଡ଼ ଭୟ ଲାଗୁଛି ମତେ । ଦେବ କୋଷ୍ଠି ଆଣିଛି । ଟିକିଏ ଗଣନା କରି ଭଲମନ୍ଦ



Digitized by PPRACHIN, SOA

କହନ୍ତନି ଅବଧାନେ ? ଦେବବୋଉ ତେଣେ ଅଧୀର, ଅସ୍ଥିର । ପୁଅ ବୋହୂଙ୍କ କଥା ଭାବି ଭାବି ପେଟକୁ ଭୋକ ନାହିଁ, ଆଖିକୁ ନିଦ ନାହିଁ । ତମକୁ ଅପେକ୍ଷା କରିଥିଲି, ଶନିବାର ସୁଦ୍ଧା ତମେ ନ ଯିବାରୁ, ମୁଁ ଆସିଛି ।

: ବସ ତେବେ ।

ଅବଧାନେ ପାଞ୍ଜି ଖୋଲିଲେ, ଜାତକ ପଢ଼ିଲେ । ଖୁବ୍ ଉତ୍କଣ୍ଠା ଏବଂ ଆଗ୍ରହରେ ସନାତନ ଚାହିଁ ରହିଥିଲା ଅବଧାନଙ୍କ ଗାଣିତିକ ମୁହଁକୁ ।

ପ୍ରଥମେ ଅବଧାନଙ୍କ ଘୋଷାବାଣୀ ପ୍ରକାଶିତ ହେଲା । ମୋଟା ମୋଟି ଭାବେ ଦେଶର ସାମ୍ପ୍ରତିକ ଅବସ୍ଥା ଭଲ ନୁହେଁ । ତେବେ ଦେବର ଜାତକ ଯାହା କହୁଛି, ତାର ଶନିରେ, ମଙ୍ଗଳରେ, ରାହୁ କେତୁ ଯଥାକ୍ରମେ ଦ୍ୱିତୀୟ ଓ ଚତୁର୍ଥରେ । ଏଣୁ ଭ୍ରମଣ ଯୋଗ ଲେଖୁଛି । ଯା' ପରେ ଅଛି ରାଜଯୋଗ, ମହାଭୋଗ, ଚାକିରୀ ମିଳିବ, ହଏତ ଟିକିଏ ବିଳମ୍ବରେ ।

: ଚାକିରୀ କଥା ପଚାରୁନି ଅବଧାନେ । ସେମାନେ କିପରି କେଉଁଠି ଅଛନ୍ତି ? ଫେରିବେ କେବେ ?

: ଦେଖୁଛି ।

ପୁଣି ଅବଧାନେ ତନ୍ନ ତନ୍ନ କରି ତର୍ଜମା କଲେ । ଶେଷରେ ନିର୍ଣ୍ଣୟବାଣୀ ଘୋଷଣା କଲେ । ଗ୍ରହପୀଡ଼ା ଯୋଗୁଁ ଦେବ ସାମାନ୍ୟ ଅସୁସ୍ଥ ଅଛି । ବିଶେଷ ବ୍ୟସ୍ତ ହେବାର ନାହିଁ କାରଣ ବୃହସ୍ପତି ତା'ର ଚତୁର୍ଥରେ । କେତୁ ଅନିଷ୍ଟ କରି ନପାରେ କାରଣ ଗ୍ରହରାଜଙ୍କ ମଙ୍ଗଳ ଦୃଷ୍ଟି ରହିଛି । ସେମାନେ ସସ୍ତ୍ରୀକ ଫେରିବେ, ହୁଏତ ଟିକିଏ ଡେରି ହୋଇପାରେ । ବିଦେଶରେ ଅସୁବିଧାରେ ପଡ଼ିଲେ ମଧ୍ୟ ସାହାଯ୍ୟକାରୀ ବୁଧ ଗ୍ରହର ପ୍ରଭାବ ଯୋଗୁଁ କେହିନା କେହି ତାଙ୍କୁ ସାହାଯ୍ୟ କରିବେ ।



Digitized by PPRACHIN, SOA

ଜ୍ୟୋତିଷ ଗଣନାର ଫଳା ଫଳ ମୋଟା ମୋଟି ସନ୍ତୋଷଜନକ ହୋଇଥିଲା ସନାତନ ପକ୍ଷେ । ସେ କିଛି ପରିମାଣରେ ଆଶ୍ୱସ୍ତି ଅନୁଭବ କଲା, କିନ୍ତୁ ଦେବର ଅସୁସ୍ଥତା ଶୁଣି ମନର ବ୍ୟସ୍ତତା ସମ୍ପୂର୍ଣ୍ଣ ପୋଛି ପାରି ନଥିଲା ।

: ଆଉ ଚିନ୍ତିତ ହେବାର କାରଣ କ'ଣ ? ପଚାରିଲେ ଅବଧାନେ ।

କିଛି ନାହିଁ ଯେ, ଦେବ ଅସୁସ୍ଥ । ସେଇଥିପାଇଁ ବୋଧହୁଏ ସେ ଚିଠି ଖଣ୍ଡେ ଦେବାକୁ ସକ୍ଷମ ହୋଇ ପାରିନି । ତେବେ କିଏ ସେମାନଙ୍କ ତତ୍ତ୍ୱ ନେଉଥିବ ବିଦେଶରେ ? ଶ୍ରାବଣୀ ତ ଛୁଆ ଲୋକ, କ'ଣ କରୁଥିବେ ସେମାନେ ?

ପ୍ରଶ୍ନ କର୍ତ୍ତାର ମନରେ ସାହସ, ଦେହରେ ବଳ ଜାଗ୍ରତ କରିବା ଉଦ୍ଦେଶ୍ୟରେ ଅବଧାନେ ତାଙ୍କ ତାଜା ପ୍ରସ୍ତୁତ ମହୌଷଧି ହିସାବରେ ସଂସ୍କୃତର ଏକ ଶ୍ଳୋକ ଉଦ୍ଧୃତ କଲେ—

ଅନ୍ଧକାରଦୃତେ ବୋଧଃ ଆଲୋକସ୍ୟ ଯଥା ନହି,
ବ୍ୟାଧିଂବିନା ତଥା ସ୍ୱାସ୍ଥ୍ୟଂ କଦାଚିଦ୍ ନୋପଲଭ୍ୟତେ ।
ସଂସାରେ ନିତ୍ୟ ସମ୍ବନ୍ଧୋ ଦୃଶ୍ୟତେ ବ୍ୟାଧି ଦେହୟୋଃ,
ବିନା ବ୍ୟାଧିଂ କଥଂ ସ୍ୱାସ୍ଥ୍ୟ ନାମାପି ଚିନ୍ତ୍ୟତେ ଜନୈଃ ।

ପୁଣି ବ୍ୟାଖ୍ୟାକଲେ— ଦେହର ଚିର ସାଥୀ ରୋଗ, ସେମାନେ ଦୁହେଁ ଅବିଚ୍ଛେଦ୍ୟ । ପୁଣି ରୋଗହିଁ ଦେହକୁ ସୁସ୍ଥ ରଖେ କାରଣ ରୋଗବିନା ସ୍ୱାସ୍ଥ୍ୟ ଅସମ୍ଭବ, ଯେପରି ଅନ୍ଧକାର ନଥିଲେ ଆଲୋକର ସତ୍ତା ଉପଲବ୍ଧି କରି ହୁଏନି; ଅବାଟ ହିଁ ପ୍ରକୃତ ବାଟ ସୂଚିତ କରିଥାଏ ।

: ତମେ ନିଶ୍ଚିନ୍ତ ରୁହ ଏଥର ସନାତନ । ଦେବ ବୋଉକୁ ମୁଁ ମଧ୍ୟ ବୁଝାଇ ଦେଉଛି । ପୂର୍ଣ୍ଣ ଅବଧାନର ବାଣୀ ଅସତ୍ୟ ହୁଏନି, ତା' ବଚନହିଁ ପୂର୍ଣ୍ଣ । ତା' ନିଜର ବାଣୀ ନାହିଁ, ଯାହା ପାଠ ଦ୍ୱାରେ, ତାକୁହିଁ ଉପସ୍ଥାପନା କରିଥାଏ । କ'ଣ ବିଶ୍ୱାସ ହେନୁନି ?



Digitized by PPRACHIN, SOA

ସନାତନ ମୁହଁରୁ ଦେବବୋଉ ଗଣନାର ଫଳାଫଳ ମନଧ୍ୟାନ ଦେଇ ଶୁଣିଥିଲା । କିଛି ସନ୍ତୋଷ, କିଛିଟା ଅସନ୍ତୋଷର ଭାବ ମୁହଁରୁ ଫୁଟି ଉଠିଥିଲା ତା'ର । ସ୍ୱାମୀ ସ୍ତ୍ରୀ ଦିହେଁ ସାମାନ୍ୟ ଉଶ୍ୱାସ ଅନୁଭବ କରିଥିଲେ କାରଣ ଅସୁସ୍ଥତାର କାରଣରୁହିଁ ଦେବକାନ୍ତ ପତ୍ରଟିଏ ଲେଖିବାକୁ ସମର୍ଥ ହୋଇ ପାରିନି । ଏହା ଛଡ଼ା ତା'ର ନୀରବତାର କାରଣ ଅନ୍ୟ କ'ଣ ବା ହୋଇପାରେ ? ନିଗଣ୍ଡୟଂ ଜଗଦୀଶ ରକ୍ଷ । ବିଦେଶରେ ହରିହିଁ ସହାୟ ।

ଅତଏବ ସେମାନଙ୍କ ପୂଜାପାଠ ଯଥାରୀତି ଏବଂ ନିଷ୍ଠାରେ ଚାଲୁ ରହିଲା । ଦୁର୍ଦ୍ଦିନରେ ଇଶ୍ୱର ହିଁ ଏକମାତ୍ର ଅବଲମ୍ବନ ।

ତଥାପି ଦେବବୋଉ ମନକୁ ସ୍ଥିର କରି ପାରି ନଥିଲା । ପଞ୍ଚପଡ଼ା ହାଟରୁ ହନୁମାନ ପ୍ରଶ୍ନ ବହିଟିଏ କିଣି ବାରମ୍ବାର ଉତ୍ତର ଖୋଜିଥିଲା । ଉତ୍ତରମାନଙ୍କରେ ମେଳକ ନଥିଲେ ମଧ୍ୟ ନିର୍ଦ୍ଦିଷ୍ଟ ବ୍ୟକ୍ତି ଯେ ବାଟବଣା ହୋଇଛନ୍ତି ଏବଂ ସେମାନେ ବିଳମ୍ବରେ ହେଲେ ମଧ୍ୟ ଫେରିବେ, ଏଥିରେ ସେ ମନକୁ ପ୍ରବୋଧନା ଦେଇଥିଲା । ତଥାପି ସେ ସନ୍ତୁଷ୍ଟ ନଥିଲା । ନଖଦର୍ପଣ ବାଲାକୁ ଘରକୁ ଡ଼କାଇ ପୁଅବୋହୂଙ୍କ ଠାବ ଅନୁଧ୍ୟାନ କରିଥିଲା । ଛୁଆ ଆଖିକୁ ନଖ ଦର୍ପଣ ଦୃଶ୍ୟହୁଏ ।

. ଦେବକୁ ଦେଖିଲୁ ? ବୋହୂକୁ ଦେଖିଲୁ ?

: ହଁ ।

: ଆରେ ହଁ କ'ଣ ହୁଣ୍ଡାଟା ! କ'ଣ ଦେଖିଲୁ କହ । ବେଢ଼ି ରହିଥିବା ଗାଁ ଝିଅ, ସାଇ ପାଲେକଙ୍କର ପୁନଃ ପୁନଃ ପ୍ରଶ୍ନ । ସବୁଠୁଁ ଉଚ୍ଚସ୍ୱରରେ ପ୍ରଶ୍ନ କରୁଥିଲା, ଚିକିନୀ । ଭାଇ ନୂଆବୋଉଙ୍କ ସମ୍ବନ୍ଧରେ ଜାଣିବାକୁ ସେ ଅତ୍ୟନ୍ତ ବ୍ୟସ୍ତ, ବ୍ୟଗ୍ର । ନଖ ଦର୍ପଣ ଦେଖାକାମ ଶେଷ ହେଲା । ସର୍ବସମ୍ମତ ମତ ପ୍ରକାଶ ପାଇଲା– ପୁଅବୋହୂ କଲିକତାରେ ବୁଲୁଛନ୍ତି । ଏମିତି ବୁଲି ବୁଲି ଫେରିବେ । ବ୍ୟସ୍ତ ହୋଇ ଆଉ ଲାଭ ନାହିଁ ।





Digitized by PPRACHIN, SOA

ଶୃଙ୍ଖଳ ଦେହ, ଭଙ୍ଗା ମନକୁ ଧରି ଶ୍ରାବଣୀ ବଙ୍ଗାଳୀ ଭଦ୍ରବ୍ୟକ୍ତିଙ୍କ ଘରେ ନିଜକୁ ଗୃହକର୍ମରେ ନିୟୋଜିତ କଲା । ଘର ଭିତରଟି ବେଶ୍ ପ୍ରଶସ୍ତ । ତିନି ଚାରୋଟି କୋଠରୀ । ଭିତର ପଟ୍ଟା । ବାରଣ୍ଡାଟି କୋଠରୀ ଗୁଡ଼ିକର ସଂଯୋଗସ୍ଥଳୀ । ବଡ଼ ବାରଣ୍ଡାର ମଧ୍ୟଭାଗରେ ସୁସଜ୍ଜିତ ଖାଦ୍ୟ-ପରସା ଟେବୁଲ । ତା'ର ଚାରିପାଖକୁ ଘେରି କେତୋଟି ସୂକ୍ଷ୍ମ ଚୌକି । ପୋଷାକ ପରିଧାନ କରି ବନ୍ଧୁ, ଅତିଥି, ଆଗନ୍ତୁକମାନଙ୍କୁ ଆପ୍ୟାୟିତ କରିବା ପାଇଁ ଏଇ କାଷ୍ଠାସନ ଗୁଡ଼ିକ । ଚୌକି ଟେବୁଲ ବ୍ୟବହାର କରି ଆନନ୍ଦାହାର କରିବା ଏଠାକାର ଆଧୁନିକ ଚଳଣି । ସହରର ସଦ୍ୟତମ ପାଚନ-ସଭ୍ୟତା, ଗୃହର ରାଜଚକ୍ୟ ଏବଂ ଆଧୁନିକ ସରଞ୍ଜାମ ସମ୍ବନ୍ଧରେ ଅଳ୍ପ ସମୟ ମଧ୍ୟରେ ଶ୍ରାବଣୀ ମୋଟା ମୋଟି ଧାରଣା କରିନେଲା । ଗୃହକର୍ତ୍ତ୍ରୀ ଶାନ୍ତାକୁମାରୀ ସରଞ୍ଜାମ ସମ୍ବନ୍ଧରେ ଆବଶ୍ୟକ ସ୍ଥଳେ ସଂକ୍ଷିପ୍ତ ଭାଷଣଟିଏ ଦେବାକୁ ଭୁଲୁ ନ ଥିଲେ । ଶ୍ରାବଣୀ କୌଣସି ମନ୍ତବ୍ୟ ଦେବାକୁ ଆଗ୍ରହୀ ନଥିଲା । କିନ୍ତୁ ପ୍ରତିକ୍ଷଣରେ ତା' ଗାଁ, ତା' ଶାଶୁଘରର ତୁଳନାତ୍ମକ ଚିତ୍ର ମନ ଭିତରେ ଜାଗି ଉଠୁଥିଲା । ଗ୍ରାମ୍ୟ ଜୀବନ ଏବଂ ସହରୀ ସଭ୍ୟତା ମଧ୍ୟରେ ତା'ର ଅଲକ୍ଷ୍ୟରେ ଆପେ ଆପେ ତୁଳନାର ତାଲିକା ପ୍ରସ୍ତୁତ ହୋଇ ଯାଉଥିଲା । ନିତି ଆଖି ଦେଖୁଥିଲା ନୂଆ ଦ୍ରବ୍ୟ, ନିତ୍ୟ-ନୂତନ ପଦାର୍ଥ ... ଯେଉଁଥିରେ ତା'ର ଆଉ ନିଘା ନଥିଲା । ମନରେ କେବଳ ଅହର୍ନିଶ ଖେଳୁଥିଲା ତା'ର ଉଦ୍ଦେଶ୍ୟ– ପତି ଦର୍ଶନର ଅଭିଳାଷ, ମନୋତୃଷ୍ଣା ।

ସେମାନଙ୍କର ସୁନ୍ଦର ବୈଠକ ଖାନାଟିଏ । ଗାଲିଚା ବିଛା ଚଟାଣ ଉପରେ କେତୋଟି କୁସନ ଚେୟାର । ମଝିରେ ବଡ଼ ପାନ ପଛଭଳି ଦୁଇଟି ଟି' ପଏ ଗୋଟିଏ ନାଡରେ ସଂଯୁକ୍ତ । ଅନେକ ସୁନ୍ଦର



Digitized by PPRACHIN, SOA

ଉପକରଣ, ଫଟୋଚିତ୍ର, ଖେଳନାଦିରେ ଗୃହଟି ସୁସଜ୍ଜିତ । ନୂଆ ଢଙ୍ଗରେ କାଠ ନିର୍ମିତ ଆଲମାରୀରେ ମୋଟା ମୋଟା ଗ୍ରନ୍ଥଗୁଡ଼ିଏ ଗୃହ ଗାମ୍ଭୀର୍ଯ୍ୟକୁ ଦୃଢ଼ୀଭୂତ କରିଥାଏ । ଭିତର କାନ୍ଥରେ ଗୋଟିଏ ଥାକରେ ବୀଣାଟିଏ ସ୍ଥାନାଧିକାର କରିଛି, ଠିକ୍ ତା' ପାଖେ ପାଖେ ତୁରିତାବଳ, ଦୁଇ ସଙ୍ଗୀତ ଯନ୍ତ୍ରୋମଙ୍କ ସମ୍ପର୍କ ଯେମିତି ଛାୟା ଓ କାୟାଭଳି । ଠିକ୍ ବିପରୀତ କାନ୍ଥରେ ଅନେକ ଗୁଡ଼ିଏ ହାତଅଙ୍କା ଛବି, ଫଟୋଚିତ୍ର ଏବଂ ଅନେକ କିସମର, ବିଭିନ୍ନ ରୁଚିର ଦୃଶ୍ୟାବଳୀ । ଗୋଟିଏ ବଡ଼ ଚିତ୍ରରେ ସ୍ୱୟଂ ଗୃହକର୍ତ୍ତାଙ୍କର ସହାସ୍ୟ ବଦନ ଫୁଟି ଉଠିଛି । ଶ୍ରାବଣୀ ନିତ୍ୟନୂତନ ଦ୍ରବ୍ୟଗୁଡ଼ିକୁ ଦେଖି ଚକିତ ଏବଂ ଚମତ୍କୃତ ହେଉଥିଲା । ମନେ ହେଉଥିଲା ଏହା ଏକ ଯାଦୁଘର ଅବା ପ୍ରଦର୍ଶନୀର ପ୍ରକୋଷ୍ଠ । ବାବୁଭାୟା ଏବଂ ଉଚ୍ଚଶ୍ରେଣୀ ଗ୍ରକିରିଜୀବୀମାନଙ୍କ ବାସଗୃହ ଏମିତି ବୋଧହୁଏ ଗ୍ରକଚକ୍ୟ-ପୂର୍ଣ୍ଣ ! ଗଳଗଳୁଡ଼ାଙ୍କ ଉଆସ କିପରି ହୋଇ ନଥିବ ତେବେ ?

ପଛଆଡୁ ମା'ଙ୍କ ସ୍ୱର ଶୁଭିଲା । ଯେଉଁ ସୁନ୍ଦର ନାରୀଚିତ୍ରଟିକୁ ଶ୍ରାବଣୀ ନିରେଖି ଦେଖୁଥିଲା, ତା ଆଡକୁ ଆଙ୍ଗୁଠି ନିର୍ଦ୍ଦେଶ କରି ମା' କହିଲେ– ଏସବୁ ବାବୁଙ୍କ ହାତ କାମ । ସେ କ'ଣ ଘର କଥା କିଛି ବୁଝନ୍ତି ? ଯେତେବେଳେ ଦେଖିବ, ରଙ୍ଗ ତୂଳି ରଙ୍ଗ ଡ଼ବା, ଡ୍ରଇଁ କାଗଜ ଧରି ଅଙ୍କା ଅଙ୍କିରେ ବ୍ୟସ୍ତ, ନିମଜ୍ଜିତ । ଛୁଟି ଦିନମାନଙ୍କରେ ସେ କିଛି ଶୁଣନ୍ତି ନାହିଁ, କୌଣସି କଥା ତାଙ୍କ ମୁଣ୍ଡରେ ପଶେ ନାହିଁ, କହିଲେ ବିରକ୍ତ ହୁଅନ୍ତି । ଦରମା ଗଣ୍ଡାକ ଫିଙ୍ଗି ଦେଲେ ତାଙ୍କ ଦାୟିତ୍ୱ ସରିଲା । ଘର ବୁଝେଁ ମୁଁ ... ବୁଝିଲୁ ?

ଶାନ୍ତା କୁମାରୀଙ୍କ ଗୃହିଣୀପଣକୁ ଶ୍ରାବଣୀ ତାରିଫ କରୁଥିଲା ତା ବିସ୍ଫାରିତ ନୟନ ଯୁଗଳ ମାଧ୍ୟମରେ ।

ଘରର ଆସବାବ ପତ୍ର ଗୁଡ଼ିକରେ ପରସ୍ତେ ଧୂଳି ଜମି ରହିଥିଲା । ମର୍ଚ୍ଚିମାଡ଼ରେ ଫଟଗୁଡ଼ିକ ତେଜ ହରାଇ ଥିଲେ । ଶାନ୍ତାକୁମାରୀ ଶ୍ରାବଣୀକୁ ଫୁଲଝାଡୁ ଏବଂ କନାଟିଏ ଧରେଇ ଦେଇ ଜିନିଷ ସଫା କରିବାର ବାଗ ଶିଖାଇ ଦେଲେ । ଖୁବ୍ ଆଗ୍ରହରେ କାମଗୁଡ଼ିକ ଆବୋରି ବସିଲା ।



Digitized by PPRACHIN, SOA

ଆଶାନୁରୂପ ଆଶ୍ରାଟିଏ ପାଇଛି । ମଜୁରି କାମ ଅପେକ୍ଷା ଜଣକ ପାଖେ ମୁଣ୍ଡ ବିକିବା ଅନେକାଂଶରେ ଭଲ । ଏଥିରେ ଥାଏ କିଛିଟା ସ୍ଥାୟିତ୍ୱ, ଉଦର ପାଇଁ ମୁଠିଏ ଖାଦ୍ୟର ପ୍ରତିଶ୍ରୁତି, ଦୈନିକ ଆହାର-ଅନ୍ୱେଷଣ-ତାଡ଼ନାରୁ ମୁକ୍ତି । ଥିର ହେଲେ ସିନା ମଣିଷ ଠିଆ ହେବ ? ତା ପରେ ଯାଇ ଠାବ କରିବ !

ଶ୍ରାବଣୀ ଗୃହ ପରିଷ୍କାର କରିବା ଅବସରରେ ଶାନ୍ତାକୁମାରୀ ଶିଶୁଟିକୁ କାଖକରି ଗ୍ଲାସେ ଗରମ ଦୁଧ ପାନ କରଉଲେ । ଶ୍ରାବଣୀକୁ ତା ସଙ୍ଗେ ପରିଚୟ କରଉବା ଢଙ୍ଗରେ କହିଲେ— ଖୋକୋନ୍ ଏଥର ଆଙ୍କୁ ଡ଼ାକିବୁ କାକୀ ମା' । ସେ ଘରି ଭଲ । ତୋତେ ଖେଳେଉବେ, ଖୋଉବେ, ସବୁ କାମ ତୋର କରିବେ ଏଥର । ଯିବୁନା ତାଙ୍କ ପାଖକୁ ?

ଦି'ହାତକୁ ପ୍ରସାରିତ କରି ଶ୍ରାବଣୀ ଖୋକୋନକୁ ନିଜ କୋଳ ଭିତରକୁ ଆହ୍ୱାନ କଲା । ପ୍ରଥମେ କୁଣ୍ଠା ପ୍ରକାଶ କରି ଏବଂ ଟିକିଏ ପରେ କୁଣ୍ଠା ଦୂରକରି ଖୋକୋନ୍ ଶ୍ରାବଣୀର ବକ୍ଷଦେଶକୁ ଢ଼େଇଁ ପଡ଼ିଲା । ଏକ ଅସମ୍ଭବ ତୃପ୍ତିରେ, ଅବ୍ୟକ୍ତ ଆନନ୍ଦରେ ଶ୍ରାବଣୀର ନାରୀ ହୃଦୟ ପୂରି ଉଠିଲା । ଶିଶୁଟିଏ ମା' କୋଳର ପରିତୃପ୍ତି, ସେ ଅନୁଭବ କରିଥିଲା ଏଇ ପ୍ରଥମ ଥର । କେତେ ସୁନ୍ଦର ସତେ ଏ ଦୃଶ୍ୟ ! ଆନନ୍ଦର ଆତିଶଯ୍ୟରେ ଆଖି ଉଚ୍ଛୁଳି ଉଠୁଥିଲା ଶ୍ରାବଣୀର । ଶିଶୁ ସୁନ୍ଦର, ତା'ର ଠୁକୁ ଠୁକୁ ଗ୍ରଲି, ଖଣ୍ଡି ଖଣ୍ଡି କଥା, ତୁଳା ଭଳି ନରମ ଦେହ ତା'ର ନାରୀ ହୃଦୟକୁ ତୃପ୍ତ କରୁଥିଲା । ମତ୍ତକାନ୍ତାରରେ ମଧ୍ୟ ଅଛି ଅହେତୁକ ଆକର୍ଷଣ, ଅଭିନବ ଅନୁଭୂତି । ଦେଖୁଲେ ଆଖି ପୂରୁଛି, ମନ ଭରୁଛି । ଶ୍ରାବଣୀ ନିଜକୁ ସଂଯତ କଲା, ତରଳ ଆଖିର ମୁହଁକୁ ଘୂରଉଲା କାନ୍ଥ ଆଡ଼କୁ, କେହି ନ ଦେଖୁଲା ଭଳି ପଛ ପରିବର୍ତ୍ତନ କଲା ।

ଦେହର ବସ୍ତ୍ର ମଇଳା, ଝାଳୁଆ । ଏପରି ଅପରିଚ୍ଛନ୍ନ, ଅପରିଷ୍କାର ଦେହରେ ବାବୁ-ପିଲାକୁ ସ୍ପର୍ଶ କରିବା ଅସୁନ୍ଦର, ଅସ୍ୱାହଣୀୟ । ତଥାପି ଗୃହକର୍ତ୍ତ୍ରୀ ବଡ଼ ଦୟାବତୀ, ହୃଦୟବତୀ, ସଦାଶୟା ରମଣୀ । ଗରିବ



Digitized by PPRACHIN, SOA

ପ୍ରତି ଘୃଣା ନାହିଁ । ତାକୁ କାକୀମା' ବୋଲି ସମ୍ବୋଧନ କରିବାକୁ ଖୋକୋନ୍‌କୁ ଶିଖାଇଲେଣି । ସେଥିରୁ ଗୃହିଣୀଙ୍କର ହୃଦୟର ବିଶାଳତା ଅନୁମେୟ । ଏପରି ଦୁର୍ଦ୍ଦିନ, ଦୁଃସମୟରେ ତା ପାଇଁ ସେତିକି ଦୟା କିଛି କମ୍ ଆଶୀର୍ବାଦ ନୁହେଁ । ଈଶ୍ୱର ଦୟାଶୀଳ, ଘଟଣା ରଚନା କରନ୍ତି, ଦୁର୍ଘଟଣା ସୃଷ୍ଟି କରନ୍ତି, ପୁଣି ଘଟସୂତ୍ର ଯୋଡ଼ନ୍ତି ; ମାରନ୍ତି ଏବଂ ତାରନ୍ତି । ଏ ସଂସାର ସୃଷ୍ଟିର ଗୋଟିଏ ଅବୋଧ୍ୟ ଖେଳ । ମଣିଷ କେବଳ ତାଙ୍କର ଅଦ୍ଭୁତ ଖେଳନା । କାଳର ବିଚିତ୍ର ଘୂର୍ଣ୍ଣନରେ ସମସ୍ତେ ଘୂର୍ଣ୍ଣାୟମାନ । ସଂଯୋଗ ବିୟୋଗ, ସୁଯୋଗ ଦୁର୍ଯୋଗ, ସୃଷ୍ଟିର ଚିରନ୍ତନ ଲୀଳା । ଶ୍ରବଣୀ ପ୍ରତିକ୍ଷଣରେ ଅନୁଭବ କରୁଥିଲା ଈଶ୍ୱର ସତ୍ତା ।

ଖୋକୋନ୍‌କୁ କୋଳରୁ ନେଇ କୁସନ ଉପରେ ଥୋଇଲା । ଇଚ୍ଛା ହେଉଥିଲା ତା'ର ପୁଚ୍‌କା, ଫୁଲ୍‌କା ଦୁଧ-ଗାଲରେ ମୁହଁ ଲଗାଇ ଗୁଡ଼ିଏ ଚୁମ୍ବନ ଆଙ୍କି ପକାନ୍ତା । ପୁଣି ନିଜକୁ ସତର୍କ ଏବଂ ସଂଯତ କରିନେଲା । ଏ ଘରର ସେ ମାତ୍ର ଜଣେ ଚାକରାଣୀ । ଶାନ୍ତା କୁମାରୀଙ୍କ ନିର୍ଦ୍ଦେଶ ମତେ କାମରେ ନିଜକୁ ନିୟୋଜିତ କଲା ।

ଶାନ୍ତାକୁମାରୀ ଉଚ୍ଚଶିକ୍ଷିତା, ବହୁଗୁଣସମ୍ପନ୍ନା, ଅନେକ ବିଦ୍ୟାର ଅଧିକାରିଣୀ । ବିଦ୍ୟାର ପ୍ରସାର ସ୍ୱରୂପ କଲିକତା ଉନ୍ନୟନ କର୍ପୋରେସନର ସେ ଜଣେ ଖ୍ୟାତି ସମ୍ପନ୍ନା ମହିଳା କର୍ମଚାରୀ । ଚାକିରୀ ଏବେ ତାଙ୍କର ଏକ ଆବଶ୍ୟକ ନୁହେଁ, ସଉକ ମାତ୍ର । ସୀତାଂଶୁଙ୍କ ସହିତ ତାଙ୍କର ସାକ୍ଷାତ ଏବଂ ସଂଯୋଗ ହୁଏ ଏକ ନାଟକୀୟ ପରିସ୍ଥିତିରେ, ଏକ ସଙ୍ଗୀତ ସମାରୋହରେ । ପ୍ରେମାଞ୍ଜ ରୂପ ନେଲା ତାଙ୍କ ଏଇ ବାଞ୍ଛିତ ବନ୍ଧନରେ ... ।

ସେଦିନ ସନ୍ଧ୍ୟାରେ ଥିଲା ଏକ ସଙ୍ଗୀତ ଆସର । ରବୀନ୍ଦ୍ର କଳା ନିକେତନର ପରିସର ତା'ର ଚିରଚରିତ ଦୈନନ୍ଦିନ ସାଜସଜ୍ଜାରେ ଜମି ଉଠୁଥିଲା । ଦେଶର ଏବଂ ପ୍ରଦେଶର ବହୁ ବିଶିଷ୍ଟ ସଙ୍ଗୀତଜ୍ଞମାନଙ୍କ ସମାବେଶରେ ସ୍ଥାନଟି ମୁଖରିତ ଥିଲା । ସହରର ବିଶିଷ୍ଟ ଭଦ୍ରଲୋକ, ପ୍ରତିଷ୍ଠିତ ବ୍ୟକ୍ତି, କଳାକାର, ଉଚ୍ଚାସନ ଅଧିକାରୀ ଏବଂ ଶିଳ୍ପପତି



Digitized by PPRACHIN, SOA

ବଣିକମାନେ ସଭାସ୍ଥଳୀ ମଣ୍ଡନ କରିଥିଲେ । ଦର୍ଶକ ଗ୍ୟାଲେରୀ ଭରପୁର ଥିଲା । ଶାନ୍ତା କୁମାରୀ ଥିଲେ ରବୀନ୍ଦ୍ର ସଙ୍ଗୀତ ଏବଂ ବୀଣା ବାଦନରେ ନିପୁଣା । ଶାସ୍ତ୍ରୀୟ ଏବଂ ଜାତୀୟ ସଙ୍ଗୀତରେ ମଧ୍ୟ ତାଙ୍କର ଦକ୍ଷତା କିଛି କମ୍ ନଥିଲା ।

ଶାନ୍ତା କୁମାରୀ ଥିଲେ ଜଣେ ସୌଖୀନ ଗାୟିକା ଏବଂ ବୀଣାବାଦିକା । ଆସର ଜମି ଆସୁଥାଏ । ସେତେବେଳେ ସୀତାଂଶୁ ରବୀନ୍ଦ୍ର ଭାରତୀରେ ଉପାଧ୍ୟାୟର ଜଳା ଶ୍ରେଣୀର ଛାତ୍ର । ଚିତ୍ରାଙ୍କନରେ ତାଙ୍କର ପ୍ରବଳ ଦକ୍ଷତା । ସ୍ୱ ଚକ୍ଷୁରେ ଯାହା ଦେଖନ୍ତି ତା'ର ଜୀବନ୍ତ ଚିତ୍ର ଖୁବ୍ ନିଖୁଣ ଭାବେ ଚଟାପଟ୍ ଆଙ୍କି ମାରନ୍ତି କିମ୍ବା ମାନସପଟରେ ସାଇତି ରଖିଥିବା ଦୃଶ୍ୟର ଅବିକଳ ନକଲ କାଗଜରେ ଜୀବନ୍ୟାସ ଦେଇ ପାରନ୍ତି । ସେ ଜଣେ ଉଦୀୟମାନ ଚିତ୍ରଶିଳ୍ପୀ ଭାବେ ପ୍ରତିଷ୍ଠା ଲାଭ କରିବାକୁ ଯାଉଛନ୍ତି, ସେଇ ପ୍ରତିଷ୍ଠା ଦିଗରେ ସେ ଆଶା ବାନ୍ଧିଛନ୍ତି । ଅତଏବ କଳା ଏବଂ ସଙ୍ଗୀତ ପାଇଁ ତାଙ୍କର ବିଶେଷ ଅନୁରାଗ ରହିଛି । ଆଜି ସନ୍ଧ୍ୟାର ସଙ୍ଗୀତପ୍ରେମୀ ଦର୍ଶକ ଏବଂ ଶ୍ରୋତାମାନଙ୍କ ମଧ୍ୟରେ ସୀତାଂଶୁ ଜଣେ ।

ସଜ୍ଜିତ ମଞ୍ଚପରେ ତରୁଣୀ ଶାନ୍ତା କୁମାରୀ ବୀଣାରେ ଝଙ୍କାର ତୋଳୁଥିଲେ । ବୀଣାର ପ୍ରାଣସ୍ପର୍ଶୀ ସ୍ପନ୍ଦନ ସମସ୍ତଙ୍କୁ କରିଥିଲା ବିମୋହିତ । ସୀତାଂଶୁ ତନ୍ମୟ ହୋଇ ଶୁଣୁ ଥିଲେ । ଶାନ୍ତା କୁମାରୀଙ୍କ ରୂପ ଥିଲା ଅପୂର୍ବ । ସୀତାଂଶୁଙ୍କ ନଜର ବାନ୍ଧି ହୋଇ ଯାଉଥିଲା । ସେ ଆତ୍ମସ୍ମରା ହରାଇ ବସିଥିଲେ । ସ୍ଥାନ-କାଳ-ପାତ୍ର ଭୁଲି ଯାଇଥିଲେ । ସେ ଆଉ ଚୁପ୍ ହୋଇ ବସି ପାରି ନଥିଲେ । ଶାନ୍ତା କୁମାରୀଙ୍କ ପରିବେଷଣ ଶେଷ ହୋଇ ଆସନ୍ତେ ସୀତାଂଶୁ ଅତି ଅଭାବନୀୟ ଏବଂ ଅପ୍ରତ୍ୟାଶିତ ଭାବେ ଦର୍ଶକ ଗ୍ୟାଲେରୀରୁ ଉଠିଯାଇ ମଞ୍ଚପରେ ଠିଆ ହୋଇ ଜଣେ ବାଉଳା ଭଳି କରତାଳି ଦେଉଥିଲେ ଏବଂ ମାଇକ୍ରୋଫୋନ୍ ମାଧ୍ୟମରେ ରୂପସୀ-ରାଗିଣୀ ଶାନ୍ତାକୁମାରୀଙ୍କ ସ୍ତୁତିଗାନ କରିଥିଲେ । ସଙ୍ଗୀତରେ ଥାଏ ଏମିତି ଯାଦୁ, ସମ୍ମୋହନ ଶକ୍ତି ।



Digitized by PPRACHIN, SOA

ଏପରି ନାଟକୀୟ ଘଟଣା ପରବର୍ତ୍ତୀ କାର୍ଯ୍ୟକ୍ରମରେ ବ୍ୟତିକ୍ରମ ଏବଂ ବିଶୃଙ୍ଖଳା ସୃଷ୍ଟି କରିଥିଲା । ମଣ୍ଡପ ଉପରେ କିଏ ସେ ଅନାହୂତ ଯୁବକ ? କ'ଣ ତାଙ୍କର ସମ୍ପର୍କ ଗାୟିକାଙ୍କ ସହିତ ? ଯାହାହେଉ, ଉଦ୍ୟୋକ୍ତା ଏବଂ କର୍ମକର୍ତ୍ତାମାନଙ୍କ ହସ୍ତକ୍ଷେପ ଫଳରେ ସୀତାଂଶୁ ପ୍ରକୃତିସ୍ଥ ହୋଇ ପୁଣି ଦର୍ଶକ ଆସନ ଧରି ଥିଲେ ।

କିନ୍ତୁ ଏ ସୁଶ୍ରୀ ଯୁବକ ଜଣକ ଯେ ଶାନ୍ତା କୁମାରୀଙ୍କର ଜଣେ ପ୍ରଶଂସକ, ଏ କଥା ରୂପସୀ ଶାନ୍ତାକୁମାରୀଙ୍କ ନଜର ଏଡ଼ାଇ ପାରି ନଥିଲା । ନିଜ ପ୍ରଶଂସା, ଚାଟୁବାକ୍ୟ ଶୁଣିବାକୁ କାହାକୁ ବା ସୁଖ ଲାଗେନି ? ମଣିଷ ମାତ୍ରେହିଁ ଚାହେଁ ଖୋସାମଦ ଏବଂ ଏହି ଗୁଣଟି ସ୍ତ୍ରୀମାନଙ୍କ ପାଖେ ଅଧିକ ମହଜୁଦ ଥାଏ । ଖୋସାମଦିଆ, ଚାଟୁବାକ୍ୟରେ ସେମାନେ ଅଧିକ ପ୍ରୀତ ହୋଇଥାନ୍ତି । ହୁଏତ ଏହା ନାରୀର ଏକ ଜନ୍ମଗତ ଦୁର୍ବଳତା ହୋଇ ପାରେ ।

ସଙ୍ଗୀତ ସଭା ଶେଷରେ ସୀତାଂଶୁ ଶାନ୍ତା କୁମାରୀଙ୍କୁ ସୌଜନ୍ୟ-ସାକ୍ଷାତ କରିବାକୁ ଆଗେଇ ଯାଇଥିଲେ ଏବଂ ଶାନ୍ତାକୁମାରୀ କୃତଜ୍ଞତାପୂର୍ଣ୍ଣ ଆଖିରେ ଯୁବ ପ୍ରଶଂସକଙ୍କୁ ସାଧୁବାଦ ଜ୍ଞାପନ କରିଥିଲେ । ସୀତାଂଶୁ ହୋଇଥିଲେ କୃତ୍ୟ, କୃତ୍ୟ । ମନ ତାଙ୍କର ହୋଇଥିଲା ପୁଲକିତ ଏବଂ ଉଲ୍ଲସିତ । ସେହି ମୁହୂର୍ତ୍ତରୁହିଁ ତାଙ୍କ ମନ ଭିତରେ ଦୁର୍ବଳତାର ଚାରା ରୋପିତ ହୋଇଥିଲା । ସେଦିନ ସେ ଆଉ ରାତ୍ରିରେ ଆଖିବୁଜି ଶୋଇ ପାରିନଥିଲେ । ସୁଖନିଦ୍ରାରେ ସ୍ୱପ୍ନ କେବଳ ଦେଖୁଲେ– ଝଲସୁଥିଲା ଶାନ୍ତାକୁମାରୀଙ୍କ ଅପରୂପା ଛବି-ସୁନ୍ଦର ଠାଣିରେ ଶାନ୍ତାକୁମାରୀ ବୀଣାରେ ସ୍ୱର ସଂଯୋଜନା କରୁଛନ୍ତି । ଅପୂର୍ବ ସେ ଦୃଶ୍ୟ ... ଶାନ୍ତା କୁମାରୀଙ୍କ ଗଳାରେ, ରୂପରେ ଯୌବନରେ ଭରି ରହିଛି ସମ୍ମୋହନ ଶକ୍ତି– ସୀତାଂଶୁ ହୋଇ ଯାଇଥିଲେ ମତୁଆଲା, ପ୍ରଗଲ୍‌ଭ, ବିଭୋର ।

ତହିଁ ଆରଦିନ ତାଙ୍କ ମାନସପଟରେ ଛାପି ହୋଇ ରହିଥିବା ଶାନ୍ତାକୁମାରୀଙ୍କ ବୀଣାଧରା ଛବିକୁ କାଗଜରେ ଜୀବନ୍ତ ଭାବେ ଆଙ୍କି ସୀତାଂଶୁ ଉପହାର ଦେବାକୁ ଯାଇଥିଲେ ତାଙ୍କ ବାସଗୃହକୁ ।



Digitized by PPRACHIN, SOA

: ଆରେ ଆପଣ ଜଣେ ଚିତ୍ରକାର ! ଏମିତି ସୁନ୍ଦର ଏବଂ ଅବିକଳ ଛବି ଆଙ୍କି ପାରନ୍ତି ? ଶାନ୍ତାକୁମାରୀ କେବଳ ଆଶ୍ଚର୍ଯ୍ୟ ହୋଇ ନଥିଲେ, ହୋଇ ଥିଲେ ବିମୁଗ୍ଧା । ଗତଗତି ଦୃଶ୍ୟର ଫଟୋଚିତ୍ରଟିଏ ଜଣେ ସ୍ତାବକ-କଳାକାର ହାତରେ ଅଙ୍କିତ । ଶାନ୍ତାକୁମାରୀ ବୀଣାରେ ସ୍ୱର ସଂଯୋଗ କରୁଛନ୍ତି, ମନେ ହେଉଥିଲା ଶୁକ୍ଳବସ୍ତ୍ରା ବୀଣାଧାରିଣୀ ସରସ୍ୱତୀ ସତେ ଅବା ସ୍ୱର-ସଂଗୀତ ସୃଷ୍ଟି କରୁଛନ୍ତି । ଚିତ୍ରରେ ଥିଲା ଶୁଭ୍ରତା, କଳାକାରର ପଟୁତା । ଯୁବକ-କଳାକାରଙ୍କୁ ଭୂୟସୀ ପ୍ରଶଂସା ନ କରି ରହି ପାରି ନଥିଲେ ଶାନ୍ତାକୁମାରୀ, ଠିକ୍ ଯେମିତି ପୂର୍ବ ସନ୍ଧ୍ୟାରେ ସୀତାଂଶୁ ସମସ୍ତଙ୍କ ସମ୍ମୁଖରେ ଅତି ନିଃସଙ୍କୋଚରେ ଶାନ୍ତାକୁମାରୀଙ୍କ ଜୟଗାନ କରିଥିଲେ । ସେଠି ସଭାରେ ଥିଲେ ଦର୍ଶକବୃନ୍ଦ, ଶ୍ରୋତୃମଣ୍ଡଳୀ । ଏଠି ଶାନ୍ତାକୁମାରୀଙ୍କ ବାସଗୃହରେ ଦର୍ଶକ ଏବଂ ଶ୍ରୋତାମାନେ ଥିଲେ ତାଙ୍କ ପରିବାରବର୍ଗ– ପିତା ମାତା, ସାନ ଭାଇ ଭଉଣୀ, ପୂଜାରୀ ଏବଂ ସେବକଗଣ । ସମସ୍ତେ ଏ ଜୀବନ୍ତ ହସ୍ତଚିତ୍ରଟି ଦେଖି ଅଭିଭୂତ ହୋଇଥିଲେ ।

ଶାନ୍ତାକୁମାରୀ ପ୍ରଥମେ ସିଲେଇଟ ପାଇଟି ଯା'ଇଥିଲେ ଏବଂ ଶିଷ୍ଟାଚାର-ବିଧି ଭୁଲି ଯାଇଥିଲେ । ପିତାମାତାଙ୍କୁ ଯୁବକଙ୍କର ପରିଚୟ ପ୍ରଦାନ କରିବାକୁ ଆଗେଇ ଆସନ୍ତି, ସେ ନିଜେ ହିଁ ଯୁବକଙ୍କର ନାମ ଜାଣି ନ ଥିଲେ । ବାକ୍ୟର ଶୂନ୍ୟସ୍ଥାନ ପୂରଣ କରି ଯୁବକ କହିଲେ– ମୁଁ ସୀତାଂଶୁ ଚଟ୍ଟୋପାଧ୍ୟାୟ, ଶାନ୍ତିନିକେତନ କଳାଶ୍ରେଣୀର ଉପାଧ୍ୟୟର ଛାତ୍ର ।

ଶାନ୍ତାକୁମାରୀଙ୍କ ପିତା ତାଙ୍କ ଅଭିଜାତଭରା ଢଙ୍ଗରେ ଫଟଚିତ୍ର ଉପରେ ଆଉଥରେ ଦୃଷ୍ଟି ଘୂରାଇ ଯୁବକଙ୍କର କଳାତ୍ମକ ଗୁଣକୁ ତାରିଫ କରିଥିଲେ । ତାଙ୍କ ବଚନରେ ଥିଲା ଜଣେ ଉଦୀୟମାନ ଯୁବକର କଳା ପ୍ରତି ଉତ୍ସାହ । ଠିକ୍ ଏତିକିବେଳେ ଶାନ୍ତାକୁମାରୀ ଖୁବ୍ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଥିଲେ ସୀତାଂଶୁଙ୍କ ଆଡ଼କୁ । ତାଙ୍କ ଦୃଷ୍ଟିରେ ସଞ୍ଚିତ ଥିଲା ଜଣେ ସଂଗୀତ–ସାଧିକାର କଳା ପ୍ରତି ଆକର୍ଷଣ ଏବଂ ପ୍ରଗାଢ ଅନୁରାଗ । ପୁଣି ପରକ୍ଷଣରେ ଘଟିଥିଲା ଭାବର ବିନିମୟ, ଗ୍ରହାର୍ଣିର ଆଦାନ ପ୍ରଦାନ । ଉପସ୍ଥିତ ପରିବାରଜନଙ୍କୁ ଏକଥା ଅଗୋଚର ଥିଲେ ମଧ୍ୟ କାଳ ଠାର ଜାଇ ମା' ବୁଝିପାରେ ।



Digitized by PPRACHIN, SOA

ସୀତାଂଶୁଙ୍କର ସୌମ୍ୟକାନ୍ତି ଚେହେରା ଏବଂ କଳାତ୍ମକ ଗୁଣ ପ୍ରତି ଆକୃଷ୍ଟା, ଆକର୍ଷିତା ହୋଇଥିଲେ ଶାନ୍ତା କୁମାରୀ । ଉଚ୍ଚ, ବପୁବାନ ସୁଗଠିତ ସ୍ୱାସ୍ଥ୍ୟବାନ ଯୁବକ ଜଣେ । ଏହା ହିଁ ଜଣେ ଯୌବନାବତୀର ଆବଶ୍ୟକତା । ସେଇ ଦିନଠୁଁ ସେମାନଙ୍କ ସମ୍ପର୍କ ଅଧିକ ଘନିଷ୍ଠ ହେବାକୁ ଲାଗିଲା । କ୍ରମେ ସେମାନଙ୍କ ମିଳାମିଶା ହୋଇଥିଲା ଅବାଧ, ନିର୍ବିରୋଧ । ପ୍ରଣୟ ବନ୍ଧନରେ ସେମାନେ ବାନ୍ଧି ହୋଇ ଯାଇଥିଲେ । ଘନିଷ୍ଠତାର ଫଳକ ସ୍ୱରୂପ ସୀତାଂଶୁ ବିବାହ ପ୍ରସ୍ତାବ ଉପସ୍ଥାପନ କରନ୍ତେ ଶାନ୍ତା କୁମାରୀଙ୍କ ପିତା ବଙ୍କିମ ଚନ୍ଦ୍ର ଭୟଙ୍କର ହୋଇ ଉଠିଲେ ।

ବଙ୍କିମଚନ୍ଦ୍ର ସୈନ୍ୟ ବିଭାଗର ଜଣେ ଅବସର ପ୍ରାପ୍ତ କର୍ଣ୍ଣେଲ । ପାଞ୍ଚ ବର୍ଷ ହେଲା ସ୍ୱଇଚ୍ଛାରେ ଅବସର ଗ୍ରହଣ କରିଛନ୍ତି । ତାଙ୍କ ରୂପ, ଆହାର, ଆଗ୍ରହ, ବ୍ୟବହାରରେ ସୈନିକ ଢାଞ୍ଚା ବଜବଉର ରହିଛି । କଲିକତା ନଗରୀର ସଲ୍ଟଲେକ୍ ଅଞ୍ଚଳରେ ନିଜ ରୁଚି ଅନୁଯାୟୀ ନିର୍ମାଣ କରିଥିଲେ ତାଙ୍କ ବାସଭବନ । ସେଇଠି ସେ ସପରିବାର ସମୟାତିବାହିତ କରୁଛନ୍ତି । ଶାନ୍ତା କୁମାରୀ ତାଙ୍କର ଆଦରଣୀୟା ଜ୍ୟେଷ୍ଠା କନ୍ୟା । ଖୁବ୍ ସ୍ନେହରେ, ଶ୍ରଦ୍ଧାରେ ପାଳିଛନ୍ତି ତାଙ୍କ ଜ୍ୟେଷ୍ଠା କନ୍ୟାକୁ, ମନାନୁଯାୟୀ ଝିଅକୁ ଗଢିଛନ୍ତି ଆଧୁନିକା । ଶାନ୍ତା କୁମାରୀ ମଧ୍ୟ ହୋଇଛନ୍ତି ଶିକ୍ଷିତା, ସର୍ବଗୁଣସମ୍ପନ୍ନା ଏବଂ ସର୍ବବିଦ୍ୟାଧାରିଣୀ । କ୍ଲବ୍, କ୍ରୀଡ଼ା ଏବଂ ସଙ୍ଗୀତ କ୍ଷେତ୍ରରେ ସେ ଅଗ୍ରଗାମୀ । ଏଣୁ ବଙ୍କିମ ଚନ୍ଦ୍ର ତାଙ୍କୁ ଝିଅ ବୋଲି ମଣୁ ନାହାନ୍ତି । କହନ୍ତି– ଶାନ୍ତା ଏ ଘରର ବଡ଼ ପୁଅ ।

ଶାନ୍ତା କୁମାରୀଙ୍କ ସିଦ୍ଧାନ୍ତରେ ପିତା ହଠାତ୍ ଉତ୍କ୍ଷିପ୍ତ ହୋଇ ଉଠିଥିଲେ । ଶାନ୍ତା ପରି କନ୍ୟାଠାରୁ ସେ ଏପରି ଆଶା କରି ନ ଥିଲେ । କୌଣସି ପ୍ରେମଜନିତ ବ୍ୟାପାରରେ ଶାନ୍ତା ଏମିତି ଛନ୍ଦି ହୋଇଯିବ, ବାନ୍ଧି ହୋଇଯିବ, ବଙ୍କିମ ଚନ୍ଦ୍ର କଳ୍ପନା କରି ନଥିଲେ । ତାଙ୍କ ଆକାଂକ୍ଷାରେ କନ୍ୟାର କୁଠାରଘାତ । ସେ ଇଚ୍ଛା କରିଥିଲେ ଶାନ୍ତା କୁମାରୀଙ୍କ ପାଇଁ ଏକ ସମ୍ଭ୍ରାନ୍ତ ବଂଶର ସୁଯୋଗ୍ୟ ସୁପାତ୍ର । ବଙ୍କିମ ଚନ୍ଦ୍ର ପ୍ରଚଣ୍ଡ କ୍ରୋଧରେ ଗର୍ଜି ଉଠିଥିଲେ– ଜଣେ ସାମାନ୍ୟ



Digitized by PPRACHIN, SOA

କଳାକାର, ରଙ୍ଗତୂଳି ଧରି ଚିତ୍ର ଆଙ୍କିବା ଯା'ର ବେଉସା, ତାର ପୁଣି କର୍ଣ୍ଣେଲ ବଙ୍କିମ ଚନ୍ଦ୍ରଙ୍କ କନ୍ୟାର ସ୍ୱାମୀ ହେବା ପାଇଁ ଏତେ ଆସ୍ପର୍ଦ୍ଧା ! କ'ଣ ତାର ବଂଶର ଆଭିଜାତ୍ୟ ? କ'ଣ ତାର ଯୋଗ୍ୟତା ? କ'ଣ ତାର ସାମାଜିକ ସ୍ଥିତି ? କ'ଣ ତାର ଉପାର୍ଜ୍ଜନର କ୍ଷମତା ?

ବଙ୍କିମ ଚନ୍ଦ୍ର ବ୍ୟାଥାତୁର କଣ୍ଠରେ ଝିଅକୁ ବୁଝାବାକୁଇ ଚେଷ୍ଟା କଲେ– ଦେଖ ମା ଶାନ୍ତା, ତୋ ପରି ବିଦ୍ୟା ବୁଦ୍ଧି ସମ୍ପନ୍ନା ଗୁଣବତୀ ଝିଅକୁ କ'ଣ ଜଣେ ସାମାନ୍ୟ ଚିତ୍ରକାର ଉପଯୁକ୍ତ ଏବଂ ସମାନସନ୍ଧ ? ପ୍ରେମ ଏକ ଦୂର ପର୍ବତ, ଦୁଃସ୍ୱପ୍ନ । ପ୍ରେମ ଏବଂ ବିବାହ ଦୁଇଟି ଏକ କଥା ନୁହେଁ, ଦୁହିଁଙ୍କର ଆକାଶ ପାତାଳ ପ୍ରଭେଦ । ସ୍ୱପ୍ନ ଏବଂ ସତ୍ୟ ମଧ୍ୟରେ ଅନେକ ତଫାତ, କଳ୍ପନା ଆଉ ବାସ୍ତବ ମଧ୍ୟରେ ଅନେକ ବ୍ୟବଧାନ । ଜୀବନରେ ସଫଳତା ଅର୍ଜ୍ଜନ କରିବାକୁ ହେଲେ ତୁମକୁ ବାସ୍ତବବାଦୀ ହେବାକୁ ପଡ଼ିବ । କଳାକୁ ପ୍ରେମ କରଯାଇ ପାରେ କିନ୍ତୁ କଳାକାରକୁ ନୁହେଁ । ଉପାର୍ଜ୍ଜନର କ୍ଷମତା, ଆର୍ଥିକ ସ୍ଥିତି ଏବଂ ସାମାଜିକ ପ୍ରତିଷ୍ଠା ନଥିବା ବ୍ୟକ୍ତିକୁ ବିବାହ କଲେ ଦାମ୍ପତ୍ୟ ଜୀବନ କେବଳ ବୀପର୍ଯ୍ୟସ୍ତ ହେବ । ଏପରି ପରିକଳ୍ପନା ସମ୍ପୂର୍ଣ୍ଣ ଅବାସ୍ତବ ଏବଂ ଅସମ୍ଭବ, ପରିଣାମକୁ ଚିନ୍ତା ନକରି ଅନୁପଯୁକ୍ତ ପାତ୍ରକୁ ବିବାହ କଲେ ଜୀବନର ଭୟାବହତାର ଶିକାର ହେବାକୁ ପଡ଼େ । ତୁମର ଅଭିଜ୍ଞତା ନାହିଁ ; ଦୁନିଆକୁ ଚିହ୍ନିବାର ବୟସ ଆସିନି । ଅତଏବ ମୋର ଉପଦେଶ, ନିଜକୁ ସଂଯତ କର, ତୋର ମଙ୍ଗଳାକାଂକ୍ଷୀ ପିତାମାତାଙ୍କର ମତକୁ ସମ୍ମାନ ଦେଇ ଶିଖ ... ଆମ ପାଖେ ଅନେକ ଗୁଡ଼ିଏ ବିବାହ ପ୍ରସ୍ତାବ ଅଛି । ସେଥିମଧ୍ୟରୁ ତୋତେ ଗୋଟିଏ ବାଛି ନେବାକୁଇ ହେବ ... ।

ଶାନ୍ତା କୁମାରୀ ପିତାଙ୍କ ହିତୋପଦେଶକୁ ନୀରବରେ ଶୁଣିଥିଲେ କିନ୍ତୁ ନିଜ ସିଦ୍ଧାନ୍ତରେ ଅଟଳ ରହିଥିଲେ । କଠୋର ପିତାଙ୍କ ପ୍ରତି ତାର ପ୍ରତ୍ୟୁତ୍ତର– ସ୍ୱପ୍ନ ମଧ୍ୟ ବାସ୍ତବତାର ପ୍ରତିଛବି । ସ୍ୱପ୍ନରେ ଆବିଳତା ନଥାଏ, କଠୋରତା ନଥାଏ, ସତ୍ୟ କିନ୍ତୁ ନିଷ୍ଠୁର । ସତ୍ୟର କଠୋରତା



Digitized by PPRACHIN, SOA

ହ୍ରାସ କରିବାକୁ ହେଲେ ସ୍ୱପ୍ନର ଆବଶ୍ୟକତା ରହିଛି । ସ୍ୱପ୍ନ ଜୀବନକୁ ରଂଗ ଦିଏ । କଳ୍ପନା ଆଗକୁ ଇମ୍ଫ ଦେବାକୁ ପ୍ରେରଣା ଦିଏ । ବିନା କଳ୍ପନାରେ ମଣିଷ କ'ଣ ବଞ୍ଚିପାରେ ? କେବଳ ଅର୍ଥ, କ୍ଷମତା, ପ୍ରତିପତ୍ତିରେ, ପ୍ରାଚୁର୍ଯ୍ୟରେ ଶାନ୍ତି ସୁଖ ତିଷ୍ଠି ପାରେନି । ମଣିଷର ମନ ଏବଂ ମମତାରେ ହିଁ ଥାଏ ମଧୁ ଯାହା ଜୀବନକୁ ଅମୃତମୟ କରେ । ସ୍ୱାମୀ ସ୍ତ୍ରୀ ସମ୍ପର୍କରେ ଅର୍ଥ ନଗଣ୍ୟ ନିମିତ୍ତ ମାତ୍ର, ବରଂ ଅର୍ଥର ପ୍ରାଚୁର୍ଯ୍ୟ, କ୍ଷମତାର ପ୍ରଲୋଭନ, ପ୍ରତିପତ୍ତିର କୂଜନ ସ୍ୱର୍ଗୀୟ ସମ୍ପର୍କରେ ଅନ୍ତରାୟ ସୃଷ୍ଟି କରେ । ମୋର ଆଉ ମତ ପରିବର୍ତ୍ତନ କରିବା ସମ୍ଭବ ନୁହେଁ । ଆପଣ ଯଦି ଝିଅର ସୁଖ କାମନା କରୁଥାନ୍ତି, ତେବେ ଆମକୁ ଆଶୀର୍ବାଦ କରନ୍ତୁ ... ଆମର ସ୍ୱପ୍ନ ସଫଳ ହେଉ ... ।

କନ୍ୟାର ଦୃଢ଼ ପ୍ରତିବାଦରେ ବଙ୍କିମ ଚନ୍ଦ୍ର ଅଧିକ କଠୋର ହୋଇ ନିଷେଧାଜ୍ଞା ଜାରି କରିଥିଲେ । କିନ୍ତୁ ଶାନ୍ତା କୁମାରୀ ଥିଲେ ଶିକ୍ଷିତା, ସାବାଳିକା, ପିତାଙ୍କ ପରି ଜିଦ୍‌ଖୋରୀ ଏବଂ ପୋଖତ ଖେଳୁଆଡ଼ୀ । ହଠାତ୍ ହାର ମାନିବା ତାଙ୍କ ଚରିତ୍ରରେ ଲେଖା ନାହିଁ । ପିତାଙ୍କ ତମ୍ବିତୋଫାନ ବିଶେଷ କିଛି ପ୍ରଭାବ ପକାଇ ପାରି ନଥିଲା ବରଂ ସୀତାଂଶୁଙ୍କ ସହିତ ସମ୍ପର୍କ ହୋଇଥିଲା ଆହୁରି ଦୃଢୀଭୂତ, ମଜବୁତ । ପ୍ରେମ ଜନିତ ସମ୍ପର୍କ ସେଇଭଳି । ବାଧା ହେଉଛି ପ୍ରଣୟର କଷଟି ପଥର, ପରୀକ୍ଷାଗାର । ପ୍ରତିବନ୍ଧକ ସମ୍ପର୍କକୁ ମଜବୁତ କରିଥାଏ ।

ସୀତାଂଶୁ ଏବଂ ଶାନ୍ତା କୁମାରୀ ଥିଲେ ପ୍ରାପ୍ତ ବୟସ୍ସ, ଶିକ୍ଷିତ ଯୁବକ ଯୁବତୀ । ସାମାଜିକ ଭୟ ସେମାନଙ୍କୁ ସ୍ପର୍ଶ କରି ନଥିଲା । ବଙ୍କିମ ଚନ୍ଦ୍ରଙ୍କ ରହିତାଦେଶକୁ ସେମାନେ ଭ୍ରୂକ୍ଷେପ କରି ନଥିଲେ । କୌଣସି ଅନ୍ତରାୟ ସେମାନଙ୍କୁ ବିବ୍ରତ କରିପାରି ନଥିଲା ।

ଅନେକ ଗୁଡ଼ିଏ ତହୁଁ ବଡ଼, ତହୁଁ ବଡ଼ ବିବାହ ପ୍ରସ୍ତାବ ବଙ୍କିମ-ଚନ୍ଦ୍ରଙ୍କୁ ବିବ୍ରତ ଏବଂ ବିଚଳିତ କରୁଥିଲା । ଅନେକ ମଧ୍ୟ ବ୍ୟାକୁଳିତ ହୋଇ ଶାନ୍ତା କୁମାରୀଙ୍କ ପରି ରୂପବତୀ ଗୁଣବତୀ ଝିଅକୁ ବିବାହ କରିବା



Digitized by PPRACHIN, SOA

ଧାଇଁ ଧାଇଁ ଆସିଥିଲେ । ଏପରି କନ୍ୟା ପୁଣି କାହା ଭାଗ୍ୟରେ ଥାଏ ! କିନ୍ତୁ ସବୁ ପ୍ରସ୍ତାବ ଗୁଡ଼ିକୁ ପଦାଘାତ କରି ଶାନ୍ତା କୁମାରୀ ଖୁବ୍ ଆଗେଇ ଯାଇଥିଲେ । ଏକ ଅଶୋଭନୀୟ ଏବଂ ଅପ୍ରୀତିକର ପରିସ୍ଥିତିକୁ ଏଡ଼ାଇବା ପାଇଁ ବଙ୍କିମ ଚନ୍ଦ୍ର ଏମାନଙ୍କ ବିବାହରେ ମତଦାନ କରିବାକୁ ବାଧ୍ୟ ହୋଇଥିଲେ । ସୀତାଂଶୁ ସହିତ ଶାନ୍ତା କୁମାରୀଙ୍କ ଶୁଭ ପରିଣୟ ବୈଦିକ ରୀତିରେ ଅନୁଷ୍ଠିତ ହୋଇଥିଲା ସତ, କିନ୍ତୁ ସେଥିରେ ବଙ୍କିମ ଚନ୍ଦ୍ରଙ୍କ ତଥା ତାଙ୍କ ପରିବାରବର୍ଗର ଆନ୍ତରିକତା ନଥିଲା । ଏ କଥା ବଙ୍କିମଙ୍କ ବନ୍ଧୁ ପରିଜନ, ଆମନ୍ତ୍ରିତ ବ୍ୟକ୍ତି ଏବଂ ସୀତାଂଶୁଙ୍କ ପ୍ରତିଦ୍ୱନ୍ଦ୍ୱୀମାନେ ଭଲ ଭାବେ ଉପଲବ୍ଧି କରି ପାରିଥିଲେ ।

ବଙ୍କିମ ଚନ୍ଦ୍ର ଅବାଞ୍ଛିତ ଛିଦ୍ରରୁ ଓହରି ଥିଲେ ଠିକ୍ ଜଣେ ଆକ୍ରମଣକାରୀ ସୈନିକର ପଛ ଘୁଞ୍ଚା ଭଳି । କିନ୍ତୁ ତାଙ୍କ ମନରୁ କ୍ଷୋଭ ପ୍ରଶମିତ ହୋଇ ନଥିଲା ।

ବିବାହ ପରେ ନବ ଦମ୍ପତିଙ୍କର ଅନ୍ନଚିନ୍ତା ପ୍ରଧାନ ସମସ୍ୟା ରୂପେ ଛିଡ଼ା ହୋଇଥିଲା । କେବଳ କଳାକୁ କ'ଣ ପେଷାକରି ବଞ୍ଚି ହୁଏ ଏ ସମାଜରେ ? କଳା ଏକ ସଉକ ମାତ୍ର । କଳା ମାନସିକ କ୍ଷୁଧା ମେଣ୍ଟାଏ, ଶରୀରର ନୁହେଁ । ଶରୀରର ସନ୍ତୋଷରେ, ଉଦରର ତୃପ୍ତିରେ କଳା କେବଳ ତିଷ୍ଠି ପାରେ । ଉଦରର ହୁ ହୁ ଜ୍ୱାଳାରେ କଳା ଜଳିପୋଡ଼ି ପାଉଁଶ ହୋଇଯାଏ । ଏ କଥା ଶାନ୍ତା ହାଡ଼େ ହାଡ଼େ ହୃଦୟଙ୍ଗମ କରିବା ପାଇଁ ବଙ୍କିମ ଚନ୍ଦ୍ର ଚାହିଁଥିଲେ । ଅତଏବ କନ୍ୟାର ବିବାହ ପରେ ସେ ତାର ମୁହଁ ଚାହିଁବାକୁ ଇଚ୍ଛା କରି ନଥିଲେ ।

ସ୍ୱାମୀ ସ୍ତ୍ରୀ ଉଭୟେ ଚାକିରୀ ଅନ୍ୱେଷଣରେ ପ୍ରାଣପଣେ ଲାଗି ପଡ଼ିଲେ । ସୌଭାଗ୍ୟକୁ ଶାନ୍ତା କୁମାରୀ ପ୍ରଥମେ କଲିକତା କର୍ପୋରେସନ ଅଫିସରେ ଚାକିରିଟିଏ ପାଇ ଗଲେ । ତାହା କେବଳ ତାଙ୍କ ନିଜ ବ୍ୟକ୍ତିତ୍ୱ ଯୋଗୁଁ । ତାଙ୍କୁ ଏଥିପାଇଁ ପ୍ରବଳ ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ବଂଶ ପରମ୍ପରା ରହିଛି । କର୍ଣ୍ଣେଲଙ୍କ କନ୍ୟା ସେ ଏବଂ ସଙ୍ଗୀତରେ ପ୍ରବୀଣା । ଗୁଣରେ ରୂପରେ ଅପ୍ରତିଦ୍ୱନ୍ଦ୍ୱୀ । କର୍ପୋରେସନ ଚାକିରୀଟି ପାଇଥିଲେ ତାଙ୍କ ବହୁଗୁଣର ପୁରସ୍କାର ସ୍ୱରୂପ ।



Digitized by PPRACHIN, SOA

ଠିକ୍ ତାଙ୍କ ନିଯୁକ୍ତିର ପରେ ପରେ ସେଣ୍ଟ୍ରାଲ କଲିକତା ସିଣ୍ଡିକେଟ ବ୍ୟାଙ୍କରେ ସୀତାଂଶୁକୁ ଚାକିରୀଟିଏ ମଧ୍ୟ ମିଳିଗଲା । ଚିତ୍ର-କଳାରେ ତାଙ୍କର ଦକ୍ଷତା ଏକ ବିଶେଷ ଯୋଗ୍ୟତା ରୂପେ ବିବେଚନା କରାଯାଇଥିଲା । ଉଭୟ ସ୍ୱାମୀ ସ୍ତ୍ରୀ ଏକ ସମୟରେ ଚାକିରିଆ ହୋଇଗଲେ । ଏବେ ତାଙ୍କର ଆଉ ଅର୍ଥ ଚିନ୍ତା ନାହିଁ । ବିବାହୋତ୍ତର ଜୀବନର ପ୍ରଥମ ପ୍ରତିବନ୍ଧକ ସେମାନେ ପାର ହୋଇଥିଲେ । ସିଓଲପୁର ଅଞ୍ଚଳରେ ଗୋଟିଏ ସ୍ୱତନ୍ତ୍ର ଘର ଭଡ଼ା ନେଇ ଆନନ୍ଦରେ ଅବସ୍ଥାନ କରିବାକୁ ଲାଗିଲେ । ବିବାହର ଏକ ବର୍ଷ ପୂର୍ତ୍ତି ବେଳକୁ ଶାନ୍ତା କୁମାରୀ ମାତୃତ୍ୱ ଅର୍ଜନ କରି ସାରିଥିଲେ । ସଦ୍ୟ ଜାତ ଶିଶୁଟିକୁ କୋଳରେ ଧରି ବନ୍ଧୁ-ବାନ୍ଧବୀଙ୍କ ହର୍ଷରୋଳରେ ବିବାହର ପ୍ରଥମ ବାର୍ଷିକୀ ତଥା କର୍ଥିଂଚା ଶିଶୁର ଜନ୍ମୋତ୍ସବ ଏକ ସଙ୍ଗରେ ପାଳନ କରିଥିଲେ ।

ଏବେ ସେମାନେ ଦାମ୍ପତ୍ୟ ଜୀବନର ତୃତୀୟ ବର୍ଷରେ ପଦାର୍ପଣ କରିଛନ୍ତି । ଘର ଜଞ୍ଜାଳ ସମ୍ଭାଳିବା ପାଇଁ, ପୁଅର ଯତ୍ନ ନେବା ପାଇଁ ଚାକର ପୂଝାରୀ ବା ଚାକରାଣୀର ଆବଶ୍ୟକତା ଏକ ପ୍ରକାର ଅନିବାର୍ଯ୍ୟ ହୋଇ ପଡ଼ିଥିଲା । ଏହି ସମୟରେ ଚାକରାଣୀ ରୂପରେ ଶ୍ରାବଣୀର ଆବିର୍ଭାବ ଶାନ୍ତା କୁମାରୀଙ୍କ ପାଇଁ ଥିଲା ଅନେକ ଆଶ୍ୱାସନା । ତେଣୁ ସେ ଅତି ଚତୁରତାର ସହିତ ଶ୍ରାବଣୀକୁ ଚାକରାଣୀ ଭାବେ ସମ୍ବୋଧନ ନ କରି କାକୀ ମା' ଡାକିବା ପାଇଁ ଖୋକନ୍‌କୁ ଶିଖାଇଛନ୍ତି । ନାରୀର ସରଳ ତରଳ ହୃଦୟ ଯଦି ମମତା ଡ଼ୋରରେ ବାନ୍ଧି ହୋଇଯାଏ ତେବେ ଚାକରାଣୀ ଅନ୍ୟ କେଉଁ ଆଡ଼େ ଆଉ ଯାଇ ପାରିବ ନାହିଁ । ତା ପରେ ସେ ନିଜେ ହୋଇଯିବେ ବନ୍ଧନ ମୁକ୍ତ । ଗତ କେଇ ବର୍ଷର ଗୃହିଣୀର ଅଭିଜ୍ଞତା, ପୁଅାଟିର କ୍ଳିଷ୍ଟତା ତାଙ୍କ ସଉକ ଆମୋଦାଦିରେ ବହୁତ ବ୍ୟାଘାତ ସୃଷ୍ଟି କରିଛି ; ଏବେ ସେ ମୁକ୍ତ ହେବାକୁ ଚାହାନ୍ତି ଆକାଶର ବିହଙ୍ଗ ଭଳି । ଆବଶ୍ୟକ ହେଲେ ପୁଣି ସଙ୍ଗୀତ ଚର୍ଚ୍ଚା, କ୍ଲବ ଇତ୍ୟାଦି ।





Digitized by PPRACHIN, SOA

କୁଲିମାନଙ୍କ ଉପସ୍ଥାପିତ ଦାବୀପତ୍ର ଗୁଡ଼ିକୁ ଦେବକାନ୍ତ ନିରେଖି ଦେଖୁଥିଲା । ଦାବୀ, ଆବେଦନ ପତ୍ରଗୁଡ଼ିକ ଇଂରାଜୀ ଭାଷାରେ ଲିଖିତ । ଠାଏ ଠାଏ ବଙ୍ଗଳା ଲିପି ବ୍ୟବହୃତ ହୋଇଥିଲେ ନିକଟସ୍ଥ କୌଣସି ସାକ୍ଷର ବ୍ୟକ୍ତିକୁ ପଚାରି ବୁଝି ନେଉଥିଲା ତାର ଅର୍ଥ । ବଙ୍ଗଳା ଭାଷାର ବର୍ଣ୍ଣଲିପି ମଧ୍ୟ ଦିନ କେଇଟାରେ ଚିହ୍ନି ଗଲାଣି । ବୁଝିବାରେ ଆଦୌ ଅସୁବିଧା ହେଉ ନଥିଲା ତା'ର । ବଙ୍ଗଳା କହିବାରେ ମଧ୍ୟ ଉନ୍ନତି କରିଗଲା ଦିନ କେଇଟାରେ । ଏମିତି ଏଠି କୁଲି ମହଲରେ ଗୋଟିଏ ସପ୍ତାହ କଟି ଗଲାଣି । କୁଲିମାନଙ୍କ ସଂସ୍ପର୍ଶରେ ଆସି ସେମାନଙ୍କ ସମସ୍ୟା, ଦୈନନ୍ଦିନ ଜୀବନର କରୁଣ କାହାଣୀ, ଦୁଃଖଦ ଘଟଣା ସବୁ ତରୁଣ ଦେବକାନ୍ତ ମନରେ କମ୍ ପ୍ରଭାବ ବିସ୍ତାର କରି ନଥିଲା । ତା ପାଇଁ ପ୍ରତ୍ୟେକ କୁଲିର ଜୀବନଦଶା ଗୋଟିଏ ଉପନ୍ୟାସ– ଦୁଃଖ, ଦାରିଦ୍ର୍ୟ ଏବଂ ନିର୍ଯ୍ୟାତନାର କରୁଣ କାହାଣୀ ।

ଏମାନଙ୍କ ରୁଗ୍ଣ ସଙ୍ଘଟିଏ ଅଛି । କିନ୍ତୁ କୁଲି ଭାଇମାନଙ୍କ ଉନ୍ନତି ପାଇଁ ଚେଷ୍ଟା କରୁଛି କିଏ ? ସରକାରଙ୍କ ପାଖେ ଏମାନଙ୍କ ଦାବୀଗୁଡ଼ିକ ସମ୍ପୂର୍ଣ୍ଣ ନ୍ୟାୟସଙ୍ଗତ । ଦେଶର ସ୍ୱାଧୀନ ନାଗରିକ ଭାବେ ବଞ୍ଚି ରହିବାକୁ ହେଲେ ଏମାନଙ୍କ ପାଇଁ ସରକାରଙ୍କର କର୍ତ୍ତବ୍ୟ– ପେଟ ପାଇଁ ଦାନା, ଦେହ ପାଇଁ କନା, ମୁଣ୍ଡ ଗୁଞ୍ଜିବା ପାଇଁ ସ୍ଥାନ, ପିଲାମାନଙ୍କ ପାଇଁ ଶିକ୍ଷା ବ୍ୟବସ୍ଥା, ରୁଗ୍ଣ, ଅକର୍ମଣ୍ୟ, ବିକଳାଙ୍ଗମାନଙ୍କ ପାଇଁ ଆର୍ଥିକ ସହାୟତା, ବାର୍ଦ୍ଧକ୍ୟ ଭତ୍ତା ଇତ୍ୟାଦି ଦାବୀ ଗୁଡ଼ିକ ଅବାନ୍ତର ନୁହେଁ ; ବରଂ ସେଗୁଡ଼ିକ ଆଜିର ମଙ୍ଗଳାକାଂକ୍ଷୀ ସରକାରଙ୍କ ଆଭିମୁଖ୍ୟ । ସେମାନଙ୍କର କେବଳ ଆବଶ୍ୟକ ହେଉଥିଲା ସଙ୍ଘୀୟ ଉଦ୍ୟୋଗ ଏବଂ ତତ୍ପରତା ।



Digitized by PPRACHIN, SOA

ସଙ୍ଘଟି ନିଷ୍କ୍ରିୟ, ମୃତ ପ୍ରାୟ । ଅନେକ ଦିନ ହେଲା ପ୍ରାୟତଃ କେହି କର୍ମକର୍ତ୍ତା ନାହାନ୍ତି । କର୍ମକର୍ତ୍ତାର ତାତ୍ପର୍ଯ୍ୟ ସେମାନେ ବୁଝନ୍ତି ନାହିଁ । ମୁଠାଏ ଖାଦ୍ୟ ପାଇଁ ଯେଉଁଠି ପଶୁ ଭଳି ସଂଗ୍ରାମ କରିବାକୁ ପଡୁଛି, ସେଠି ସଙ୍ଘୀୟ ଚର୍ଚ୍ଚା କରିବା ଅର୍ଥ କାଈ ଆଗରେ ମୂଳା ଘେଞ୍ଚେଇବା ଭଳି, ଅନ୍ଧକୁ ଦର୍ପଣ ଦେଖାଇବା ଭଳି । ତେବେ ଶୀଘ୍ର କର୍ମକର୍ତ୍ତା ବାଛିବା ପାଇଁ ନିର୍ବାଚନଟିଏ କରାଇବା ଭଲ । ନିର୍ବାଚନର ଉପକାରିତା ଏବଂ ଆବଶ୍ୟକତା ନେଇ ଜଣାଶୁଣା କୁଲିମାନଙ୍କୁ ବୁଝେଇଲା ଏବଂ ସଂକ୍ଷିପ୍ତ ବକ୍ତୃତାଟିଏ ଦେଇଥିଲା ମଧ୍ୟ ।

ସଙ୍ଘର ପଇସାଟିଏ ନଥିଲା । ପ୍ରଥମ କାମ ହେଲା ଅର୍ଥ ସଂଗ୍ରହ । ମାସିକ ସଭ୍ୟ ଚାନ୍ଦା ମାତ୍ର ଦୁଇ ଟଙ୍କା । ତାହା ମଧ୍ୟ ବର୍ଷ ବର୍ଷ ଧରି ଅନାଦାୟ ହୋଇ ରହିଛି । ଅନେକ କୁଲିଙ୍କର ଠିକଣା ମଧ୍ୟ ନାହିଁ । କେତେକ ନୂତନ ସଭ୍ୟ ଆସିଛନ୍ତି, ଆଉ କେତେ ବାଦ୍ ଗଲେଣି, ମରି ହଜି ଗଲେଣି, ତା'ର କୌଣସି ହିସାବ ନାହିଁ । ସବୁ କୁଲିଙ୍କଠୁ ବକେୟା ଚାନ୍ଦା ଆଦାୟ କରିବା କଷ୍ଟକର । ଦୁଇ ଟଙ୍କାର ମୂଲ୍ୟ ଏମାନଙ୍କ ପାଖେ ଖୁବ୍ ବେଶୀ, ଦେହର ଟୋପାଏ ରକ୍ତ ସଙ୍ଗେ ସମାନ । ସଙ୍ଘର ଅସୁବିଧା ଗୁଡ଼ିକ ଏକତ୍ର ଠୁଳ କଲା ଦେବକାନ୍ତ । ସେ ଗୁଡ଼ିକୁ ସମାଧାନ କରିବା ପାଇଁ ପଦକ୍ଷେପ ପ୍ରସ୍ତୁତ କଲା, ଚିଠା ତିଆରି କଲା । ସଙ୍ଘର, ସଭ୍ୟ-ମାନଙ୍କର ମଙ୍ଗଳ ପାଇଁ ଦାବୀ ତାଲିକାରେ ଆଉ କେତୋଟି ଦାବୀ ଯୋଡ଼ିଲା ।

ଅନୁଷ୍ଠାନର କର୍ମକର୍ତ୍ତା ନିର୍ବାଚନ ପ୍ରଥମ କାମ । ସଙ୍ଘର କିଏ ସଭାପତି, କିଏ ସମ୍ପାଦକ ହେବେ ? ସେଥିପାଇଁ ସଭାଟିଏ ଆହୂତ କଲା । କେତେ ଆସିଲେ, ଅନେକ ଅନୁପସ୍ଥିତ ରହିଲେ । ଉପସ୍ଥିତ ବାଲା ଜାଣିଲେ, ଭଲ କଥାଟିଏ ହେଉଛି । ଆଜି ଯାଏଁ କେହି ଏମିତି ଚର୍ଚ୍ଚା କରି ନଥିଲେ । ପାଠୁଆ ପିଲାଟିଏ ସଙ୍ଘର ସମ୍ପାଦକ ହେବା ଉଚିତ, ଦାୟିତ୍ୱ ମୁଣ୍ଡେଇବା ଉଚିତ୍ । କୋଉ କାଳର ପୁରୁଣା ସମ୍ପାଦକ ଜଣେ



Digitized by PPRACHIN, SOA

ଅଛନ୍ତି । ସଭାପତି ମଧ୍ୟ ଅଛନ୍ତି । ସେମାନେ ଏବେ ଜୀବିତ କି ମୃତ ତାର ତଥ୍ୟ କେହି ଦେଇ ପାରିବେନି । ଦିନେ ହେଲେ ସଂଘ ଅଫିସକୁ କେହି ଆସନ୍ତି ନାହିଁ, ସଭା ସମିତି ଡ଼ାକନ୍ତି ନାହିଁ । ସାମ୍ପ୍ରତିକ ନିର୍ବାଚନ ବେଳେ ଭୋଟ ପାଇଁ ସମ୍ପାଦକ ଓ ସଭାପତି ଚିନ୍ତା କେଇ ଜଣ ନେତାଙ୍କ ଦର୍ଶନ ମିଳି ଥାଏ । ଭୋଟ କାମ ସରିଲା ପରେ ସେମାନେ ଅନ୍ତର୍ଦ୍ଧାନ ହୁଅନ୍ତି ।

ସଭା ମଝିରୁ ଉଠି କୁଲି ସର୍ଦ୍ଦାର କହିଲା– ଆମେ ମୂର୍ଖ ଲୋକ । ଏତେ ଧନ୍ଦା, ସଭା ସମିତି ଭୋଟ ଆଦିରୁ ଆମକୁ କ'ଣ ମିଳିବ ? ତମେ ଆମର ସଭାପତି ହୁଅ, ସମ୍ପାଦକ ହୁଅ ।

ଅନ୍ୟମାନେ ସର୍ଦ୍ଦାର କଥାକୁ ସମର୍ଥନ କଲେ । ଦେବକାନ୍ତ କହିଲା– ଏହା କିପରି ହେବ ? ଜଣେ ବ୍ୟକ୍ତି ଉଭୟ ପଦରେ ରହି ପାରିବ ନାହିଁ । ଆଇନ୍ ଅନୁଯାୟୀ କୌଣସି ପଦ ପାଇଁ ନିର୍ବାଚନ ଆବଶ୍ୟକ । କର୍ମକର୍ତ୍ତା ନିର୍ବାଚନ କେବଳ ମୁହଁରେ କହିଲେ ହେବନି । ନିର୍ବାଚନ ଦ୍ୱାରା ବିଧିବଦ୍ଧ ଭବରେ ଲିପିବଦ୍ଧ କରିବାକୁ ହୁଏ । ପ୍ରତି ତିନି ବର୍ଷରେ ଥରେ କର୍ମକର୍ତ୍ତା ବଛା ହେବା କଥା । ଦେଖୁଛି, ପ୍ରାୟ ଆଠବର୍ଷ ହେବ କୌଣସି କର୍ମକର୍ତ୍ତା ବଛା ଯାଇ ନାହାନ୍ତି ।

: ତେବେ ସେଇଆ ହେଉ । ଭୋଟ କର । ଆମେ ଭୋଟ ଦେବୁ । ସମସ୍ତଙ୍କର ପୂର୍ଣ୍ଣ ସମର୍ଥନ ।

ଘଟଣାଟି ପୂର୍ବତନ ସମ୍ପାଦକ ସୁମନ ସେନଙ୍କ କାନରେ ପଡ଼ିଲା । ସେ ସଂଘର ଏକ ପ୍ରକାର ସ୍ଥାୟୀ କର୍ମକର୍ତ୍ତା ବୋଲି ଭାବି ନେଇଥିଲେ । ଭୋଟ କଥା ଶୁଣି ଉତ୍‌କ୍ଷିପ୍ତ ହୋଇ ଉଠିଲେ । ଅଚିହ୍ନା ଯୁବକଟିର ଏଡ଼େ ହିମ୍ମତ ? ତହିଁ ଆର ଦିନ ସନ୍ଧ୍ୟାରେ ସୁମନ ମହାଶୟ କେତେ ଜଣ ଗୁଣ୍ଡା ସମର୍ଥକଙ୍କୁ ଧରି ସଂଘ ଅଫିସରେ ଉପସ୍ଥିତ ହେଲେ । ଦେବକାନ୍ତ ଅଫିସ କାଗଜପତ୍ର ଗୁଡ଼ିକୁ ପଢ଼ି ସଜାଡ଼ି ରଖୁଥିଲା ।



Digitized by PPRACHIN, SOA

ଏଇ କେତେଦିନ ହେଲା ଅଫିସର ଢଙ୍ଗ ରଙ୍ଗ ବଦଳିଛି । ପରିଷ୍କାର ପରିଚ୍ଛନ୍ନ ଦିଶୁଛି । କାହାର ଏ ସବୁ କାରସାଦି ? ସୁମନ ସେନ ଗର୍ଜିଉଠିଲା ।

ଅନାହୂତ ଲୋକଗୁଡ଼ିକୁ ଦେଖି ଦେବକାନ୍ତ ତଟସ୍ଥ ହୋଇଗଲା । ସେମାନେ ତାକୁ ଅଗ୍ନନକ ଭାବେ ଘେରା କଲେଣି । କିଏ ବେ ତୁ ? ଏଠି ସୁମନ ଦାଦା ଥାଉ ଥାଉ ତତେ ପୁଣି ଏ ଅଫିସ ଭିତରେ ପ୍ରବେଶ କରିବାକୁ କିଏ ଅନୁମତି ଦେଲା ?

ଦୁଇଜଣ ଗୁଣ୍ଡା ଶ୍ରେଣୀୟ ଲୋକ ଦେବକାନ୍ତ ଉପରକୁ ଚିହିଁକି ଆସୁଥିଲେ । ସୁମନ ସେମାନଙ୍କୁ ଆକଟି ଦେଲେ । ସେଇ ଆକଟିବାରେ ଅବଶ୍ୟ ଥିଲା ଦେବକାନ୍ତ ପ୍ରତି ଧମକ । ସୁମନ କହିଲେ, ଏଠୁଁ ଶୀଘ୍ର ଯାଉଛୁ ନା ପୁଣି ଦେଖିବୁ ? ଯୁବକର ନବାବ ପଣିଆତ କିଛି କମ ନୁହେଁ ?

ଜଡ଼ ପିଣ୍ଡଟିଏ ଭଳି ଦେବକାନ୍ତ ଠିଆ ହୋଇ ରହିଲା । ଏମିତି ତୁହାକୁ ତୁହା ଅଗ୍ନନକ ଆକ୍ରମଣ ତା'ର ଚିନ୍ତାଧାରା, କାର୍ଯ୍ୟଧାରାକୁ ଉଣ୍ଟୁର କରୁଥିଲା ।

ରହସ୍ୟ ବୁଝିବାକୁ ଶିକ୍ଷିତ ଦେବକାନ୍ତକୁ ଡେ଼ରି ଲାଗି ନଥିଲା । କୁଲି ସଙ୍ଘରେ ତା'ର ପ୍ରବେଶ ସୁବିଧାବାଦୀଙ୍କ ଫାଇଦାରେ ବାଧା ଆଣିଛି । ସେ କୁଲି ଶ୍ରମିକମାନଙ୍କ ମଙ୍ଗଳପାଇଁ କିଛିଟା କରିବାକୁ ଯାଉଥିଲା । ତା' ଉଦ୍ୟମରେ କୌଣସି ସ୍ୱାର୍ଥ ବା ଉଦ୍ଦେଶ୍ୟ ନଥିଲା । କେବଳ ତାକୁ ମିଳୁଥିଲା ମୁଠିଏ ଅନ୍ନ । ତା'ର ଅସଲ ଲକ୍ଷ୍ୟଥିଲା ଶ୍ରାବଣୀକୁ ଠାବ କରିବା, ତାକୁ ସାଙ୍ଗରେ ଧରି ଗାଁକୁ ଫେରିବା । ମନସ୍ଥ ସ୍ୱକିଭୀର ନିଶା ଛାଡ଼ିଛି, ଏଠି ସହରୀ ପରିବେଶ ଦୁର୍ବିସହ । ଆଉ ନୁହେଁ । ଅତିବିନୟ ହୋଇ କହିଲା– ମୋର କିଛି ଭୁଲ ନାହିଁ ଆଜ୍ଞା, ସଙ୍ଘର ଉନ୍ନତି ପାଇଁ, କୁଲି ସମ୍ପ୍ରଦାୟର ଉନ୍ନତି ପାଇଁ ମୁଁ କେବଳ ଆଇନ ଅନୁସାରେ, ସଙ୍ଘର ନିୟମଧାରା ଅନୁଯାୟୀ କାର୍ଯ୍ୟ କରୁଥିଲି ।



Digitized by PPRACHIN, SOA

: ଯାବେ ଯାଃ, ତୋ ବେହେଲ ପଣ ରଖୁଥା । କୋଉଠି ଥିଲୁ ଏଠାକୁ ନେତା ବନିବାକୁ ଦୌଡ଼ି ଆସିଲୁ । ଆବେ ମରିବାକୁ ଆଉ ଯାଗା ପାଇଲୁ ନାହିଁ ? ସୁମନ ଦାଦା ସଙ୍ଗେ ଲଢ଼ିବାକୁ ଆସିଛୁ ? ଆଉ ବେଶୀ ଆଇନ କଥା ଶୁଣେଇଲେ ଏ ଦୁଆର ବନ୍ଧ ଟପିଯାଇ ପାରିବୁନି, ହଁ ।

ଉଚ୍ୟକ୍ତ ଗୁଣ୍ଡା କେଇଟା ପଚଣ୍ଡ ଧମକ ମାଧ୍ୟମରେ ଦେବକାନ୍ତଙ୍କୁ ଭୟଭୀତ କରିବାକୁ ଚେଷ୍ଟା କରୁଥିଲେ ।

ପାଟିତୁଣ୍ଡ ଶୁଣି କେତେ ଜଣ କର୍ମରତ କୁଲି ଅଫିସ ଭିତରକୁ ଧାଇଁ ଆସିଲେ । ଆରେ, ଏତ ଆମ ବାବୁଟି ଉପରେ ଚଢଉ ! ତାଙ୍କୁ ମାରିବେ ନାଁ କ'ଣ ? ଡେ଼ରି ନକରି ଦଉଡ଼ି ଗଲେ କୁଲି ସର୍ଦ୍ଦାର ବିକଳି ଦାଦା ପାଖକୁ ।

ବିକଳି ଦାଦା ଅବିଳମ୍ବେ ଉପସ୍ଥିତ ହେଲ । ତା ଘାଗଡ଼ା ଗଳାରେ ଚିତ୍କାର କରି ଉଠିଲ,– ହାଁ, ହାଁ, କ'ଣ କରୁଛ, କ'ଣ କରୁଛ ? ଏ ବାବୁଟିର କିଛି ଦୋଷ ନାହିଁ । ଆମେ ସବୁ ତାଙ୍କୁ ଏ କାମ କରିବାକୁ ଡ଼ାକି ଆଣିଥିଲୁ । ସେ କ'ଣ ଖରପ କାମ କରୁଛି ଯେ ?

ସୁମନ ସେନ ପ୍ରବଚନ ଶୁଣେଇଲେ । ପଛ କଥା ଭୁଲି ଗଲୁଣିକି ବିକଳି ? ତମେ ବନ୍ଧା ହୋଇ ଯାଇଥିଲ । ମୁଁ ତୁମକୁ ଜାମିନିରେ ଆଣି ମୁକୁଳେଇ ଥିଲି ... ।

ବିକଳି ମୁହଁ ତଳକୁ କରି ନୀରବ ରହିଲ । ଅନେକ ବର୍ଷ ତଳର କଥା । ସାଇ ମାଡ଼ପିଟ୍ କଳିଆ କଥା । ଦୁଇ ଦଳ ମଧ୍ୟରେ ଘୋର ଗଣ୍ଡଗୋଳ ଲଗି ଥାଏ । କାଳୀ ମେଢର ସ୍ଥାନ ନିରୂପଣ ପାଇଁ ବିବାଦର ସୂତ୍ରପାତ ହୋଇଥିଲ । ତା ପରେ ଦଳ ମଧ୍ୟରେ ରକ୍ତାକ୍ତ ସଙ୍ଘର୍ଷ ହୋଇଥିଲ । ପୁଲିସ ଅନେକଙ୍କୁ ବାନ୍ଧି ନେଇ ଥିଲେ । ସୁମନ ସେନ ମକଦମା ଲଢି ବିକଳି ଏବଂ ତାର ସମର୍ଥକମାନଙ୍କୁ କଏଦୀଖାନାରୁ



Digitized by PPRACHIN, SOA

ଖରଚ କରିଥିଲେ । ସେଇ କାରଣରୁ ସୁମନ ସେନଙ୍କ ପ୍ରତି ବିକଳି କୃତଜ୍ଞ । ସାହାଯ୍ୟର ପ୍ରତିଦାନ ସ୍ୱରୂପ ନିର୍ବାଚନ ସମୟରେ ବିକଳି ସୁମନ ବାବୁଙ୍କୁ ଅନ୍ଧ ଭବେ ସାହାଯ୍ୟ କରିଥାଏ । ଭୋଟର ମୂଲ୍ୟ, ମାନ, ଅର୍ଥ କିଛି ସେ ବୁଝେନା । ବୁଝିବାର ଆବଶ୍ୟକତା ପଡି ନ ଥାଏ ।

ସୁମନ ସେନଙ୍କ କ୍ଷୋଭବାଣୀ— ଏଠି ସବୁ କି ତାମସା ଲଗିଛି ତମମାନଙ୍କର ? ମନ ଇଚ୍ଛା ନ ବୁଝି ନ ଜାଣି ଯାଇଛାତା କରୁଛ ! ହଇରେ, ପଚଗ ନାହିଁ, ଉଚଗ ନାହିଁ, ତମେ ସବୁ ଇଲେକ୍‌ସନ୍ ପର୍ଯ୍ୟନ୍ତ ଗଲଣି ! ସୁମନ ସେନ କ'ଣ ମଲଣି କି ?

ଦେବକାନ୍ତ ବୁଝିଲ, ଏଇ ସୁମନ ନାମଧାରୀ ବ୍ୟକ୍ତି ଜଣକ ସଂଘର ସଭପତି, ବୋଧହୁଏ ଆଜୀବନ କର୍ମକର୍ତ୍ତା । ପ୍ରତିରୋଧ କରିବାକୁ କାହାର ସାହସ ନାହିଁ । ବିକଳି ଦାଦାଙ୍କୁ କୁଲିମାନେ ମାନନ୍ତି, ହେଲେ ସେ ମୂର୍ଖ ଲୋକ, ହୁଣ୍ଡାଛିଆ । ସଂଘର ନିୟମାବଳୀ ଗୋଟେ ଅଛି, କାର୍ଯ୍ୟକଳାପ ଅନ୍ୟ ଦିଗରେ । ଏ ଗଣ୍ଡଗୋଳ ଭିତରେ ସେ ଆଉ ପଶିବା ଉଚିତ ନୁହେଁ । ବରଂ ମହତକୁ ଜଗି ଏଠୁ ଖସିବା ଭଲ ।

ଚୁପ୍ କରି ସେ ବାହାରକୁ ଚାଲି ଆସିଲ । ତାକୁ ଅନୁଧାବନ କରିଥିଲ ବିକଳି ଦାଦା । ମନଟା ଭଲ ନଥିଲ । ଏମିତି ଗୋଟାଏ ଗୋଳମାଳିଆ ପରିସ୍ଥିତି ଉପୁଜିବ ବୋଲି ଭବି ନଥିଲ ସେ । ସମ୍ବେଦନଶୀଳ ହୋଇ କହିଲ— ଦେଖ, ତମରତ ଅସୁବିଧା ହେଲ । ଏଠି ଆଉ କୋଉଠି ରହିବ ? କିଛି ଯଦି ନ ଭବ, ଆସ ଆମ ଘରେ ରହିବ । ଭଗବାନ ତମକୁ ପାଠ ଦେଇଛନ୍ତି, ବୁଦ୍ଧି ଦେଇଛନ୍ତି, ତମ ପେଟ ଅପୋଷା ରହିବନି । ତମେ ଆଉ ନିଉଛଣା କୁଲି କାମ କରିବନି । କ'ଣ ଆଉ ଭବୁଚ ବାବୁ ?

ଦେବକାନ୍ତ ମୁହଁରେ ଫୁଟି ଉଠିଥିଲ ସରୁ ହସଟିଏ । କୁଲି ସର୍ଦ୍ଦାରର ସ୍ନେହପୂର୍ଣ୍ଣ ଅନୁରୋଧକୁ ଅଗ୍ରାହ୍ୟ କରି ପାରି ନଥିଲ । ସେ ସ୍ୱୀକାର କରିଥିଲ, ବିକଳି ଦାଦା ଗରିବ ହେଲେ କ'ଣ ହେବ; ହୃଦୟବନ୍ତ ।





Digitized by PPRACHIN, SOA

ସୁବେଶିନୀ ଶାନ୍ତା କୁମାରୀ ଏଥର ନିଜ ରୂପର ଅଧିକ ଯତ୍ନ ନେଉଥିଲେ । ଅଫିସ ବାହାରିବା ପୂର୍ବରୁ ପ୍ରାୟ ଏକ ଘଣ୍ଟା କାଳ ସେ ପ୍ରସାଧନ କାର୍ଯ୍ୟରେ ଲିପ୍ତ । ଦେହକୁ ଖୁବ୍ ସଜେଇ, ବାଗେଇ ଜଣେ ଅବିବାହିତା ଯୁବତୀର ରୂପକୁ, ଢଙ୍ଗକୁ ଦେହରେ ଖଞ୍ଜି ସେ ଅଫିସ ଅଭିମୁଖୀ ହେଉଛନ୍ତି । ସର୍ବାଙ୍ଗରେ ସୁବାସିତ ଅତର, ଶାଢୀ, ବ୍ଲାଉଜରେ ଅତ୍ୟାଧୁନିକତାର ଛାପ, ରଂଗ ରୂପର ଅପୂର୍ବ ବିନ୍ୟାସ ସତେ ଯେମିତି ସେ ଜଣେ ବିଖ୍ୟାତ ଅଭିନେତ୍ରୀ । ତନୁ ପାତଳୀ, ଉଚ୍ଚ, ସୁବିସ୍ତୃତ ମୁଣ୍ଡବାଳ, କେତେବେଳେ ଛନ୍ଦାଛନ୍ଦି ବେଣୀ, ପୁଣି କେବେ ସାମ୍ନୁଧୁଆ ଉନ୍ମୁକ୍ତ କେଶଗଣି, ଗୋଟି ଗୋଟି ଗଣି ହେଇ ଭଳି ମଖମଲୀ ବାଳ, ପୁଣି କେତେବେଳେ ଗଭରେ ଡ଼ାଳିଆ ଖୋସା । ମୁହଁର ନାକ, ଆଖି, ଓଠ, ଗଣ୍ଡମଣ୍ଡଳ ମାପଚୁପରେ ଗଢିଲା ଭଳି । ତାଙ୍କ ଶୋଭଙ୍ଗନରେ ସମ୍ମୋହିତ ହୋଇ ପତ୍ନୀ ରୂପେ ପାଇବା ପାଇଁ ତରୁଣ ସୀତାଂଶୁ ଉତ୍ସାହିତ ହୋଇ ପଡ଼ିଥିଲେ ସେ ଦିନ ସନ୍ଧ୍ୟାର ସଙ୍ଗୀତ ଆସରରେ । ସହରର ଅନେକ ଯୁବକ ମଧ୍ୟ ତାଙ୍କୁ ବିବାହ କରିବାକୁ ବାୟା ହୋଇ ଉଠିଥିଲେ । ସୀତାଂଶୁଙ୍କ ବିଜୟ ସେମାନଙ୍କ ମୁହଁରେ କଳା ବୋଳି ଥିଲା ।

ଏବେ ସକାଳର ସମସ୍ତ ପ୍ରସ୍ତୁତିକୁ ନିର୍ଦ୍ଧାରିତ ସମୟରେ ଶେଷକରି ଶାନ୍ତା କୁମାରୀ ଛିଡ଼ା ହୁଅନ୍ତି ନିକଟସ୍ଥ ଛକ ପାଖରେ ଯେଉଁ ବାଟ ଦେଇ ବସ୍, ଟ୍ରାମ୍, ଟ୍ୟାକସି ଠିକ୍ ସମୟରେ ଯାତାୟାତ କରେ । ଖୋକନ୍ ମା'ଙ୍କୁ ହାତ ହଲେଇ ଟା' ଟା' କରି ବିଦାୟ ଦେବାକୁ ଶିକ୍ଷା ଦିଆଯାଇ ଥାଏ । ଶ୍ରାବଣୀ କେବେ କେବେ ଖୋକନ୍‌କୁ କାଖରେ ଜାକି ଛକ ପର୍ଯ୍ୟନ୍ତ ବାଟ କଢେଇ ଦେଇ ଆସେ । ସେଠି ବସ୍ ପାଇଁ ଅପେକ୍ଷା । ବସ୍ ଆସେ, ବସ୍ ନୁହେଁତ, ମଣିଷ ବୋଝେଇ ଗାଡ଼ି । ପୁରୁଷ



Digitized by PPRACHIN, SOA

ଲୋକମାନଙ୍କୁ ଠେସି ହୋଇ ସ୍ତ୍ରୀଲୋକମାନେ ବୋଝେଇ ଗାଡ଼ି ଭିତରକୁ ପଶନ୍ତି । ଅଫିସରୁ ଫେରିଲା ବେଳେ ଶାନ୍ତା କୁମାରୀ ଦିଶନ୍ତି ଦଳା ଚକଟା ଫୁଲଟିଏ ଭଳି । କେଉଁଥିପାଇଁ ଏମାନଙ୍କ ଅପେଗ ବେଶ, ଏତେ ଅଙ୍ଗସଜ୍ଜା ! ଆଶ୍ଚର୍ଯ୍ୟ ହୁଏ ଶ୍ରାବଣୀ । ସହରର ସଙ୍କୋଚହୀନ ନଗ୍ନ ନାରୀ ସଭ୍ୟତା ବ୍ୟାପିଛି । ଆଧୁନିକତାର ଦୁହାଇ ଦେଇ ନାରୀ ହେଉଛି ଏଠି ଧର୍ଷିତା ।

ଏ ଘରର ପନ୍ଦର ଦିନର ଅନୁଭୂତି ଭିତରେ ଶ୍ରାବଣୀ ଦେଖୁଛି ନୂଆ ଦୁନିଆଁର ନିତ୍ୟ ନୂତନ ଅଭିରୁଚି । ଅବଶ୍ୟ ଘରର ଦୈନନ୍ଦିନ କାର୍ଯ୍ୟଗୁଡ଼ିକ ଖୁବ୍ ଶୀଘ୍ର ଆବୋରି ପାରିଛି, ଆଶାତୀତ ଭାବେ ତୁଲାଇ ପାରିଛି । ଆଶ୍ରାଦାତା, ଦାତ୍ରୀଙ୍କର ପ୍ରିୟଭାଜନ ହୋଇ ପାରିଛି । ଖୋକନକୁ ନିଜର କରିଛି । ନିର୍ଜନ ମୁହୂର୍ତ୍ତରେ ଚାରି ସହିତ ଦିନ ବିତାଇଛି । ଖୋକନ୍ ତାକୁ ଖୁବ୍ ଆଉରେଇ ଗଲାଣି । ତା'ର କାକାମା ଡ଼ାକ ପୋଡ଼ାଜଳା ମନରେ ଜଳ ସଞ୍ଚାର କରୁଛି । ସ୍ୱାମୀ ସମ୍ବାଦ ଶୁଣିବାକୁ ମନ ବିକଳ ହେଲାଣି । କିନ୍ତୁ ବାବୁ ବାବୁଆଣୀଙ୍କଠୁଁ କୌଣସି ସୂଚନା ଶୁଣିନି ଏ ପର୍ଯ୍ୟନ୍ତ । ଦିନେ ସାହସ ସଂଗ୍ରହ କରି ଶ୍ରାବଣୀ ପଚାରିଲା– ତାଙ୍କର କିଛି ସନ୍ଧାନ ମିଳିଲା ?

ମୁହଁରେ ସାମାନ୍ୟ ବିରକ୍ତିର ଚିହ୍ନ ଫୁଟାଇ ଶାନ୍ତା କୁମାରୀ କହିଥିଲେ– ଏତ ହାଟ ବଜାରରେ ମିଳୁଥିବା ଜିନିଷ ନୁହେଁ– ସ୍ୱାମୀ ନିଖୋଜ ଘଟଣା, ବସ୍ତାଏ ଗହମ ଭିତରୁ ସୋରିଷଟିଏ ଖୋଜି ପାଇବା ଭଳି । ଧୈର୍ଯ୍ୟ ଦରକାର, ସମୟ ଦରକାର । ବ୍ୟସ୍ତ ହେଲେ ଚଳିବନି । ଆମେ ପୋଲିସରେ ଖବର ଦେଇଛୁ । ଯାହା କରିବା କଥା କରିଛୁ । ଭାଗ୍ୟ ଭଲ ଥିଲେ ମିଳିଯିବ । କାମ କର, ଅସୁବିଧା କ'ଣ ହେଉଛି ?

କେବଳ ଆଶାକୁ ଆଶ୍ରା କରି ବଞ୍ଚିବା କଥା । ଇଚ୍ଛା ହେଉଥିଲା ଠାକୁରଙ୍କ ଫଟଟିଏ ପୂଜା କରିବା ପାଇଁ । ଏ ଘରେ ଦେବ ଦେବୀଙ୍କର ପୂଜା ଉପାସନା ନାହିଁ । ଆଧୁନିକତାର ସ୍ରୋତ ଈଶ୍ୱର ଭାବନା ଧୋଇ



Digitized by PPRACHIN, SOA

ହୋଇ ଗଲଣି । ଏମାନେ ନାସ୍ତିକ ନା ଆସ୍ତିକ ? କି ହିନ୍ଦୁ ଘର ଏମାନଙ୍କର ? ? ଶ୍ରାବଣୀ ବିଚିତ୍ର ହେଉଥିଲା ମନେ ମନେ । କ୍ଷୁଣ୍ଣ ହେଉଥିଲା ମଧ୍ୟ । ଯେଉଁ ଘରେ ଠାକୁରଙ୍କ ଫଟଟିଏ ନାହିଁ, ସେ ଘର ମଶାଣି ସଦୃଶ ।

ଦିନେ ଶାନ୍ତା କୁମାରୀ ନୂଆ ଶାଢୀଟିଏ ଖରିଦ କରି ଆଣିଥିଲେ । ଶାଢୀକୁ ପିନ୍ଧିଲା ବେଳେ ଶ୍ରାବଣୀକୁ କୁଞ୍ଚ ଧରିବାକୁ ପଡ଼ିଥାଏ । ନୂଆ ଶାଢୀରେ ଲାଗି ଥିଲା କାଗଜର ଛାପଟିଏ – ବାଳକୃଷ୍ଣଙ୍କ ଚିତ୍ର । ଫର୍‌କିନା କାଗଜଟିକୁ ଶାଢୀରୁ ବିଛିନ୍ନ କରିଦେଲେ ଶାନ୍ତା କୁମାରୀ । ପ୍ରଫୁଲ୍ଲ ଚିତ୍ତରେ ଗୋଟେଇ ନେଲା ଚିତ୍ରଟିକୁ– ଶ୍ୟାମଳ ବର୍ଣ୍ଣ ଗୁରୁଣ୍ଡି ଗୋପାଳ । ମୁଣ୍ଡରେ ମୟୂର ଚନ୍ଦ୍ରିକା, ମୁଖମଣ୍ଡଳରେ ଅପୂର୍ବ ଦୀପ୍ତି । କାହାର ନଜର ନ ପଡ଼ିଲା ଭଳି ଫଟଟିକୁ ଚାପି ଧରିଲା ଛାତି ଭିତରେ । ଈଶ୍ୱର ପ୍ରେମରେ ଶ୍ରାବଣୀ ହୋଇ ଯାଇଥିଲା ତଲ୍ଲୀନ । ଅଭିମାନର କୋହ ଉଠି ଆସୁଥିଲା । ଆଖିର ମହଳୁଦ ଲୁହ ଉଛୁଳି ଉଠିଲା ; ଗୋଲ ଗାଲ, ବକ୍ଷଦେଶ ଲୋତକ ପ୍ଲାବିତ ହେଲା । ଭଗବାନ ଯଦି ନଥାନ୍ତେ ସେ ସେଦିନ ଗୁଣ୍ଡା ହାବୁଡ଼ରୁ ମୁକୁଳି ନଥାନ୍ତା ।

ସ୍ତନଯୁଗଳ ସନ୍ଧିରେ ବାଳକୃଷ୍ଣ ଚିତ୍ରଟିକୁ ଆଦରରେ ସାଇତି ରଖିଲା ।

ପାଖରେ ଖେଳୁଥିଲା ଖୋକନ୍ । ଶିଶୁଟି ସୁନ୍ଦର ହୋଇଛି । ଖୁବ୍ ଖୁସି ଲାଗୁଥିଲା । ଖୋକନକୁ ଛାତିରେ ଚାପିଧରି ତା' କଅଁଳ ଗାଲରେ ଚୁମା ଦେଲା । ସର୍ବାଙ୍ଗରେ ଶିହରଣ ଅନୁଭବ କଲା । ମନ ହେଲା ବେପଥୁ । ଶିଶୁତ ପ୍ରୀତିର ପ୍ରତୀକ, ସ୍ୱାମୀ ସ୍ନେହର ଚିହ୍ନ, ପତିପତ୍ନୀର ମମତା ଡୋର, ଉଭୟଙ୍କୁ ବାନ୍ଧି ରଖିବାର ରଜ୍ଜୁ । ଏମିତି ଶିଶୁଟିଏ କୋଳରେ ନ ଥିଲେ ନାରୀତ୍ୱର ପୂର୍ଣ୍ଣତା ଆସେ ନାହିଁ । ବନ୍ଧ୍ୟା ନାରୀର ଜୀବନ ବଡ଼ ହୀନିମାନ ! ଶ୍ରାବଣୀ ହତାଶ ଅନୁଭବ କଲା । ସ୍ୱାମୀଙ୍କୁ କେବେ ଦେଖିବ ? ପୋଡ଼ା ପ୍ରାଣକୁ ସନ୍ତୁଷ୍ଟ କରିବ ? ମନୋବୀଣା କାନ୍ଦି ଉଠିଲା ।





Digitized by PPRACHIN, SOA

ବ୍ରିକଲି କୁଲିସର୍ଦ୍ଦାର ଘରେ ଦେବକାନ୍ତ ତିନିଦିନ ହେଲା ରହିଲାଣି । ଏତ ଘର ନୁହେଁ, ଗୋଟାଏ ପଶୁଶାଳା କହିଲେ ଭୁଲ ହେବ ନାହିଁ । ଗୋଟିଏ ବୋଲି ବଖରା, ବହୁ ପୁରୁଣା । ଇଟାଚୂନରେ କାନ୍ଥ ଯୋଡ଼େଇ ହୋଇଥିଲେ ମଧ୍ୟ ଚୂନ ପଲସ୍ତରା କାନ୍ଥରୁ ଝଡ଼ି ପଡ଼ିଲାଣି । ପୁରୁଣା ଚିହ୍ନ ସ୍ୱରୂପ ଠାଏ ଠାଏ ପଲସ୍ତରା ଲାଗିରହିଛି, ଦିଶୁଛି ଦେହର ଯାଦୁଭଳି । ଘରର ଚଟାଣ ମଧ୍ୟ ଚଦ୍ଦପ, ଖାଲ ଢିପ ଏବଂ ସନ୍ତସନ୍ତିଆ । ଭଙ୍ଗା ଦୁଆର ବ୍ୟତୀତ ଘରକୁ ଆଲୁଅ ଆସିବାର ବ୍ୟବସ୍ଥା ନାହିଁ । ଖଣ୍ଡିଆ ଚଟାଣ ଉପରେ ଉଚ୍ଛିଷ୍ଟ ଆମ୍ବଟାକୁଆରେ ମାଛିମାନଙ୍କର ହାଟ । କୋଠରୀଟି ମନେ ହେଉଥିଲା ଏହା ଯେମିତି ଗୋଟିଏ ମଶା ଉତ୍ପାଦନ କେନ୍ଦ୍ର । କୁଲି ସଂସାରର ସମସ୍ତ ସାମଗ୍ରୀ, ଛୋଟ ବଡ଼ ଦରକାରୀ, ଅଦରକାରୀ ପଦାର୍ଥରେ କୋଠରୀଟି ପରିପୂର୍ଣ୍ଣ । ଘରର ଜନସଂଖ୍ୟା ମଧ୍ୟ କିଛି କମ୍ ନୁହେଁ । ସର୍ଦ୍ଦାରର ବୁଢ଼ୀମା’, ସ୍ତ୍ରୀ, ଅବିଭାହିତା ଭଉଣୀ, ଦୁଇଝିଅ ଏବଂ ଦୁଇ ପୁଅ । ସେମାନଙ୍କ ଶୋଇବା ବ୍ୟବସ୍ଥା ମଧ୍ୟ ବିଚିତ୍ର, ରେଳ ଡ୍ରବାର ଥିଟାୟାର ବ୍ୟବସ୍ଥା ସର୍ଦ୍ଦାର ଏଠି ଲାଗୁ କରିଛି । ତିନୋଟି ଢେଙ୍ଗା ଢେଙ୍ଗା କାଠ ଖଟ ଉପରକୁ ଉପର ଥାକଭଳି ସର୍ଜ୍ଜିତ । ପରିବାରର ମଣିଷମାନେ ଥାକଗୁଡ଼ିକୁ ଶୋଇବା ପାଇଁ ବ୍ୟବହାର କରନ୍ତି । ସର୍ଦ୍ଦାର ଶୁଏ ପ୍ଲାଟଫର୍ମରେ । ଦାରିଦ୍ର୍ୟର ବିଶ୍ୱରୂପ ମୁଣ୍ଡ ଟେକିଛି ଏଠି । ସହରର ଆଭ୍ୟନ୍ତର ରୂପ କେତେ ଯେ ହା ହୁତାଶମୟ ଦେବକାନ୍ତ କଳ୍ପନା କରି ପାରୁ ନଥିଲା ।

ଏଠି ବସ୍ତି ବିବାଦ, ଗୋଷ୍ଠୀ କନ୍ଦଳ, ସାଇ କଳିଆ ଅହରହ ଲାଗି ରହିଛି । ସାମାନ୍ୟ କଥାକୁ କେନ୍ଦ୍ରକରି ତେଜି ଉଠେ ମାରପିଟ, ମୁଣ୍ଡଫଟାଫଟି; ଛୁରି ଭୁସାଭୁସି । ପୂଜାଗ୍ରନ୍ଥା, ମେଲଣ, ପର୍ବପର୍ବାଣୀ ଏବଂ ସର୍ବୋପରି ରାଜନୈତିକ ଭୋଟ କାରବାରରେ ଲାଗିଥାଏ ଝଗଡ଼ା,



Digitized by PPRACHIN, SOA

ବାଦାନୁବାଦ, ଲଢେଇ ଏବଂ ପରିଶେଷରେ ନୃଶଂସ ହତ୍ୟାକାଣ୍ଡ । ସେଦିନ ବସ୍ତି ବିବାଦର ଦୃଶ୍ୟଟିଏ ଦେବକାନ୍ତ ସ୍ୱଚକ୍ଷୁରେ ଦେଖି ବ୍ୟସ୍ତ ହୋଇ ପଡ଼ିଥିଲା, ନିଜକୁ ଅଣନିଃଶ୍ୱାସୀ ମଣିଥିଲା । କେଉଁଥିପାଇଁ ମଣିଷ ମଣିଷ ଭିତରେ ଏତେ ବିବାଦ, ଦ୍ୱେଷ ଏବଂ ଶତ୍ରୁତା ? ଦେବକାନ୍ତ ମନ ବିଶେଇ ଉଠୁଥିଲା । ନିସ୍ତାର ନାହିଁ ।

ଏଠି ତିନିଦିନ ବିତିଗଲାଣି । ସର୍ଦ୍ଦାରର ଆତିଥ୍ୟ ଗ୍ରହଣ କରିଛି ବୋଝ ଉପରେ ନଳିତା ବିଡ଼ା ସଦୃଶ । ନିଜକୁ ନ୍ୟୂନ ମନେ କରୁଥିଲା । ଦେହରେ ତାଜା ରକ୍ତ ଥାଇ, ଅମାପ ବଳଥାଇ ସେ ଆଜି ଅପାଙ୍‌କ୍ତେୟ, ଅପାରଗ ? ଏମିତି ଅକର୍ମଣ୍ୟ ହୋଇ ପର ଉପରେ ତିଷ୍ଠିବା ବିବେକହୀନତା । ମନ ଭିତରେ ପ୍ରସ୍ତାବଟିଏ ଚେଇଁଲା । ସହରସାରା ବ୍ୟାପିଛି ଜୀବିକା ନିର୍ବାହର ବହୁମୁଖୀ ସ୍ରୋତ । ବିକଳି ଦାଦାକୁ ଡାକି କହିଲା– ସର୍ଦ୍ଦାର ଭଇ, ରେଳ ଭିତରେ ଅନେକ ଲୋକ ଯାବତୀୟ ଚୁରା ଜିନିଷ ବେଗ୍‌ରେ ଧରି ବିକ୍ରି କରୁଛନ୍ତି, ପଇସା ଭିଆଉଛନ୍ତି, ମୁଁ କରି ପାରନ୍ତି ନାହିଁ ?

ବସିବାଠାରୁ କାଣିବା ଭଲ । ପ୍ରସ୍ତାବଟି ବିଶେଷ ଖରାପ ନୁହେଁ । ଜଣେ ଶିକ୍ଷିତ ଯୁବକ ପାଇଁ କୁଲିଗିରିର ଅମର୍ଯ୍ୟଦା ଏଥିରେ ନାହିଁ । କୁଲିର ନିଉଛଣା କାମ ଏଥିରେ ନାହିଁ । ବରଂ ପେଟ ପୋଷିବା ପାଇଁ ଏହା ଏକ ଉତ୍ତମ ଧନ୍ଦା । ଅନ୍ୟର କରୁଣାରେ ବଞ୍ଚିରହିବାର କ୍ଳିଷ୍ଟତା ଏଥିରେ ନାହିଁ। ଭୁଲେଇ ତୁଲେଇ କିଛି ଜିନିଷ ବିକି ପାରିଲେ ଅନାୟାସରେ ଦୁଇପଇସା ରୋଜି ପାରିବ । ପେଟ ପୋଷି ପାରିବା ବୁଲେଇ ବଙ୍କେଇ କହିଲା ଯିଏ ପଣ୍ୟ ଚିଙ୍ଗୁଡ଼ି ବିକିଲା ସିଏ । ଅବଶ୍ୟ ଖରିଦଦାରଙ୍କୁ ଠକିବାର ମତଲବ ତା'ର ନାହିଁ । ତେବେ ଅର୍ଥ ଆସିବ କାହୁଁ ? ଅନେକ ଆଗରୁ ସେତ ଏ କଥା ଚିନ୍ତାକରି ବିଫଳ ହୋଇଥିଲା । ବିକଳି କହିଲା–

: ଓଃ, ଭୁଲି ଯାଇଥିଲି ବାବୁ, ଆମ ବସ୍ତିର ଲୋକଟିଏ ଧୂପକାଠି ବ୍ୟବସାୟ କରୁଛି । ବେଶ୍ ଭଲରେ ଚଳୁଛି । ମୋତେ ସେ ଜାଣେ ।



Digitized by PPRACHIN, SOA

ତମ କଥା ମୁଁ ତାଙ୍କୁ କହିବି । ଜିନିଷ ଯଦି କିଛି ବାକୀ ସୂତ୍ରରେ ମିଳିଯାଏ, କିଛି ଭବିବାର ଆଉ ନାହିଁ । ତମେ କ'ଣ ଏ ବୁଲ ବିକ୍ରା କାମ କରିପାରିବ ? ବିଜଳିର ବଚନରେ କୁଣ୍ଠା ।

ଦେବକାନ୍ତ ହସି ହସି ହଁ ଭରିଥିଲ । ବୁଲି ବୁଲି ବିକିବା କାମ । ପେଟ ପୋଷ ନାହିଁ ଦୋଷ ।

ବିଜଳି ଦାଦାର କଥାନୁଯାୟୀ କାର୍ଯ୍ୟ ହେଲ । ବଡ଼ ବସ୍ତାନିଟିଏ, ସେଥିରେ ଅନେକ କିସମର ଧୂପକାଠି– ସାଇଗଲ, ସୁଗନ୍ଧିଗଳ, ଫ୍ଲାଓ୍ୱାର କିଙ୍ଗ, ଚ୍ୟାନ୍ସେଲର, ଗ୍ରମେଲୀ, ଚନ୍ଦନ ଚମ୍ପା– ଶସ୍ତାବାଲ, ଦାମିବାଲ, ଖ୍ଲୁବାଲ । ବଙ୍ଗୀୟ ଭଷାରେ ଦେବକାନ୍ତକୁ ପ୍ରସ୍ତୁତ ହେବାକୁ ପଡ଼ିଲ, ପୋଖତ ବିକାଳିର କଥନ ଭଙ୍ଗୀ ଶିକ୍ଷା କରିବାକୁ ପଡ଼ିଲ, ଅଭ୍ୟାସ କରିବାକୁ ହେଲ, ବିଜଳି ଦାଦା ଥିଏଟରର ସ୍ମାରକ ଭଳି ସାହାଯ୍ୟ କଲ– ନିଅନ୍ତୁ ଆଜ୍ଞା ସୁବାସିତ ଧୂପକାଠି, ମହକ ମହିମାରେ ଭରପୂର । ମନକୁ ମହକିତ କରେ, କାମକୁ ପୁଲକିତ୍ କରେ, ଦୁର୍ଗନ୍ଧ, ଦୂଷିତ ବାୟୁ ଦୂର କରେ ... ଖଣ୍ଡିଏ ଖରିଦ କରନ୍ତୁ, ଆପଣଙ୍କ କାର୍ଯ୍ୟ– ବଂଧୁ, ସିଦ୍ଧି ଦାତା ... ।

ଧୂପ, ଧୂପ, ଧୂପ, ଠାକୁର ପୂଜାର ଲକ୍ଷ୍ୟ ; ପଇସେ ଦିଅ ଲକ୍ଷେ ଭିଆଅ ... ଇତ୍ୟାଦି ।

ଦେବକାନ୍ତକୁ ପ୍ରଥମେ ଅଡୁଆ ଲଗିଲ, ଅରୁଚିକର ବୋଧହେଲ, କିନ୍ତୁ କ୍ରମେ ଧନ୍ଦାଟି ଆଗେଇ ଗଲ ଠିକ୍ ଯେମିତି ମଧୁଶଯ୍ୟାରେ ନବବଧୂ ପ୍ରଥମ ଗୋଲଟିକୁ ପ୍ରତିରୋଧ କରେ ଏବଂ ପରବର୍ତ୍ତୀ ଗୋଲ ଗୁଡ଼ିକୁ ଆନନ୍ଦରେ ଗ୍ରହଣ କରିଥାଏ । ବଙ୍ଗଳା ଭଷାରେ, ହିନ୍ଦୀରେ, ଓଡ଼ିଆରେ ଏବଂ ଆବଶ୍ୟକ ପଡ଼ିଲେ ଇଂରାଜୀରେ କେତୋଟି ମନଛୁଆଁ ବାକ୍ୟ ଯାତ୍ରୀମାନଙ୍କୁ, ଖରିଦଦାର ମାନଙ୍କୁ କହି ତୃପ୍ତ କରି ପାରୁଥିଲ ।

କାମଟି ଠିକ୍ ପୋଷେଇ ଗଲ ଦେବକାନ୍ତକୁ । ଦକ୍ଷିଣ ପୂର୍ବାଞ୍ଚଳ, ଉତ୍ତର ପୂର୍ବାଞ୍ଚଳ ରେଳ ପଥ ତାର ଥିଲ ପରିଭ୍ରମଣର ପଥ । ଖଡ଼ଗ୍ପୁର,



Digitized by PPRACHIN, SOA

ବାଗନାନ, କୋଲଘାଟ, ମେଚେଦା, ପାଞ୍ଚକୂଡ଼ା ଆଦି ଅଞ୍ଚଳ ଥିଲା ତାର ପରିସର ଭୂକ୍ତ । ହାବଡ଼ା ତା'ର କେନ୍ଦ୍ର ବିନ୍ଦୁ । ରେଳ ଯାତ୍ରୀଙ୍କୁ ଧୂପବତୀ ବିକ୍ରି କରି ରାତିରେ ହାବଡ଼ା ଫେରିବା ନିଶ୍ଚିତ କଥା । ସେଠି ଆସି ବିଶ୍ରାମ ନିଏ, ମହାଜନଙ୍କୁ ପଇସା ଦିଏ, ପୁଣି ଜିନିଷ ନିଏ । ଏମିତି ଘୁରୁଘୁରୁରେ ବିତିଥିଲା ପ୍ରାୟ ଏକପକ୍ଷ । ତା'ର ଅସଲ ଉଦ୍ଦେଶ୍ୟକୁ ମନରୁ କେବେ ଦୂର କରି ନଥିଲା, ସତର୍କ ନଜର ରଖୁଥିଲା ତା'ର ହଜିଲା ରତ୍ନମଣି ପ୍ରତି । ତାକୁ ଦଣ୍ଡେ ହେଲେ ପାଶୋରି ପାରୁ ନଥିଲା । ଦୂରରୁ ମୋଟି ଗାଉଁଲି ଝିଅଟିଏ ଦେଖିଲେ ଧାଇଁ ଯାଉଥିଲା ତା' କତିକି । ଶ୍ରାବଣୀ ନୁହେଁ ତ ! ଦୃଷ୍ଟି ତୃଟି ବୁଝି ପାରି ପୁଣି ଫେରି ଆସୁଥିଲା ତା ଧନ୍ଦା କ୍ଷେତ୍ରକୁ ।

ଗତକାଲି ଅଳ୍ପ ଦୂରରେ ଟ୍ରାମ୍ ଦୁର୍ଘଟଣାଟିଏ ଘଟିଥିଲା । କେତେ ଜଣ ସ୍ତ୍ରୀ ଲୋକ ମୃତାହତ ହୋଇଥିଲେ । ସେମାନଙ୍କୁ ଲୋକମାନେ ଘେରି ରହିଥିଲେ । ଦୁର୍ଘଟଣା ଶୁଣି ଦେବକାନ୍ତ ମନରେ ଶଙ୍କା ଲାଗିଲା । ଜନତା ଘେର ଭାଙ୍ଗି ମୃତ ମହିଳାମାନଙ୍କ ପାଖକୁ ଚାଲି ଯାଇଥିଲା । କ୍ଷତ ବିକ୍ଷତ ଶରୀର ଗୁଡ଼ିକ ଭୂଇଁରେ ପଡ଼ି ରହିଥିଲା । ଦୃଷ୍ଟିକୁ ତୀକ୍ଷଣ କରି ଭଲ ଭାବେ ଦେଖିଲା ଦେବକାନ୍ତ । ହୃଦବୋଧ ହେଲା, ତା' ଶ୍ରାବଣୀ ନୁହେଁ । ରକ୍ଷା । ସ୍ୱସ୍ତିରେ ନିଶ୍ୱାସ ମାରିଥିଲା । ବଢ଼ିଲା ନଈର ପ୍ରଖର ସ୍ରୋତରେ ଭାସି ଯାଉଥିବା ଅଦୃଶ୍ୟ କାଠି ଖଣ୍ଡଟିକୁ ଉଦ୍ଧାର କଲା ଭଳି ତାର ତଲାସୀ– ଉଦ୍ୟମ । ଏଇ କେଇଦିନ ତଲାସୀର ଅନୁଭୂତି ଅନେକ, ଲେଖିଲେ ଗ୍ରନ୍ଥଟିଏ ହେବ ପରା ! 



Digitized by PPRACHIN, SOA

ଛୁଟି ଦିବସ, ରବିବାର । ସୀତାଂଶୁ ତାଙ୍କ ଚିତ୍ରକଳା ସମ୍ବନ୍ଧରେ ସକାଳୁ ବାହାରକୁ ଚାଲି ଯାଇଥିଲେ । ସନ୍ଧ୍ୟାରେ ଫେରିବେ । ଶାନ୍ତା କୁମାରୀ ଆଳସ୍ୟରେ ସକାଳ କାଟୁଥିଲେ । ଛୁଟିଦିନ ମାନଙ୍କରେ ସେ ଏମିତି ଆଳସ୍ୟରେ ସମୟ କାଟନ୍ତି । ଅଫିସ୍‌ର ତାଗିଦା ନଥାଏ, ଗୃହରେ ତତ୍ପରତା ନଥାଏ । ସବୁକାମ ଡେରି ଡେରି, ମନ୍ଥର । ମଧ୍ୟାହ୍ନ ଭୋଜନ ମଧ୍ୟ ବିଳମ୍ବରେ ହୋଇଥିଲା ।

ଖାଇସାରି ଖଣ୍ଡିଏ ଚଳଚିତ୍ର ପତ୍ରିକାରେ ସେ ମନୋନିବେଶ କରିଥାନ୍ତି, ଅଳସ ଏବଂ ନିଃସଙ୍ଗ ଅପରାହ୍ନଟି କଟାଉଥାନ୍ତି । ମନେ ମନେ ମଧ୍ୟ ବିରକ୍ତ ହେଉଥାନ୍ତି ସ୍ୱାମୀଙ୍କ ଉପରେ । ସପ୍ତାହରେ ଗୋଟିଏ ଦିନ ଛୁଟି । ସେ ଦିନଟି ମଧ୍ୟ ସ୍ୱାମୀଙ୍କ ମେଳରେ କଟି ପାରୁନି । ଏଇ ଛୁଟି ଦିନରେ କଳାଚର୍ଚ୍ଚା ନ କଲେ ଚଳନ୍ତାନି ?

ଦ୍ୱାର ଦେଶରେ କାହାର ସ୍ପର୍ଶାଘାତରେ ଖଟ୍ ଖଟ୍ ଶବ୍ଦ ହେଲା ଏବଂ ପରେ ପରେ କଲିଂ ବେଲ୍‌ର ଘନ ଘନ ଘଣ୍ଟିଘର ବାଜି ଉଠିଲା । ଶାନ୍ତା ନିର୍ଦ୍ଦେଶ ଦେଲେ– ଦେଖ ଶ୍ରାବଣୀ, କିଏ ଡାକୁଛନ୍ତି ।

କିଏ ?

ଦି'ଜଣ ଲୋକ । କହୁଛନ୍ତି, ମା'ଙ୍କୁ ଶୀଘ୍ର ଡାକ । ଜରୁରୀ ଖବର ଦେବାକୁ ଅଛି ।

ଶାନ୍ତା କୁମାରୀ ତତ୍‌କ୍ଷଣାତ୍ ବିଛଣାରୁ ଉଠି ପଡ଼ି ବାହାରକୁ ଗଲେ । ଦୁଇ ଜଣ ଅଚିହ୍ନା ଲୋକ । ସେମାନେ ଏକାବେଳକେ କହି ଉଠିଲେ– ଖରାପ ଖବର ମାଡାମ୍ । ଚୌରଙ୍ଗୀ ଛକ ଉପରେ ସାର୍‌ଙ୍କର ଆକ୍‌ସିଡେଣ୍ଟ



Digitized by PPRACHIN, SOA

ହୋଇଯାଇଛି । ଆମେ ପ୍ରତ୍ୟକ୍ଷଦର୍ଶୀ । ଦୁର୍ଘଟଣା ଅବଶ୍ୟ ସେତେ ଗୁରୁତର ନୁହେଁ । ମୁଣ୍ଡରେ ଆଘାତ ଲାଗିଛି, ଅନେକ ରକ୍ତସ୍ରାବ ହୋଇଛି । ସେ ଅଚେତ ଅଛନ୍ତି । ଆମେ ଆମ୍ବୁଲାନ୍ସ ଡ଼ାକିଲୁ । ଏବେ ହସ୍‌ପିଟାଲରେ ଭର୍ତ୍ତି ହୋଇଛନ୍ତି । ଡାକ୍ତରମାନେ ଚିକିତ୍ସା ଆରମ୍ଭ କରି ଦେଇଛନ୍ତି । ବିଶେଷ ବ୍ୟସ୍ତ ହେବାର କାରଣ ନାହିଁ ।

ଶାନ୍ତା କୁମାରୀଙ୍କ ବୁଦ୍ଧି ହଜିଗଲା । ମୁହଁରୁ କଥା ବାହାରି ନଥିଲା, ପାଦ ଚଳି ନଥିଲା, ଦେହ ହଲି ନଥିଲା । ସ୍ୱାମୀର ଦୁର୍ଘଟଣା ସମ୍ବାଦ ଶୁଣି କିଏ ଧୈର୍ଯ୍ୟ ଧରିବ ? କେବଳ ଗୋଟିଏ ନିର୍ଜୀବ ଖୁଣ୍ଟଭଳି ଠିଆ ହୋଇ ରହି ଯାଇଥିଲେ କେତେ ମିନିଟ୍ ହେବ । ପୁଣି ଦମ୍ଭ ଠୋକି କ୍ଷୀଣ ସ୍ୱରରେ ପ୍ରଶ୍ନ କଲେ– ଆପଣ ତାଙ୍କୁ ଚିହ୍ନନ୍ତି ?

ନା,

ଜାଣିଲେ କିପରି ? ଘର ଠିକଣା କିଏ କହିଲା ?

ତାଙ୍କ ଡାଇରୀରୁ ।

ଶାନ୍ତା କୁମାରୀଙ୍କ ପାଇଁ ସନ୍ଦେହ କରିବାର ଅବକାଶ ନଥିଲା । ସୀତାଂଶୁ ବାହାରକୁ ଗଲେ ସର୍ବଦା ଆଟାଚିରେ ଡାଇରୀଟି ନେଇଥାନ୍ତି । ସେଥିରେ ଥାଏ ଅନେକ ଟିପା, ଟିପ୍‌ପଣୀ ।

ଚିନ୍ତା କରିବାର ବେଳ ନଥିଲା । ଚିତ୍କାର କରି ବ୍ୟଥାତୁର ସ୍ୱରରେ କହିଲେ– ବାବୁଙ୍କ ଆକ୍‌ସିଡେଣ୍ଟ !

ମା'ଙ୍କ ପାଟି ଶୁଣି ଶ୍ରାବଣୀ ଦାଣ୍ଡକୁ ଆସି ଦେଖେତ ସେ କାର୍‌ରେ ବସି ସାରିଲେଣି । ଘଟଣାଟି କ'ଣ ସେ ଭଲ ଭବେ ଜାଣିପାରି ନଥିଲା । କେବଳ ଶୁଣି ଥିଲା ଇଂରାଜୀ ଶବ୍ଦଟିଏ– ଆକ୍‌ସିଡ଼େଣ୍ଟ । ଏତେ ବଡ଼ ଦୁର୍ବୋଧ୍ୟ ଇଂରାଜୀ ଶବ୍ଦକୁ ମନେ ରଖିବା ସମ୍ଭବ ହୋଇ ନଥିଲା । ଭାବିଲା, ବାବୁଙ୍କଠୁ ଡାକରା ପାଇ ମା' ଜରୁରୀ କାମରେ ବାହାରକୁ ଯାଉଛନ୍ତି ।



Digitized by PPRACHIN, SOA

ଏମିତି ହଠାତ୍ ଜରୁରୀ କାମରେ ମା'ଙ୍କୁ ଯିବାକୁ ପଡ଼ିଥାଏ । ତାଙ୍କର ବହୁ ପୁରୁଷ ବନ୍ଧୁମାନେ ଆସି ଗପ କରନ୍ତି, ପୁଣି ବାହାରକୁ ବୁଲି ଯାନ୍ତି । ବାବୁ ସାଙ୍ଗରେ ଗଲେ ନ ଗଲେ ଯାଏ ଆସେ ନାହିଁ । କିଛି ନୂଆ କଥା ନୁହେଁ ।

ସନ୍ଧ୍ୟାରେ ସୀତାଂଶୁ ବସାକୁ ଫେରିଲେ ।

: ମା' କାହାନ୍ତି ?

ସ୍ୱାଭାବିକ ଗଳାରେ ଶ୍ରାବଣୀ କହିଲା– କିଏ ଦି'ଜଣ ମା'ଙ୍କୁ ଡ଼ାକି ଆସିଥିଲେ । ମା' ବ୍ୟସ୍ତ ହେଲାପରି ଜଣା ପଡୁଥିଲେ । ସେମାନଙ୍କ କାର୍‌ରେ ବସି ସେ ବାହାରକୁ ଗଲେ ।

: ଫେରିବେ କେତେବେଳେ ?

: କିଛି କହି ଯାଇ ନାହାନ୍ତି ।

: ସେ ଲୋକଙ୍କୁ ଚିହ୍ନିଛ ?

: ନା ।

: କେମିତି ଗାଡ଼ି ?

: କଳା ରଙ୍ଗର ।

ଅଫିସ କାମବି ହୋଇପାରେ । ଅବେଳରେ ମଧ୍ୟ ଅଫିସ ଯିବାକୁ ପଡ଼ିଥାଏ ଦିନେ ଦିନେ । ସୀତାଂଶୁଙ୍କ ମୁହଁରେ ଲୁଗ୍ନ ବିରକ୍ତିର ଚିହ୍ନ । ଖୋକନ୍‌କୁ ସାମାନ୍ୟ ଗେହ୍ଲ କଲେ । କିଛି ଜଳଖିଆ କରି ପୁଣି ବାହାରକୁ ଗଲେ । ସନ୍ଧ୍ୟା ବେଳ । କଥାଟା ଅଡୁଆ ଅଡୁଆ ଲାଗିଲା ସୀତାଂଶୁଙ୍କୁ । ଏମିତି ଅବେଳରେ ଶାନ୍ତାକୁ କାହିଁକି ଅଫିସରୁ ଡ଼ାକରା ଆସିଲା ? ତାଙ୍କ ଚାକିରୀ ପ୍ରତି କ୍ଷୋଭ ଜାତ ହେଉଥିଲା ସୀତାଂଶୁଙ୍କ ମନରେ । ଏବେତ ଆଉ ଅର୍ଥର ଅଭାବ ନାହିଁ । କହିଲେ ମଧ୍ୟ ଚାକିରୀ ଛାଡ଼ିବାକୁ ଶାନ୍ତା ନାରାଜ । ବଡ଼ ଜିଦ୍‌ଖୋରୀ, ଯାହା ଭାବନ୍ତି ସେଇଆ କରନ୍ତି ... ।



Digitized by PPRACHIN, SOA

ଗଡି ବଢିଛି । ସୀତାଂଶୁ ଦେଖନ୍ତି ଶାନ୍ତା ଏ ପର୍ଯ୍ୟନ୍ତ ଫେରି ନାହାନ୍ତି । କ'ଣ ହେଲା ତେବେ ? ଅଧୈର୍ଯ୍ୟ ହେଲେ । ମନ ହେଲା ଶଙ୍କାଗ୍ରସ୍ତ । ଘଟଣାଟି ଗୁରୁତର ନିଶ୍ଚୟ । ବିରକ୍ତ ହେଲେ ଶ୍ରାବଣୀ ଉପରେ । ଘଟଣାଟା ମା'ଙ୍କଠୁ ବୁଝିବା ଥିଲା ତା'ର ଉଦ୍ଦେଶ୍ୟ ।

ଟ୍ୟାକ୍ସିଟିଏ ଧରି ଗଲେ କର୍ପୋରେସନ ଅଫିସ । ଗଡିରେ ଅଫିସ ବନ୍ଦ । ଗଲେ ନାଇଟ୍ କ୍ଲବ । ସେଠିବି ନାହାନ୍ତି ଶାନ୍ତା କୁମାରୀ । ଆଉ ତେବେ କେଉଁଠି ଥାଇ ପାରନ୍ତି ? ପୁଣି ଫେରିଲେ ଘରକୁ । ଶାନ୍ତା ମଧ୍ୟ ଫେରି ନାହାନ୍ତି । ମନ ଭିତରେ ଅଶୁଭ ଚିନ୍ତା ବରଫ ଭଳି ଜମାଟ ବାନ୍ଧିଗଲାଣି । ଦୁଶ୍ଚିନ୍ତା ଗ୍ରାସିଲା ।

ଖୁବ୍ ଭୋରରୁ ଗଲେ ସଲ୍ଟଲେକସ୍ଥିତ କର୍ଣ୍ଣେଲ ବଙ୍କିମଙ୍କ ବାସଭବନକୁ । ଶ୍ୱଶୁର ଘର ବୋଲି କହିବାର ଅଧିକାର ନାହିଁ । ବିବାହ ପରେ କେବେବି ଶ୍ୱଶୁରାଳୟ ମାଡ଼ି ନାହାନ୍ତି । ଶାନ୍ତାକୁ ତଲାସ କରିବା ଉଦ୍ଦେଶ୍ୟରେ ଆଜି ଆସିବାକୁ ବାଧ୍ୟ ହୋଇଛନ୍ତି । ବଙ୍କିମଚନ୍ଦ୍ର ପ୍ରାତଃଭ୍ରମଣ ଶେଷକରି ଫୁଲ ବଗିଚାରେ ଜଳ ଛିଞ୍ଚୁଥିଲେ । ସୀତାଂଶୁକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଦୀର୍ଘ ତିନିବର୍ଷ ପରେ ସୀତାଂଶୁ ପ୍ରଥମଥର ପାଇଁ ଶ୍ୱଶୁରାଳୟ ଆସିଛନ୍ତି । ବଙ୍କିମଚନ୍ଦ୍ରଙ୍କ ଇଚ୍ଛା ହେଉଥିଲା ତାଙ୍କୁ ଗୋଟାଏ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେବା ପାଇଁ । କିନ୍ତୁ ମନେ ପଡ଼ିଗଲା ତାଙ୍କ ସୈନିକ ଜୀବନର ଜିଦ୍ । ସେଇ ଜିଦ୍‌ରେ ସେ ଅଟଳ ରହିଛନ୍ତି ଏ ପର୍ଯ୍ୟନ୍ତ; ଘରର ସମସ୍ତଙ୍କ ଉପରେ କଠୋର କଟକଣା ଜାରି କରିଛନ୍ତି । ଶାନ୍ତା ସହିତ ସବୁ ସମ୍ପର୍କ ଛିନ୍ନ ।

ହଠାତ୍ ମୁହଁକୁ ଗମ୍ଭୀର କରି ବଙ୍କିମଚନ୍ଦ୍ର ପଚାରିଲେ– କ'ଣ କାମ ? ଶଙ୍କିତ ଗଳାରେ କହିଲେ ସୀତାଂଶୁ– ଶାନ୍ତା ଏଠିକୁ ଆସିଛନ୍ତି ?

ସେ ଏଠିକୁ ଆସିବାର ଆଦୌ ଆବଶ୍ୟକତା ନାହିଁ । ତାକୁ ଏ ଘର ସବୁ ଦିନ ପାଇଁ ମନା । କଠୋର ଗଳାରେ ଉତ୍ତର ଦେଲେ ବଙ୍କିମ ।



Digitized by PPRACHIN, SOA

ସୀତାଂଶୁଙ୍କ ବିଚଳିତ ସ୍ୱର–

: ତେବେ ଗଲେ କୁଆଡ଼େ ?

ବଙ୍କିମଚନ୍ଦ୍ର ଅନୁମାନ କଲେ, ସ୍ୱାମୀସ୍ତ୍ରୀଙ୍କ ମଧ୍ୟରେ କିଛି ଗୋଟାଏ ଝଗଡ଼ା ବା ମନୋମାଳିନ୍ୟ ଘଟିଛି । ଏହା ସେ ବହୁ ଆଗରୁ ଗଣନା କରିଥିଲେ । ତେଣୁ କଠୋର ଭାବେ ଆକ୍ଷେପ କରି କହିଲେ– ଯେଉଁ ଝିଅର ପାଦ ଭୂଇଁ ସ୍ପର୍ଶ କରି ନ ଥିଲା; ଯିଏ କାରରେ ଜନ୍ମ; ଟେଲିଫୋନ୍, କୁଲର ଆଦି ଆଭିଜାତ୍ୟଭରା ସମ୍ପଦରେ ଯାହାର ରକ୍ତ ମାଂସ ଗଢ଼ା, ସେ କ'ଣ ତମପରି ଭିକାରୀ ଘରେ ବଞ୍ଚିବା ସମ୍ଭବ ? ସିଂହ କ'ଣ ଶୃଗାଳ ବସାରେ କେବେ ବଞ୍ଚିପାରେ ? ମୁଁ ଜାଣିଥିଲି, ଦିନେ ନା ଦିନେ ଶାନ୍ତା ନିଜ ଭୁଲ ବୁଝି ପାରିବ, ପୁଣି ପିତା କୋଳକୁ ଫେରି ଆସିବ । ତମର ଦାମ୍ପତ୍ୟ କଳହ ଅବଶ୍ୟମ୍ଭାବୀ । ଏଇତ ଆରମ୍ଭ ମାତ୍ର ।

ବିକଳ ସ୍ୱରରେ କହିଲେ ସୀତାଂଶୁ–

ବିଶ୍ୱାସ କରନ୍ତୁ ସାର୍, ଆମେ କେବେ କଳିକଜିଆ କରିନୁ । ଖୁବ୍ ଶାନ୍ତିରେ ଅଛୁଁ । ଆମର କିଛି ଅସୁବିଧା ହେଉନି । ଗତକାଲିର ଘଟଣାରେ ମୁଁ ବିବ୍ରତ । ଶାନ୍ତା କାଲିଠୁଁ କେଉଁଆଡ଼େ ଯାଇଛନ୍ତି, ଆଜିଯାଏ ଫେରି ନାହାନ୍ତି । ଭାବିଥିଲି, କାଳେ ଆପଣଙ୍କ ପାଖକୁ ... ।

: ନା, ସେ ଏଠାକୁ ଆସି ନାହିଁ । ତା' ପାଇଁ ଆମେ କେହି ନୋହୁଁ । ତା' ଜିଦ୍ ସବୁଠୁ ବଡ଼, ପିତାମାତାଙ୍କଠୁଁ ଆହୁରି ଉର୍ଦ୍ଧ୍ୱରେ !

ବଙ୍କିମଙ୍କ ଆଖି ଲୁହ ଛଳ ଛଳ ହୋଇ ଆସିଲା । ସେ ମୁହଁ ବୁଲାଇଲେ । ଅତ୍ୟଧିକ କ୍ଷୋଭଭିମାନରେ ସେ ଏତକ ଅନୁଚିତ କଥା ବକି ଯାଇଥିଲେ, ହୁଏତ ତାଙ୍କର ଇଚ୍ଛା ନ ଥିଲା, ଉଦ୍ଦେଶ୍ୟ ବି ନଥିଲା ।

ସୀତାଂଶୁ ଫେରିଗଲା ପରେ ସେ ଅନୁତପ୍ତ ହୋଇ ସ୍ତ୍ରୀ ଅନୁରାଧାଙ୍କ ପାଖେ ସ୍ୱୀକାର କରିଥିଲେ । ଅନୁରାଧା ବଙ୍କିମଙ୍କ କଠୋର ମନୋଭାବ



Digitized by PPRACHIN, SOA

ଉପରେ କୁଠାରଘାତ କରିଥିଲେ । ପରିବାରର ଅନ୍ୟମାନେ ମଧ୍ୟ ସମବେତ ଭାବେ ପିତାଙ୍କୁ ଦୋଷୀ ସାବ୍ୟସ୍ତ କରିଥିଲେ । ଏହା ଥିଲା ସେମାନଙ୍କର ପ୍ରଥମ ସୁଯୋଗ, ଠିକ୍ ଦୁର୍ବଳ ମୁହୂର୍ତ୍ତରେ ଶତ୍ରୁକୁ ଆକ୍ରମଣ କଲା ଭଳି । ଶାନ୍ତା ଦିଦି କେଉଁଠି ଅଛନ୍ତି ? କିପରି ଅଛନ୍ତି ? ? କ'ଣ ତାଙ୍କର ବିପଦ ପଡ଼ିଛି ? ? ?

ସମସ୍ତେ ଆତଙ୍କିତ ହୋଇ ପଡ଼ୁଥିଲେ ।

ବିଳମ୍ବରେ ବଙ୍କିମଚନ୍ଦ୍ର ଘଟଣାର ଗୁରୁତ୍ୱ ବୁଝିଲେ । ଶାନ୍ତାର ବସା ଠିକଣା ଏମାନଙ୍କ ପାଖେ ନାହିଁ । କେଉଁଠି ତାହେଲେ ଖୋଜିବେ ?

ଆଉ ବିଶେଷ ବିଳମ୍ବ ନ କରି ସୀତାଂଶୁ ଧାଇଁଲେ ପୋଲିସ କାର୍ଯ୍ୟାଳୟକୁ । ଲିଖିତାକାରରେ ଶାନ୍ତା କୁମାରୀଙ୍କ ନିଖୋଜ ଖବର ଜଣାଇଲେ । ପୋଲିସ ଦ୍ୱାରରେ ମୁଣ୍ଡ ପିଟିଲେ । ଏହା କୌଣସି ଅପହରଣକାରୀର ଚକ୍ରାନ୍ତ ନିଶ୍ଚୟ । ବଙ୍କିମ ଚନ୍ଦ୍ର ପୋଲିସ କର୍ଯ୍ୟାଳୟରେ ଝିଅର ଅନୁସନ୍ଧାନ ପାଇଁ ପହଞ୍ଚି ସାରିଥିଲେ ।

ତନାଘନା ଅନୁସନ୍ଧାନ ଚାଲିଲା । ସନ୍ଧାନୀ ପୋଲିସ କୁକୁରର ମଧ୍ୟ ସାହାଯ୍ୟ ନିଆଗଲା । ସଶସ୍ତ୍ର ପୋଲିସ, ଉଦ୍ଧାରକାରୀ ଦଳ ଚୋର ଖଣ୍ଡଙ୍କ ଆଡ୍‌ଡାସ୍ଥଳୀ ଉପରେ ଚଢଉ କଲେ । ନଗରୀର ବିଭିନ୍ନ ସ୍ଥାନ ତଲାସୀ କଲେ, କିନ୍ତୁ ଶାନ୍ତା କୁମାରୀଙ୍କ କୌଣସି ପତ୍ତା, ସତ୍ତା ମିଳି ନଥିଲା । ସମ୍ବାଦପତ୍ର ଏବଂ ରେଡ଼ିଓରେ ତାଙ୍କ ନିଖୋଜ ଖବର ପ୍ରଚାରିତ ହେଲା । ଆକାଶ ଖଣ୍ଡିଏ ଯେମିତି ଭାଙ୍ଗି ପଡୁଥିଲା ସୀତାଂଶୁଙ୍କ ମୁଣ୍ଡ ଉପରେ ।

ଶ୍ରାବଣୀ ଉପରେ ଏଥର ନଜର ପଡ଼ିଲା । ସେ ଥିଲା ଘଟଣାର ପ୍ରତ୍ୟକ୍ଷଦର୍ଶୀ । ସେ ହିଁ କେବଳ ସେଇ ଦୁଇ ଜଣ ଅପହୃତକାରୀଙ୍କୁ ଚିହ୍ନିଛି । ସନ୍ଦେହର ସର୍ପକୁଣ୍ଡଳୀ ଏବେ ତା ଉପରେ । ଏମିତି ଅନେକ ଭଦ୍ରବେଶିନୀ ମହିଳା ଚାକରାଣୀ ଅବା ଭିକାରୁଣୀ ସାଜି ବହୁ ଚୋରି ଡକାୟତିରେ ଜଡ଼ିତ ଥିବାର ତଥ୍ୟ ପୋଲିସର ହସ୍ତଗତ ହୋଇଛି । ଶାନ୍ତା କୁମାରୀଙ୍କ ଅପହୃତ ଘଟଣାରେ ଏହି ମହିଳାର ହାତ ଥିଲାପରି ପୋଲିସର ସନ୍ଦେହାଙ୍କୁଶ ।



Digitized by PPRACHIN, SOA

ଘର କେଉଁଠି ? କେତେ ଦିନ ହେଲା ଏଠି ଅଛୁ ? ? କଲିକତା କେବେଠୁଁ ଅଇଲୁ ? ? ? ଶ୍ରାବଣୀ ଉପରେ ଅନୁସନ୍ଧାନର ତୀବ୍ର ତାଡ଼ନା ।

ପୋଲିସର ମୁହିଁ ନୁହିଁତ, ବଜ୍ରଭାଷା । ସେମାନଙ୍କ କଡ଼ା ଶବ୍ଦ, କଟୁ କଥାରେ ଶ୍ରାବଣୀ ଏକାବେଳେ ହଡ଼ବଡ଼େଇ ଗଲା । ତା ମୁହିଁରୁ କୌଣସି ବଚନ ବାହାରି ନଥିଲା । ଓଠ ଦୁଇଟା ଥରି ଥରି ଉଠିଲା, ଆଖି ହେଲା ଅଶ୍ରୁସଜଳ । ଗାଲ ଉପରେ ଝରି ଆସିଲା ଗରମ ଲୁଣିଆ ଲୁହ । ଓଠ ଭିଜିଗଲା, ତଣ୍ଡି ଶୁଖିଗଲା । ଏମିତି ଆକାଶ ଛିଣ୍ଡା ଘଟଣାରେ ସେ କାଠ ପାଲଟି ଯାଇଥିଲା । ପୋଲିସ ଢେଗରେ ସେ ମୂକ ପାଲଟି ଯାଇଥିଲା । ଲୁହ ଡ଼ବଡ଼ବ ଆଖି ଆଉ ଯୋଡ଼ ହସ୍ତରେ କହିଲା– ମୁଁ କିଛି ଜାଣି ନାହିଁ ଆଜ୍ଞା ।

ପୋଲିସ ଅନୁସନ୍ଧାନକାରୀ ଅଫିସରଙ୍କ ମୁହିଁର ଦୁର୍ଭାଷା– ଆବେ ବଜାତୁଣୀ ମାଇକିନିଆ, ଜାଣି ନାହୁଁ କ'ଣ ? ତୋ ଛଡ଼ା କିଏ ଜାଣିଛି ବେ ? ସବୁ ଠିକ୍ ଠିକ୍ କହ, ସେ ଦି'ଜଣ ଲୋକ କିଏ ? ଚିହ୍ନି ପାରିବୁ ?

ଶ୍ରାବଣୀ ନାଚାର । ପୋଡ଼ା କପାଳ ତା'ର । କାହାକୁ ବା ଦୋଷ ଦେବ ? ପ୍ରଥମରୁହିଁ ଭାଗ୍ୟ ତା'ର ବଇରୀ ସାଜିଛି, ଦଇବ କୋପ କରିଛି, ଭଲରେ ଭେଲ ଫଳୁଛି । ତା ନିର୍ଦ୍ଦୋଷତାକୁ କିଏ ପ୍ରମାଣ କରିବ ? ତା ପାଇଁ କିଏ ଓକିଲାତି ବାଡିବ ? ଏମାନଙ୍କ ସ୍ୱର୍ଗସମ ଶାନ୍ତ କୁଟୀରଟି ଆଜି ଅଶାନ୍ତ, ସ୍ୱନାର ସଂସାର ବିପର୍ଯ୍ୟସ୍ତ । ଦୁଷ୍ଟ ଦୁର୍ବୃତ୍ତର ଧର୍ମଛଡ଼ା କାଣ୍ଡ । କାହିଁକିରେ ବିଧାତା ଭଲ ଲୋକ ଉପରେ ଏମିତି ଅତ୍ୟାଚାର ସହୁଛୁ ? ଏମିତି ଅନେକ ଅଭିସମ୍ପାତ ବର୍ଷଣ କଲା ମନେ ମନେ ।

ପୋଲିସ ଜୁଲମ୍ ଅବ୍ୟାହତ ରହିଥିଲା । ଶ୍ରାବଣୀର ମୌନତା ସମସ୍ତଙ୍କ ସନ୍ଦେହକୁ ଦୃଢ଼ୀଭୂତ କରିଥିଲା । ସେ କେବଳ କାନ୍ଦୁଥିଲା ।



Digitized by PPRACHIN, SOA

ତା'ଠୁ ଅନୁନ୍ମୋଚିତ ତଥ୍ୟ ଆଦାୟ କରିବା ଆଶାରେ ଥାନାବାବୁ ନିର୍ଦ୍ଦୟ ଭବେ ତା ହାତ ଧରି ଘୋସାରି ନେଇଥିଲେ ପୋଲିସ ଭ୍ୟାନ୍ ଭିତରକୁ । ଖୋକନ୍ ଗହା ଟେକି କାନ୍ଦୁଥିଲା । ମୁହ୍ୟମାନ ପିତା କୋଳରେ ରହି କହୁଥିଲା– କାକୀ ମା, କାକୀ ମା, କାକୀ ମା ! ପାଖରେ ଛିଡ଼ା ହୋଇଥିଲେ ଶାନ୍ତା କୁମାରୀଙ୍କ ଅନୁତପ୍ତ ପିତା ଏବଂ ତାଙ୍କ ଶୋକାର୍ତ୍ତ ପରିବାରବର୍ଗ ଏବଂ କେତୋଟି ସମବେଦନା ଜ୍ଞାପନକାରୀ ପଡ଼ୋଶୀ ପରିଜନ ; ଶେଷଥର ପାଇଁ ଖୋକନ୍‌କୁ ଦେଖିବାକୁ ଇଛା କରିଥିଲେ ମଧ୍ୟ ଶ୍ରାବଣୀ ଗ୍ରହି ପାରି ନଥିଲା । କେଇଟି ଦିନର ବାତ୍ସଲ୍ୟ ମମତା ହଠାତ୍ ଏମିତି ଜାଲ ଭଉଁରୀରେ ଛିନ୍ନ ହୋଇଯିବ ବୋଲି କିଏ ଆଶା କରିଥିଲା ? ଯେଉଁ ଡ଼ାଳ ଧରୁଛି, ସେ ଡ଼ାଳ ଛିଣ୍ଡୁଛି । ଯେଉଁ ଗଛ ତଳେ ଆଶ୍ରୟ ନେଉଛି, ସେ ଗଛ ଭୂଇଁରେ ଲୋଟୁଛି । ସେ ନିଜେ ଯେମିତି ଗୋଟିଏ ଅନିଷ୍ଟ ଗ୍ରହ, ଅଶୁଭ ସଙ୍କେତ । ଅମଙ୍ଗଳ ଘଟଣାଗୁଡ଼ିଏ ଆପେ ଆପେ ଘଟି ଯାଉଛି, ସବୁର କାରଣ ତା ମୁଣ୍ଡରେ ଯାଉଛି । ଜୀବନକୁ ତ୍ୟାଜ୍ୟ କରି ସାରନ୍ତାଣି କେଉଁ ଦିନରୁ, କିନ୍ତୁ ସେଥିରେ ତା'ର ଅଧିକାର ନାହିଁ, ଅଧିକାରୀ ସେଇ ଜଣେ ପୁରୁଷ ... ଯା'ର ହାତ ସେ ଧରିଥିଲା । ତା ପ୍ରାଣ ପୁରୁଷର ଅଧିକାରକୁ କ୍ଷୁର୍ଣ୍ଣ କରିବା ତା'ର ପାପ । ଗୋଟାଏ ଦମ୍‌ରେ ସେ ବଞ୍ଚି ରହିଛି । ବହୁ ଲାଞ୍ଛନା, ଶତ ନିର୍ଯାତନା ସତ୍ତ୍ୱେ ବଞ୍ଚି ରହିବାକୁ ଜିଦ୍ କରିଛି । ସତୀର ମାନ ରକ୍ଷା, ସୃଷ୍ଟିକର୍ତ୍ତାଙ୍କର ଏଇ ଦୃଢ଼ ଧର୍ମ ବିଶ୍ୱାସ ତା ମନ ଭିତରେ ଅହରହ ଘୋଷିତ, ଧ୍ୱନିତ । ତଥାପି ସେ ବଞ୍ଚିବ– ପ୍ରାଣକୁ ପଥର କରି, ସତେ ଯେମିତି ସେ ମୃତ୍ୟୁ ସଙ୍ଗେ ମିତ ବସିଛି ।





Digitized by PPRACHIN, SOA

ପ୍ରାଣର ପ୍ରତିମା ଶ୍ରାବଣୀ ପାଇଁ ଦେବକାନ୍ତର ମନ ଝୁରୁଥିଲା ଅହର୍ନିଶ, ଦେହ ଘୁରୁଥିଲା ଏ ସ୍ଥାନରୁ ସେ ସ୍ଥାନକୁ । ବାର୍ଥତାର ପରିଧି ଭିତରେ ପଥ ପରିକ୍ରମା କରୁଥିଲା ଦେବକାନ୍ତ ସେଇ ବିଚ୍ଛେଦ ଦିନଠାରୁ । ସୁବିସ୍ତୃତ ଜନାରଣ୍ୟ ପ୍ଲାଟଫର୍ମ ଚଟାଣରେ ନିଦ ଆସୁ ନଥିଲା । ଗତ ଦୁଇ ମାସ ହେବ ନିଜକୁ ଚଡ଼ି ଦେଇଛି । ବରଂ ନିଶାଚର ପରି ନିର୍ଜନ ଗତିରେ ବୁଲିବା ହୋଇଛି ତାର ଅଭ୍ୟାସ ।

ଗତି କେତେ ହେବ ତା'ର ନିଘା ନ ଥିଲା । ଏମିତି ଗ୍ଲି ଗ୍ଲି ଆସି ଯାଇଥିଲା ଉପାନ୍ତ ଅଞ୍ଚଳକୁ । ରାସ୍ତାଧାର ବିଜୁଳି ଖୁଣ୍ଟରେ ବତୀ ଜଳୁ ନଥିଲା । ବିଜୁଳି ଶକ୍ତିର ଅଭାବରୁ କଲିକତା ଉପାନ୍ତ ଅଞ୍ଚଳ-ମାନଙ୍କରେ ଏମିତି ପର୍ଯ୍ୟାପ୍ତ ବିଜୁଳି କାଟ ବ୍ୟବସ୍ଥା ବଳବତ୍ତର ରହିଛି । କୃଷ୍ଣପକ୍ଷ– ରାସ୍ତା ଥିଲା ନିର୍ଜନ, ନିଛାଟିଆ । ପଥ ପାର୍ଶ୍ୱରେ କୌଣସି ଘରବାଡ଼ି ଦିଶୁନି । ଠାଏ ଠାଏ କଣ୍ଟା ଗଛ, ନାଗଫେଣୀ ଏବଂ ଅମରୀବୁଦା । ଝିଙ୍କାରୀର ଝିଁ ଝିଁ ଶବ୍ଦ ଗଭୀର ରାତିର ସୂଚନା ଦେଉଥିଲା । ନିରୁଦ୍ଦିଷ୍ଟ ଭାବେ ସେହି ରାସ୍ତାରେ ଗ୍ଲିଥିଲା ଦେବକାନ୍ତ ।

ପଛଆଡୁ କ୍ଷିପ୍ରବେଗରେ ଧାଇଁଆସି ଜିପ୍‌ଟିଏ ଠିଆହେଲା । ଦେବକାନ୍ତ ପଛକୁ ଗ୍ହିଁଲା ବେଳକୁ ସେଥିରୁ ଗ୍ରିଜଣ ଅସ୍ତ୍ରଧାରୀ ବ୍ୟକ୍ତି ତାକୁ ଘେରି ଆସିଲେ । ତା' ବେକ ପାଖେ ଛୁରି ଏବଂ ପେଟରେ ପିସ୍ତଲର ମୁନ । ସାମାନ୍ୟ ହଲଚଲ ହେଲେ ପୈତୃକ ପିଣ୍ଡଟି ଶେଷ ହୋଇଯିବାର ସମ୍ଭାବନା । କି ଦୁର୍ଯୋଗ ! ଦୁର୍ଦାନ୍ତ ଡାକୁଦଳ ହାବୁଡ଼ରେ ପଡ଼ିଛି ଆଜି ।



Digitized by PPRACHIN, SOA

୫ରେ ଶ୍ରାବଣ

ଇଚ୍ଛା ହେଉଥିଲା ପ୍ରତିରୋଧ କରିବା ପାଇଁ । ସ୍କୁଲ କଲେଜର ସେ ଥିଲା ନାମକରା ଫୁଟବଲ ଖେଳାଳି । ଗୋଡ଼ରେ ବଲ୍ ଲାଗିଲେ ଗୋଲ । କଲେଜ ବେଳରେ କିଛିଟା ଯୁଡୋ, କରାଟେ ଅଭ୍ୟାସ କରିଥିଲା । କିନ୍ତୁ ସେ ଦିନ ତାହା ଥିଲା ଟା'ପାଇଁ ଖେଳ, ବର୍ତ୍ତମାନ କାଳ ସଙ୍ଗେ ସେ ମୁହାଁମୁହିଁ । ଏଠି ବଳ କଷା କଷିର ବେଳ ନୁହେଁ । ଦୁର୍ବ୍ୱତମାନଙ୍କ ପାଖେ ଅଛି ଜୀବନ ଦୀପ ଲିଭାଇଦେବାର ଅସ୍ତ୍ର । ଅତଏବ ସେ ଊଁଚ୍ଛୁଁ ପାଟି ନ ଫିଟେଇ ସେମାନଙ୍କ ନିର୍ଦ୍ଦେଶମତେ ଦୁଇହାତ ଉପରକୁ ଟେକିଲା । ପକେଟରେ ହାତ ଭର୍ତ୍ତିକରି ସେମାନେ ଖୋଜି ଗଲେ । କାମିଜ ପକେଟରୁ ମିଳିଲା ମାତ୍ର ଅଠାନବେ ଟଙ୍କା ।

ସେଥିରେ ସେମାନେ ସନ୍ତୁଷ୍ଟ ନଥିଲେ । ଆଶା କରି ଥିଲେ ଅନେକ, ପାଇଲେ ଅଳ୍ପ । ଜଣେ ମୁଛଧାରୀ କହିଲା, ଏଟା ଗୋଟେ ଫକଡ୍ । ପରିଶ୍ରମ ହେଲା ବହୁତ କିନ୍ତୁ ଶହେ ଟଙ୍କାବି ହେଲନି, ଧେତ୍ ତେରିକା । ଆଉ ଜଣେ ଖୁବ୍ ବିରକ୍ତ ହୋଇ ତା' କୁର୍ତ୍ତାକୁ ଦେହରୁ ଉତାରି ନେଲା ଏବଂ ନିଜ ପୋଷାକଟିକୁ ପିନ୍ଧାଇ ଦେଲା । ଅନ୍ୟ ଜଣେ ତା' ମୁହଁରେ କଳା ବୋଳିଦେଲା । ଦେବକାନ୍ତ ଦିଶୁଥିଲା ବାନର ଭଳି । ଚତୁର୍ଥ ତାକୁ ଜଣକ ପ୍ରଚଣ୍ଡ କ୍ରୋଧ ଏବଂ ଅସନ୍ତୋଷର ଜ୍ୱାଳାରେ ଶକ୍ତ ଗୋଇଠାଟାଏ ମାରିଲା । ଦେବକାନ୍ତ ମୁହଁମାଡ଼ି ତଳେ ପଡ଼ିଗଲା । ତା' ପରେ ସେମାନେ ତୀବ୍ର ବେଗରେ ଗାଡ଼ି ଛୁଟାଇ ଅଦୃଶ୍ୟ ହୋଇଗଲେ ।

ଡାକୁମାନଙ୍କ ଅନର୍ଦ୍ଧାନ ପରେ ଭୂଇଁରୁ ଉଠି ଝାଡ଼ି ଝୁଡ଼ି ହେଲା ଦେବକାନ୍ତ । ମହାଜନକୁ ଟଙ୍କା ପରିଶୋଧ କରିବାକୁ ଥିଲା ସବୁଦିନ ପରି । ଆଜି କିନ୍ତୁ ଅବହେଳା କରିଥିଲା । ଅଠାନବେ ଟଙ୍କା, ଆଉ ଦୁଇଟଙ୍କା ହୋଇଥିଲେ ଶହେ ହୋଇଥାନ୍ତା । ଲୋଭ ବଢ଼ିଲା । କାଲିକୁ ଦେବବୋଲି ଭାବିଥିଲା । କିନ୍ତୁ ଆଜିର ମନ୍ଦ ଲୋଭ ଡକାୟତର ଗର୍ଭରେ ଗଲା । ଅବହେଳାରୁ ଏମିତି ଅବନତି ହୁଏ ମଣିଷର ସିନା ! ପ୍ରତିକୂଳ ଭାଗ୍ୟ । ଦୋଷ ଦେବ କାହାକୁ ? ନିଜକୁ ସାବଧାନ କରିନେଲା ।



Digitized by PPRACHIN, SOA

ପୁଣି ଆଉ ଗୋଟିଏ ଜିପ୍ ପଛଆଡୁ ଧାଇଁ ଆସୁଥିବାର ଲକ୍ଷ୍ୟକଲା ଦେବକାନ୍ତ । ଆଉ ଗୋଟିଏ ଡକାୟତ ଦଳ ନା କ'ଣ ? ଗାଡ଼ିଟି ତାର ନିକଟରେ ହୋଇଗଲାଣି । ଏଥର ମୁକାବିଲାର ମନୋଭାବ ନେଇ ସେ ପ୍ରସ୍ତୁତ ହୋଇଗଲା । ଆକ୍ରମଣ ଏବଂ ଆତ୍ମରକ୍ଷାର ସୂତ୍ରଗୁଡ଼ିକ ସ୍ମରଣ କରି ଦୃଢ଼ ଭାବେ ଠିଆ ହୋଇ ରହିଲା । ସର୍ବାଙ୍ଗ ଧନୁଗୁଣ ପରି ଟାଙ୍ଗି ହୋଇରହିଛି । ଭ୍ୟାନ୍‌ଟିଏ ଅଟକିଲା ଏବଂ ପଛଆଡୁ ଓହ୍ଲାଇଗଲେ ଦି'ଜଣ ମଣିଷ । ସେମାନେ ଅପ୍ରସ୍ତୁତ ଥିଲେ । ଇଚ୍ଛାକୃତ ଉଦ୍ଦେଶ୍ୟ ନେଇ ସେମାନଙ୍କୁ ଆକ୍ରମଣ କଲା ଦେବକାନ୍ତ । ତା' ବଳିଷ୍ଠ ହାତରେ ମୁଷ୍ଟି ପ୍ରହାର ସେମାନଙ୍କ ମୁହଁରେ ଶକ୍ତ ଆଘାତ ଆଣିଥିଲା ।

ସଙ୍ଗେ ସଙ୍ଗେ ଗାଡ଼ିର ସାଇରନ୍ ବାଜି ଉଠିଲା ଏବଂ ଫକ୍ ଫାକ୍ ହୋଇ ଡେଇଁ ପଡ଼ିଲେ ଆଉ କେତେଜଣ ଲୋକ । ଟର୍ଚ୍ଚ ଆଲୁଅରେ ସେମାନଙ୍କୁ ସ୍ପଷ୍ଟଭାବେ ଦେଖି ପାରିଲା ଦେବକାନ୍ତ । ସେମାନେ ଚୋର ନୁହଁନ୍ତି, ଚୋର ଧରାଳି ସିପେହୀ ମାନେ । ପଛେ ପଛେ କ୍ଷୁବ୍ଧ ହୋଇ ଆସୁଛନ୍ତି ପିସ୍ତଲଧାରୀ ପୋଲିସ ଅଫିସର । ପ୍ରତିରୋଧ କରିବାର ଆଉ ଆବଶ୍ୟକତା ନଥିଲା ଦେବକାନ୍ତର । ବଡ଼ଭୁଲ ହୋଇଗଲା, ସୁଧାରିବାକୁ ଅବକାଶ ମଧ୍ୟ ନଥିଲା । ନିଜକୁ ନମ୍ରଭାବେ ସମର୍ପଣ କଲା । ସେମାନଙ୍କ ନିକଟରେ ।

ଦେହରେ ଦାଗୀର ପୋଷାକ, ମୁହଁରେ କଳା । ତାକୁ ନୁହେଁତ ଆଉ କ'ଣ ?

ପୋଲିସବାବୁମାନେ ଚା' କୁର୍ତ୍ତା ପେଣ୍ଟ ତଲାସୀ ନେଲେ । କୁର୍ତ୍ତା ପକେଟରୁ ସୁନା ଲକେଟ୍‌ଟିଏ ପାଇଲେ । ସିପେହୀ ଅତି ଆନନ୍ଦରେ କହି ଉଠିଲା— ଆଜ୍ଞା ମିଳିଛି, ଅସଲ ଜିନିଷ ମିଳିଛି । ଦେଖନ୍ତୁ ଏ ଲକେଟ୍ ଚୋରର ପକେଟରୁ ମିଳିଛି ।

କର୍ତ୍ତବ୍ୟରତ ପୋଲିସ ଅଫିସର ଲକେଟ୍‌ଟିକୁ ନେଇ ଟର୍ଚ୍ଚ ଆଲୁଅରେ ଦେଖିଲେ । ସେଥିରେ ନାମ ଲେଖା ଥିଲା— 'ଚିନ୍ମୟୀ' । ପ୍ରକୃତ ଚୋର ଧରା ପଡ଼ିଛି । ଖୁସି ହୋଇଗଲେ ଅଫିସର ।



Digitized by PPRACHIN, SOA

୫ରେ ଶ୍ରାବଣ

ପ୍ରାୟ ଘଣ୍ଟାଏ ପୂର୍ବରୁ ପ୍ରଣବବାବୁଙ୍କ ଘରୁ ଚୋରି ହୋଇଛି । ପ୍ରଣବବାବୁ ଗସ୍ତରେ ଥିଲେ । ଘରେ ଚିନ୍ମୟୀ ଏବଂ ତାଙ୍କର ପାଞ୍ଚବର୍ଷର ସନ୍ତାନ ଶୋଇଥିଲେ । ଚୋରମାନେ କବାଟ ଭାଙ୍ଗି ଘରେ ପଶିଲେ । ଚିନ୍ମୟୀଙ୍କୁ ଗାଢ଼ ନିଦ ହୋଇ ଯାଇଥିଲା । ସେମାନେ ଟ୍ରଙ୍କ ଆଲମାରୀ ଭାଙ୍ଗି ଗୁପ୍ତସ୍ଥାନରୁ ନଗଦ ଟଙ୍କା ଏବଂ ସବୁ ସ୍ୱର୍ଣ୍ଣାଳଙ୍କାର ନେବାବେଳେ ପ୍ରଣବବାବୁ ଗସ୍ତରୁ ଫେରି ଘରେ ପହଞ୍ଚିଲେ । ବିଜୁଳି ସଂଯୋଗ ବ୍ୟାହତ ଥିଲା । ବାହାର କବାଟ ଖଡ୍ ଖଡ୍ କଲେ । ଚୋରମାନେ ଭୟରେ ପଛପଟେ ପଳାଇ ଯାଇଥିଲେ । କବାଟ ଶବ୍ଦଶୁଣି ଚିନ୍ମୟୀଙ୍କ ନିଦ ଭାଙ୍ଗିଲା । ଏ କ'ଣ ? ଆଲମାରୀ ଟ୍ରଙ୍କ ସବୁ ଖୋଲା ? ପଛ କବାଟ ମୁକୁଳା ? ତା'ହେଲେ ଚୋରମାନଙ୍କ ତାଣ୍ଡବଲୀଳା ନିଶ୍ଚୟ ! କବାଟ ଖୋଲିଲେ ଚିନ୍ମୟୀ ଦେବୀ ! ପ୍ରଣବବାବୁ ଏସବୁ ଦେଖି ତଟସ୍ଥ ହୋଇଗଲେ । ସୌଭାଗ୍ୟକୁ ସେ ଠିକ୍ ସମୟରେ ଗସ୍ତରୁ ଫେରିଥିଲେ । ଚୋରମାନେ ଫୋନ୍ ଲାଇନ୍ ଅଚଳ କରି ଦେଇଥିଲେ । ସଙ୍ଗେ ସଙ୍ଗେ ପଡ଼ୋଶୀ ଘରୁ ପ୍ରଣବବାବୁ ପୋଲିସ୍‌କୁ ଫୋନ କଲେ । ପୋଲିସ୍ ଫାଣ୍ଡି ଖୁବ୍ ନିକଟରେ । ଅବିଳମ୍ବେ ପୋଲିସ ବାହିନୀ ପହଞ୍ଚି ଯାଇଥିଲେ ଏବଂ ଡାକୁଦଳଙ୍କ ପିଛା ଧରିଥିଲେ ।

ଇତି ମଧ୍ୟରେ ଦେବକାନ୍ତ ପିଠିରେ କେତୋଟି ଲଠି ପାହାର ସିପାହୀମାନେ ସୁଝାଇ ସାରିଥିଲେ । ଯୁବ-ଅଫିସର ସେମାନଙ୍କୁ ଆକଟି ତଦନ୍ତ ଆରମ୍ଭ କଲେ –

: ଆଉ ଅନ୍ୟ ଜିନିଷ ସବୁ କେଉଁଠି ରଖିଛୁ ?

: ମୁଁ କିଛି ଜାଣିନି ଆଜ୍ଞା, ମୁଁ ଚୋର ନୁହେଁ ।

: ତେବେ ତୋ ପକେଟରୁ ଏ ଲକେଟ୍ କେଉଁଠୁ ଆସିଲା ?

: ଚୋରମାନେ ମୋ ମୁହଁରେ କାଳି ବୋଳି ଏଇ ଜାମାଟି ପିନ୍ଧେଇ ଦେଇଗଲେ ।



Digitized by PPRACHIN, SOA

: ତୁ ମିଛ କହୁଛୁ, ସ୍ୱଚ୍ଛ ଖେଳୁଛୁ । ତୁ ଟା ନିଶ୍ଚୟ ଚୋର । ତୋ ଦଳରୁ ଅନ୍ୟମାନେ କୁଆଡ଼େ ଗଲେ ?

: କହି ପାରିବିନି ଆଜ୍ଞା । ମୁଁ ଚୋର ନୁହେଁ, ଭଦ୍ରଲୋକ । ମୁଁ ସତ କହୁଛି । ମୋତେ ବିଶ୍ୱାସ କରନ୍ତୁ ।

ସିପେହୀମାନେ ଦାନ୍ତ କଡ଼ମଡ଼ କରି ତଦନ୍ତରେ ହସ୍ତକ୍ଷେପ କଲେ—ଆଜ୍ଞା, ଆଉ କ'ଣ ପ୍ରମାଣ ବାକୀ ଅଛି । ଚୋର କ'ଣ କେବେ ସତ କହେ ? ତା ମୁହଁ ଟାଣ । ଧରି ନିଅନ୍ତୁ ଶାଳକୁ ଥାନାକୁ ! ସେଠି ଉତ୍ତମ ମଧ୍ୟମ ହୋଇଗଲେ ସବୁ ସତ ବାହାରି ପଡ଼ିବ । ଆଉ ଡେରି କରୁଛନ୍ତି କାହିଁକି ?

ସେମାନେ ତାକୁ ହାତକଡ଼ି ପିନ୍ଧାଇ ଥାନା ହାଜତରେ ରଖିଲେ । ସେଠାରେ ତା ପ୍ରତି ପ୍ରୟୋଗ ହୋଇଥିଲା ପୋଲିସିଆ ଭାଷା । ଆସନ୍ତା କାଲି ଭ୍ରାମ୍ୟମାଣ ଅଦାଲତରେ ତାର ବିଚାର ହେବ ।

ସଜ ସକାଳ । ଯୁବ ଥାନାବାବୁ, ଭାରପ୍ରାପ୍ତ ଥାନା ଅଫିସରଙ୍କ ମନରେ ପ୍ରଫୁଲ୍ଲତା, କାର୍ଯ୍ୟରେ ମଧ୍ୟ ଚଞ୍ଚଳତା । ସେମାନେ ଚୋରଟିଏ ଧରିଛନ୍ତି । ଉଚ୍ଚ ଅଫିସରଙ୍କ ମୁହଁରୁ ପ୍ରଶଂସା ଶୁଣିବେ, ଖ୍ୟାତି ବ୍ୟାପିବ । କାର୍ଯ୍ୟଦକ୍ଷତା ପାଇଁ ପଦୋନ୍ନତି ହେବ । ଚୋରଟିଏ ଧରିବା ପୋଲିସ ଦକ୍ଷତାର ପରିଚାୟକ ।

ଆଜି ଦିନ ଏଗାରଟାରେ ଅଦାଲତରେ ବିଚାର ଆରମ୍ଭ ହେଲା । ବିଚାରପତିଙ୍କ ପ୍ରଶ୍ନ ।

: ତୁମେ ଚୋରି କରିଛ ?

: ନା ।

: ଏ ପଦକ ତମ ପକେଟରୁ ମିଳିଥିଲା ?



Digitized by PPRACHIN, SOA

: ହଁ, ତେବେ ଏ ଜାମାଟି ମୋର ନୁହେଁ । ଚୋରମାନେ ମୋ ଜାମା ନେଇ ତାଙ୍କ ଜାମା ମୋତେ ପିନ୍ଧେଇ ଦେଇଥିଲେ । ମୁଁ ଥିଲି ନାଚାର, ନିରୁପାୟ ।

ଦେବକାନ୍ତର କଥାରେ ବାଧାଦେଇ ପୋଲିସ ଅଫିସର କହିଲେ– ଏ ଲୋକ ସୁଦ୍ଧା ମିଛ କହୁଛି । ସେ ବର୍ତ୍ତମାନ ଯେଉଁ ସାର୍ଟ ପିନ୍ଧିଛି ସେଇ ପକେଟରୁ ଏ ଟିକେଟ୍‌ଟି ମିଳିଛି । ସେ ନିଶ୍ଚିତ ଭାବେ ଚୋରି କରିଛି । ସତକୁ ଲୁଚେଇବାକୁ ଯାଇ ସେ ମିଛ ଫାନ୍ଦିଛି । ଚୋର କ'ଣ ନିଜ ଜାମାରେ ସୁନା ଅଳଙ୍କାର ରଖି ଅଚିହ୍ନା ଲୋକକୁ ପିନ୍ଧେଇ ଦେଇ ପାରେ ? ଏହା କ'ଣ କେବେ ବିଶ୍ୱାସଯୋଗ୍ୟ ?

ତର୍କ ନ କରି ନମ୍ରଭାବେ ନିବେଦନ କଲା ଦେବକାନ୍ତ– ମୁଁ ମହା ବିପଦରେ ପଡ଼ିଛି ହଜୁର । ଦୁଇମାସ ତଳେ କଲିକତା ଆସିଥିଲି ଚାକିରୀ ଉଦ୍ଦେଶ୍ୟରେ । ବାଟରେ ସ୍ତ୍ରୀ ହଜିଗଲା । ତାକୁଇ ମୁଁ ଖୋଜୁଥିଲି ରାତିରେ । ଦୁର୍ଭାଗ୍ୟକୁ ଡକାୟତ ହାବୁଡ଼େ ପଡ଼ିଲି । ଭାଗ୍ୟର ବିପରିତ ଖେଳ ।

ଥାନାର ଭାରପ୍ରାପ୍ତ ଅଫିସରଙ୍କ ପ୍ରଶ୍ନ– ସ୍ତ୍ରୀର ନାମ ?

: ଶ୍ରାବଣୀ ।

ଯୁବ ଅଫିସରଙ୍କ ମୁହଁରେ ଆଶ୍ଚର୍ଯ୍ୟର ଚିହ୍ନ– ଶ୍ରବଣୀ ! ତମ ଘର ?

: ଓଡ଼ିଶାର ପୁରୀ ଜିଲ୍ଲାର ମାନପୁର ଗାଁରେ ।

ଅଫିସର ଛାଞ୍ଚକୁ ଯାଇ ତାଙ୍କ ଟେବୁଲ ଉପରୁ ତଦନ୍ତ ନଥିଟିକୁ ନେଇ ଆସିଲେ । ଶ୍ରାବଣୀର ଜମାନବନ୍ଦୀ ଉପରେ ନଜର ପକାଇଲେ । ଘଟଣାର ଧାରାବାହିକତା ଅନେକାଂଶରେ ମେଳ ଖାଉଥିଲା । କିନ୍ତୁ ସ୍ୱାମୀ ନାମ ଏବଂ ଗ୍ରାମ ଭିନ୍ନଥିଲା ଜମାନବନ୍ଦୀଟିରେ । ଜମାନବନ୍ଦୀଟି ଅଦାଲତରେ ପଢ଼ି ଶୁଣାଇଲେ । ସେଥିରେ ସ୍ୱାମୀ ନାମ 'ମହେଶ୍ୱର' ଏବଂ ଗ୍ରାମ 'ସମସରପୁର' ଲେଖାଥିଲା ।



Digitized by PPRACHIN, SOA

କୋର୍ଟ ଧଡ଼ା ଭିତରେ ଚିତ୍କାର କରି ଉଠଲେ ଦେବକାନ୍ତ– ହଁ, ହଁ ସେ ମୋ ସ୍ତ୍ରୀ– ଗେଡ୍ରୀ, ଗୋରୀ, ସୁନ୍ଦରୀଟିଏ । ତାକୁ ମୁଁ ବହୁତ ଖୋଜୁଛି । ସେ ହୁଏତ ଭୁଲରେ ମୋ ନା ମହେଶ୍ୱର କହିଛି । ଆମ ଓଡ଼ିଆ ଜାତିରେ ସ୍ୱାମୀ ନା ସ୍ତ୍ରୀ ମାନେ ପାଟିରେ ଧରନ୍ତି ନାହିଁ । ସେଥିପାଇଁ ସେ ଦେବକାନ୍ତର ପ୍ରତିଶବ୍ଦଟିଏ କହିଛି । ସମସରପୁର ତା’ ବାପଘର ଗାଁ । ଓଡ଼ିଆ ଝିଅମାନେ ବିବାହପରେ ମଧ୍ୟ ସ୍ୱାମୀ ଗାଁକୁ ନିଜ ଗାଁ ବୋଲି କହନ୍ତି ନାହିଁ ମଳପର୍ଯ୍ୟନ୍ତ । ଶ୍ରାବଣୀ ମୋ ଗେହ୍ଲାଗଣୀ, ତାକୁ ଖୋଜି ଖୋଜି ମୁଁ ନୟାନ୍ତ ହେଲିଣି । ସେ କେଉଁଠି ଅଛି ହଜୁର ? ସେ କେଉଁଠି ଅଛି ? ତମ ଗୋଡ଼ ତଳେ ପଡୁଛି । ଗୁହାରି କରୁଛି, ଦୟାକରି କହନ୍ତୁ ସେ ଏବେ କେଉଁଠି ଅଛି ? ମୋତେ ଥରେ ତା’ ସହିତ ସାକ୍ଷାତ କରଇ ଦିଅନ୍ତୁ । ମାନ୍ୟବର ଅଦାଲତ, ପୋଲିସ ମହାଶୟମାନଙ୍କୁ ମୋର ଏତିକି ମାଗୁଣି । ତା’ ପରେ ମୋତେ ଯାହା ଦଣ୍ଡ ଦେବେ ମୁଁ ସହ୍ୟ କରିବି ।

ପାଗଳପରି ଚିତ୍କାର କରୁଥିଲେ ଦେବକାନ୍ତ । ଛାଟିପିଟି ହେଉଥିଲେ । ଅସ୍ତ ବ୍ୟସ୍ତ ହେଉଥିଲେ ।

ଭାରପ୍ରାପ୍ତ ଅଫିସର ପ୍ରକାଶ କଲେ–ଶ୍ରାବଣୀ ନାମ୍ନୀ ନାରୀ ଜଣେ ବହୁଦିନ ହେଲା ଏଇ ଥନାର ମହିଳା ହାଜତ ଭିତରେ ରହିଥିଲେ । ପ୍ରମାଣ ଅଭାବରୁ ବ୍ୟକ୍ତିଗତ ମୁଚ୍ଛଲିକାରେ ତାକୁ ଆଜି ଭୋରରୁ ହିଁ ଖଲାସ କରିଦିଆ ଯାଇଛି ।

ମହିଳା ହାଜତ ମାତ୍ର କେଇ ହାତ ଦୂରର କଥା । ଗତ ଘଡିରେ ଏଇଠି ଶ୍ରାବଣୀ ଥିଲା, ଦେଖି ପାରିଲନି ସେ ? ହତଭାଗ୍ୟ । କାହିଁକି ଏମାନେ ତାକୁ ଛାଡ଼ି ଦେଲେ ? ଦେବକାନ୍ତ ଅତ୍ୟନ୍ତ ବିକଳରେ ପ୍ରାର୍ଥନା କଲେ ସାମୟିକ ମୁକ୍ତି ପାଇଁ ।

: ଆଚ୍ଛା; ତୁମର ଜାମିନ-ଦାର କିଏ ଅଛନ୍ତି ?



Digitized by PPRACHIN, SOA

: ଏଠାରେ ମୋର କେହି ନାହାନ୍ତି ହଜୁର ! ସରକାରୀ ଓକିଲ ଆପତ୍ତି କରି ଯୁକ୍ତି କରିଥିଲେ । ଚୋର ଦାଗୀମାନଙ୍କୁ ଜାମିନରେ ଛାଡ଼ିବା ଅନୁଚିତ । ପୁଣି ବାହାରକୁ ଯାଇ କିମ୍ଭୂତକିମାକାର କାଣ୍ଡ ଭିଆଇବେ । ଏମାନଙ୍କୁ କଠୋର ଦଣ୍ଡ ଦିଆଯିବା ଉଚିତ । ପାଣିରେ ସର ପକେଇ କଥା କହି ପାରନ୍ତି, ବାହନା କରନ୍ତି, କୋର୍ଟକୁ ଭୁଲ୍‌କଥା କହି ଖସିଯିବାର ମସୁଧା କରନ୍ତି ଏମାନେ । ଯେ ଲୋକକୁ ଦୋଷୀ ସାବ୍ୟସ୍ତ କରିବାକୁ ଆଉ କ'ଣ ଅଧିକ ତଥ୍ୟ ଆବଶ୍ୟକ କହିଲେ ? ପ୍ରଥମତଃ, ଚୋରି ଯାଇଥିବା ସୁନା ଲକେଟ୍‌ଟି ଆସାମୀ ପକେଟରୁ ମିଳିଛି । ଦ୍ୱିତୀୟତଃ, ଶ୍ରାବଣୀ ନାମ୍ନୀ ସ୍ତ୍ରୀ ଲୋକ ସହିତ ସେ ସମ୍ପର୍କିତ । ଏକ ନାରୀ ଅପହରଣ ମାମଲାରେ ପୋଲିସ ମଧ୍ୟ ଶ୍ରାବଣୀକୁ ସନ୍ଦେହ କରି ଧରିଥିଲେ, ବ୍ୟକ୍ତିଗତ ମୁଚ୍ଲିକାରେ ଏଇମାତ୍ର ଛାଡ଼ିଛନ୍ତି । ତା ପ୍ରତି ପୋଲିସର ତୀକ୍ଷ୍ଣ ଦୃଷ୍ଟି ରହିଛି । ସ୍ତ୍ରୀ ଲୋକଟିର କାର୍ଯ୍ୟକଳାପରେ ପୋଲିସର ସନ୍ଦେହ ମଧ୍ୟ ଯଥାର୍ଥ । ତୃତୀୟତଃ, ଏହି ଅଭିଯୁକ୍ତ ଆସାମୀ ଶ୍ରାବଣୀର ସ୍ୱାମୀ ବୋଲି ପରିଚୟ ଦେଉଛି, କିନ୍ତୁ ଶ୍ରାବଣୀ ସ୍ୱାମୀ ନାମ ମହେଶ୍ୱର ଏବଂ ଗ୍ରାମ ନାମ ସମସରପୁର କହୁଥିବା ସ୍ଥଳେ, ଆସାମୀ ନିଜ ନାମ ଦେବକାନ୍ତ ଏବଂ ଗ୍ରାମ ମାନପୁର ବୋଲି ପ୍ରକାଶ କରୁଛି । ଏଥିରୁ ସ୍ପଷ୍ଟ ପ୍ରମାଣିତ ଯେ ସେମାନେ ଯାହା କହୁଛନ୍ତି ସେ ଗୁଡ଼ିକ ସବୁ ମିଛ, ଗପ୍ ଏବଂ ଭ୍ରାମାତ୍ମକ । ଏମାନେ ଛଦ୍ମବେଶୀ ଚୋର, ଏକ ସୁସଙ୍ଗଠିତ ଡକାୟତ ଦଳର ନାୟକ, ଏମାନଙ୍କ ବାସସ୍ଥାନ ଅନ୍ୟ ପ୍ରଦେଶରେ । ସୁଦୂର ସହରକୁ ଆସି ଏମାନେ ଅନେକ ଅପ୍ରାଧ, ଅପକର୍ମ, ଚୋରି, ନାରୀ ଅପହରଣ, ଡକାୟତି ଆଦି ଅନେକ ଅସାମାଜିକ କାମ କରୁଛନ୍ତି । ଏମାନେ ସମାଜର ଶତ୍ରୁ । ଏମାନଙ୍କୁ କଠୋର ଦଣ୍ଡ ଦେଇ ସମାଜକୁ କଳଙ୍କମୁକ୍ତ କରନ୍ତୁ । ବିନା ବିଳମ୍ବରେ ଦୋଷୀ ସମୁଚିତ ଦଣ୍ଡ ପାଉ— ଏହା ହିଁ ନ୍ୟାୟାଳୟରେ ନିବେଦନ ।

ଅଇନର ନାଗଫାଶରେ ଦେବକାନ୍ତ ବନ୍ଦି ହୋଇ ପଡ଼ିଥିଲା ।

ବିଚାରପତି ପରିଶେଷରେ ଅଭିଯୁକ୍ତ ଆସାମୀକୁ ଲକ୍ଷ୍ୟକରି ମତପୋଷଣ କଲେ—ତମ ନିର୍ଦ୍ଦୋଷତା ପ୍ରମାଣ କରିବା ପାଇଁ ବଚନ ଛଡ଼ା



Digitized by PPRACHIN, SOA

ଅନ୍ୟ କିଛି ପ୍ରମାଣ ତମ ପାଖେ ନାହିଁ । ଉପସ୍ଥାପିତ ତଥ୍ୟ ଗୁଡ଼ିକ ସବୁ ତମ ବିରୁଦ୍ଧରେ ଯାଉଛି । ତମେ ଚୋର ବୋଲି ପୋଲିସର ଯଥେଷ୍ଟ ପ୍ରମାଣ ଅଛି । ପ୍ରଥମେ ତମେ ସେମାନଙ୍କ ସହିତ ଲଢିଥିଲ । ଦୁଇଜଣ କର୍ତ୍ତବ୍ୟରତ ପୋଲିସ କର୍ମଚାରୀଙ୍କ ମୁହଁରେ ତମେ ଶକ୍ତାଘାତ କରିଛ ବୋଲି ଡାକ୍ତରୀ ରିପୋର୍ଟରୁ ସ୍ପଷ୍ଟ ପ୍ରମାଣିତ । ପୋଲିସ ସଙ୍ଗେ ଲଢିବା ଭଦ୍ରଲୋକର ସ୍ୱଭାବ ନୁହେଁ । ଏଥିରୁ ତୁମର ଚୌର ପ୍ରକୃତି ପରିଷ୍କାର ଭାବେ ସୂଚିତ । ତମ ବେଶଭୂଷା, ଆଉ ରୂପ, ରଙ୍ଗର ପରିବର୍ତ୍ତନ ପାଇଁ ମୁହଁରେ କଳା ବୋଳିଥିଲ । ଏହା ଚୌର ପ୍ରବୃତ୍ତିର ଲକ୍ଷଣ । ତୁମେ ପରିଧାନ କରିଥିବା ଜାମା ପକେଟରୁ ଅପହୃତ ଅଳଙ୍କାରର କିଛି ଅଂଶ ମିଳିଥିଲ । ଶ୍ରାବଣୀ ନାମ୍ନୀ ସ୍ତ୍ରୀ ଲୋକର ଜମନବନ୍ଦୀରେ ବର୍ଣ୍ଣିତ ଥିବା ସ୍ୱାମୀ ନାମ ଏବଂ ଠିକଣା ତମ କଥା ସହିତ ମେଳ ଖାଉନାହିଁ । ବରଂ ଏଥିରୁ ମିଛ ପ୍ରମାଣିତ ହେଉଛି । ମିଛ କହିବା ହିଁ ଚୋରମାନଙ୍କ ଆଦତ୍ । ପୋଲିସ ତଥ୍ୟରେ ଅଛି ବହୁ ସତ୍ୟତା । ଏସବୁ କାରଣରୁ ତମେ ଦୋଷୀ ବୋଲି ସ୍ପଷ୍ଟ ପ୍ରମାଣିତ ।

ଅଦାଲତର ଘୋଷଣା – ଦୁଇବର୍ଷ ସଶ୍ରମ କାରାଦଣ୍ଡ ।

ଦେବକାନ୍ତର ମୁଣ୍ଡ ଉପରେ ଆକାଶଟା ଯେମିତି ଛିଡ଼ି ପଡ଼ିଲ । ଦୁଇବର୍ଷ କାରାଦଣ୍ଡ ! ଗତ ଦୁଇମାସ ସମୟ ତାକୁ ଦୁଇବର୍ଷ ପରି ଲାଗୁଛି । ଶ୍ରାବଣୀକୁ ଛାଡ଼ି ସେ ଏତେଦିନ କିପରି ବଞ୍ଚିବ ? ଆଇନ୍ ଆଖିରେ ସେ ଅପରାଧୀ, ଦାଗୀ, ଚୋର, ଡାକୁ । ପ୍ରମାଣ ନଥାଇ ଅପରାଧ କଲେ ଭଦ୍ରଲୋକ; ଭଦ୍ରଲୋକ ହୋଇ ଭଦ୍ରତା ପ୍ରମାଣ କରି ନପାରିଲେ ମଣିଷ ହୋଇଯାଏ ଅପରାଧୀ – ଆଇନର ଏକି ଅଦ୍ଭୁତ ବିଚାର ? କଚେରୀର କାଠଧଡ଼ା ଭିତରେ ଦେବକାନ୍ତ ମୁଣ୍ଡ ପିଟୁଥିଲ ।

କାନୁନ୍‌କୁ ଦୋଷ ଦେଇ କିଛି ଲାଭନାହିଁ । ଏହା ଅଦାଲତ ଦ୍ୱାରା ଦଣ୍ଡ ବିଧାନ ନୁହେଁ, ବିଧାତାର ରାୟ । ଭାଗ୍ୟର ବିଚାର ଥିଲ



Digitized by PPRACHIN, SOA

ତା ବିପକ୍ଷରେ । ସେ ନିରସ୍ତ୍ର, ନିରୁପାୟ । ଭଗ୍ୟ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ ପରାକ୍ରମଶାଳୀ ନେପୋଲିୟନ । କିନ୍ତୁ ମୃତ୍ୟୁ ଶଯ୍ୟାରେ ସ୍ୱୀକାର କରିଥିଲେ – ଭଗ୍ୟଠୁଁ ବଳି ଶକ୍ତିଶାଳୀ ଆଉ କେହି ନାହିଁ ଏ ବିଶ୍ୱରେ । ଭଗ୍ୟମ୍ ଫଳତି ସର୍ବତ୍ରମ୍ ।

ଅନିବାର୍ଯ୍ୟତାର ବଶ୍ୟତା ସ୍ୱୀକାର କରିବା ଛଡ଼ା ଅନ୍ୟ ଉପାୟ ନଥିଲା ଦେବକାନ୍ତର । ମୁଣ୍ଡପାତି ଭଗ୍ୟର ଉତ୍ପୀଡ଼ନକୁ ସହିବା ହିଁ ବଞ୍ଚିବାର ମନ୍ତ୍ର । କାତରରେ ଭଙ୍ଗି ପଡ଼ିବା ଭୀରୁତା, କାପୁରୁଷତା । ସେ ସବୁ କିଛି ସହିବ କେବଳ ଶ୍ରାବଣୀ ଆଶାରେ । ●●●

ଭୋର ବେଳ । ଅନ୍ଧକାର ସମ୍ପୂର୍ଣ୍ଣ ଅପସରି ନାହିଁ । ପୂର୍ବାକାଶ ସିନ୍ଦୂର ବୋଳି ହୋଇ ସୂର୍ଯ୍ୟଦେବଙ୍କୁ ସମ୍ବର୍ଦ୍ଧନା ସ୍ୱାଗତ ଜଣାଉଥିଲା । ଦିବସର ଉଜ୍ଜ୍ୱଳତା କ୍ରମଶଃ ବର୍ଦ୍ଧିବାର ସୂଚନା ଦେଉଥିଲା । ଗଙ୍ଗାକୂଳର ଗୋଟାଏ ଛୋଟ ଗଛମୂଳେ ନିରୋଳା ପରିବେଶରେ ଶ୍ରାବଣୀ ବସି ବାହୁନୁଥିଲା । ଅସ୍ପଷ୍ଟ ଥିଲା ତା'ର ମର୍ମଭଷା ।

ହାତଟଣା ରିକ୍ସାବାହକଟିଏ ସେଇ ବାଟଦେଇ ଗଙ୍ଗାଘାଟକୁ ଯାଉଥିଲା । ରିକ୍ସାରେ ତା'ର ଧରବନ୍ଧା ମାଲିକାଣୀ । ସବୁଦିନ ଠିକ୍ ଏତିକିବେଳେ ଗୃହେଲୀଗଣୀ ଗଙ୍ଗାସ୍ନାନ କରେ, ସୂର୍ଯ୍ୟୋଦୟ ପୂର୍ବରୁ ବସା ବାହୁଡ଼େ । ତରୁଣୀର କ୍ରନ୍ଦନ ସ୍ୱର ତା'ର କାନ ସ୍ପର୍ଶକଲା । ଝିଅଟିଏ, ଯୁବତୀ । ଅସମୟରେ ଏଠି ବସି କାନ୍ଦୁଛି କାହିଁକି ? ଧର୍ଷିତା ନା କର୍ଷିତା ?



Digitized by PPRACHIN, SOA

ନାରୀର ହାନିମାନିଆ ଜୀବନ ସମ୍ବନ୍ଧରେ ଗୁମେଲୀ ଗଣୀର ବହୁ ଅଭିଜ୍ଞତା । ନାରୀ ହୃଦୟର ଗୋପନ ଭଷାକୁ ସେ ତିଳେ ତିଳେ ଅଧ୍ୟୟନ କରିଛନ୍ତି । ନାରୀ-ରୂପ-ଲୋଭୀ ପୁରୁଷ ପୁଙ୍ଗବମାନଙ୍କ ଗୁରିତ୍ରିକ ସ୍ଖଳନ ସେ ଭଲଭବେ ଜାଣିଛି, ମର୍ମେ ମର୍ମେ ଅଙ୍ଗେ ନିଭେଇଛି । ତା'ର ଯୌବନକାଳ କେବଳ ନିଜ ଅଙ୍ଗନିଭ ଦୁଃଖର କାହାଣୀ ପେଡ଼ିଟିଏ କହିଲେ ଭୁଲ୍ ହେବନି ।

ଦିନଥିଲା, ଗୁମେଲୀ ଗଣୀ ଅତି ଗେଲବସର ଭିତରେ ବାପ ମା'ଙ୍କ କୋଳରେ ବଢ଼ିଥିଲା । ଘର ସୁଦୂର ଉତ୍ତର ପ୍ରଦେଶରେ– ସଜ୍ଜନାଗଡ଼ । ଗାଁ ନୁହେଁକି ଟାଉନ ନୁହେଁ, ଉଭୟର ଏକ ମଧ୍ୟାଞ୍ଚଳ– ଛୋଟ ରେଲଷ୍ଟେସନଟିଏ । ବାପା ସଜ୍ଜନାଗଡ଼ ଜମିଦାରଙ୍କ ଗୁମାସ୍ତା ଥିଲେ । ଜମିଦାର ବୀରବିକ୍ରମଦେବ ସଜ୍ଜନାଗଡ଼ରେ ରହୁ ନ ଥିଲେ । ଆଗ୍ରାରେ ତାଙ୍କର କୋଠି ।

ଦେଶ ସ୍ୱାଧୀନ ହେବା ପରେ ଜମିଦାରୀ ଉଚ୍ଛେଦ ଆଇନ ବଳବତ୍ତର ହୋଇଥିଲେ ମଧ୍ୟ ବିଭିନ୍ନ କାରସାଦି କରି ବୀରବିକ୍ରମ ବଜାୟ ରଖିଥିଲେ ତାଙ୍କର ସ୍ଥିତି । ସମୟର ଗତିସଙ୍ଗେ ତାଳ ଦେଇ ଆଗ୍ରା ସହରରେ ମେଲିଥିଲେ ବହୁ ବ୍ୟବସାୟ, ଶିକ୍ଷାନୁଷ୍ଠାନ । ମଝିରେ ମଝିରେ ସଜ୍ଜନାଗଡ଼ ଆସନ୍ତି, କିଛିଦିନ ଅବସ୍ଥାନ କରନ୍ତି । ସହରର ଜଟିଳତା ଏଠି ନ ଥାଏ– ଶାନ୍ତ ପରିବେଶ । ବୃଦ୍ଧ ବୟସରେ ବି ଏଠି ଜୀବନ ଉପଭୋଗ୍ୟ । ସୁରା, ସାକୀରେ ମତ୍ତ ହୁଅନ୍ତି ସଭିଏଁ । ନବୋଦିତ ତରୁଣୀମାନଙ୍କ ସହିତ ପ୍ରେମଲୀଳା, ଯୌନକ୍ରୀଡ଼ାରେ ମାତି ରହନ୍ତି । ଉଦ୍‌ବୃତ୍ତ ଅର୍ଥ କିଛି ଶ୍ରାଦ୍ଧହୁଏ । ଗୁମାସ୍ତା ସ୍ତଭକର ମାଲିକର ମନ କିଣିଥାଏ, ଚିତ୍ତ ଜିଣିଥାଏ । ପ୍ରଭୁଙ୍କ ମନ ଜାଣି ସବୁ ଜିନିଷର ବନ୍ଦୋବସ୍ତ କରିଥାଏ ଆଗରୁ । ମାଲିକ କାହିଁରେ ଖୁସି, ପ୍ରଭୁଭକ୍ତ ପ୍ରଭକରକୁହିଁ ତାହା ଭଲଭବେ ଜଣା । ମାଲିକ ଅତ୍ୟଧିକ ମତ୍ତ ହୋଇ ମୂର୍ଚ୍ଛା ଗଲେ, ପ୍ରଭକର ଶୁଶ୍ରୁଷା କରିଥାଏ । ବିବସ୍ତ୍ର ଶରୀରକୁ ବସ୍ତ୍ରାଭରଣ କରିଥାଏ । ବିଷ କାଟିବା ପାଇଁ କାଗେଜି ଲେମ୍ବୁ, ତେନ୍ତୁଳି ପାଣି, ଲିକର ଗୁ' ଆଦିର



Digitized by PPRACHIN, SOA

ପ୍ରଯୋଗ ମଧ୍ୟ ଭଲଭାବେ ଜଣାଥାଏ ତାକୁ । ମାଲିକର ମନନେଇ କାମକରିବା ତା'ର ଧର୍ମ । ଅନ୍ନଦାତାଙ୍କ ପାଖେ ପାପପୁଣ୍ୟର ବିଗ୍ଭର ବାଛିବା ଭୃତ୍ୟର ଅଧର୍ମ । ସେଥିପାଇଁ ପ୍ରଭାକର ହୋଇଥାଏ ପ୍ରଭୁର ପରମ ବିଶ୍ୱସ୍ତ । ମାଲିକର ଲୁଣ ଖାଏ ବୋଲି ତା'ର ଶତ ଖୁଣ ଥିଲେ ମଧ୍ୟ ପ୍ରଭାକର ଗୁଣ ଗାଇବାକୁ ପଶ୍ଚାତ୍‌ପଦ ହୁଏନି ।

ଏଠି ଜମିବାଡ଼ିର ହାଲଗ୍ଭଲ ପ୍ରଭାକର ଉପରେ ନ୍ୟସ୍ତ । ସଜନାଗଡ଼ ଜମିଦାରୀରେ ପ୍ରଭାକରର ଅଖଣ୍ଡ ଆଧିପତ୍ୟ । ତେଣୁ ପ୍ରଭାକର ଥିଲା ଅର୍ଥରେ ସ୍ୱଚ୍ଛଳ । କ୍ଷୁଦ୍ର ପରିବାରଟି ବେଶ୍ ଆରାମ ଆନନ୍ଦରେ ଚଳୁଥିଲା । ଗୋଟିଏ ବୋଲି କନ୍ୟା – ଗ୍ଭମେଲୀ । ଖେଳବସରରେ ବଢୁଥିଲା, ଐଶ୍ୱର୍ଯ୍ୟ ପ୍ରାଚୁର୍ଯ୍ୟ ଭିତରେ ସମୟାତିବାହିତ କରୁଥିଲା । ପାଠ ପଢ଼ଥିଲା ସଜନାଗଡ଼ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ।

ବୀରବିକ୍ରମଙ୍କ ଡାକରା ପାଇ ପ୍ରଭାକର ଦିନେ ଆଗ୍ରା ଯାଇଥିଲା । ଦୁର୍ଭାଗ୍ୟ ଯେ ରେଳ ଦୁର୍ଘଟଣାରେ ତା'ର ପ୍ରାଣନାଶ ହେଲା । ମୃତ ପ୍ରଭାକରର ସେବାବୃତ୍ତିର ପୁରସ୍କାର ସ୍ୱରୂପ ବୀରବିକ୍ରମ ତାର ବିଧବା ପତ୍ନୀ ଏବଂ ପିତୃହରା କନ୍ୟା ପାଇଁ ସଜନାଗଡ଼ ଉଆସ ହତା ଭିତରେ ସ୍ଥାନଟିଏ ଦେଲେ । ସେମାନଙ୍କ ପାଇଁ ମାସିକ ଭତ୍ତା ମଧ୍ୟ ଧାର୍ଯ୍ୟ ଦେଲେ ।

ଏମିତି ଥରେ ବୀରବିକ୍ରମ ସଜନାଗଡ଼ ଉଆସରେ ଅବସ୍ଥାନ କରିଥାନ୍ତି । ଗର୍ଭିର ଅର୍ଦ୍ଧଭାଗ ଆଡ଼କୁ ତାଙ୍କ ଚରିତ୍ର–ରୋଗ ଜାଗରିତ ହେଲା । ଦେହରେ ଉନ୍ମାଦନା । ସୁରାଗ୍ରସ୍ତ ଶରୀର । ଯୌନକଣ୍ଡୁ ଅଥୟ କଲାଣି ଦେହକୁ, ଉତ୍ତେଜିତ କଲାଣି ମନକୁ । ପ୍ରଭାକର ଆଉ ନାହିଁ । ସେବା କରିବ କିଏ ? ମନ ଜାଣି ଯୋଗାଇ ଦେବ କିଏ ?

ବୀରବିକ୍ରମ ବାହାରକୁ ଆସିଲେ । ଶୀତରାତି କିଟିମିଟିଆ ଅନ୍ଧାର । ପ୍ରକାଣ୍ଡ ହତା ଭିତରେ ଆମ୍ବ, କଦଳୀ, ପଣସ ଗଛର ଗହଳ ବଣ । ରାତିରେ ପକ୍ଷୀ କେତୋଟି ରହି ରହି ରାବୁଥାନ୍ତି । ଖୁବ୍



Digitized by PPRACHIN, SOA

ନିକଟରେ ରହୁଛି ପ୍ରଭାକରର ରୂପସୀ ରସବତୀ କନ୍ୟା – ଛନ ଛନ ହରିଣୀଟିଏ । ଆଗରୁ ତା ଉପରେ ଦୃଷ୍ଟି ପଡ଼ିଥିଲେ ମଧ୍ୟ ବିଶ୍ୱାସ ପାତ୍ରରେ ବିଷ ଢାଳିବାକୁ ମନ କରି ନ ଥିଲେ ବୀରବିକ୍ରମ । କିନ୍ତୁ ଏବେ ମନକୁ କବଳିତ କଲାଣି ତାଙ୍କ ନିଶା । କ୍ରମଶଃ ଯୌନକ୍ଷୁଧା ତାଙ୍କୁ ଅତିଷ୍ଠ କଲାଣି । ସେ ଆଉ ନିଜକୁ ଆୟତ୍ତ କରିପାରି ନ ଥିଲେ । ଉପସ୍ଥିତ ହେଲେ ଯାଇ ଶରଣାର୍ଥୀର ଦ୍ୱାରଦେଶରେ । ସେ ବର୍ତ୍ତମାନ ନିଜେ ଶରଣପ୍ରାର୍ଥୀ ।

କବାଟରେ ଖଡ୍ ଖଡ୍ ଶବ୍ଦ ।

ବିଧବା ମା ବିଛଣାରେ ରହି କହିଲା – କିଏ ଡାକୁଛ ଏତେ ରାତିରେ ?

: ମୁଁ ମାଲିକ । ଗମ୍ଭୀର ସ୍ୱରରେ ଉତ୍ତର ଦେଲେ ବୀରବିକ୍ରମ ।

ରୂମେଲୀ ମା' ଶ୍ୱାସରୋଗୀ । ରୋଗ ଉପଶମ ନ ହେବାରୁ କିଛିଦିନ ହେଲା ଦେଶୀ ଚିକିତ୍ସା ଧରିଥିଲା । ରାତିରେ ସାମାନ୍ୟ ଅଫିମ ଆହାର କରି ବିଛଣା ଧରୁଥିଲା । ଶୀତ ରାତିରେ ବିଛଣାରୁ ଉଠିବା ସମ୍ଭବ ନଥିଲା ।

ଅବେଳରେ ମାଲିକର ଡାକ । କେବେ ଏମିତି ଆସନ୍ତିନି । କିଛି ଗୋଟାଏ ଅସୁବିଧା ହୋଇଛି ନିଶ୍ଚୟ । ଦେହ ପା କିଛି ଅସୁବିଧା ହୋଇନି ତ ! ସେବାକାରୀ ତ ସ୍ୱର୍ଗ ଗଲେ । ମାଲିକ ଲୁଣରେ ବଞ୍ଚୁଚନ୍ତି ସେବକାରୀର ପିଲାମାନେ । ବ୍ୟସ୍ତ ହୋଇ ପଡ଼ିଲା । ରୂମେଲୀର ମା । ଉଠିବାର ଉପକ୍ରମ କଲା ବିଛଣାରୁ । ନ ଉଠି ପାରି ଡାକିଲା – ରୂମି, ମୋ ସୁନା ରୂମି । ଉଠୁ । କବାଟ ଖୋଲ । ମହାପ୍ରଭୁ ଡାକୁଛନ୍ତି । ତାଙ୍କ କଥାଟିକେ ବୁଝିଆସ । ସେତ ଆମର ଭଗବାନ ।

ରୂମେଲୀର ନିଦ ଭାଙ୍ଗି ଗଲା । ଆଖି ମଳି ମଳି ଉଠିଲା । ମନରେ ଛନକା । ମାଲିକ ସମ୍ମୁଖରେ ଠିଆ ହୋଇଛନ୍ତି । ରୂମେଲୀ



Digitized by PPRACHIN, SOA

ଲେଢେଇଲା । ମାଲିକଙ୍କୁ କେବେ ସାମ୍ନା କରିନି । ମାଲିକ ନିଜ ପାଟିକୁ ଶାଲ ଗ୍ରଦରରେ ଘୋଡ଼ାଇ ରଖି ଚୁପ୍ ଚୁପ୍ କହିଲେ – ମୁଣ୍ଡ ଭୀଷଣ ବିନ୍ଧୁଛି...... ।

ମା'ର ନିର୍ଦ୍ଦେଶ ମତେ ଗ୍ରମେଲୀ ମାଲିକଙ୍କ ପଛେ ପଛେ ଗଲା । ବୀରବିକ୍ରମଙ୍କ ପ୍ରଶସ୍ତ କୋଠରୀ । ଟେବୁଲ ଉପରେ ଲ୍ୟାମ୍ପଟି ଉଜ୍ଜ୍ୱଳ ଆଲୋକ ପ୍ରଦାନ କରୁଥିଲା । କୋଠରୀ ଭିତରକୁ ପ୍ରବେଶ କରନ୍ତେ ବୀରବିକ୍ରମ ଧଡ଼୍‌କିନି କବାଟ ବନ୍ଦ କରିଦେଲେ । ଗ୍ରମେଲୀ ଚମକି ପଡ଼ିଲା । ବୀରବିକ୍ରମ ଦେହରେ ଶାଲ୍‌ଟିଏ ଘୋଡ଼ି ହୋଇଥିଲେ । ଶାଲ୍‌ଟି ଦେହରୁ ଦୂରକଲା ମାତ୍ରେ, ଫୁଙ୍ଗୁଳା ଛାତି ଏବଂ ବଳିଷ୍ଠ ମାଂସପେଶୀ ଉଦ୍ଭଟ ଦିଶିଲା । ତତ୍‌କ୍ଷଣାତ୍ ପାଇଜାମାଟି ମଧ୍ୟ ଉତାରି ଦେଲେ । କେବଳ ରହିଲା ଜଙ୍ଘିଆ । କାନ୍ଥରେ ଝୁଲୁଥିଲା ଯୌନୋଦ୍ଦୀପକ ଉଲଗ୍ନ ଛବି । କେତୋଟି ମଦ ବୋତଲ ଟିପଏ ଉପରେ ଛିଡ଼ା ହୋଇଥିଲେ । କେଇ ଢୋକ ମୁହଁ ଲଗାଇ ବୀରବିକ୍ରମ ପିଇଗଲେ । ମଦୋଦ୍ଭଟ ଗନ୍ଧ ବ୍ୟାପିଥିଲା ଘରର ବାୟୁମଣ୍ଡଳରେ ।

ଗ୍ରମେଲୀ ମନରେ ଶଙ୍କା ପଶିଲା, ସେ ପ୍ରମାଦ ଗଣିଲା । ମାଲିକ ମାତାଲ, କ'ଣ ବୋଲି କ'ଣ କରିବସିବ । ସତକୁ ସତ ଚିଲ ଝାମ୍ପ ମାରିଲା ଭଳି ସେ ତରୁଣୀ ଗ୍ରମେଲୀକୁ ଝାମ୍ପି ନେଲେ । ତାକୁ କରିଦେଲେ ସମ୍ପୂର୍ଣ୍ଣ ଉଲଗ୍ନ । କଅଁଳ ଲତା ଡେମ୍ଫ ମେଲୁଛି । ଛାତି ଭିତରକୁ ଟାଣି ଆଣି ଗ୍ରପିଧରିଲେ, କୋମଳ ତରୁଣୀର ମାଂସକୁ କଠିନ ହାତରେ ନିର୍ମମ ଭାବେ ଦଳିଲେ । ଦଳି ମକଚି ଆଘ୍ରାଣ କଲେ ଫୁଲର ବାସ୍ନା । ଗ୍ରମେଲୀ ଚିତ୍କାର କଲା, ନେହୁରା ହେଲା, ମିନତି କଲା – ମୁଁ ତୁମର ଝିଅ ସମାନ ପ୍ରଭୁ, ମୋର ପବିତ୍ରତା ନଷ୍ଟ କରନି । ତମେ ଆମର ଅନ୍ନଦାତା, ଦୟାଦାତା, ଆଶାଦାତା, ପିତୃତୁଲ୍ୟ......

ମୋଟା ହସଟିଏ ହସି କହିଥିଲେ ବୀରବିକ୍ରମ – ବିନା ଉଦ୍ଦେଶ୍ୟରେ କିଏ କ'ଣ ଆଶା ଦିଏ ? ଭଗବାନ ମଧ୍ୟ ଭକ୍ତମାନଙ୍କଠୁ ଭକ୍ତି ଆଶା କରନ୍ତି ।



Digitized by PPRACHIN, SOA

ମଣିଷକୁ ଯେତେବେଳେ ପଶୁ ଆଚରଣ ଆକ୍ରମଣ କରିବସେ, ସେତେବେଳେ ସେ ଜ୍ଞାନ ହରାଏ; ବନିଯାଏ ରାକ୍ଷସ, ସଇତାନ, ପଶୁ । ରାମେଲୀର ସବୁ ନିବେଦନ ବ୍ୟର୍ଥ ହୋଇଥିଲା । ଆବଦ୍ଧ କୋଠରୀରେ ତା'ର ଚିତ୍କାର ଅରଣ୍ୟ ରୋଦନ ଭଳି ନିଷ୍ଫଳ ହୋଇଥିଲା । ପ୍ରଚଣ୍ଡ ଧମକରେ ରାମେଲୀ ମୂର୍ଚ୍ଛାପ୍ରାୟ ହୋଇଥିଲା । ତାର କ୍ଷୀଣ ତନୁ ଉପରେ ଲେଟି ପଡ଼ିଲା ବୀରବିକ୍ରମଙ୍କ ବିଶାଳ ବପୁ । ନିର୍ଦ୍ଦୟ ଭାବେ ଦଂଶନ କଲେ ତାର ରୂପାଙ୍ଗକୁ । ଫୁଟନ୍ତା ଫୁଲଟିକୁ ନିଷ୍ପ୍ରାଣ କଲା ଭଳି କୁମାରୀ ଜୀବନର ସମ୍ପଦଟିକୁ ବୀରବିକ୍ରମ ଧ୍ୱସ୍ତବିଧ୍ୱସ୍ତ କରିଦେଇଥିଲେ । ନିଆଁ ଲିଭିଲା ପରେ ରହିଥିଲା କେବଳ ପାଉଁଶ ଗଦାଟିଏ ।

ପାହାନ୍ତା ବେଳକୁ ଅଙ୍ଗାର ମୁହଁ ନେଇ ରାମେଲୀ ଫେରିଥିଲା ରୋଗଗ୍ରସ୍ତା ମା' କୋଳକୁ । ମାଲିକ ଆଉ ତା'ର କିଛି ରଖିନାହାନ୍ତି । ତା କୁମାରୀ ଜୀବନର ମୂଲ୍ୟବାନ ସମ୍ପଦଟିକୁ ଅତି ନିଷ୍ଠୁର ଭାବେ ସେ ଅପହରଣ କରି ନେଇଛନ୍ତି, ଯାହା ଏ ଜୀବନରେ ଆଉ କେବେ ହେଲେ ଫେରସ୍ତ ଆସିବନି । ରକ୍ଷକ ଭକ୍ଷକ ସାଜିଛି ।

କିଛିଦିନ ଅନ୍ତେ ରାମେଲୀ ମା' ଝିଅର ଦୁର୍ଦ୍ଦଶା ଚିନ୍ତା କରି କରି ସ୍ୱର୍ଗବାସୀ ହେଲା । ରାମେଲୀ ସ୍ଥାନାନ୍ତରିତ ହେଲା ଆଗ୍ରା ଉଆସକୁ । ବୀରବିକ୍ରମଦେବଙ୍କର ସେ ହୋଇଥିଲା ଖେଳ ସାମଗ୍ରୀ । ଏପରିକି ବୀରବିକ୍ରମଙ୍କର ଉଚ୍ଚପଦଧାରୀ ବନ୍ଧୁ, ପଦସ୍ଥ ସରକାରୀ କର୍ମଚାରୀ ଆଦିଙ୍କୁ ଆପ୍ୟାୟିତ କରିବା ପାଇଁ ରାମେଲୀ ବ୍ୟବହୃତ ହେଉଥିଲା । ରାମେଲୀ ହୋଇଥିଲା ସମ୍ଭ୍ରାନ୍ତମାନଙ୍କ ଗଣଭୋଗ୍ୟା । ସେଥିରେ ଥାଏ ବୀରବିକ୍ରମଙ୍କର ବ୍ୟବସାୟିକ ସ୍ୱାର୍ଥସିଦ୍ଧି, ବେପାର ବଣିଜରେ ଅର୍ଥଲାଳସା, ଅନେକ ଫାଇଦା ।

କିଛିଦିନ ଅନ୍ତେ ବୀରବିକ୍ରମଦେବ ହୃଦ୍‌ରୋଗରେ ହଠାତ୍ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କଲେ । ଉତ୍ତରାଧିକାରୀ ସୂତ୍ରରେ ଶ୍ରୀଚରଣ ଦେବ ପିତାଙ୍କ ଜମିଦାରୀ ଏବଂ ବିରାଟ ବ୍ୟବସାୟ ଅନୁଷ୍ଠାନ ଗୁଡ଼ିକର ଦାୟିତ୍ୱ ଗ୍ରହଣ କଲେ । ସେ ମଧ୍ୟ ପିତାଙ୍କ ପଦାନୁସରଣ କରିଥିଲେ ।



Digitized by PPRACHIN, SOA

ବଂଶାନୁଗତ ଚରିତ୍ର ପୁତ୍ରଠାରେ ସ୍ଥାନ ପାଇବା ଖୁବ୍ ସ୍ୱାଭାବିକ। ସୁମେଲୀ ପ୍ରତି ତାଙ୍କର ମଧ୍ୟ ବିଶେଷ ଆକର୍ଷଣ ରହିଥିଲା।

ଯେଉଁ ପାତ୍ରରେ ପିତା ବିଷ ଢାଳିଛି, ବର୍ତ୍ତମାନ ପୁତ୍ର ନିଃସଙ୍କୋଚରେ ପାନ କରୁଛି। ପୈଶାଚିକ ମନୋବୃତ୍ତିରେ ଭଲମନ୍ଦ, ପାପପୁଣ୍ୟର ବିଚାର ନ ଥାଏ, ଥାଏ କେବଳ ଆସୁରିକ ଯୌନତୃପ୍ତି, ପଶୁପ୍ରବୃତ୍ତି। ଏଥର ନିର୍ବିରୋଧରେ ସୁମେଳୀ ରଣୀକୁ ଯଥେଚ୍ଛା ଉପଭୋଗ କରିବାକୁ ଲାଗିଲେ ସର୍ବୋମୟ କର୍ତ୍ତା ଶ୍ରୀଚରଣଦେବ। ସୁମେଳୀର ନାମ ସହିତ ଆଉ ଏକ ପଦ 'ରଣୀ' ଯୋଗକରି ସେ ଦେବଦାସୀର ପଦମର୍ଯ୍ୟାଦା ପ୍ରଦାନ କରିଥିଲେ।

ସମୟ ଗଡ଼ୁଚେ ସୁମେଳୀରଣୀ ଅନ୍ତଃସତ୍ତ୍ୱା ହେଲେ। ଶ୍ରୀଚରଣଙ୍କ ସମ୍ମୁଖରେ ଏହା ଏକ ବିଷମ ସମସ୍ୟା ହୋଇ ଛିଡ଼ା ହେଲା। ବିଷ ଫଳ ଦାୟିତ୍ୱ କିଏ ନେବ? ସବୁ ଦୋଷ ଏବେ ସୁମେଲୀ ମୁଣ୍ଡରେ। ସେ ଦୁଶ୍ଚରିତ୍ରା, ସ୍ୱଳିତା, ବିଟପୀ ନାରୀ। ତାକୁ ଏ ସ୍ଥାନରୁ ଅନ୍ତର କର, ଏଠୁ ଦୂରକର। 'ଯେଉଁମାନେ ପ୍ରୀତି ପରାଗରେ ଭଅଁର ଭଳି ମାତିଥିଲେ, ସେଇମାନେ ହିଁ ଏଥର ନାକ ଟେକିଲେ; ଯେମିତି ସୁସ୍ୱାଦୁ, ସୁମିଷ୍ଟ ଭୋଗରେ ମାଛି ବସିଲେ ତାହା ଆହାରଯୋଗ୍ୟ ହୋଇ ନଥାଏ। ମିଠା ଖାଇ ମିଠା ଫିଙ୍ଗିବା ଲମ୍ପଟ ସୁବିଧାବାଦୀଙ୍କ କାମ। ସୁମେଲୀ ରଣୀ ଏବେ ସମାଜରେ ଘୃଣାର ପାତ୍ରୀ। ଭ୍ରୂଣ ନଷ୍ଟ କରିବାକୁ ମସୁଧା ଚାଲିଲା। ବିଷବୃକ୍ଷର ମୂଳୋତ୍ପାଟନ ପାଇଁ ଶ୍ରୀଚରଣ ତତ୍ପର ହୋଇ ଉଠିଲେ। କିନ୍ତୁ ସୁମେଳୀରଣୀ ଆଉ ସେଥିପାଇଁ ରାଜି ନଥିଲେ। ବିଷ ଫଳ ହେଲେ ମଧ୍ୟ ବୃକ୍ଷର ଆନନ୍ଦ ଅଛି, ପତିତା ହେଲେ ମଧ୍ୟ ମାତୃତ୍ୱର ଗୌରବ ଅଛି। ଜୀବନର ସବୁକିଛି ନଷ୍ଟ ଯାଇଛି, ଭ୍ରଷ୍ଟ ହୋଇଛି। ନିଜର ବୋଲି ଏ ସଂସାରରେ ତା'ର କେହି ନାହିଁ। ଅବୈଧ ସନ୍ତାନ ହେଲେ ମଧ୍ୟ ସେ ହେବ ତା ନିଜର, ଅତି ଆପଣାର। ତା ରକ୍ତରେ ଗଢ଼ା, ହା-ହୁତାଶମୟ ନାରୀତ୍ୱର ଏକ ସନ୍ତକ, ମାତୃତ୍ୱର ଏକ ଫଳକ। ନିଜ ଅଲକ୍ଷ୍ୟରେ ସେହି ଅଜଣା ଆନନ୍ଦ ଭିତରେ ବିଭୋର ହୋଇ ଉଠୁଥିଲା ସୁମେଳୀ!



Digitized by PPRACHIN, SOA

ଅଭସବ୍ଧା ଗ୍ରମେଲୀ ଜୀବନର ଏକ ଅଭୁଲା ଦିନ – ଯେଉଁଦିନ କି ସେ ତା' ମନକଥା ଶୁଣାଇବା ପାଇଁ ଦରଦୀ ବନ୍ଧୁ ଜଣକୁ ପାଇଥିଲା । ସେ ଦରଦୀ ବନ୍ଧୁ ଥିଲେ ଜଣେ ଶେଠ ମାରୱାଡ଼ି – ଓମ୍ ପ୍ରକାଶ । ବ୍ୟବସାୟ ସକାଶରେ ସେ ଆଗ୍ରା ଆସନ୍ତି । ଶ୍ରୀଚରଣଙ୍କ ସହିତ ତାଙ୍କର ବ୍ୟବସାୟିକ ସମ୍ପର୍କ ଥିଲା ଓ ସେଦିନ ସେ ତାଙ୍କର ଅତିଥି ହୁଅନ୍ତି । ଅତିଥିଶାଳାରେ ଗ୍ରମେଲୀରାଣୀଙ୍କ ସହିତ ପରିଚୟ ହୋଇଥାଏ । ତା ସହିତ ପ୍ରୀତି କରିଛନ୍ତି, ସହବାସ ମଧ୍ୟ । ଅନ୍ୟ ଆଗନ୍ତୁକମାନଙ୍କଠାରୁ ଓମ୍‌ପ୍ରକାଶଙ୍କ ପ୍ରକୃତି ଭିନ୍ନ । ବିପତ୍ନୀକ ସେ । କେବଳ ଯୌନ ଲାଳସା ନେଇ ଆସନ୍ତିନି ଗ୍ରମେଲୀରାଣୀ ପାଖକୁ । ପତ୍ନୀର ବିୟୋଗାନ୍ତକ କାହାଣୀ ବର୍ଣ୍ଣନା କରନ୍ତି ନିଃସଙ୍କୋଚରେ । ଗ୍ରମେଲୀରାଣୀର ରୂପ ସହିତ ତାଙ୍କ ମୃତ ସ୍ତ୍ରୀର ଚେହେରା ଥିଲା କିଛିଟା ସାମଞ୍ଜସ୍ୟ । କ୍ଷଣକାଳ ହେଲେ ମଧ୍ୟ ଗ୍ରମେଲୀରାଣୀକୁ ପତ୍ନୀ ଆସନରେ ବସାଇ ଦାମ୍ପତ୍ୟ ଦୁଃଖ ଉପଶମ କରିବା ପାଇଁ ସେ ଚେଷ୍ଟା କରନ୍ତି । କଲିକତାରେ ବାସକରନ୍ତି ସେ । ସେଠି ତାଙ୍କର ବହ୍ୱାଡ଼ମ୍ବର ବ୍ୟବସାୟ ପ୍ରତିଷ୍ଠାନ । ଲକ୍ଷପତି ସେ । ଗ୍ରମେଲୀରାଣୀ ତାଙ୍କ ଆଗରେ ମନକଥା ପ୍ରକାଶ କଲା ।

: ମୁଁ ଆଉ ଦୁନିଆରେ ବଞ୍ଚି ରହିବାକୁ ଗ୍ରହେଁନି ପ୍ରିୟତମ । ଏ କଳଙ୍କର ବୋଝକୁ ମୁଣ୍ଡରେ ଧରିବା ଅପେକ୍ଷା, ବରଂ ଭ୍ରୁଣ ହତ୍ୟା......

: ଭ୍ରୁଣ ହତ୍ୟା ମହାପାପ, ଏ କଥା ପାଟିରେ ଧରୁଛ ପ୍ରିୟା ?

: ତେବେ ମୋର ଉପାୟ

: ଉପାୟ ଅଛି । ଓମ୍ ପ୍ରକାଶ ଜୀବିତ । ଅନେକ ଲୋକ ତା ଅନୁଷ୍ଠାନରେ ପୋଷି ହେଉଛନ୍ତି । ରାଣୀ ଗ୍ରମେଲୀଙ୍କର ସାମାନ୍ୟ ଦାୟିତ୍ୱ ସେ ବହନ କରିବାକୁ କ'ଣ ଅକ୍ଷମ ? କୁଣ୍ଠିତ ?

ଗ୍ରମେଲୀ ଶେଠଜୀଙ୍କର ସାନ୍ତ୍ୱନା ପାଇଁ ଶାନ୍ତିରେ ନିଶ୍ୱାସ ମାରିଲା । ଦୟାଳୁ ଶେଠଙ୍କର ଦୀର୍ଘଜୀବନ କାମନା କରିଥିଲା ।

କଲିକତାସ୍ଥିତ ବିଡନ୍‌ଷ୍ଟ୍ରିଟ୍‌ରେ ଶେଠଙ୍କ ପାଞ୍ଚତାଲା ବିଶିଷ୍ଟ ପକ୍କାଘର । ତଳ ଦୁଇତାଲା ଭଡ଼ାଲାଗିଛି, ଅନ୍ୟ ମହଲା ଗୁଡ଼ିକ ଖାଲି,



Digitized by PPRACHIN, SOA

କେତେବେଳେ କେମିତି ସାମୟିକ ଭଡ଼ା ଲଗେ । ନିର୍ବିଘ୍ନରେ ଘୁମେଲୀ ଗୋଟିଏ ମହଲ ଆଦରି ରହିଲା । କିନ୍ତୁ ତା'ର ଆଶା ଫଳବତୀ ହୋଇ ନଥିଲା । ଫଳ ପାଚିବା ପୂର୍ବରୁ ବୃକ୍ଷରୁ ଝରି ପଡ଼ିଥିଲା । ଗର୍ଭପାତ ଦୁଃଖରେ ଘୁମେଲୀ ଭାଙ୍ଗି ପଡ଼ିଥିଲା । ଈଶ୍ୱର ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ କହି ଶେଠଜୀ ଆଶ୍ୱାସନା ଦେଇଥିଲେ । ଶେଠଙ୍କ କ୍ରମବର୍ଦ୍ଧିଷ୍ଣୁ ବୟସରେ ଘୁମେଲୀଗଣୀ ହୋଇଥିଲେ ଶଯ୍ୟା ସଙ୍ଗିନୀ, ଚିତ୍ତ ବିଳାସିନୀ !

ଏବେ ଏହି ବିଡନ୍‌ଷ୍ଟ୍ରିଟ୍‌ରେ ଅନେକ ପତିତା ମାନଙ୍କ ସ୍ତୁପଟିଏ ଦଣ୍ଡାୟମାନ । ବହୁ ଭାଗ୍ୟବିତାଡ଼ିତା ଦଳିତା, ସମାଜଚ୍ୟୁତା ଅଦରକାରୀ ଜୀବମାନେ ଏଠି ମୁଣ୍ଡ ଗେଞ୍ଜିଛନ୍ତି । ଆଜି ଘୁମେଲୀଗଣୀର ଯୌବନ ଅପସରି ଯାଇଛି, ହେଲେ ସେ ଅବାଞ୍ଛିତ ବନ୍ଧନରୁ ମୁକ୍ତି ପାଇ ନାହିଁ । ବାଈଜୀର ଗୁରୁ ଦାୟିତ୍ୱ ମୁଣ୍ଡରେ ବୋହିଛି । ସର୍ବହରା ଦୁର୍ବଳାମାନଙ୍କ ଦୁର୍ଗର ଦୁର୍ଗପତି ସାଜିଛି । ତା' ଦୁର୍ଗର ପ୍ରତ୍ୟେକ ଅନ୍ତେବାସିନୀ ଜଣେ ଜଣେ ଘୁମେଲୀଗଣୀ । ପ୍ରତି ମୁହୂର୍ତ୍ତରେ ସେଠି ସେ ଶୁଣୁଛି ସଂସାର ପ୍ରତି ବିତୃଷ୍ଣାର ବିଳାପ । ପ୍ରତି କ୍ଷଣରେ ଘୁମେଲୀଗଣୀ କାନରେ ଦୁର୍ଗତ ଆତ୍ମାର ଆର୍ତ୍ତନାଦ ନିନାଦିତ ।

ଏତେ ସକାଳୁ ଝିଅଟିଏ ବସି କାନ୍ଦୁଛି କାହିଁକି ? କାହିଁକି ତା'ର ଆର୍ତ୍ତସ୍ୱର ? ରିକ୍‌ସାଚାଳକକୁ ଘୁମେଲୀଗଣୀ ନିର୍ଦ୍ଦେଶଦେଲେ ରିକ୍‌ସା ରଖ ।

: କ'ଣ ହୋଇଛି କି ମା ତୋର ? ନିର୍ଜନରେ ବସି କାନ୍ଦୁଛୁ କାହିଁକି ?

କିଛି ଉତ୍ତର ପାଇ ନଥିଲା । ଘୁମେଲୀ ବେଶଭୂଷାରୁ ଅନୁମାନ ହେଉଛି– ମଧ୍ୟବିତ୍ତ ପରିବାରର ମହିଳାଟିଏ । ମୁଣ୍ଡରେ ସିନ୍ଦୂର ଟୋପାର ଅସ୍ପଷ୍ଟ ଚିହ୍ନରୁ ବିବାହର ସଙ୍କେତ ଘୋଷିତ ହେଉଥିଲା । ହଠାତ୍ କାହିଁକି ଘୁମେଲୀଗଣୀଙ୍କ ମନେ ପଡ଼ିଲା ତାଙ୍କ ଗର୍ଭପାତ ଘଟଣା । କନ୍ୟାଟିଏ ହୋଇଥିଲେ ଯାରି ବୟସର ହୁଅନ୍ତାଣି । ମନରେ ଜାଗିଲା ବାତ୍ସଲ୍ୟଭାବ । ଏମିତି ଅନେକ ଝିଅ, ସ୍ତ୍ରୀ ତା ଆଡ଼୍‌ଡାକୁ ଆସୁଛନ୍ତି ମଧ୍ୟସ୍ଥି ଦଲାଲମାନଙ୍କ ମାଧ୍ୟମରେ । କିନ୍ତୁ କାହାପ୍ରତି ମମତା ଜାତ ହୋଇନାହିଁ । ସମସ୍ତେ



Digitized by PPRACHIN, SOA

ଆସୁଛନ୍ତି ଜୀବିକାର୍ଜନର ଅନ୍ତିମ ଉପାୟ ଆଶାରେ । କିନ୍ତୁ ଏ ଝିଅଟି ଗଙ୍ଗାକୂଳରେ କାହିଁକି କାନ୍ଦୁଛି ? ଗୋଟାଏ କିଛି ଘଟଣା ଘଟିଛି ନିଶ୍ଚୟ । ଏଠି ଗଙ୍ଗାର ଗହୀରିଆ ଗଣ୍ଡ । ଆଃ, ତା' ଆଖି ଆଗରେ କାହାର ଜୀବନ ଶେଷ କରିବାକୁ ଦେବନି । ଗ୍ରମେଲୀଗଣୀ ଶଙ୍କିତ ଏବଂ ସ୍ନେହାର୍ଦ୍ର ଗଳାରେ କହିଲ— ନାରୀ ଜୀବନତ ନରକ ସମାନ ଲୋ ଝିଅ ! ମାଟିପରି ତା' ଜୀବନ । ମାଟି ସମସ୍ତଙ୍କ ଅତ୍ୟାଗ୍ରର ସହେ, ତଥାପି ବାଛ ବିଗ୍ରର ନକରି ସମସ୍ତଙ୍କୁ ଫଳଦିଏ । ତା' ସହନଶୀଳତାରେ ତିଷ୍ଠି ରହେ ଏ ଜଗତ ବଞ୍ଚିରହେ ସୃଷ୍ଟି । କର୍ଷଣ ତା'ର କପାଳ ଲିଖନ । ଆଉ ଦୁଃଖକରି ଲଭନାହିଁ । ଉଠ ମା, ଏଥର ଉଠ । ତୁ ତ ମୋ ଝିଅପରି । ମୋ ଝିଅ ହେବୁ ନା ?

ମଧ୍ୟାତୀତ ବୟସର ଗୌରବର୍ଣ୍ଣା ସୁନ୍ଦରୀ ମହିଳା ଜଣେ । ପାନାହାରୀ, ମୁହଁରେ ମିଠା ବୋଲା କଥା ସ୍ନେହ ବୋଳା ସ୍ୱର । ଭଷାରୁ ହୃଦୟବତୀ ପରି ମନେ ହେଉଛି । କେତେଦିନ ହେଲ ଏମିତି ମିଠାଭଷା ଶୁଣି ନଥିଲ ଶ୍ରାବଣୀ । କାନକୁ ମଧୁର ଲଗିଲ । ହାତ ମେଲେଇ ଡ଼ାକୁଛନ୍ତି କୋଳକୁ । ମା' କୋଳ କେଡ଼େ ନିର୍ମଳ କେଡ଼େ ପବିତ୍ର ସତେ !

ହାତ ଧରି ଶ୍ରାବଣୀକୁ ଉଠେଇ ଆଣିଲ ଗ୍ରମେଲୀ ଗଣୀ । ମୁଣ୍ଡ ବାଳକୁ ଆଉଁସି ଦେଲ, ଆଖିରୁ ଅଶ୍ରୁ ପୋଛି ଦେଲ । ଗଙ୍ଗା ସ୍ନାନ କରି ଉଭୟେ ତା ଆଳୟକୁ ଫେରିଲେ । ସେତେବେଳକୁ ଦିନ ଫର୍ଚ୍ଚା ହୋଇ ଆସିଥିଲ । ବାଟରେ ତା ଦୁର୍ଦ୍ଦଶାର କାରଣ ବୁଝି ତା ପତ୍ୟନୁରକ୍ତି ପାଇଁ ପ୍ରଶଂସା କରିଥିଲ, ହତାଶିଆ ପ୍ରାଣରେ ଦମ୍ଭ ଭରି ଥିଲ, ଧୈର୍ଯ୍ୟ ଧରିବା ପାଇଁ ଅନେକ ପ୍ରବଚନ ଶୁଣାଇ ଥିଲ ଏବଂ ସ୍ୱାମୀ ସନ୍ଧାନରେ ପ୍ରାଣାନ୍ତକ ଉଦ୍ୟମ କରିବ ବୋଲି ପ୍ରତିଶ୍ରୁତି ଦେଇଥିଲ ଗ୍ରମେଲୀଗଣୀ ।

ତା ଅତିକ୍ରାନ୍ତ ଜୀବନରେ ଗ୍ରମେଲୀ ଗଣୀ ଅନେକ କୁତ୍ସିତ, ପାପ କର୍ମ କରିଛି, କରୁଛି ମଧ୍ୟ । କିଛିଟା ପବିତ୍ର କାମ କଲେ ହୁଏତ



Digitized by PPRACHIN, SOA

ସେଥିରୁ ନିଷ୍କୃତି ମିଳିବ । ଗୁମେଲୀ ରଣୀର ମନରେ ଅନୁଶୋଚନାର ତୀବ୍ର ଜ୍ୱାଳା ଜାଗି ଉଠିଲା । ଏଥର ଏଠୁ ସେ ନେବ ଅବ୍ୟାହତି ଆଉ କିଛିଟା ଭଲ କାମରେ ନିଜକୁ ନିମଜ୍ଜିତ ରହିବ, ଧର୍ମକାର୍ଯ୍ୟ କରିବ । ବୃଦ୍ଧ ଶେଠଙ୍କୁ ମିନତି କରିବ । ଅବାଞ୍ଛିତ ବାଉଜୀ ଦାୟିତ୍ୱରୁ ମୁକ୍ତ ହୋଇ ଆଉ କେଉଁଠି ଅବଶିଷ୍ଟ ଜୀବନ ଏଇ ଝିଅଟି ସହିତ ଅତିବାହିତ କରିବ । ଜୀବନ ବା ଆଉ କେତେ ଦିନ ? ଶେଠଜୀ ତା ଅନୁରୋଧକୁ କେବେହେଲେ ଉପେକ୍ଷା କରିବେ ନାହିଁ, ଏ ବିଶ୍ୱାସ ଥିଲା ଗୁମେଲୀର । 

ସନାତନ ବଡ଼ ଜେନାଙ୍କ ଦୁଃଶ୍ଚିନ୍ତାର ସୀମା ନାହିଁ । ଏଥର ସବୁଆଡ଼ ତାଙ୍କୁ ଅନ୍ଧାର ଦିଶିଲାଣି । ଆଜକୁ ଦୁଇ ମାସ ଅତିକ୍ରାନ୍ତ ହେବ— ପୁଅ ବୋହୂ ବିଦେଶରୁ ବାହୁଡ଼ି ନାହାନ୍ତି । ତାଙ୍କ ଖୋଜ ଖବର ଏଯାଏ କିଛି ପହଞ୍ଚୁ ନାହିଁ । ଦେବ ବୋଉ ମଧ୍ୟ ଦୁର୍ଭାବନାରେ ବିଛଣା ଧରିଲଣି । ପାଟିକୁ ପେଟକୁ ଆହାର ଆଉ ରୁଚୁନି । ପୁଅ ଚିନ୍ତା ତାକୁ ଅଧାପ୍ରାଣ କଲଣି । ଗେଷେଇଶାଳ ସେ ମାଡୁ ନାହିଁ । ଟିକିନୀ ଯାହା ମୁଠେ ଫୁଟେଇ ଦେଉଛି, ସନାତନ ତାକୁ ପାଟିରେ ଛୁଆଁଇ ହାତ ଧୋଉଛି । ପ୍ରାଣ ପୋଡ଼ିଗଲା ବେଳେ ଭେକ ଏମିତି ବିବାକେ ମରି ଯାଏ, ପେଟ ଜ୍ୱାଳା ଲୁଚି ଯାଏ କେଉଁ ଆଡ଼େ । ଏକଥା ସବୁ ମଣିଷଙ୍କଠି ପ୍ରଯୋଜ୍ୟ ।

ଠାକୁରଙ୍କ ମଣିଷର ଆର୍ତ୍ତ ଡ଼ାକ କ'ଣ ଶୁଭେନି ? ପୁଅ ବୋହୂ କାହିଁକି ବାହୁଡ଼ୁ ନାହାନ୍ତି ? ମନକୁ ପାପ ବାରମ୍ବାର ଛୁଉଁଛି ।



Digitized by PPRACHIN, SOA

ଅକ୍ଷୟ ତୃତୀୟା କେଉଁଦିନୁ ହୋଇଗଲାଣି, ବିଲବାଡ଼ିର କାମ ଏଯାଏଁ ଆନୁକୂଲ୍ୟ ହୋଇନି । କୌଣସି କାମରେ ସନାତନର ସ୍ପୃହା ନାହିଁ । ପୁଅ ଫେରି ଆସିଲେ ସବୁ କାମ ଅଧିକ ଉତ୍ସାହରେ କରିଦେବ । ପୁଅର ଚାକିରୀ ଦର୍କାର ନାହିଁ । ଯେତିକି ଜମି ଅଛି ଯଥେଷ୍ଟ ।

ସନ୍ଧ୍ୟା ପରେ ଭଗବତ ଟୁଙ୍ଗିରେ ସନାତନ ଗୁମ୍‌ମାରି ବସି ଯାଉଛି । କାହା ସଙ୍ଗେ କଥା ଭାଷା ନାହିଁ ।

: କ'ଣ ସନା ଭାଇ, ଏମିତି ଚିନ୍ତା କଲେ କ'ଣ ସଂସାର ଚଳେ !
· ଦାଇବ ଦଉଡ଼ି ... ତାକୁ କାହାର ହାତ ଅଛି ?

ଦେବ ବିଷୟରେ ଅନେକ ଆଲୋଚନା, ପରସ୍ପର ବିରୋଧୀ ମତ । ଚନ୍ଦର ଆଗ ବଢ଼ି କହିଲା– ଦେଖୁନ ଆଜିକାଲି କେମିତି ଘଟଣା ସବୁ ଘଟୁଛି ! ମଣିଷ ଜୀବନ ପାଣି ଫୋଟକା ସମାନ, ଏଇନେ ଅଛି ଆଉ ଟିକେକୁ ନାହିଁ । ତମେ କ'ଣ ଭାବୁଛ ସେମାନେ ଆଉ ଜୀବନ ଧରି ଅଛନ୍ତି ? ସତ କଥାକୁ ମୁହଁରେ ଧରୁଛି ବୋଲି ଖରାପ ଭାବିବ ନାହିଁ ସନା'ଭାଇ । ଚନ୍ଦର ଠିକ୍ ଠିକ୍ କୁହେ ।

ସନାତନର ହଳକ ଶୁଖି ଯାଉଥିଲା । ପୁଅର ମରଣ କଥା କିଏ ପାଟିରେ ଧରିବ ? କାହାର ମୂର୍ଚ୍ଛନା ସହିବ ଏ କଥା ଶୁଣିବାକୁ ? ଚନ୍ଦରର ମୁହଁ ପୋଡ଼ି ଯାଉ । ହେ ଭଗବାନ, ସବୁ ପଛେ ଘଟିଯାଉ, ତା ନିଜ ଜୀବନ ପଛେ ଯାଉ, ତା ପୁଅର ଏମିତି ଦୁର୍ଦ୍ଦଶା ନହେଉ । ସେ ଯୋଉଠି ଥାଉ, ଭଲରେ ଥାଉ । ସେତିକି ଖବର ପାଇଲେ ତାର ଆଉ କିଛି ଦରକାର ନାହିଁ । ସେ ପଛେ ଘରକୁ ନ ଆସୁ ... ।

ଚନ୍ଦରର ଉକ୍ତିକୁ ସମର୍ଥନ କରି ମଦନା ମତଦେଲା– ଦେବ ଯଦି ବଞ୍ଚିଥାନ୍ତା, ତା'ଠୁ ନିଶ୍ଚେ ଚିଠି ଖଣ୍ଡେ ମିଳିଥାନ୍ତା । ତାକୁ କ'ଣ ଦଶ ପନ୍ଦରଟା ପଇସା ମିଳୁନାହିଁ ? ନା ସେ ରାଗରୋଷ କରି ଘରୁ ବାହାରି ଯାଇଛି ? ତେଣୁ ଏ କଥା ଧରି ନେବାକୁ ହେବ ଯେ ଦେବ ଆଉ ଦେହଧରି ଏ ସଂସାରରେ ନାହିଁ । ତା'ର ଶୁଦ୍ଧିକାମ ଶୀଘ୍ର ହେବା ଉଚିତ ।



Digitized by PPRACHIN, SOA

ଲୋକମତରେ ଥିଲା ଦୃଢ଼ତା, ଯଥାର୍ଥତା । ସତ୍ୟ ଅପ୍ରିୟ, କଠୋର ହେଲେ ବି ସତ । ସତ୍ୟକୁ ଅସ୍ୱୀକାର କରି ବିଳମ୍ବ କଲେ ତାହା ଆଉ ବଦଳି ଯିବନି ? ଦେବପରି ଆଜ୍ଞାବହ ପୁତ୍ରର ଦୀର୍ଘ ନୀରବତାର କାରଣ ମୃତ୍ୟୁ ଛଡ଼ା ଆଉ କ'ଣ ହୋଇପାରେ ? ଅଧିକ କାଳ ବିଳମ୍ବ ନକରି ଏଥର ଶୁଦ୍ଧିକ୍ରିୟା ପାଳନ କରାଯିବା ଉଚିତ । ମୃତ ଲୋକର ଶୁଦ୍ଧିକାମ ନକରିବା ଦ୍ୱାରା ଗାଁର କାୟା ଅଶୁଦ୍ଧ ହେଲାଣି, ଭଗବତ ମାରା ପଡ଼ିଲେଣି । ସବୁ ଛୁଆଁଛୁଡ଼ି ରହିଛି– ମନ୍ଦିର ବେଡ଼ା ଧୁଆ, ଦିଅଁ ଦର୍ଶନ, ପୂଜା, ଭୋଗ ଆଦି ଛୁଆଁରେ ରହିଛି– ଅପବିତ୍ର, ଅଧର୍ମ କାମ । ଧର୍ମକଥା, ଶାସ୍ତ୍ରକଥା, ତାକୁ ଏଡ଼ାଇବ କିଏ ?

ଏପରିସ୍ଥଳେ କେଉଁ ଦିନଠୁଁ ମୃତ୍ୟୁ ଦିବସ ଏବଂ କେଉଁ ଦିନଠୁଁ ଦଶାହ ବିଧି ପାଳନ କରିବା କଥା ପଣ୍ଡିତ ପରାମର୍ଶ ପାଇଁ ଜନମତ ହେଲା । ଏଠାକାର ଜଣାଶୁଣା ଶାସ୍ତ୍ରଜ୍ଞ ପଣ୍ଡିତ ଚକାପଦାର ପୂର୍ଣ୍ଣ ଆଗ୍ରୀ ମହାଶୟ ଭଲ ଅବଧାନ କାମ କରନ୍ତି ।

ସନାତନ ସମ୍ନାଜି କହିଲା– ଆମେତ ତାକୁ ଦେବର ଜାତକ ଦେଖେଇ ଥିଲୁ । ସେ କହିଲେ, ତା'ର ଭ୍ରମଣ ଯୋଗ ଅଛି; ଘୂରି ଘୂରି ଫେରିବ । ତାଙ୍କ କଥା କ'ଣ ମିଛ ? ନଖ ଦର୍ପଣ କ'ଣ ଭୁଲ କହିଲା ? ହନୁମାନ ପ୍ରଶ୍ନ କ'ଣ ମିଥ୍ୟା ? କାହାକଥା ସତ ଆଉ କାହା କଥା ମିଛ ବୋଲି ଭାବିବ ?

ସନାତନକୁ ଫେମେଡ଼ି ମାଡ଼ି ବସିଲେ ଚନ୍ଦର ଏବଂ ମଦନ । ଓଃ, ସବୁବେଳେ କୋଉ ଅବା ଜ୍ୟୋତିଷବାଣୀ ସତ ହୁଏ ? ଗଣନା କଥା, ଟିକିଏ ଦଣ୍ଡ, କାଳ ଏପାଖ ସେପାଖ ହୋଇଗଲେ ଗଣନା ଫଳ ଭୁଲ ହୋଇଯାଏ । ଦେଖୁନ, ଜାତକ ରାଜଯୋଟକ ପଡ଼ି କନ୍ୟାକୁ ବିଧବା ଦଶା ଭୋଗିବାକୁ ପଡୁଛି– ଆଖି ଆଗେ ଆଗେ ସାଆନ୍ତଙ୍କ ଝିଅ ସଉରୀର ଅବସ୍ଥା କ'ଣ ହେଲା ? ବାହାଘର ବର୍ଷେ ନ ପୂରୁଣୁ ଝିଅ ବିଧବା ।



Digitized by PPRACHIN, SOA

ସାଆନ୍ତେତ ପୁଣି ଝିଅର କୋଷ୍ଠି ଭଲଭାବେ ମେଳେଇ ବାହାଘର କରିଥିଲେ ! ଖାଲି ପୁଅ ଝିଅଙ୍କ ଜାତକ ଠିକ୍ ଥିଲେ ହବନି. ବାପା ମା'ଙ୍କ ଗ୍ରହଯୋଗ ପିଲାମାନଙ୍କ ଉପରେ ମଧ୍ୟ ପଡ଼ିଥାଏ । ନୁହେଁକି ମଧୁଭାଇ ? କ'ଣ କହୁଛ ସତୁରା ନନା, ଗୋବିନ୍ଦ କକା ? ତମେ ସବୁ ଠିକ୍ ଠିକ୍ କଥା କହୁନ କାହିଁକି ?

ସମସ୍ତେ ଚନ୍ଦଗର ସ୍ପଷ୍ଟବାଦୀତାକୁ ତାରିଫ କଲେ । ତା ଯୁକ୍ତିରେ ଥିଲା ଯଥାର୍ଥତା । ସନାତନକୁ ସମସ୍ତେ ପ୍ରଭାବିତ କରିବାକୁ ଚେଷ୍ଟା କଲେ । ସନା କାହାର ଶତ୍ରୁ ନୁହେଁ । ତା'ର ଅମଙ୍ଗଳ କେହି ଚିନ୍ତା କରନ୍ତି ନାହିଁ । ଦେବ ସମସ୍ତଙ୍କର ପୁଅ । କିନ୍ତୁ ଯାହା ସତ୍ୟ, ତାକୁ ସ୍ୱୀକାର କରିବାକୁ ପଡ଼ିବ– ଜନ୍ମ ମରଣ ବେନି ଭାଇ

କଳି କରନ୍ତି ବଡ଼ ପାଇଁ ।
ମୃତ୍ୟୁ ଯେ ସର୍ବଶକ୍ତି ଜାଣ,
ତା ହାତେ ଅଛି ମହାବାଣ ।

ତିନି ତୁଣ୍ଡରେ ଛେଳି ହୁଏ କୁକୁର । ସନାତନର ସେଇ ଅବସ୍ଥା । ସେ ନିଜ ପ୍ରଶ୍ନର କୌଣସି ଉତ୍ତର ଖୋଜି ପାଉ ନାହିଁ, କିଛି କୈଫିୟତ ମଧ୍ୟ ଦେଇପାରୁ ନାହିଁ । କାହିଁକି ଦେବ ନିରୁତ୍ତର ? ସଜ୍ଜନେ ତେବେ ଭୁଲ କହୁ ନାହାନ୍ତି !

ସନାତନ ମୁଣ୍ଡରେ ହାତ ଦେଇ ଠୁଙ୍କା ହୋଇ ବସିଥିଲା ଭାଗବତ ପିଣ୍ଡାରେ ଅଚଳ ପଥର ମୂର୍ତ୍ତି ଟିଏ ଭଳି । ତା ହୃଦକ୍ରିୟା ଯେପରି ବନ୍ଦ୍ ହୋଇଗଲା ପରି ଲାଗୁଥିଲା । ଛାତି ଭିତରୁ ଉଠି ଆସୁଥିଲା ଶୋକାର୍ତ୍ତ କୋହ । ବାପ ଜୀଇଁ ଥାଉ ଥାଉ ପୁଅର ମୃତ୍ୟୁଠୁଁ ବଳି ବଡ଼ ଦଣ୍ଡ ଆଉ କ'ଣ ଅଛି ?

ସଜ୍ଜନଙ୍କ ସମବେତ ସାନ୍ତ୍ୱନା– ସନା'ଇ, ତମେ ତ ଜାଣିଲା ଶୁଣିଲା ଲୋକ । ଅନ୍ୟକୁ ବୁଝାଅ । ତମକୁ କିଏ ବୁଝେଇବ ? ଅନ୍ଧ ପିତା ମାତାଙ୍କ ଆଗରେ ପୁତ୍ର ଶ୍ରବଣ କୁମାରର ରଜା ଦଶରଥଙ୍କ



Digitized by PPRACHIN, SOA

ଶବ୍ଦଭେଦୀ ବାଣରେ ପ୍ରାଣନାଶ ହେଲା । ଏତ ଦଇବର ଦଣ୍ଡ, ଜନ୍ମ ମରଣର ସଂସାର । ସଂସାରୀ ବେକରେ ହାନି ଲାଭ, ସୁଖ ଦୁଃଖ ଛନ୍ଦାଛନ୍ଦି । ସବୁ ସହିବ ଏଇ ମଣିଷ । ଟମେ ଏଥର ଦେହକୁ ଦମ୍ଭ କର । ମନକୁ ଟାଣ କର । ଉଠ, ଏଥର ଉଠ ।

ସମ୍ବେଦନଶୀଳ ହୋଇ ଆଶ୍ୱାସନା ପ୍ରଦାନ ଢଙ୍ଗରେ ଚନ୍ଦର ମତ ଦେଲା– ତେବେ ମୁଁ ଗୋଟିଏ ଭଲ କଥା କହୁଛି । ସମସ୍ତଙ୍କ ମନକୁ ପାଇଲେ ହେଲା । ଏତେ ଦିନତ ଗଲାଣି । ଆଉ ପକ୍ଷେ ଅପେକ୍ଷା କଲେ କ୍ଷତି ବା କ'ଣ ? ତା ପରେ ଜ୍ୟୋତିଷକୁ ପଚାରି ଦିନ ଧରା ଯିବ । ଆଚାର୍ଯ୍ୟ ମହାଶୟ ନହେଲେ ଆଉ କ'ଣ କେହି ନାହାକ, ପଣ୍ଡିତ ଏ ଇଲାକାରେ ନାହାନ୍ତି ? ସମତଙ୍କର କେମିତି ଜାତକ, ଗଣନା, ବାହା ପ୍ରଥାଣି ପ୍ରଭୃତି କାର୍ଯ୍ୟ ହେଉଚି ? ସମତେ କ'ଣ ଧାଉଁଚନ୍ତି ଚକାପଦା ଆଚାର୍ଯ୍ୟଙ୍କ ପାଖକୁ ?

ଭଗବତ ସଭା ଭଙ୍ଗ ହେଲା । ଆଜି ଭଗବତ ଅଧ୍ୟୟନ ଅପେକ୍ଷା ଦେବକାନ୍ତର ବିୟୋଗ ଘଟଣା ଆଲୋଚନାର ବିଶେଷ ବିଷୟବସ୍ତୁ ଥିଲା । ଗାଁ ମୁଣ୍ଡରୁ ଘର ପର୍ଯ୍ୟନ୍ତ ଯିବାକୁ ସନାତନର ବଳ ନଥିଲା । ନିର୍ଜୀବ, ମୃତବତ୍ ଶରୀର ତା'ର । ସଭର ନିଷ୍ପତ୍ତି ଦେବବୋଉକୁ ଜଣେଇବ କିପରି ? ତାକୁ ସମ୍ଭାଳିବ କିଏ ? ସେ ତ ଆଉ ବଞ୍ଚିବନି । ରୋଗ ହୋଇଥାନ୍ତା, ପଡ଼ିଥାନ୍ତା, ସଢିଥାନ୍ତା, ସେ ଚେଷ୍ଟା କରିଥାନ୍ତା, ଶେଷକୁ କହିଥାନ୍ତା ପୁଅର ଆଇଷ ନଥିଲା ! ଏକି ଦାରୁଣ ବିପତ୍ତି ! ତା ଜ୍ଞାତସାରରେ ଏ ଜନ୍ମରେ କିଛି ମନ୍ଦ କାର୍ଯ୍ୟ, ପାପ କାମ ସେ କରି ନାହିଁ । କାହିଁକି ଭଗବାନ ତାକୁ ଏମିତି ସଂସାର ଛଡ଼ା ସମ୍ବାଦ ଶୁଣେଇବାକୁ ବଞ୍ଚେଇ ରଖିଲେ ? ବିଧାତା ଏଡ଼େ ନିଷ୍ଠୁର, କଠିନ ହେଲେ କାହିଁକି ? ସତ୍ୟ, ନ୍ୟାୟ ଓ ଧର୍ମର ମାର୍ଗରେ ଚାଲିବାର କ'ଣ ଏଇ ଫଳ ?

ଡାକବାଲା କାମଦେବ କେଇଦିନ ହେଲା ମାନପୁର ଆସି ନଥିଲା । ସେ ଆସୁଥିବାର ଦେଖି ସନାତନ ବ୍ୟଥିତ ମନରେ ଧାଇଁ ଗଲା । ଦେବଠୁଁ ଚିଠି ଆସିଥିବ ପରା !



Digitized by PPRACHIN, SOA

କାମଦେବ ତା ବୁଜୁଲା ଭିତରୁ ବାଛି ଚିଠିଟିଏ କାଢ଼ିଲା । ସନାତନ ମନ ମଉଳି ଗଲା । ପୁଅର ଚିଠି ନୁହେଁ, ଗୋବିନ୍ଦ ସେନାପତି ପୁଅ ଭଜହରି ଲେଖିଛି । ସନାତନ ଚିଠିର ଉତ୍ତର ଆସିଛି । ସେଇଠି ଠିଆ ଠିଆ, ଗାଁ ଦାଣ୍ଡ ମଝିରେ କମ୍ପିତ ହାତରେ ଚିଠିଟି ପଢ଼ିଲା । କାମଦେବ ଉକ୍ଣ୍ଠାର ସହିତ ଅପେକ୍ଷା କରି ରହିଲା ଚିଠିର ସାରାଂଶ ଶୁଣିବାକୁ । ଏହା ତା'ର ପୁରୁଣା ଅଭ୍ୟାସ ।

କଲିକତାର ଅନେକ ଜାଗା ଭଜହରି ଖୋଜିଛି– ଓଡ଼ିଆ ପଡ଼ା, ଧରମ୍‌ତଲା, ଦମ୍‌ଦମ, ଚିତ୍‌ପୁର, ଡାକୁରିଆ, ଲାଲବଜାର, ଶ୍ୟାମ ବଜାର, ବଡ଼ ବଜାର, ହାବଡ଼ା, କଲେଜ ଷ୍ଟ୍ରିଟ୍ ଆଦି ଅଞ୍ଚଳ । ଦେବକାନ୍ତର କୌଣସି ସନ୍ଧାନ ମିଳିଲା ନାହିଁ । କଲିକତା ଏକ ବୃହତ୍ ନଗରୀ, ମହା ସମୁଦ୍ର, ନିର୍ଦ୍ଦିଷ୍ଟ ଠିକଣା ଅଭାବରୁ ଏଠି ନିରୁଦ୍ଦିଷ୍ଟ ଲୋକକୁ ଖୋଜି ବାହାର କରିବା ମୁସ୍କିଲ, ଅସମ୍ଭବ । କଲିକତା ଏକ ଅଦ୍ଭୁତ ସହର । ଅହର୍ନିଶ ଏଠି ମୃତ୍ୟୁର ତାଣ୍ଡବ ନୃତ୍ୟ ଲାଗି ରହିଛି । ଦିନ ଦି'ପହରେ, ବିଡ଼୍ ବଜାର ଉପରେ ନରହତ୍ୟା, ଧର୍ଷଣ, ଚୋରି, ଡାକାୟତି ଆଦି ଦୁର୍ଘଟଣା ଘଟି ଯାଉଛି । ଏଠି ଘଡ଼ିଏ ବଞ୍ଚିବା ମାନେ ଯୁଗେ ଜୀଇଁବା । ତେବେ ସେ ନିଖୋଜ ତାଲିକାରେ ନାମ ଦେଇଛି । ସନ୍ଧାନ ମିଳିଲେ ତତ୍ପର ଖବର ଦେବ ।

ଚିଠିରେ ରହିଛି ନୈରାଶ୍ୟର ବାର୍ତ୍ତା । ସବୁ ଶୁଣିସାରି କାମଦେବ ସାନ୍ତ୍ୱନା ଦେଇ କହିଲା– ଏଥର ଆଉ ମୁଣ୍ଡ ପିଟି କିଛି ଲାଭ ନାହିଁ ସନାତନ । ଦୁର୍ଘଟଣା ପ୍ରତି କାହାର ନଥାଏ ହାତ ; ସେତ ବିଧାତାର ସର୍ବସ୍ୱ । ଜନ୍ମ ମୃତ୍ୟୁ ତା'ରି ଖେଳ, ଆଗ ପଛରେ ନଥାଏ ମେଳ । ଯାହା କପାଳରେ ଯେତିକି ଲେଖା, ତାକୁ କିଏ କରିବ ଅନ୍ୟଥା ?

ଚିଠିଟି ଗାଁ ଲୋକେ ପାଠ କଲେ । ସଭିଙ୍କ ସନ୍ଦେହ ଦୃଢ଼ୀଭୂତ ହେଲା । କଲିକତାର କୌଣସି ଜଣାଶୁଣା ଅଞ୍ଚଳରେ ଦେବର ସରା ନାହିଁ, ପରା ନାହିଁ । ଦେବ ଆଉ ଦେହ ଧରି ନାହିଁ, ଏକଥା ଅବିଶ୍ୱାସ କରିବାର କ'ଣ ଅଛି ? ଭଜହରି ଶେଷକୁ ଯାହା ଲେଖିଛି କେବଳ ଆଶ୍ୱାସନା ଦେବାପାଇଁ । ଏଥର ଆଉ ଡେରି କରି କିଛି ଲାଭ ନାହିଁ–



Digitized by PPRACHIN, SOA

ସତକୁ ଗାଲୁ ମାରିବା କଥା । ଭଗବତ ଗୋସେଇଁ ଅପବିତ୍ର ହେଲେଣି । ମୃତ ମଣିଷର ଶୁଦ୍ଧିକ୍ରିୟା ନ ଧରିବା ବା ବିଳମ୍ବ କରିବା ଶାସ୍ତ୍ର ବିରୁଦ୍ଧ–ଅନୀତି ।

କହୁନ ସନା'ଇ, ଆଉ ଦୁଃଖ କରି ମୁଣ୍ଡ ପିଟି ଲାଭ ବା କ'ଣ ? ଯିଏ ସେ ପୁରକୁ ଯାଏ, ଆଉ କ'ଣ ଫେରେ ? ତା'ର ଯେଉଁମାନେ ଏ ପୁରରେ ରହିଲେ, ସେମାନଙ୍କଠୁଁ ଟୋପାଏ ମନ୍ତ୍ରର ଜଳ, ଘିଅଦାନ କଲେ ତା'ର ଆତ୍ମା ଶାନ୍ତି ପାଇବ, ସଦ୍‌ଗତି ଲଭିବ । ନହିଲେ, ହେଇଟି–ତା'ର ପ୍ରେତାତ୍ମା ସଇତାନ ହୋଇ ନାନା କାଣ୍ଡ ଭିଆଇବ, ଅନିଷ୍ଟ କରିବ, ସମସ୍ତଙ୍କର ହେବ ଅମଙ୍ଗଳ । ଶାସ୍ତ୍ର ଯାହା ଲେଖୁଛିନା ! ଏହା ଥିଲା ଚନ୍ଦଗର ଉକ୍ତି ଏବଂ ସେଥିପ୍ରତି ଗ୍ରାମବାସୀଙ୍କର ଶାସ୍ତ୍ରୀୟ ସମର୍ଥନ ।

ଜନତାର ସ୍ୱରରେ ରହିଛି ଦୃଢ଼ତା । ସତ୍ୟକୁ ଆଉ ଅସ୍ୱୀକାର କରି ପାରିବ ନାହିଁ ସନାତନ ।

ସନାତନ ଶୋକାଭିଭୂତ ହୋଇ ପଣ୍ଡିତଙ୍କ ପାଖକୁ ପରାମର୍ଶ ପାଇଁ ଗଲା । ଯେଉଁଠି ଜନମତ ହେଲାଣି, ଆଗ୍ରୟୀ ପଣ୍ଡିତେ ଅଧିକ ପରାମର୍ଶ କ'ଣ ବା ଦେବେ ? ପରିସ୍ଥିତିକୁ ସୁହାଇଲା ଭଳି ପାଣ୍ଡିତ୍ୟ ପ୍ରକାଶ ପାଇଲା । ଶାସ୍ତ୍ର ଅଣ୍ଡାଳି ଦିନବାର ଧାର୍ଯ୍ୟ ହେଲା । ବାର ସପ୍ତାହ ବିତିଗଲା ପରେ ସନ୍ଦେହ ହତ ହୁଏ । ଏହାହିଁ ଶାସ୍ତ୍ର ଲେଖୁଛି । ଦଶାହ କାର୍ଯ୍ୟ ଆରମ୍ଭ ହେବ । ଯେଉଁଦିନ ପଣ୍ଡିତ ଶାସ୍ତ୍ର ଛୁଉଁଛନ୍ତି । ଆଗାମୀ ଦଶଦିନ ପାଇଁ କାର୍ଯ୍ୟସୂଚୀ–ସ୍ୱାଦହୀନ ତିଅଣ, ତେଲ, ଘିଅବିହୀନ ଏକବସ୍ତ୍ର ନିରମିଷ ଦିନାହାର, ଜ୍ଞାତି କୁଟୁମ୍ବାଦିଙ୍କର ଅଶଶୁଦ୍ଧିଆ ପାଳନ, ଦଶମ ଦିନରେ ପିତାନ୍ନ, ଘଟାନ୍ନ, ଘୃତାହୁତି, ବ୍ରାହ୍ମଣ ଭୋଜନ ଏବଂ ଏକାଦଶ ଦିନ ଫର୍ଦ୍ଦି ଭୋଜନ ଇତ୍ୟାଦି ।

ଦେବବୋଉ ବାରମ୍ବାର ମୂର୍ଚ୍ଛା ଯାଉଥିଲା ଏବଂ ସାଇ ମାଇକିନାମାନେ ତାକୁ ବେଢ଼ି ରହିଥିଲେ । ଦଇବ ଦାଉ ସାଧୁଛି । ସନାତନ ଜଡ଼ ପାଲଟି ଯାଇଛି । ଧର୍ମକୁ ସାକ୍ଷୀ ରଖି ନିର୍ଜ୍ଜୀବ, ନିଷ୍ପ୍ରାଣ ଦେହରେ ନୀତି ନିୟମ ପାଳୁଛି । ୟାଠୁଁ ବଳି ଦୁନିଆଁରେ ଦୁଃଖଦ ଘଟଣା କ'ଣ ହୋଇପାରେ ?





Digitized by PPRACHIN, SOA

ତୃତୀୟ ମହଲରେ ଘ୍ରମେଲୀଗଣୀର ଆଡ଼ମ୍ବର ପୂର୍ଣ୍ଣ ସଜ୍ଜିତ କୋଠରୀ । ଏଠି ତିନିଦିନ ହେଲା ଶ୍ରାବଣୀ ଖୁବ୍ ଭଲରେ କଟେଇଲାଣି । ଘ୍ରମେଲୀର ମା' ଭଳି ସ୍ନେହ ତାକୁ ତୃପ୍ତି ଦେଉଛି । ମା' କୋଳରେ ମୁଣ୍ଡ ଗୁଞ୍ଜି ଅନ୍ତତଃ ଶୋଇଯାଇଛି ତିନିଦିନ । ଉଚ୍ଛୃଙ୍ଖଳ, ନିଃସଙ୍ଗ ଜୀବନରେ ଘ୍ରମେଲୀ ଅନୁଭବ କରୁଛି ଆତ୍ମୀୟତା । ରୂପସଜ୍ଜା ପାଇଁ ଶ୍ରାବଣୀ ଆଦୌ ମଙ୍ଗୁ ନଥିଲା ପ୍ରଥମେ । ଯୁକ୍ତି କରିଥିଲା, କାନ୍ତ ପାଖରେ ନଥିଲେ କାହାର ସଉକ ପୂର୍ଣ୍ଣ କ'ଣ ? ପତି ବିନା ପତ୍ନୀ ଜୀବନର ମହକ ନଥାଏ । ପତି ଫୁଲର ବାସ୍ନା ଭଳି । ଗନ୍ଧ ବିହୀନ ଫୁଲ ଏକ ଅନାଦର ବସ୍ତୁ । କିନ୍ତୁ ତାକୁ ବୁଝେଇ ସୁଝେଇ ସୁନ୍ଦର ଦାମୀ ଶାଢ଼ୀ ପିନ୍ଧାଇଛି ଘ୍ରମେଲୀଗଣୀ । ପ୍ରସାଧନ ସାମଗ୍ରୀରେ ତା' ଦେହର ଯତ୍ନ ନେଇଛି । ଲମ୍ବ ମୁଣ୍ଡବାଳକୁ ସୁନ୍ଦର ଭାବେ ସଜ୍ଜିତ କରିଛି । ଆଜାନୁଲମ୍ବିତ କେଶଗୁଚ୍ଛ ପିଠି ଉପରେ ଦୋଳାୟିତ । ଶ୍ରାବଣୀ ଦିଶୁଛି ଅପୂର୍ବା ସୁନ୍ଦରୀ । ଦେହରେ ତା'ର ଅଗ୍ନିବର୍ଷୀ ଯୌବନ । ଯେକେହି ଦେଖିଲେ ଲୋଭ କରିବ । ଆୟତ ଆଖିରେ କଜ୍ଜଳ, ମଥାର ଠିକ୍ ମଧ୍ୟଭାଗରେ ସୂର୍ଯ୍ୟୋଜ୍ଜ୍ୱଳ ରକ୍ତିମ ଟୋପା, ଶ୍ରାବଣୀ ଦିଶୁଛି ଅପରୂପା । ଭିନ୍ନାନୁଭୂତି ସଞ୍ଚରି ଯାଉଛି ସାରା ଦେହକୁ ... ।

ତେଣେ ତଳ ମହଲାରେ ଆଗନ୍ତୁକମାନେ ପ୍ରବେଶ କରୁଥାନ୍ତି ସେମାନଙ୍କ ତୃଷା ମେଣ୍ଟାଇବା ପାଇଁ । ଉପର ତାଲାରେ ଗାଆଣ ବଜାଣ, ସ୍ୱର ସଙ୍ଗୀତର ଧ୍ୱନି ବାୟୁମଣ୍ଡଳରେ ତରଙ୍ଗାୟିତ– ଏଠାକାର ନିତିଦିନିଆ, ଚିରଚରିତ ଦୃଶ୍ୟ । ବାହାର ବାଲକୋନିକୁ ଆସି ଶ୍ରାବଣୀ ପାର୍ଶ୍ୱସ୍ଥ ବହିର୍ଜଗତର ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହୁଏ । ବାହାରକୁ ଆସି ଏସବୁ ଦୃଶ୍ୟ ଦେଖିବାକୁ ମାଉସୀ ମନା କରିଛି, କୋଠରୀ ବାହାରକୁ ଆସିବା ସମ୍ପୂର୍ଣ୍ଣ ବାରଣ କରାଯାଇଛି ତାକୁ । ମାଉସୀ କହିଛି– ବଡ଼ ଖତରନାକ ଜାଗା ଇଏ । ସାବଧାନ ଥିବୁ । କିନ୍ତୁ ରାତି ଅନେକ ହେଲାଣି, ମାଉସୀ



Digitized by PPRACHIN, SOA

୯ରେ ଶ୍ରାବଣ

ସବୁଦିନ ଏମିତି କୋଉ କାମରେ ବ୍ୟସ୍ତ ରହୁଛି ଯେ, ଫେରୁଛି ବହୁ ଡେରିରେ । ଏକା ଘରେ ବସି ବସି ବିରକ୍ତ ଲାଗୁଛି । ନିଦ ଆସୁନି । କ'ଣ କରିବ ? ମାଉସୀର କାମ କ'ଣଯେ ? କାହିଁକି ସେ ଫେରୁନି ? କିନ୍ତୁ ମାଉସୀର ନିଷେଧାଦେଶ ଅମାନ୍ୟ କରି କୌତୂହଳୀ ମନ ଆବଦ୍ଧ କୋଠରୀର ବାହାରକୁ ଚାଲିଆସେ ।

ବହୁରୂପୀ ଲୋକମାନେ ବିଭିନ୍ନ ଢଙ୍ଗରେ, ବିବିଧ ବେଶରେ ଆସୁଛନ୍ତି, ଫେରୁଛନ୍ତି, ରୂପସୀ ଯବତୀମାନେ ସ୍ୱାଗତ କରୁଛନ୍ତି ସେମାନଙ୍କୁ । ସମ୍ମୁଖ ଗଳି ଭିତରେ କାର୍, ଟ୍ୟାକ୍ସି, ରିକ୍ସା ଜମା ହେଉଛି । ଗଳିସାରା ପେଁ ପାଁ ଶବ୍ଦ । ଦିନ କିନ୍ତୁ ଏଠାରେ ଅପେକ୍ଷାକୃତ ନିରୋଳା । ଏଠାରେ କି ବ୍ୟବସାୟ ଚାଲିଛି ? ଗଳିରେ ବିଚିତ୍ରବର୍ଣ୍ଣା ସ୍ତ୍ରୀଲୋକଙ୍କର କି କାମ ? ଭଲା ଏ ସହରୀ ସଭ୍ୟତା, ସବୁ ସେ ଓଲଟା ଦେଖୁଛି ଏଠି– ଛିଃ । ସନ୍ଦେହମୋଚନ ପାଇଁ ମାଉସୀକୁ ପଚାରିବା ପାଇଁ ସ୍ଥିର କଲା ଶ୍ରାବଣୀ ।

: ମାଉସୀ, ଏଠି ଏତେ ଗଳିରେ ଝିଅମାନେ କାହିଁକି ବେଶ ହୋଇ ବୁଲାଚଲା କରୁଛନ୍ତି ? ବାହାରକୁ ଆସି ହସୁଛନ୍ତି ? ମର୍ଦ୍ଦଙ୍କ ସଙ୍ଗେ ଗପୁଛନ୍ତି ? ତଳ ମହଲାରେ କ'ଣ ସଙ୍ଗୀତ ଶିକ୍ଷା ଦିଆହୁଏ ?

: କହିଲି ପରା ତୁ ବାହାରକୁ ଯିବୁନି, ଖରାପ ଜାଗା । ଶୋଷି ନେବେ, ବୁଝିଲୁ ? ଆମେ ଏଠୁ ଚାଲିଯିବା ଭଲ ଜାଗାକୁ । କାଲି ମୁଁ ଶେଠ ଓମ୍ ପ୍ରକାଶଙ୍କ ପାଖକୁ ଯିବି । ସେ ତୋର ମଉସା ହେବେ । ଭାରି ଅମାୟିକ ଲୋକ, ଦୟାବନ୍ତ ପୁରୁଷ । ଆମ ପାଇଁ ସେ ଭଲ ଘରଟିଏ ଯୋଗାଡ଼ କରିଦେବେ ।

: ମାଉସୀ ତମେ ଏତେ ରାତି ଯାଏଁ କ'ଣ କରୁଛ ବାହାରେ ? କେଉଁଠିକି ଯାଉଛ ?



Digitized by PPRACHIN, SOA

: ଚୁପ୍ କର । ତୁ କ'ଣ ଏଥିରୁ ପାଇବୁ ? ପେଟ ପାଟଣା କଥା । କାମ ନକଲେ କ'ଣ କିଏ ଖାଇବାକୁ ଦେବ ଖାଲିଟାରେ ? ବେଶୀ ବକ୍ ବକ୍ ହନି, ଶୋଇ ପଡ଼, ମୁଣ୍ଡ'କଣ ହେବ ?

ମାଉସୀ କୋଳରେ ଶିଶୁଟିଏ ଭଳି ଶୋଇ ପଡ଼ିଲା ଶ୍ରାବଣୀ ।

ତହିଁ ପରଦିନ ମଧ୍ୟାହ୍ନ ବେଳ । ନୀଳ, ନିର୍ମଳ ଆକାଶରେ ଭେଳା ଭେଳା ବଉଦ । ଖରା ପାଗ । ପୂର୍ବ ରାତିର କଥାମତେ ମାଉସୀ ଯାଇଛି ନୂଆ ବସା ସନ୍ଧାନରେ । ବହୁ ବେଳୁ ଗଲଣି । ଭିତର ପଟୁ କବାଟ ବନ୍ଦକରି ଶ୍ରାବଣୀ ବସି ରହିଥିଲା, ଅନୁଭବ କରୁଥିଲା ନିଃସଙ୍ଗତା, ଖାଲି ବସି ବସି ଚିଟା ଲାଗୁଥିଲା । ତା ହୃଦୟ ଭିତରେ ମନ ମୟୂର ଡେଣା ମେଲି ନାଚୁଥିଲା । କେବେ ଦେଖିବ ତାଙ୍କୁ ?

କବାଟରେ ଖଡ୍ ଖଡ୍ ଶବ୍ଦ । ମାଉସୀ ଆସିଲାଣି ପରା । କବାଟ ଖୋଲିଲା ଶ୍ରାବଣୀ । ହଠାତ୍ ଭିତରକୁ ପଶି ଆସିଲା କୃଷ୍ଣବର୍ଣ୍ଣ, କଦାକାର ପୁରୁଷଟିଏ । ଦେହରେ ଚୁଡ଼ିଦାର ଢିଲା ପଞ୍ଜାବି, ପାଇଜାମା । ପୋଷାକର ଏକ ଗୁପ୍ତ ସ୍ଥାନରୁ ଉତ୍କଟ ଅତରର ଭୁରି ଭୁରି ଗନ୍ଧ । ମୁହଁରେ ହସର କ୍ଷୀଣ ଧାରଟିଏ । କିଏ ଏ ଭୀମକାୟ ରସିକ ନାଗର ? ଶ୍ରାବଣୀ ଚମକି ପଡ଼ିଲା । ଛାତିରେ ନେଣ୍ଡାଏ ଛେପ ଥୁକିଲା– ଥୁ ।

: କ'ଣ କାମ ? ମାଉସୀ ନାହିଁ । କେହି ଏଠାକୁ ଆସିବାକୁ ମନା କରିଛି ମାଉସୀ ।

ଆଗନ୍ତୁକର ଆଖିରେ ବିସ୍ମୟର ସଙ୍କେତ ଫୁଟି ଉଠିଲା । ହସରେ ତାଚ୍ଛଲ୍ୟ । ହସ ଲହରୀ ବ୍ୟାପିଥିଲା ମିନିଟିଏ ପର୍ଯ୍ୟନ୍ତ ଏବଂ କହିଲା– ଆଜି ହଜିଲା ବଳଦ ଖୋଜିଲା ଠେଇଁ । ଖାଦ୍ୟ ଆଉ ଖରିଦଦାର ଏକତ୍ର ହେଲେ ମଧ୍ୟସ୍ଥିର ଆବଶ୍ୟକତା କ'ଣ ? ମୋ କାମ ବାଇଜୀ ପାଖରେ ନୁହେଁ, କାମ ତୋଠି ଲୋ ସୁନ୍ଦରୀ ।



Digitized by PPRACHIN, SOA

: ଅସଭ୍ୟ । କିଏ ବାଇଜୀ ? ଏଟା ବାଇଜୀର ଘର ନୁହେଁ । ଭୁଲରେ ପଶି ଆସିଛ । ଯାଅ ଜଲଦି ବାହାରକୁ । ମାଉସୀ ଆସିଲେ ବିରକ୍ତ ହେବ । କିଏ ତୁମକୁ ଭିତରକୁ ଆସିବାକୁ ଅନୁମତି ଦେଲା ?

ଆଗନ୍ତୁକର ଲମ୍ବା ଅଟ୍ଟହାସ୍ୟ ।

ଦୀର୍ଘକାୟ ମଣିଷଟିଏ– ବୟସ ମାପି କହିବା ସମ୍ଭବ ହେଉ ନଥିଲା । ତା ଭଷା ଏବଂ ବେଶଭୂଷାରୁ ମନେ ହେଉଥିଲା, ପୁରୁଣା ପୋଖତ ରସିକଟିଏ । ହିନ୍ଦୀ ମିଶା ବଙ୍ଗଳା ଭଷା । ଶ୍ରାବଣୀର ଆଶଙ୍କା କ'ଣ ସତ ? ଏଟା କ'ଣ ଗୋଟେ ବେଶ୍ୟାପଡ଼ା, ଦାରୀ ଘର ? ମାଉସୀ କ'ଣ ଜଣେ ବାଇଜୀ ?

ଲୋକଟି ବେପରୁଆ ଭବେ କବାଟ ବନ୍ଦକରି ଦେଇ ଶିକୁଳି କଷି ଦେଲା । ଚେତା ପଶିଲା ଏଥର ଶ୍ରାବଣୀର । ହାଲକ ଶୁଖିଗଲା । ନାରୀ ମାଂସ ଲୋଭୀ ଲମ୍ପଟ ହାବୁଡ଼ରେ ପଡ଼ିଛି । ମାଉସୀ କ'ଣ ଜାଣି ଜାଣି ଏ ବ୍ୟବସ୍ଥା କରିଛି ? ମୁହଁରେ ମିଠା, ପେଟରେ ବିଷ ! ବିଶ୍ୱାସରେ ବିଷ ଢାଳିଛି ! ବୃଦ୍ଧ ବେଶ୍ୟା ତପସ୍ୱିନୀ ସାଜିଛି ! ବେଶ୍ୟା ଘରେ ସେ ଆଣିଛି ? କେଉଁ ଉଦ୍ଦେଶ୍ୟରେ ସେ ଏଠି ପାଳିଚା ? ଦୁନିଆଁରେ କାହାକୁ ସେ ବିଶ୍ୱାସ କରିବ ? ମରଣାନ୍ତକ ଭୟରେ ଥରି ଉଠିଲା ଶ୍ରାବଣୀ । ମୁଖମଣ୍ଡଳରେ କଳାମେଘର ଛାଇ ଘୋଟି ଆସିଲା, ଆଖିରେ ପ୍ରବଳ ବୃଷ୍ଟିପାତର ସୂଚନା । ଦେହ ଝାଳରେ ଗାଧେଇ ପଡ଼ିଲାଣି । ଦମ୍ ଦମ୍ ଛାତି ଭିତରୁ ଖର ନିଶ୍ୱାସ ନାକପୁଡ଼ା ଦେଇ ବାହାରି ଆସୁଛି ଗରମ ବାମ୍ପ ଭଳି ।

ଦୁର୍ଦ୍ଧର୍ଷ ଲୋକଟି ଲୋଭିଲା ଆଖିରେ ଶ୍ରାବଣୀ ଆଡ଼କୁ ଚାହିଁ ରହିଥିଲା । ତା'ର ରକ୍ତରଙ୍ଗା ଦୃଷ୍ଟିରେ ଯେମିତି ଥିଲା ଯୁଗ ଯୁଗର କ୍ଷୁଧା । ମନେମନେ ସାବାସ କରୁଥିଲା ବାଇଜୀର ପସନ୍ଦକୁ । ବିହୁଦିନ ପରେ ତା ନଜରକୁ ଆସିଛି ଡ଼ଉଲ ଡାଉଲ ଖୁବ୍‌ସୁରତ ଟିଏ ।



Digitized by PPRACHIN, SOA

ଲୋକଟିର ହାବଭାବରୁ ଜଣା ପଡୁଥିଲା ଯେମିତି ଏ ଘରେ ତା'ର ଅଖଣ୍ଡ ଆଧିପତ୍ୟ ।

ପଲଙ୍କ ତଳୁ ବିଲେଇଟିଏ ରଡ଼ି ଛାଡ଼ିଲା– ମ୍ୟାଉଁ । ଝର୍କାବାଟ-ଦେଇ କଳା ବିରାଡ଼ିଟି ବାହାରକୁ ଡେଇଁ ପଡ଼ିଲା । ଝର୍କା କଡ଼କୁ ଦୌଡ଼ି ଯାଇ ଶ୍ରାବଣୀ ଖୁବ୍ ବଡ଼ ପାଟିରେ ଚିତ୍କାର କଲା– ମାଉସୀ, ମାଉସୀ । ଲୋକ ଜଣକ ନିଶୁଆ ମୁହଁରେ ସିଗ୍ରେଟ୍ ଖଞ୍ଜି ଅଗ୍ନି ସଂଯୋଗ କଲା ତହିଁରେ ଏବଂ ରସିକ ଭଙ୍ଗୀରେ କହିଲା– ଏଠି କେହି ମାଉସୀ ଫାଉସୀ ନାହାନ୍ତି, କେହି ଆସିବେନି କହୁଛି । ଆଉ ଡେରି କାହିଁକି ? ଆ' ଗୋ ରୂପସୀ ନାଗରୀ, ସରଗ ସୁନ୍ଦରୀ, ମୋ ଚନ୍ଦ୍ରାନନୀ, ଚନ୍ଦ୍ରବଦନୀ । କାମ ଶେଷ କରି ଶୀଘ୍ର ଚାଲିଯିବି ଏଠୁଁ । ମୋର ତେଣେ ଅଜସ୍ର କାମ । କିଏ ଜାଣିଥିଲା ଏଠି ଏମିତି ଯୁବତୀ, ରସବତୀଟିଏ ରହିଛି ବୋଲି ? ଗୁଲକୀ ବାଇକା କେଉଁଠୁ ରତ୍ନମଣିଟିଏ ଆଣି ଏଠି ଲୁଚାଇ ରଖିଛି ?

: ମାଉସୀ କୋଉଠି ଅଛ ଜଲଦି ଆସ । ଘରେ ଗୁଣ୍ଡା ପଶିଛି, ମତେ ମାରି ଦେବ ... ।

: କେତେ ଛଟକ କାଢ଼ୁଛୁଲୋ ଟୋକୀ । ବାହାନା କାହିଁକି ଦେଖାଉଚୁ ? ଦାରୀ ଘରେ ସତୀ ଦେଖେଇ ହେଉଛୁ କାହା ଆଗରେ ? ଇଙ୍ଗୀରେ ହରିଶବ୍ଦ କହିଲେ କିଏ ବୁଝିବ ? ଏଥର ଆଉ ଏତେ ବେହେଲ ଦେଖାନା । ମୋର ତେଣେ ବହୁତ କାମ ଅଛି । କହିବୁତ ତୋ ରେଟ ଅନ୍ୟମାନଙ୍କଠୁଁ ବେଶୀ । ମନ ଖୁସି କରେଇଲେ ମୋର ବି ପଇସା ପତି ପରବାୟ ନାହିଁ । ଅଧିକ ଦରକୁ ଖାତିର ନାହିଁ । ଧନର ଅଭାବ ନାହିଁ । ଅଭାବ ଅଛି– ତୁ । ଏତକ କହି ସେ ପକେଟରୁ ଗୁଡ଼ିଏ ଦଶ ଟଙ୍କିଆ ପରିଷ୍କାର ନୋଟ ଆଣି ପଲଙ୍କ ବିଛଣାରେ ବିଛି ଦେଲା । କହିଲା– ନେ, ଆହୁରି ଦେବି, ଏଥର ମନ ଖୁସିତ ଗୋରୀ ? ଆଉ ଅଭିମାନ କାହିଁକି ?

ଛିଃ, ଏ ଲୋକଟା ଏତେ ହୀନ ! ଧନୀମାନେ ଏତେ ନୀଚ ! ଏଇମାନେହିଁ ଝିଅ ବୋହୂମାନଙ୍କ ମାନ ଲୁଟ କରନ୍ତି, ଧ୍ୱଂସ କରନ୍ତି



Digitized by PPRACHIN, SOA

ସେମାନଙ୍କ ଇଜ୍ଜତ, ମାଟିରେ ମିଶାଇ ଦିଅନ୍ତି ସେମାନଙ୍କ ସର୍ବୋତ୍‌କୃଷ୍ଟ ସମ୍ମାନ । ଏଇମାନଙ୍କ ଯୋଗୁଁ ଆଜି ଅନେକ ଝିଅ ପତିତା, ସମାଜଚ୍ୟୁତା । ପୋଡ଼ିଯାଉ ଏମାନଙ୍କ ପର ପୀରତି, ଧ୍ୱଂସ ହେଉ ଏମାନଙ୍କ ଧନ, ଧୂଳିସାତ୍ ହୋଇଯାଉ ଏମାନଙ୍କ ଗର୍ବ-ଗାରିମା । ପଙ୍ଗୁ ପାଲଟି ଯା'ନ୍ତୁ ଏମାନେ । ପ୍ରଚଣ୍ଡ କ୍ରୋଧ ଏବଂ ଭୟରେ ଶ୍ରାବଣୀ ଫାଟି ପଡୁଥିଲା । କି କୁତ୍ସିତ ଇଚ୍ଛା ଏ ଜାନଓ୍ୱାରଟାର ! କେଡ଼େ ଘୃଣ୍ୟ ଏ ଲୋକଟାର ଉଦ୍ୟମ, ଉଦ୍ଦେଶ୍ୟ ଆଉ ମୁହଁର ଭଷା ! ଆଜି କି ଦୁର୍ଭାଗ୍ୟ ତା'ର !

କିଏ ତାକୁ ଆଜି ରକ୍ଷା କରିବ ? ଅନନ୍ୟୋପାୟ ହୋଇ କଇଁ କଇଁ କାନ୍ଦି ଉଠିଲା ଶ୍ରାବଣୀ । ପ୍ରମାଦ ଗଣିବା ଅବସରରେ ସ୍ମରିଲା ସ୍ୱାମୀ ବରକୁ । ତା' ସତୀତ୍ୱର ଆଜି ଏଠି ଶେଷ ପରୀକ୍ଷା । ମନେ ମନେ ଚିନ୍ତା କରିନେଇଥିଲା ଆଗାମୀ କର୍ମପନ୍ଥା । ସ୍ମରଣ କଲା ମହିଷ ମର୍ଦ୍ଦିନୀ, ଦୁର୍ଗତି ନାଶିନୀ ଦୁର୍ଗାଙ୍କୁ । ଥରିଲା ଦେହରେ ସାହସ ସଞ୍ଚୟ କଲା । ସ୍ୱାମୀର ଶ୍ରେଷ୍ଠ ସମ୍ପଦଟିକୁ କେହି ସ୍ପର୍ଶ କରିବା ପୂର୍ବରୁ ଦାନ୍ତରେ ତା' ତଣ୍ଟିକୁ ଝୁଣି ରକ୍ତ ଶୋଷିବ । ଆଜି ମରିବ ପଛେ ଛାଡ଼ିବ ନାହିଁ ।

ଝିଅଟା ପାଗଳୀ ନା କ'ଣ ? ବେଶ୍ୟା ଘରେ ଗୋଟାଏ ରୂପବତୀ ସାବାଳିକାର ଏକି ଅଦ୍ଭୁତ ଆଚରଣ ! ଆଗନ୍ତୁକ ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ତା'ର ଜିଦ୍ ମଧ୍ୟ ବଢ଼ିଲା । ପକ୍‌କା ଖେଳୁଆଡ଼ ସେ । ଯଦି ଭଲରେ ନହେଲା, କାମଟି ଭେଲରେ ହେବ । ଶିକାରୀ ବାଘ ହାବୁଡ଼ରୁ ହରିଣ ଖସି ପଳାଇବାଟା ବାଘର ଦୁର୍ବଳତା, ତା'ର ଅପାରଗତା । ଝିଅଟାକୁ ଗୋଟାଏ ଉତ୍ତମ ଶିକ୍ଷା ଦେବ । ଏମନ୍ତ ଭବି ଦୁରଗ୍ରରୀ ଡେଇଁ ପଡ଼ିଲା । ଶ୍ରାବଣୀ ଦୁରେଇ ଗଲା । ପୁଣି ଲମ୍ଫ ଦେଲା ସେ । ତଥାପି ଧରି ପାରି ନଥିଲା, ଏମିତି କିଛି ସମୟ ଲାଗି ରହିଥିଲା ବାଘ ଛେଳିର ଛକାପଂଝା । ଆବଦ୍ଧ କୋଠରୀରେ ଲାଗିଥିଲା ଖଣ୍ଡ ଯୁଦ୍ଧ । ଆସବାବପତ୍ର ଗୁଡ଼ିକ ଇତସ୍ତତଃ ହେଲା । କାଚପାତ୍ରଟି ଭଙ୍ଗି ହେଲା ଚୂର୍ଣ୍ଣ ବିଚୂର୍ଣ୍ଣ । ଶ୍ରାବଣୀ ଖୁବ୍ ବେଗରେ ଦୌଡ଼ି ତରତରରେ କବାଟର କିଳିଣି ଖୋଲିଲା ବେଳକୁ ଉନ୍ମତ୍ତ ଲୋକଟି ତାକୁ ପଛଆଡୁ



Digitized by PPRACHIN, SOA

ଧରି ନେଲା, ଠିକ୍ ବିରାଡ଼ି ମୂଷାକୁ କାବୁକଲା ଭଳି । ତା ବକ୍ଷ ଦେଶରେ ଘୃପିବାକୁ ଚେଷ୍ଟାକଲା । ଶ୍ରାବଣୀ ଛାଟି ପିଟି ହେଲା । ନିଜର ସମସ୍ତ ଶକ୍ତି ଓ କୌଶଳ ଖଟାଇ ଖସିବାକୁ ଚେଷ୍ଟାକଲା । କିନ୍ତୁ ପାରି ନଥିଲା । ଦୁର୍ବୃତ୍ତ ତାକୁ ତଳେ ପକାଇ ବଳତ୍କାର କରି ମାଡ଼ି ବସିଲା ।

ଗର୍ଜି ଉଠିଲା ଶ୍ରାବଣୀର ଆହତ ନାରୀତ୍ୱ । ଦେହରେ ତା'ର ସର୍ପିଣୀର ପ୍ରତିହିଂସା; ତା'ର ଶେଷାସ୍ତ୍ର ଥିଲା– ଦାନ୍ତ । ଅଳ୍ପ ସମୟ ପୂର୍ବେ ପଣ କରିଥିଲା । ଏଇତ ପ୍ରତିରୋଧ ଏବଂ ପ୍ରତିଶୋଧର ସୁଯୋଗ । ଜୀବନ ମରଣର ଏଇ ଘଡ଼ିସନ୍ଧି ମୁହୂର୍ତ୍ତରେ ଖୁବ୍ ଦୃଢ଼ଭାବେ ବ୍ୟବହାର କରିଥିଲା ତା' ଆତ୍ମରକ୍ଷାର ସେହି ଅସ୍ତ୍ରକୁ । ଖୁବ୍ ଶକ୍ତଭାବେ କାମୁଡ଼ି ଧରିଥିଲା କାମାନ୍ଧର ବେକ ମୂଳକୁ, ଯେଉଁଠି ଶ୍ୱାସନଳୀ ପ୍ରବେଶ କରିଛି ଛାତି ଭିତରକୁ । ଦୁର୍ବୃତ୍ତର ତଣ୍ଟିକୁ ଝୁଣି ରକ୍ତ ଶୋଷି ନେବ, ମରିବା ପର୍ଯ୍ୟନ୍ତ ଆଉ ଛାଡ଼ିବ ନାହିଁ ।

ଦାନ୍ତର ଶକ୍ତାଘାତରେ ପ୍ରଚଣ୍ଡ ପୀଡ଼ା ଅନୁଭବ କଲା କାମାତୁର ରାକ୍ଷସ ଏବଂ ଯୁଦ୍ଧର ସାମୟିକ ବିରତି ପରି ସେ ଖାଦ୍ୟ ଛାଡ଼ି କ୍ଷତସ୍ଥାନ ପରଖିଲା– ରକ୍ତ ଝରୁଛି– ଉଃ । ଇତ୍ୟବସରରେ ଶ୍ରାବଣୀ ବିଦ୍ୟୁତ୍ ବେଗରେ ଉଠି ପଡ଼ି କୋଠରୀ ଭିତର ସଲଗ୍ନ ସ୍ନାନାଗାର ଭିତରକୁ ପଶିଯାଇ କବାଟ ବନ୍ଦକରି ଦେଇଥିଲା ଏବଂ ସେହିଠାରେ ମୂର୍ଚ୍ଛାଗଲା ।

ବାହାରେ ପାଟି ହେଲାଣି । କବାଟରେ ପ୍ରଚଣ୍ଡ ଆଘାତ ହେଲାଣି ।

: ଖୋଲ୍ ଶିର, କବାଟ ଖୋଲ । କିଏ ଘରେ ପଶିଛି ? କିଏରେ ବାଡ଼ିପଶା, ଅଳପେଇସା ପାଷାଣ୍ଡ ମୋ ଘରେ ?

ବାଇଜୀର ଆତଙ୍କ ଧ୍ୱନି ଶୁଣି କେତୋଟି ଅନ୍ତେବାସିନୀ ଜମା ହୋଇ ଗଲେ । କବାଟ ଖୋଲିଲା । ଘରେ ଲଂକାକାଣ୍ଡ ଦେଖି ବାଇଜୀର ହଂସା ଉଡ଼ିଗଲା । କିଏରେ ରସିକ ନାଗର ତୁ ? ରାଗ ଥମ୍ ଥମ୍ ମୁହଁରେ ଭର୍ତ୍ସନା କଲା ଅନୁପ୍ରବେଶକାରୀକୁ । ଖୋଜିଲା ଶ୍ରାବଣୀକୁ ।



Digitized by PPRACHIN, SOA

: କାହିଁ ମୋ ଝିଅ, କୁଆଡ଼େ ଗଲା ସେ ? କିଏରେ ଗୁଣ୍ଡା ତୋତେ ଅନୁମତି ଦେଲା ଏ ଘରେ ପଶିବାକୁ ?

ରସିକ ଚୂଡାମଣି କିଛି ଗୋଟାଏ ବିଶେଷ ଘଟଣା ନ ଘଟିଲା ଭଳି ଖୁବ୍ ସାଧାରଣ ଭାବେ କ୍ଷତସ୍ଥାନରେ ରୁମାଲ୍ ଲେପୁଥିଲା ।

ଘରମେଲୀ ଗଣୀ ବ୍ୟସ୍ତ ବିବ୍ରତ ହୋଇ ଘର ସାରା ଅଣ୍ଡାଳି ଗଲା—ଖଟ ତଳ, ଆଲମାରୀ ପଛ ଏବଂ ଶେଷକୁ ସ୍ନାନାଗାର । ଚମକି ପଡ଼ିଲା । ଭିତର ପଟୁ ଗାଧୁଆ ଘର ବନ୍ଦ । ଚିହିଁକି ଉଠିଲା ଲୋକଟି ଉପରେ । କ'ଣ କରିଛୁରେ ପାପୀଷ୍ଠ ମୋ ସୁନା ଝିଅକୁ ? ବାହୁନି କାନ୍ଦିଲା । ଲୋକଟିର ଚଉଦ ପୁରୁଷ ଶ୍ରାଦ୍ଧ କଲା । ବିକଳ ହୋଇ ଡ଼ାକିଲା— ଶିର, ଶିର; ଶ୍ରାବଣୀ, ମୋ ହୀରା, ଗେହ୍ଲାଝିଅ, କବାଟ ଖୋଲ, କବାଟ ଖୋଲ, ମୁଁ ଏ ଲୋକକୁ ଛାଡ଼ୁନି ଦୋଷୀକୁ ନିଶ୍ଚୟ ଦଣ୍ଡ ଦେବି । ପୋଲିସ୍ ଡ଼ାକିବି... ମୋ ସୁନାଟା ପରା, କବାଟ ଖୋଲ ।

ତଥାପି କବାଟ ଖୋଲୁନି । କ'ଣ ହେଲା ତେବେ ?

ଲୋକଟିକୁ ଜବତ କରି ରଖିବାକୁ ଉପସ୍ଥିତ ଅନ୍ତେବାସିନୀମାନଙ୍କୁ ବାଇଜୀ ଇସାରା ଦେଲା । ସେ ମଧ୍ୟ ଭୟ ନକରି ମୁକାବିଲା ଢଙ୍ଗରେ ଅପେକ୍ଷା କରି ରହିଲା ।

କଂସାରୀ ଘର ପାରକୁ କୁଲା ଡାଉଁ ଡାଉଁ କରୁଛି ବାଇଜୀଟା ? ପୁଲିସ ଡ଼ାକିବ ବୋଲି ଧମକ ଦେଉଛି ? ଚୋରି କରୁଛି ନିଜେ, ମୁହଁ ଟାଣ କାହା ଆଗେ ଦେଖଉଚି ? କରୁ ସେ କ'ଣ କରିବ ? ଲୋକଟି ମନରେ ଦୃଢ଼ତା ।

ଶ୍ରାବଣୀର ଚେତା ଫେରି ନଥିଲା । ଖୁବ୍ ଡ଼ରି ଗଲା ଘରମେଲୀଗଣୀ । ଆଜି ଦୁର୍ଦ୍ଦଶାର ଦିନ । କାହିଁକି ଭଲା ସେ ସାଙ୍ଗରେ ନ ନେଇ ପିଲାଟାକୁ ଏକା ଛାଡ଼ି ଗଲା ? ଧିକ୍କାରିଲା ନିଜ ଅସାବଧାନତାକୁ ।



Digitized by PPRACHIN, SOA

ବହୁ ଉଦ୍ୟମ ପରେ କବାଟ ଖୋଲାଗଲା । ଶ୍ରାବଣୀ ବେହୋସ ହୋଇ ପଡ଼ି ଥିବାର ଦେଖି ସ୍ୱମେଇାଗଣୀ ଅଧୈର୍ଯ୍ୟ ହୋଇ ପଡ଼ିଲା । ସଞ୍ଜ୍ଞାହୀନ ଦେହକୁ ବିଞ୍ଚି, ମୁଣ୍ଡରେ ପାଣି ଛିଞ୍ଚି ତା' ଚେତା ଫେରାଇଲା । ଶ୍ରାବଣୀ ଆସ୍ତେ ଆଖି ମେଲିଲା ।

ଉଠ୍ ମୋ ଝିଅ, ଉଠ୍, କ'ଣ ହେଇଛି କହ ।

ଅନ୍ତେବାସିନୀମାନେ ତାକୁ ଉଠେଇ ବିଛଣାରେ ଥୋଇଲେ । ଡାକ୍ତର ଡ଼କାଗଲା । ଶୁଶ୍ରୂଷା ଆରମ୍ଭ ହୋଇ ଯାଇଥିଲା ।

ଦୁର୍ଦ୍ଦଶାକର୍ତ୍ତା ଏଥର ଯିବାକୁ ଉଦ୍ୟମ କଲା, ମୁହଁରେ ଚଢ଼ଉ କଲା ସ୍ୱମେଇାଗଣୀ ।

: କାହିଁକିରେ ସତ୍ୟାନାସିଆ ମୋ ଲକ୍ଷ୍ମୀବତୀ ଝିଅର ସର୍ବନାଶ କଲୁ ?

: ମୁଁ ତା'ର କିଛି କରିନି । ମୋର କିଛି ଭୁଲ ନାହିଁ ।

: ସତ କହୁଛୁ ? ସେ ତେବେ ବେହୋସ କାହିଁକି ହେଲା ?

: ତା' ଗୁଣରୁ । ଗୋଟେ ମାରଣା ମଉଁଷି ଏ ଘରେ ଅଛି ବୋଲି କିଏ ଜାଣିଥିଲା ?

ନିର୍ଲଜ୍ଜ ମୁହଁରେ ରସିକ ଚୂଡ଼ାମଣି ତା ବେକର କ୍ଷତ ସ୍ଥାନ ଦେଖାଇଲା ।

: ତତେ ଠିକ୍ ହୋଇଛି । ବିଛା ମନ୍ତ୍ର ନ ଜାଣି ସାପ ଗାତରେ ହାତ ପୂରଉ ଥିଲୁ କାହିଁକି ? ହାଗକୁ ପାଟିରେ ଦେଲେ କ'ଣ ହୁଏରେ ମୂର୍ଖ ?

: ଶାଳୀ ସତୀ ଦେଖେଇ ହେଉଛି । ବେଶ୍ୟାର ଝିଅ, ପୁଣି ମହାସତୀ ବୋଲଉଛି ? ଥାଉ, ଲୁହାକୁ ପାଣିରେ ରଖିଲେ କଳଙ୍କି ଲାଗିବାର ଲାଗିବ, ହୁଃ ।



Digitized by PPRACHIN, SOA

ମୁହଁକୁ ଟାଣକରି ଦର୍ପରେ ଫେରିଯାଇଥିଲା ରସିକ ନାଗର । ସ୍ୱୈରିନାରୀ କଲେ ଏମିତି ଅପଦସ୍ତ ହେବାକୁ ପଡ଼ିଥାଏ । ଏଟା କିଛି ନୂଆ କଥା ନୁହେଁ । ନୂଆ କଥା ହେଉଛି ବାଇଜୀର ପୋଷା ମୃଗୁଣୀଟି ... ଏମିତି ନାଚ ମାରିବ ବୋଲି କିଏ ଜାଣିଥିଲା ?

ଶ୍ରାବଣୀକୁ ନୂଆ ଘରକୁ ସ୍ଥାନାନ୍ତରିତ କରାଗଲା । ଶେଠ ଓମ୍‌ପ୍ରକାଶଙ୍କ ଛୋଟ ପକ୍‌କାଘର । ଭଲ ପରିବେଶ । ଶ୍ରାବଣୀ ସାମାନ୍ୟ ସୁସ୍ଥତା ଅନୁଭବ କଲା, କିନ୍ତୁ ବିଛଣାରୁ ଉଠି ପାରୁ ନ ଥିଲା । ଦୁର୍ବଳ ଲାଗୁଥିଲା, ମାନସିକ ଆଘାତ ତାକୁ ଅଧିକ ଦୁର୍ବଳ କରୁଥିଲା । ଆଖି ଖୋଲିବାକୁ ଆଦୌ ଇଛା ହେଉ ନଥିଲା, ଖୋଲିଲେ ତାକୁ ଖାଲି ସେପୁର ଦିଶୁଥିଲା ।

: ମାଉସୀ, ଏଟା କ'ଣ ଗୋଟେ ବେଶ୍ୟା ପଡ଼ା ?

: ନା, ଆମେ ଘର ବଦଳ କରି ଦେଇଛେ । ମଉସା ଓମ୍‌ପ୍ରକାଶଙ୍କ ଘର । ତାଙ୍କ ଦୟାରୁ ଏମିତି ବହୁତ ନିଆଶ୍ରୀ ବଞ୍ଚୁଛନ୍ତି । ସେ ତୋତେ ଦେଖିବାକୁ ଆସିଥିଲେ । ତୁ ଶୋଇଥିଲୁ । ଡାକ୍ତର କହିଛି ତୋତେ ଶୋଇ ରହିବା ପାଇଁ । ଦେଖେ, ତୋ ପାଇଁ ସେ ଆଣିଛନ୍ତି କେତେ ଫଳ, ଔଷଧ ଏବଂ ହର୍‌ଲିକ୍‌ସ ।

କାହାର ଦୟା ଅନୁକମ୍ପା ହେଲେ ଏଥର ଶ୍ରାବଣୀ ମନରେ ଘୋର ବିତୃଷ୍ଣା ଜାତ ହେଉଛି । ସନ୍ତ୍ରସ୍ତ ମନକୁ ଆଉ ସେ ବୁଝେଇ ପାରୁନି । ଧୈର୍ଯ୍ୟର ବନ୍ଧ ଭୁଷୁଡ଼ି ପଡୁଛି ବାରମ୍ବାର । ଅନିଶ୍ଚିତ ଭବିଷ୍ୟତକୁ ଆଶାକରି ଏମିତି ସେ କେତେଦିନ ବଞ୍ଚିବ ? ମଣିଷ ଉପରୁ ବିଶ୍ୱାସ ତୁଟୁଛି । ମାଉସୀଟା ଗୋଟାଏ ବୁଢ଼ୀ ଦାରୀ । ତା' କଥାରେ ଆଉ ବିଶ୍ୱାସ ନାହିଁ । ଏ ନୂଆ ଘରଟା ଯେ ବେଶ୍ୟାଳୟ ନୁହେଁ କିଏ କହିବ ? ଟିକିଏ ସୁସ୍ଥ ହୋଇଗଲେ ତାକୁ ଭୁଲେଇ ପାପର ଦୁର୍ଗରେ କଏଦେଇ ଭଳି ହୁଏତ ପୁଣି ନଚେଇବ, ତା'ର ଆଉ ସ୍ୱର ନ ଥିବ । ସବୁ ବାରଙ୍ଗନାଙ୍କ ପରି ସେ ବି ମଦୋନ୍ମତ୍ତ ହୋଇ ମଦିରମୟ ଗତି ପୁହାଇବ । ପାପ ନ କରିଥିଲେ ସେ କ'ଣ ଏମିତି ଦଣ୍ଡ ଭୋଗନ୍ତା ! ଏଠି ଆଉ ମୁହୂର୍ତ୍ତେ ରହିବା ଅର୍ଥ ତା' ପକ୍ଷେ ନର୍କବାସ । ଉପାୟ ଖୋଜି ବସିଲା । ଅନ୍ତିମ ନିଷ୍ପତ୍ତି ଗ୍ରହଣ କରିନେଲା ।



Digitized by PPRACHIN, SOA

ଗଭୀର ରାତି । ଘୁମେଇଲାଗଣୀ କ୍ଳାନ୍ତ ହୋଇ ଶୋଇ ପଡ଼ିଥିଲା । ତା ହାତଟି ଥିଲା ଶ୍ରାବଣୀ ଉପରେ । କଡ଼ ଲେଉଟେଇବା ବାହାନାରେ ଆସ୍ତେ ହାତଟିକୁ ଉଠେଇ ଦେଲା ତା ଉପରୁ । ମାଉସୀକୁ ନିଦ ଘାରିଛି । ଶ୍ରାବଣୀ କବାଟ ଖୋଲିଲା ଖୁବ୍ ସାବଧାନରେ । ଗୁଲି ଆସିଲା ବାହାରକୁ । ଆଗକୁ ପାଦ କାଢ଼ିଲା ଖୁବ୍ ସନ୍ତର୍ପଣରେ, ଠିକ୍ ଯେମିତି ସେଦିନ ରାତିରେ ଭଇ ବୋଲାଉଥିବା ଭଦ୍ରଲୋକ ଘରୁ ପ୍ରାଣ ଭୟରେ ମହାବଳ ହାବୁଡ଼ରୁ ଗୁଲି ଆସିଥିଲା ସହର ଭିତରକୁ । ବନ ମୃଗୁଣୀଟିଏ ବାରମ୍ବାର ବାଘ ହାବୁଡ଼ରୁ ବର୍ତ୍ତିବା କେବଳ କପାଳ ଜୋରର କଥା ସିନା ! ଆଉ ନୁହେଁ, ଆଉ ପାରିବନି ସେ । ଆଜି ଯାଉଛି ସେଇ ହାବଡ଼ା ଷ୍ଟେସନକୁ । ହାବଡ଼ା ତା'ର ଲକ୍ଷ୍ୟସ୍ଥଳୀ— ଜୀବନ ଲିଭେଇବାର ଶେଷ ସ୍ଥାନ ।

ହାବଡ଼ା ଷ୍ଟେସନ । ସକାଳ ହେଲାଣି ଅପେକ୍ଷାକୃତ ନିରେଳା ସ୍ଥାନରେ ବସି ରହିଥିଲା ଶ୍ରାବଣୀ । ବିଗତ ଘଟଣା ଗୁଡ଼ିକ ଭୟଙ୍କର ଝଡ଼ ସୃଷ୍ଟି କରୁଥିଲା ତା ମୁଣ୍ଡ ଭିତରେ, ମନରେ ଘୂର୍ଣ୍ଣିବାୟୁର ଉତ୍ପାଦନ । ଏ କାଳରେ, ଏମିତି ଯୁଗ ଯନ୍ତ୍ରଣାରେ ଛଟପଟ କଇବଇ ହେବା ଆଉ ଦୁର୍ବାର ପରିସ୍ଥିତି ମଧ୍ୟରେ ବଞ୍ଚ ରହିବା ଆଦୌ ସମ୍ଭବ ନୁହେଁ । ବଞ୍ଚିବାର ଟାଣପଣ ତା'ର ଭାଙ୍ଗିଛି, ସେ ଆଜି ହାରି ଯାଇଛି ।

ଦୃଢ ସଙ୍କଳ୍ପ କରି ନେଲା ଶ୍ରାବଣୀ, ସେ ମରିବ । ଅହଂ-ନାଗରା ବାଜିବ, ମେଦିନୀ ଫାଟିବ । ତିନିଦିନ ମଧ୍ୟରେ ସ୍ୱାମୀ ଦର୍ଶନ ନପାଇଲେ ନିଜକୁ ବଳିଦେବ ଚଳନ୍ତା ରେଳଗାଡ଼ିର ଚକ ତଳେ । ଯେଉଁ ପାଷାଣ୍ଡ ଯାନ ତା'ର ଅମଙ୍ଗଳ ଘଟାଇଛି, ସ୍ୱାମୀଙ୍କୁ ବିଚ୍ଛେଦ କରିଛି, ତାକୁ ଯମଯନ୍ତ୍ରଣା ଦେଇଛି, ସତୀନାରୀର ପବିତ୍ର ରକ୍ତ ପାନ କରି ସେ ଶାନ୍ତି ପାଉ । ଲିଭିଯାଉ ଏ ସଂସାରରୁ ସତୀତ୍ୱ, ଲୋପ ପାଇଯାଉ ସାରା ସୃଷ୍ଟିର ପବିତ୍ରତା, ଉଭେଇ ଯାଉ ଏ ସମାଜରୁ ନାରୀର ଏକାଗ୍ରତା, ଧ୍ୱଂସ ହୋଇଯାଉ ସବୁ ଶାସ୍ତ୍ର, ପୁରାଣ ଓ ଧର୍ମବାଣୀ, ବିଶ୍ୱକୁ ଗ୍ରାସକରୁ ବର୍ବରତା । ଏହା ଥିଲା ତା'ର ଶେଷ ସିଦ୍ଧାନ୍ତ ; ଏକ ନିଷ୍ପାପୀ, ନିରପରାଧିନୀ ନାରୀର ଶେଷ ସର୍ତ୍ତ, ଜଣେ ପତିପ୍ରାଣା ହିନ୍ଦୁ ମହିଳାର ଇତି କଥା ।



Digitized by PPRACHIN, SOA

ଗୋଟିଏ ଦିନ ଜଳାହାରରେ କଟିଲା । ଦ୍ୱିତୀୟ ଦିନରେ ଅତ୍ୟନ୍ତ ଦୁର୍ବଳତା ସେ ଅନୁଭବ କଲା । ଦେହ ଭୀଷଣ ମଣ୍ଡେଇ ହେଉଥିଲା– ଥଇ, ଓକାଉ, ବାନ୍ତି । କେତେଦିନ ହେବ ପେଟଟା କଅଣ ଏମିତି ବିଗିଡ଼ି ଯାଇଛି ଯେ, ପାଣି ଟୋପେ ପଡ଼ିଲେ ବାହାରକୁ ଝାଲି ଆସୁଛି, ଅନ୍ତଃନଳୀଟା ଖାଲି କୋରି ବିଦାରି ପକଉଚି । ପାଟି ଅରୁଚି ଧରିଛି । କ'ଣ ହୋଇଚି ଏ ପୋଡ଼ା ଦିହଟାର ?

ତୃତୀୟ ଦିନ ଉପସ୍ଥିତ ହେଲା । ପ୍ଲାଟଫର୍ମର ସିମେଣ୍ଟ ଚେଜ ଉପରେ ନିସ୍ତେଜ ଭାବେ ପଡ଼ି ରହିଥିଲା ଶ୍ରାବଣୀ । ତା' ସିଦ୍ଧାନ୍ତର ଶେଷଦିନ ଆଜି ।

: ଉଠ୍ ଉଠ୍, ବୋପାର ଜାଗା ଭଳି ପୂରା ବେଞ୍ଚଟାକୁ ମାଡ଼ି ବସିଛି ।

ଉଠ୍, ଜିନିଷ ରହିବ ଏଠି, ବସିବି ମୁଁ ... ।

ଜଣେ ଯାତ୍ରୀ ତାଗିଦ୍ କରୁଛି ।

ଶ୍ରାବଣୀର ନିର୍ଜୀବ ଆଖିକୁ ଚାହିଁଲା ।

ଯାତ୍ରୀଟି ଚମକି ପଡ଼ିଲା ।

: ଆଲେ ସାବି, ତୁ କ'ଣ ଏଠି ? କେବେ, କିପରି ଆସିଲୁ ? କ'ଣ ତୋର ଏଠି କାମ ? ତୋ ରୂପ କାହିଁକି ଏମିତି ହୋଇଛି କିଲେ ?

ଗୋରା ତକ ତକ ଟଗର ଫୁଲିଆ ଦେହ, ଏମିତି ଅଙ୍ଗାର କାଠ ଭଳି ଦିଶୁଚି କିଆଁ ?

ଶ୍ରାବଣୀ ଦେଖୁଛି, ତା ଗାଁ ବଗୁଲା ଭାଇ ଛିଡ଼ା ହୋଇଛି । ଭଲ ଭାବେ ତାକୁ ଚିହ୍ନେ । ସ୍ନେହୀ, ମିଷ୍ଟଭାଷୀ । ତାଠୁ ବୟସରେ ଢେର ବଡ଼ । ହେତୁ ପାଇଲା ଦିନୁ ଜାଣି ଥିଲା, ବଗୁଲା ଭାଇ କଲିକତା ଚଟକଳରେ ଚାକିରୀ କରେ । ପିଲାମାନେ ଥା'ନ୍ତି



Digitized by PPRACHIN, SOA

ସମସରପୁରରେ– ବାପ ଘର ଗାଁ । ପିଲଙ୍କ ମୁହଁରୁ ଶୁଣି ଥାଏ ବାପାଙ୍କ ପାରିଲାପଣ, ଉପାର୍ଜନ କ୍ଷମତା । ବଗୁଲା ଭାଇ ଏମିତି ବର୍ଷେ, ଦୁଇ ବର୍ଷ ବ୍ୟବଧାନରେ ଛୁଟି ନେଇ ଗାଁକୁ ଆସିଥାଏ । ଆନନ୍ଦ ଉପଭୋଗରେ ପିଲାଙ୍କ ମେଳରେ ଛୁଟି ବିତେଇ ପୁଣି ଫେରିଯାଏ କର୍ମକ୍ଷେତ୍ରକୁ ।

ବିଦେଶ ମାଟିରେ ଦେଶଲୋକ ଦେଖିଲେ ସ୍ୱତଃ ଆତ୍ମୀୟତା ଜାତ ହୁଏ । ଜୀବନର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ବଗୁଲା ଭାଇର ଦେଖା । ଆନନ୍ଦ ଲାଗିଲା ଯେତିକି, ଦୁଃଖ ମଧ୍ୟ ଅନୁଭବ କଲା ସେଇ ପରିମାଣରେ । କ'ଣ ଉତ୍ତର ଦେବ ବଗୁଲା ଭାଇର ପ୍ରଶ୍ନ ଗୁଡ଼ିକର ? କି ସୁଖ ଅଛି ଆଉ ତା'ର ? ଆଖିରେ ଆଖିଏ ଲୁହ ଜମି ରହିଥିଲା । ପୁନେଇଁ ଚନ୍ଦର ପରିଷ୍କାର ମୁହଁଟି ମଲାଜହ୍ନ ପରି ମଳିନ ଦିଶୁ ଥିଲା ।

ବଗୁଲା ଭାଇର ସ୍ନେହ ବିଗଳିତ ସ୍ୱର– କିଲୋ କହୁନୁ କ'ଣ ? ଏମିତି ଚୁପ୍ ହୋଇ ବସିଲୁ ଯେ ! ପିଲା ଦିନର ତୋର ସେଇ ଲାଜକୁଳୀ ଢଙ୍ଗ ଗଲାନି ।

ଶ୍ରାବଣୀର ଦେହ ମୁଣ୍ଡକୁ ଆଉ ଥରେ ଦର୍ଷି ଚଗଲ ବଗୁଲ କହିଲ– ଶୁଣିଥିଲି ତୋ'ର ବାହାଘରରେ କୁଆଡ଼େ ଗାଁରେ ବହୁ ଗଣ୍ଡଗୋଳ ହୋଇଥିଲ । ମାମୁଁ ଘରେ ରହି ବାହା ହେଲୁ । ଭଲ ଘର, ଭଲ ବର । ବର କ'ଣ କରେ, କେଉଁଠିକାର ?

ଏତେ ଗୁଡ଼ିଏ ପ୍ରଶ୍ନର ହଠାତ୍ ଉତ୍ତର ଦେବା ଏଭଳି ପରିସ୍ଥିତିରେ ଶ୍ରାବଣୀ ପକ୍ଷେ ସମ୍ଭବ ନଥିଲ । କହିଲେ ପୁରାଣଟିଏ ହେବ । ପୂର୍ବବତ୍ ସ୍ଥାଣୁ ରହିଲ ନିଶ୍ଚଳ ପ୍ରତିମା ପରି । ଦୁଃଖକାତର ମନ ଆହୁରି ଭାଙ୍ଗି ପଡୁଥିଲ । ବଗୁଲ ଭାଇ କିନ୍ତୁ ନଛୋଡ଼ବନ୍ଧା । ଗାଁର ବିବାହିତା ଭଉଣୀଟିଏ ଦେଖା ହୋଇଛି ବିଦେଶରେ । କିଏ ଜାଣେ, ସୁବିଧା ଅସୁବିଧା ଅଛି । ଖୋଳି, ଉଖାରି କଥା ଆଦାୟ ନ କଲା ପର୍ଯ୍ୟନ୍ତ ଛାଡ଼ିବ ନାହିଁ ।

: ଶାଶୁ ଘର ?



Digitized by PPRACHIN, SOA

ଆଉ ରକ୍ଷା ନାହିଁ । ଉତ୍ତର ଦେବାକୁଇ ହେବ । ନକହି ଯିବ କୁଆଡ଼େ ? କରୁଣ କଣ୍ଠରେ କହିଲା– ମାନପୁର ବଡ଼ ଜେନା ଘର ।

: ସନାତନ ବଡ଼ ଜେନା ?

ମୁଣ୍ଡଟୁଙ୍ଗାରି ଶ୍ରାବଣୀ କହିଲା– ହଁ ।

: ଖୁବ୍ ଭାଗ୍ୟବତୀ ତୁ । ବେଦୀରୁ ବର ବାହୁଡ଼ି ଗଲାପରେ ଭଲ ବର ମିଳିଲେ ଭାଗ୍ୟ ନୁହଁତ ଆଉ କ'ଣ ? ସୁଖୀ ପରିବାର । ଗୋଟିଏ ବୋଲି ପୁଅ, କେଁ ନାହିଁ, କଳିଆ ନାହିଁ । ଭାରି ଭଲ କଥା । ସନାତନଙ୍କ ପୁଅ ଭଲ ପଢ଼ୁଥିଲା ପରା ! ସେ କେଉଁଠି ଅଛି ଅବିକା ?

ଅଧା ତୋକା ସ୍ୱରରେ କାନ୍ଦି କାନ୍ଦି କହିଲା– ପରୀକ୍ଷା ଦେବାକୁ ଏଠିକୁ ଆସିଥିଲେ । ମୁଁ ଆସିଥିଲି ସାଙ୍ଗରେ ସହର ବୁଲିବାକୁ । ମୋତେ ଛାଡ଼ି ଗଲେ । ବହୁତ ଖୋଜିଲିଣି, ନୟାନ୍ତ ହେଲିଣି । ଆଉ ଦେଖା ମିଳୁନି । ସରଗ ପାଇଁ ସରଗକୁ ହାତ ଟେକିଥିଲି, ନରକ ଭୋଗିଲି । ଆଉ କ'ଣ ତାଙ୍କୁ ଦେଖିବି ?

: କେବେଠୁଁ ଏ ଘଟଣା ?

: ଦୁଇ ପୂରି ତିନି ମାସ ଚାଲୁଛି ।

ବଗୁଲା ମୁହଁରେ ପରମାଶ୍ଚର୍ଯ୍ୟ ଚିହ୍ନ : କ'ଣ ହେଲା, ତୁ ଏତେ ଦିନ ହେଲା କଲିକତା ସହରରେ ଖୋଜୁଛୁ ? ତୁ ଜାଣି ନାହୁଁ ସାବି, ଏ କଲିକତା ସହର ବଡ଼ ଭୟଙ୍କର । ଏଠି ପୁରୁଷ ପିଲା ବି ଦିନରେ ଭୁଆଁ ବୁଲନ୍ତି ; ଟିକିଏ ଅସାବଧାନ ହେଲେ ଦେହରୁ ଚମଡ଼ା ଉତୁରି ଯିବ । କେମିତି ଏକା ଏତେଦିନ ଏଠି ବଞ୍ଚୁ ପାରିଲୁ ? ତୋ କପାଳ ଭରି ଟାଣଲେ ସାବି !

ବଗୁଲାଭାଇ ଯାହା କହୁଛି, ଶ୍ରାବଣୀ ତାହା ଅଙ୍ଗେ ନିଭେଇଛି । ସହରୀ ଦୁନିଆର ଭୟାବହତା ନିଜେ ଭୋଗିଛି । ତା'ର ସହାନୁଭୂତି



Digitized by PPRACHIN, SOA

ଅବର୍ଣ୍ଣନୀୟ । ଦୂରପର୍ବତ ଭଳି ସୁନ୍ଦର ଏଇ ସହର, ପ୍ରକୃତରେ କିନ୍ତୁ ବିଷଫଳ । ନିକଟକୁ ଯାଅ, ଦେଖିବ କେବଳ ଅନଳ– ଏଠି ରହିଛି ଦୁନିଆର ଯାବତୀୟ ଯନ୍ତ୍ରଣା, ନାରକୀୟ ଘଟଣା । ଅଭିଶାପ ନଥିଲେ କ'ଣ ମଣିଷ ବିଷଫଳ ଖାଏ ? ପୂର୍ବ ଜନ୍ମରେ ପାପ ନ କରିଥିଲେ କ'ଣ ମଣିଷ ନର୍କ ଭୋଗେ ?

ଶ୍ରାବଣୀ ଆଖିରେ ଲୁହ ଧାର ଛୁଟିଥିଲା । ଜୀବନ ପ୍ରତି ଅବଜ୍ଞାର ସ୍ୱର ବାଜି ଉଠିଲା । ଭୋତକାଦ୍ରି ଆଖିରେ କହିଲା– ବଗୁଲା ଭାଇ, ମୁଁ ଏଥର ଆଉ ବଞ୍ଚିବିନି । ମରିବାକୁ ସ୍ଥିର କରିଛି ... ।

: ଛି ପାଗଳୀଟାଏ ନା କ'ଣ ? ଏମିତି ଅସନା, ଅଲକ୍ଷଣା କଥା ପାଟିରେ ଧରନ୍ତି ? କ'ଣ ବା ତୋର ହେଇଛି ଯେ ? ଏମିତିତ କେତେ ମହାଶ୍ଚର୍ଯ୍ୟ ଘଟଣା ଦିନ୍ ଘଟୁଛି । ଅହରହ ଏଠି ମୃତ୍ୟୁ ନୃତ୍ୟ କରୁଛି । ତା' ଭିତରେ ତୁ ଯେ ଜୀଇଁ ରହିଛୁ, ଭାଗ୍ୟର କଥା । ତୋତେ ସାବାସ୍ କରିବା କଥା । ଯାଇ୍ ଯାଜ୍, କ'ଣ ଖାଇଥିବୁକି ନାହିଁ, ଆଗ ଟିକିଏ ଖାଇ ଆସିବୁ ।

: ଖାଦ୍ୟ ପ୍ରତି ଆଉ ମୋର ଆଗ୍ରହ ନାହିଁ, ଭରସା ନାହିଁ । ମୁଣ୍ଡ ଉପରେ ମୃତ୍ୟୁ ହାତ ଠାରି ଡ଼ାକୁଛି ।

ଶ୍ରାବଣୀ କେବଳ କାନ୍ଦୁଥିଲା । ଲୁହ ଝରଣାର ଅନ୍ତ ନଥିଲା ।

: ବାୟାଣୀଟା । ଏମିତି ଅଧୈର୍ଯ୍ୟ ହେଲେ କ'ଣ କାମ ହୁଏ ? ଦେଖୁଛି, ତୁଟା ଗୋଟେ ଏକ ନମ୍ବର ବୋକୀ । ଧେତ୍ ତେରିକା ବୁଦ୍ଧୁ କେଉଁଠିକାର । ଆଲୋ ତୋ ବର କ'ଣ ତୋ ଭଳି ବୋକା ହେଇଚି ! ସେ କ'ଣ ଅଦେଇ ମାସ ହେଲା ତୋତେ ଏଠି ଖୋଜୁଛି ? ପାଠୁଆ ପିଲା, ବୁଦ୍ଧି ଶୁଦ୍ଧି ଅଛି । ଗାଁରେ ଥିବ ନା !



Digitized by PPRACHIN, SOA

ତୁ କାହିଁକି ଚୁଛାଟାରେ ଏଠି ଅନ୍ଧାରରେ ବାଡ଼ି ବୁଲଉଚୁ ? ଗ୍ଲଇ୍ ଗ୍ଲଇ୍ କ'ଣ ଦି'ଟା ପାଟିରେ ପକେଇ ଦେ । ଗାଡ଼ିବେଳ ହୋଇଯାଉଛି । ମୁଁ ବି ଗାଁକୁ ଯାଉଛି । ତୋତେ ନେଇ ତୋ ଶାଶୁଘରେ ଛାଡ଼ିଦେବି । ସବୁ ଠିକ୍ ହୋଇଯିବ ... ।

ଶ୍ରାବଣୀର ଚିନ୍ତାଶକ୍ତି ଓଲଟ ପାଲଟ ହୋଇ ଯାଉଥିଲା । ସତେ କ'ଣ ସ୍ୱାମୀ ଗାଁରେ ଥିବେ ? କିନ୍ତୁ ବଗୁଲଭଇ କଥା ଅସମ୍ଭବ ନୁହେଁ ବରଂ ତା' କଥାରେ ଯଥାର୍ଥତା ଅଛି, ବାସ୍ତବତା ମଧ୍ୟ ଅଛି । ସ୍ୱାମୀ ଏଠି ଥିବାର କୌଣସି ନିଶ୍ଚିତତା ନାହିଁ । ତାଙ୍କ ଗାଁରେ ଥିବେ ବୋଧେ । ପୁରୁଷ ପିଲା, ସେ କ'ଣ ଝିଅଙ୍କ ପରି ନିଷ୍ଠାବାନ୍ ?

ବଗୁଲର ଯୁକ୍ତିସଙ୍ଗତ କଥାରେ ଭୁଲିଥିଲା ଶ୍ରାବଣୀ । ବଡ଼ଭଇର ଆସନରେ ବସି ଭଉଣୀକୁ ଖୁଆଇ, ହସେଇ, ଖେଳେଇ, ମିଷ୍ଟାଛାପ କରି ସେମାନେ ବାହୁଡୁ ଥିଲେ ଗାଁ ଭୂଇଁକୁ । 

ଶ୍ରାବଣୀ ମାନପୁରରେ ପାଦଦେଲା ବେଳକୁ ଗାଁ ଭୂଇଁର ସଞ୍ଜ ନଇଁ ଆସୁଥିଲା, ପାଣିଚିଆ ଅନ୍ଧାର କ୍ରମେ ଗାଢ ହୋଇ ଆସୁଥିଲା । ଗାଁ ମୁଣ୍ଡ ବଟବୃକ୍ଷ ମୂଳେ ଗ୍ରାମ ଦେବତୀଙ୍କ ଆସ୍ଥାନ । ଜୁହାର ହେଲା ଶ୍ରାବଣୀ । ଶୁଭ ମନାସିଲା । ସେଦିନ ସେମାନେ ଏଇଠି ଗ୍ରାମ ଦେବତୀକୁ ପ୍ରଣିପାତ କରି ଯାତ୍ରାରମ୍ଭ କରିଥିଲେ । ଶାଶୁ, ଟିକି ନଣନ୍ଦ ବାଟେଇ ଦେବୀପାଇଁ ଏପର୍ଯ୍ୟନ୍ତ ଗ୍ଲଲି ଆସିଥିଲେ । ଆଜି ପୁଣି ଅଢେଇ ମାସ ଅନ୍ତେ ଶ୍ରାବଣୀ ମାନପୁର ଗାଁରେ ପ୍ରବେଶ କରୁଛି । ସେଦିନ ମନ ମତୁଆଲା ଥିଲା,



Digitized by PPRACHIN, SOA

ମଉଳରେ ମାଟି ଥିଲା, ପାଖେ ପାଖେ ଥିଲେ ସ୍ୱାମୀ ; ଆଜି କିନ୍ତୁ ମନ ମଳିନ, ଆଶଙ୍କିତ ଏବଂ ଉଦ୍‌ବେଗ ଗ୍ରସ୍ତ । ଆଜି ସେ ଏକାକିନୀ, ଜୀବନ ସାଥୀ ଅନ୍ୱେଷିଣୀ । ଆଉ ଅଳ୍ପ ସମୟ ପରେ ହୁଏତ ସ୍ୱାମୀ ଦର୍ଶନ ଲଭିବ ଅଥବା ନର୍କବାସୀ ହେବ । ମନରେ ଖେଳୁଥିଲା ଆଲୁଅ ଅନ୍ଧାରର ଚିତ୍ର, ଆଶା ଏବଂ ନିରଶାର ଦୃଶ୍ୟରାଜି ।

ଆଉ ଟିକିଏ ଗଲେ ଆସିବ ଶାଶୁ ଘର । ଶାଶୁ ଘର ଗାଁ, ସାବଧାନତାର ନାଁ । ହାତେ ମାପି ଗୃଖଣ୍ଡେ ଗ୍ଲିଲେ ବି ଏଠି ଥାଏ ଦୁର୍ନାମ, ଅପବାଦ । ଛାତି ଉଠୁଥିଲା, ପଡୁଥିଲା, ଦେହ ଥରୁଥିଲା, ଗୋଡ଼ରୁ ଜୀବନ ଛାଡ଼ି ଯାଉଥିଲା, ପାଦ ଆଗକୁ ଯିବାକୁ କୁଣ୍ଠା କରୁଥିଲା, ଯେମିତି ହାଣ ମୁହଁକୁ ଛେଳିଟାଏ ଟଣା ହୋଇଯାଉଛି । ଗାଁ ଦାଣ୍ଡରେ ହାତେ ଓଢ଼ଣା ଟାଣି ଶ୍ରାବଣୀ ଗ୍ଲିଥିଲା । ଆଗେ ଆଗେ ବଗୁଲା ଭଇ ଅଭୟ ଦେଇ ଗ୍ଲିଥିଲା ।

ସନାତନ ବଡ଼ ଜେନାଙ୍କ ଘର । ଉଚ୍ଚ ବାରଣ୍ଡାରେ ବସିଥିଲେ କେଇ ଜଣ ଗ୍ରାମ ଲୋକ, ସାଇ ସଙ୍ଗାତ । ସ୍ତ୍ରୀ ଲୋକଟି କିଏ ଆସୁଚି ଅନ୍ଧାରରେ ?

ଘର ଭିତରୁ ଶାଶୁଙ୍କ କାନ୍ଦଣା ଶୁଭୁଥିଲା ଦାଣ୍ଡ ଦ୍ୱାରକୁ । ଗଳା ଫଟେଇ ସେ ବାହୁନି କାନ୍ଦୁଥିଲେ– ସଂସାର ମୋର ଉଜୁଡ଼ି ଗଲା । ହୃଦୟଫଟା ସେ କାନ୍ଦ । ଶ୍ରାବଣୀର ହଲକ ଶୁଖିଗଲା । ଶ୍ୱାସରୁଦ୍ଧ ହେଲା, ରକ୍ତ ଜମାଟ ବାନ୍ଧିଲା । ଆଗକୁ ଗୋଡ଼ ଆଉ ଚଳିଲାନି ।

ବହୁ କଷ୍ଟରେ ପ୍ରବେଶ କଲା ଘର ଭିତରକୁ । ଶାଶୁ ଭୂଇଁରେ ମୁଣ୍ଡପିଟି କାନ୍ଦୁଥିଲେ, ଫୁଲି ଯାଇଥିଲା ମୁଣ୍ଡ । ତାଙ୍କୁ ଘେରି ରହିଥିଲେ ସାଇର ଗୁଡ଼ିଏ ସ୍ତ୍ରୀଲୋକ– ମା, ମାଉସୀ, ଖୁଡ଼ୀ, ବୁଢୀ, ସମ୍ପର୍କୀୟା, ସମ୍ବନ୍ଧୀୟା । ସଭିଙ୍କ ମହିଁରେ ଦୁଃଖର କରୁଣଛାୟା । କ'ଣ ଗୋଟେ ସାଙ୍ଘାତିକ ଘଟଣା ଘଟିଛି ନିଶ୍ଚୟ । ସମସ୍ତଙ୍କୁ ଆଡ଼େଇ ଶାଶୁଙ୍କ ନିକଟକୁ ଯିବାକୁ ସାହସ ନଥିଲା ।



Digitized by PPRACHIN, SOA

ଶ୍ରାବଣୀକୁ ଦେଖି ସମସ୍ତେ ତଟସ୍ଥ, ସ୍ତମ୍ଭୀଭୂତ। ସମସ୍ତଙ୍କ ପାଦତଳେ ମୁଣ୍ଡଖୋଇ ଶ୍ରାବଣୀ ଜୁହାର ହେଲା। ସଭିଙ୍କ ମୁହଁରେ ଗୁଞ୍ଜରଣ ବ୍ୟାପିଗଲା। କାନକୁ କାନ କଥା ହେଲିଲା। ଅଗ୍ନିନଳ ଛୁଟିଲା ଶୁଆଖୁଡ଼ୀଙ୍କ ମୁହଁରୁ ବକ୍ରଭଷା— କିଏ ଲୋ ମା ଏ କଳସର୍ପୀ ? ବୋହୂ ନା ପିତାଶୁଣୀ ଡାଆଣୀ। କୋଉଠି ଲୁଚି କ'ଣ କରୁଥିଲା ଆଜିଯାଏଁ ? ଗେରସ୍ତ ମରିବା ଶୁଣି ଗଣ୍ଡ ହେବା ପାଇଁ ଧାଇଁ ଆସିଚି ! ମରଣ ହେଉନି ପୋଡ଼ାମୁହିଁ ଅଲକ୍ଷୀକୁ ? ସମ୍ପତ୍ତି ଭଗ ପାଇଁ ଖାନିକୀ ମାଇପର ଏଡ଼େ ଆଶା ? ଏତେ ଲୋଭ ?

ଉଦଣ୍ଡୀ ବୁଲା ଭରିଯାର ସାଆଣଦିଆ ମୁହଁ ଆଉ ଚୁପ୍ ରହି ପାରିଲା ନାହିଁ। ସବୁବେଳେ ପାଟିରେ ତା'ର ଅଖାଡ଼ୁଆ ଭଷା। ମାନପୁର ଖଣ୍ଡେଇତ ସାଇର ମାଇପି ଓକିଲ ସେ। ଗାଉଁଲି ଢଗଢମାଳି କହିବାରେ ଓସ୍ତାଦ୍। କଥାରେ ନଥା ଲଗାଇ କୁଟୀଳାକାରରେ କହିବା ତା' ଚରିତ୍ର। ତା' ରୂକ୍ଷ ଭଷା ଶୁଣିଲେ ଋଷି ଜଟା ଛିଣ୍ଡେଇ ମରିବ, ମର୍ଦ୍ଦମାନେ ମୂଷାଗାତ ଖୋଜିବେ, ଝିଅ ବୋହୂମାନେ ବେକ ପାଇଁ ଦଉଡ଼ି ଖୋଜିବେ ବା ବିଷଖାଇ ପ୍ରାଣ ହାରିବେ। ସବୁବେଳେ ଉଣ୍ଡିଥାଏ ସୁଯୋଗକୁ, ଯୋଗ ଜୁଟିଲେ ଖରଖରି ଗୁଣ ହଠାତ୍ ଉପାତ ହୁଏ। ଏମନ୍ତ ପରିସ୍ଥିତିରେ ଶ୍ରାବଣୀର ଆବିର୍ଭବ ହୁଏ, ବୁଲା ଭରିଯା ବିଷ ଉଦ୍‌ଗାରିଲା।

ଶ୍ରାବଣୀ କାଠ ପାଇଟି ଯାଇଥିଲା। ଆଖିରେ ଲୁହ ଝରୁ ନଥିଲା କି ମୁହଁରେ ଭଷା ନଥିଲା। ଦୁର୍ଦ୍ଦଶାର ପ୍ରଚଣ୍ଡାଘାତରେ ମଣିଷର ଏମିତି ସ୍ଥାଣୁ ଅବସ୍ଥା ଆସିଥାଏ। ଏକି ଆଶା ବହିର୍ଭୂତ, ବର୍ଣ୍ଣନାତୀତ ଦୃଶ୍ୟ ! ସୃଷ୍ଟିର ସବୁଠୁଁ ବଡ଼ ଦଣ୍ଡଟି ତା' ମୁଣ୍ଡରେ କଉଡ଼ି ପଡ଼ିଛି। ମୁଣ୍ଡରୁ ସିନ୍ଦୂରଟୋପାଟି ଲିଭିଲା ପରେ ସସାରରେ ତା'ର ଆଉ କ'ଣ ରହିଲା ? ଏଇ କଥା ଦେଖିବାକୁ ସେ କ'ଣ ଏଯାଏଁ ବଞ୍ଚିଥିଲା ? କାହିଁକି ବିଧାତା ତା' ପ୍ରତି ଏତେ ନିଷ୍କରୁଣ, ନିଦାରୁଣ ? କାହିଁକି ଈଶ୍ୱର ଏତେ ନିର୍ଦ୍ଦୟ, ଏଡ଼େ ନିଷ୍ଠୁର ? କାହିଁକି ତାଙ୍କର ଏ ଅବିଗ୍ଭର ? ନିଷ୍ଠାର ଫଳ କ'ଣ ଏଇଆ ? ଧର୍ମବାଣୀ କ'ଣ କେବଳ ପ୍ରତାରଣା ? କଷ୍ଟକରି ବଞ୍ଚିଥିଲା



Digitized by PPRACHIN, SOA

କ'ଣ ଏଇ କଥା ଦେଖିବାକୁ ? କାହିଁକି ତାକୁ ମରଣ ହେଲା ନାହିଁ ବହୁ ଆଗରୁ ? କାହିଁ ସ୍ୱାମୀଙ୍କର ଚିତାନଳ ? କାହିଁ ତାଙ୍କ ଚିତାନଳ ? ସେଇଥିରେ ସେ ଝାସ ଦେଇ ହେବ ସ୍ୱର୍ଗ ପ୍ରାପ୍ତି ... ।

ଗଛରୁ ଡ଼ାଳ ଛିଣ୍ଡିଲା ଭଳି ଶ୍ରାବଣୀ ତଳେ ଗଡ଼ି ହୋଇ ପଡ଼ିଲା । ବକ୍ଷ ବିଦାରି ଉଚ୍ଛୁଳି ଆସିଲା ବିକଳ କ୍ରନ୍ଦନ ସ୍ୱର । ବଡ଼ ମର୍ମନ୍ତୁଦ ଥିଲା ତା'ର ବିଳାପ । ଘର, ବାଡ଼ି, ଦାଣ୍ଡ, ବିଳାପ ଧ୍ୱନିରେ ଥରି ଉଠିଲା ; ମେଦିନୀ କମ୍ପିଲା । ଶାଶୂ ବୋହୂଙ୍କର ଆର୍ତ୍ତସ୍ୱର ଏକାକାର ହୋଇ ବାୟୁମଣ୍ଡଳକୁ ବିଦୀର୍ଣ୍ଣ କଲା । ସେମାନଙ୍କ ବୁକୁଥରା ବିଳାପରେ ଥିଲା ସୃଷ୍ଟି ପ୍ରଳୟର ଧ୍ୱନି ।

ଶ୍ରାବଣୀର ଆକସ୍ମିକ ଆବିର୍ଭାବ ଦ୍ୱାରା ସନ୍ଧ୍ୟାର ଦଶାହ କାର୍ଯ୍ୟ ବାଧାପ୍ରାପ୍ତ ହୋଇଥିଲା । ପରବର୍ତ୍ତୀ କାର୍ଯ୍ୟକ୍ରମରେ ସାମାନ୍ୟ ପରିବର୍ତ୍ତନ ଆବଶ୍ୟକ ହେଲା । ହୋମ କାର୍ଯ୍ୟ, ଘୃତାହୂତି ସ୍ଥଗିତ ରହିଲା କିଛି ସମୟ । ସ୍ତ୍ରୀ ହାତରୁ ଖଡୁ କାଚ ନ ଉତାରିବା ପର୍ଯ୍ୟନ୍ତ, ମୁଣ୍ଡରୁ ସିନ୍ଦୂର ନ ପୋଛିଲା ପର୍ଯ୍ୟନ୍ତ ଘୃତାହୂତି ପ୍ରେତାର୍ଘ୍ୟ ହୋଇ ପାରିବ ନାହିଁ । ବିଳମ୍ବ ହେଲେ ମଧ୍ୟ ବିଧି ବିରୁଦ୍ଧ କାମ ପୁରୋହିତ ମହାଶୟ କରି ପାରିବେ ନାହିଁ । ଉଣ୍ଡାରୁଣୀ କାହିଁ ?

ଅବିଳମ୍ବେ ବାରିକାଣୀ ତା ନିଷ୍ଠୁର କାମଟି ଶେଷ କଲା । ଶ୍ରାବଣୀ ମୂର୍ଚ୍ଛା ଗଲା । ଧର୍ମବନ୍ଧା ପଦ୍ଧତି ଅନୁସାରେ ଦଶାହ କାର୍ଯ୍ୟ ଶେଷ ହେଲା । କାଲି ଏକାଦଶାହ– ସ୍ୱର୍ଣ୍ଣ ଦାନ, ବ୍ରାହ୍ମଣ ଭୋଜନ, ପଂକ୍ତି ଭୋଜନ । ସନାତନ ବଡ଼ ଢେଙ୍ଗା ଦେହକୁ ପଥର କରି ବିଧି ପାଳୁଥିଲା ପୁଅ ଆତ୍ମାର ସଦ୍‌ଗତି ନିମନ୍ତେ ।

ଶ୍ରାବଣୀର ଦେହ ନିରାଭରଣା, ବିଧବା ବେଶ । ଚିରହରିତ୍, ଶସ୍ୟ ଶ୍ୟାମଳା ସମତଳ ଭୂଇଁ ଆଜି ଦିଶୁଛି ଶୁଷ୍କ ମରୁଭୂମି ତୁଲ୍ୟ । ଯେଉଁ ଘରଟିରେ ଆନନ୍ଦର ଊର୍ମି ଉଛୁଳି ପଡୁଥିଲା, ସେଠି ଆଜି ଦୁଃଖର ଦରିଆ ଲହଡ଼ା ମାରୁଛି । ସଂସାରଟା କ'ଣ ଖାଲି ଦୁଃଖର ପାରାବାର ?



Digitized by PPRACHIN, SOA

ଶାଶୂଙ୍କର ପୂର୍ବ ଆଦର ଟିକକ ଉଭେଇ ଯାଇଛି । ଗଞ୍ଜଣା ବଢ଼ିଛି । ଏ ଅଲକ୍ଷଣୀ ବୋହୂର ସବୁଦୋଷ, ସବୁକାଣ୍ଡ । ଏ ଘରେ ଗୋଡ଼ ଦେଲା ଦିନୁ ଏଠି ସବୁ ଅମଙ୍ଗଳ ଘଟୁଛି । ଚବିଶ ବର୍ଷର ଭେଣ୍ଡିଆ ପୁଅକୁ ଖାଇଲା । ବଡ଼ ବଡ଼ ହଳୁଆ ଦାମୁଡ଼ି ଦିଇଟା ଫାଟୁଆ ରୋଗରେ ଟଳି ପଡ଼ିଲେ । କାଳି ଗାଇ ଅସୁରୁଣୀ ଛୁଆ ଜନ୍ମ କଲା । କ୍ଷେତ ଉଜୁଡ଼ିଲା । ସବୁ ଅଶୁଭ, ଅମଙ୍ଗଳ । ଘଇତା ଖାଇକୁ ମରଣ ହେଉନି କାହିଁକି ? ଏତେ କାଣ୍ଡ ଭିଆଇ ପାଟିକୁ ଗୁଣ୍ଡା ରୁଚୁଚି କିପରି ? ଗଣ୍ଡି କାହିଁପାଇଁ ରଖୁଛୁ ? ରୂପର ଥାଟ କାହାପାଇଁ ଥୋଇଚୁ ? କିଏ ଦେଖୁବ ଟୋ ଶୋଭ ସମ୍ଭାର ? ଦେଖା ସୁନ୍ଦର ବଉଳା ଗାଇ, ଶହେ ପୋଷି କି ଲାଭ ପାଇ ? ବରଂ କାଳି କନିଆଁ, ଲକ୍ଷୀମନ୍ତିଆ । କାଳି କୋତରୀ ହୋଇଥାନ୍ତା, ସୁଖ ଆଣିଥାନ୍ତା, ସେବା କରିଥାନ୍ତା, ଶୁଭ ଫଳିଥାନ୍ତା । ଭଲ ସଫା ଚମଡ଼ାରେ ଭୁଲିଲି ସେ । ବାପକୁ ଖାଇଲା, ପତିକୁ ମାରିଲା । ଆଉ ଯିଏ ରହିଛେ ସମସ୍ତଙ୍କୁ ଚୋବେଇ ଖାଇବ ସିଏ । ପୁଣି କେତେ କାଣ୍ଡ କରିବ ଏ ବଜ୍ଜାତୁଣୀ ଡାହାଣୀ । କିଏ ଜନମ ଦେଲା ଏ ଅଶୁଭ ଫଳଟିକୁ । ଅନ୍ତୁଡ଼ିଶାଳରେ ତଣ୍ଟିଚିପି ମାରି ଦେଇନି କାହିଁକି ତା' ମା' ?

ଶ୍ରାବଣୀ ଘୋର ଦୁଃଖ ବୁର୍ଦ୍ଦିନରେ ଦିନ କାଟିଲା । ବିଛଣାରେ ପଡ଼ି ରହିଥିଲା । ନ ଥିଲା ଚଞ୍ଚଳତା । ଦେହଟା ଭରି ଭରି ଲାଗୁଛି, ମୁଣ୍ଡ ଖୁବ୍ ଓଜନିଆ, ଟେକି ପାରୁନି ଉପରକୁ । ସକାଳୁ ରାତି ପହର ପର୍ଯ୍ୟନ୍ତ ଖାଲି କାମ, ଅସରନ୍ତି କାମ– ପାଣିବୁହା, ଢିଙ୍କିକୁଟା, ବଳଦଖୁଆ, ବାସନ ମଜାଠୁ ବାଡ଼ି ବିରିଗ୍ର କାମ ପର୍ଯ୍ୟନ୍ତ । ଖଟି ଖଟି ଅଣ୍ଟାପିଠି ଏକ ହୋଇ ଯାଉଛି । ଦେହରେ ହଡ଼ା ବଳଦର ଦୁଃସହ୍ୟ, ଦୁର୍ବହ କାମ ପରି ଛାନ୍ତବ ଯନ୍ତଣା । ଟିକିନୀ ସାହାଯ୍ୟ କରିବାକୁ ମନ କରୁଥିଲେ ମଧ୍ୟ ଶାଶୂ ଦାନ୍ତ କଡ଼ମଡ଼ କରି ମାଡ଼ି ଆସୁଛନ୍ତି– କରୁ ଅଲକ୍ଷଣୀ ସବୁକାମ । ବସି ଗୁଣ୍ଡା ଗିଳିବାକୁ ବାପ ଥୋଇନି । ନିଆଁଲଗା ଦରିଦ୍ର ବୋପାର ଭିକାରୀ ଝିଅ । କ'ଣ ହାତୀ ଘୋଡ଼ା ବାପ ଦେଇଛିକି ?

ପତିହରା ନିଦାଘ କ୍ଲିଷ୍ଟ ଜୀବନରେ କେବଳ ଲଞ୍ଛଣା, ଭର୍ତ୍ସନା ଏବଂ ତାଡ଼ନା । ଭାଗ୍ୟରେ ତ ଲେଖା ଅଛି, ଦଇବ ଦୁର୍ଯୋଗ ଦେଇଛି ।



Digitized by PPRACHIN, SOA

ସହିବା ଛଡ଼ା ତା'ର ଅନ୍ୟ ଗୁଣ ଆଉ କ'ଣ ଅଛି ? ସହିବା ଗୁଣଟି ତା'ର ମଜ୍ଜାଗତ ହୋଇଗଲଣି । ବଢ଼ିଲା ଝିଅ ହେଲା ଦିନୁ ତା' ସୁଖ ସରିଛି, ଦୁଃଖ ସହିତ ଦୋସ୍ତି କରିଛି । ଉଜୁଡ଼ା ଜୀବନ ଯୌବନରେ ଅତ୍ୟାଗ୍ରର ସହିବାକୁ କ'ଣ ଆଉ ବାକୀ ରହିଲା ଯେ !

ସକାଳ ବେଳ ଗଡ଼ିଗଲାଣି । ଶାଶୁଙ୍କ ତାଡ଼ନା– ମହାରଣୀ ଉଠିନାହାନ୍ତି ବିଛଣାରୁ ? ଏଇଟା ବୋପାଘର ନୁହେଁ ଯେ ଏଠି ଦୋଳି ଖେଳ, ହଳ ଫିଟା ବେଳକମା କାମ । ଗଣ୍ଡ ମାଇପଙ୍କର ଏମିତି ପୁଣି ଅଳସ !

ବିଛଣାରୁ ଭେରରୁ ଉଠିବାକୁ ଶକ୍ତି ଅଣ୍ଟୁ ନଥିଲା ଶ୍ରାବଣୀର । ଶାଶୁଙ୍କ ଟାଣ କଥା ଗୁଡ଼ିକ ଛୁଞ୍ଚ ଫୋଡ଼ିଲା ପରି ଦେହରେ ଗଳି ଯାଉଥିଲା । ବହୁ କଷ୍ଟରେ ବିଛଣାରୁ କୁଞ୍ଚେଇ ମୁଞ୍ଚେଇ ଉଠିଲା ! ବାହାର ଖଞ୍ଜାକୁ ଆସିଲା । ନିଜକୁ ଦୋଷୀ ମଣିଲା । ଡେ଼ରି ହୋଇ ଗଲଣି । ଖର ଆସି ଅଗଣାରେ ପଡ଼ିଲାଣି । ଗୁହାଳରେ ଗୋରୁମାନେ ହମ୍ବାରଡ଼ି ଦେଲେଣି ସକାଳ ଖାଦ୍ୟ ଏବଂ ପାଳକୁଟା ପାଇଁ । ଶଶୁରଙ୍କୁ ପାଣି ଡାଳ, ଦାନ୍ତକାଠି, ଗୁଡ଼ାଖୁ ଦେଇନି । ଜିଭ କାମୁଡ଼ିଲା ଶ୍ରାବଣୀ । କର୍ତ୍ତବ୍ୟରେ ହେଳା ହୋଇଛି । ଶାଶୁ ସେ କାମଟି ତୁଲେଇ ଦେଇଛନ୍ତି ବୋଲି କଡ଼ମଡ଼ ହେଲେଣି । ଶ୍ରାବଣୀ ମୁହଁ ଧୋଇଲା । ମୁଣ୍ଡ ଚକ୍କର ଦେଉଥିଲା ଭୂଗୋଲକ ଘୂରିଲା ଭଳି । ବସି ପଡ଼ିଲା ନଥିକିନି । ଉକାର, ବାନ୍ତି, ପିଉବାନ୍ତି ।

: ଆଲୋ ଏଠି ଅଗଣାଟାରେ କିଏ ବସି ହଦ୍‌ଗାରୁଛି ? ଆଉ କୋଉଠି ଜାଗା ମିଳିଲାନି ତାକୁ ? ଶଶୁର ଏଇବାଟେ ଯା' ଆସ କରୁଛନ୍ତି, ଟିକିଏ ସରମ ନାହିଁ ପୋଡ଼ାମୁହିଁକୁ ? ବେଣେ ପାରିଶୁଆ ପଡ଼ିଛି, ଅଗଣାରେ ଗୋବର ପାଣି ପଡ଼ିନି, ଘର ଓଳା, ଚୁଲି ଲିପା ହୋଇନି, ଆଉ ହେବ କେତେବେଳକୁ ? ନୀତି ନିୟମ ଗାତକୁ ଗଲାଣି । ଘରକୁ ଅଲକ୍ଷଣା ଗ୍ରାସିଲଣି । ଟିକିଏ ମନରେ ଭୟ ଭ୍ରାନ୍ତି ନାହିଁ । ଉଠିଲା ବେଳ ପହରକୁ, ଓଗାଳିଲା ? କ'ଣ ଖେଳରେଇ ଗେଫି ଥିଲା ?



Digitized by PPRACHIN, SOA

ଟିକିନୀ ଧାଇଁ ଆସି ଶ୍ରାବଣୀ ପିଠି ଆଉଁସି ବସିଲା, ଅଇର ବାଳକୁ ପଛକୁ ପୋଛିନେଲା, ମୁହଁରେ ପାଣି ଛାଟିଲା ।

ବୋଉ ଆହୁରି ଜୋରରେ ଗର୍ଜିଲା– ଆହା ହା, ମରି ଯାଉଁଥାଏଁ ଭଉଜ ସଗଗ ! ଆଲୋ ତତେ କିଏ ସେ କହିଲା ଆସିକି ଏଠି ଭଲ ଲୋକୀ ସାଜିବାକୁ ? ତତେ ପଗ କହିଥିଲି, ଏ ଡ଼ାଆଣୀଟାକୁ ଛୁଉଁନି । ମୋ କଥା କ'ଣ କାନକୁ ଶୁଭୁନି ?

ବୋଉକୁ ଆକଟି ଟିକିନୀ କହିଲା– ବୋଉ ! ଦେଖି ପାରୁନୁ, ଦୁର୍ବଳ ଦିହରେ ନୂଆବୋଉ କେତେ କାମ କରୁଛନ୍ତି ? ରୋଗକୁ କାହାର ହାତ ଅଛି ?

ଚଢ଼ା ଗଳାରେ ଦେବ ବୋଉ କହିଲା– ଦେଖୁଛି, ତତେ ବି ସେ ମାଇକିନିଆ କ'ଣ କିମିଆ କରିଛି । ଗଳା ପରି ମୋ ପୁଅକୁ ଗଦ ଶୁଙ୍ଘେଇ ମାରିଲା, ତତେ ବି ସେମିତି ଗଦ ଶୁଙ୍ଘେଇ ମାରିବ । ଦୂରୁ ହ, ଅଲକ୍ଷଣୀ ଡାଆଣୀ ପାଖରୁ ... କି ଯୁଗ ହେଲା ହୋ ! ଗୋଡ଼ ହାତ ନଥିଲା ଭଳି ଥାନ ଅଥାନ ନମାନି ଅଇ, ଓକାର, ଗଳ ଗଚ ! ଛିଃ, ଛିଃ ... ।

ଶ୍ରାବଣୀ ଅସୁସ୍ଥ ଦେହରେ ମୁଣ୍ଡରେ ହାତ ଦେଇ ଚିନ୍ତା କରୁଥିଲେ । ଶାଶୁଙ୍କ କଟୁ କଥା ଦେହକୁ ନେଉ ନଥିଲେ । ପୁତ୍ର ବିୟୋଗ ତାଙ୍କୁ ପାଗଳୀ କରିଛି । ଜନ୍ମଦାତ୍ରୀ ମା' ସେ । ଅନ୍ତଫାଡ଼ି, ବକ୍ଷରୁ ରକ୍ତ ଦାନକରି ଏଡ଼ରୁ ଏଡ଼ୁଟିଏ କରି ଶେଷକୁ ଯମ ହାତରେ ଟେକି ଦେଇଛନ୍ତି ଭେଣ୍ଡା ପୁଅକୁ । ଯା ଠୁଁ ବଳି ନିଷ୍ଠୁର ଦଣ୍ଡ ଆଉ କ'ଣ ହୋଇପାରେ ? ତାଙ୍କ ଦୁଃଖର ଅନ୍ତ ନାହିଁ, କେହି ସେ ଦୁଃଖ ଦୂର କରି ପାରିବେ ନାହିଁ, ତାଙ୍କର କ୍ଷତି ଚିର ଅପୂରଣୀୟ । ସେଇ ଶାଶୁ ତ ଦିନେ ମୁହଁରେ ମଧୁ ବାଣ୍ଟୁଥିଲେ ! ତାଙ୍କୁ କାହିଁକି ଦୋଷ ଦେବ ? ଭାବଦଶାରେ ହଠାତ୍ ପାଗ ପରିବର୍ତ୍ତନ ହୁଏ, ପରିସ୍ଥିତି ବଦଳେ, ଘଟଣା ଘୂରେ, ସମୟ ଘଣାରେ ଘାଣ୍ଟି ଚକଟି ହୁଏ ଅସହାୟ ମଣିଷଟି । ଦୋଷ ସବୁ ତା'ର, ତା



Digitized by PPRACHIN, SOA

ଭଗ୍ୟର । ବିଧାତା ବାଣୀ, ନ ହୁଏ ଜାଣି । ଦଇବ ମନ ଯଦି ଆଗରୁ ଜାଣି ହୁଅନ୍ତା, ତେବେ ଏ ସଂସାରରେ ଦୁଃଖ ଆଉ ରହନ୍ତା ନାହିଁ । ସୃଷ୍ଟିର ସବୁଠୁଁ ଦୁର୍ବୋଧ୍ୟ ଜନ୍ତୁ ସିଏ । ତାକୁ ସାଧ୍ୟ କରିବାକୁ କାହାର ଗ୍ରଗ ଅଛି ?

ଶ୍ରାବଣୀ ଉଠିବାକୁ ଚେଷ୍ଟା କଲା । ଉଠିନପାରି କଚଡ଼ା ଖାଇଲା, ମୁହିଁ ମାଡ଼ି ପଡ଼ିଲା । ମୂର୍ଚ୍ଛା ।

ଟିକିନୀ ଚିତ୍କାର କଲା— ନୂଆ 'ଉ ପଡ଼ିଗଲେ ମୋ ନୂଆ 'ଉ ପଡ଼ିଗଲେ ।

ଆଉ ଖଞ୍ଜାରୁ ଶୁଆଖୁଡ଼ୀ ଟିକିନୀର ପାଟି ଶୁଣି ଗ୍ରଲି ଆସିଥିଲେ ।

ତା' ପରେ ବୁଲା ଘରିଯା, ଯଦୁଆ ମା', ଗୁଣ୍ଡୁରୀ ବୋଉ ।

ନୂଆ ବୋଉକୁ ବିଛଣାରେ ଶୁଆଇ ଟିକିନୀ ବିଞ୍ଚଣାରେ ବିଞ୍ଚିଲା ।

କ'ଣ ହେଇଚି ତୋ ନୂଆ ବୋଉର ? ସମସ୍ତଙ୍କ ଗ୍ରହାଣିରେ ତାଛଲ୍ୟ । ଶ୍ରାବଣୀ ଆସ୍ତେ ଆଖି ମେଲିଲା । ପୁଣି ସେଇ ବିଛଣା ଉପରେ ବାନ୍ତି, ଖାଲି ବାନ୍ତି, ସୁଦ୍ଧ ଜଳବାନ୍ତି ।

ମାଇପିଙ୍କ ଦୃଷ୍ଟି ଏଡ଼ାଇବ କିଏ ? ଗୁଣକୁ ଗୁଣିଆ, ରୋଗକୁ ବଇଦ ଚିହ୍ନେ । ଆଖିକୁ ଆଖି କଥା କହିଲା । ଏତ ଗର୍ଭବତୀର ଲକ୍ଷଣ ! କ୍ରମେ ସର୍ବସମ୍ମତ ମତ ପ୍ରକାଶ ପାଇଲା— ବିଧବା ସ୍ତ୍ରୀ ମା' ବନିବ । ଏତ ବଡ଼ ଅଜବ, ଆଚମ୍ବିତ କଥା ! କିସ ନ ହେଉଚି ଆଜିକାଲି ଏ ଦୁନିଆଁରେ !

ଟିକିନୀ ପୁଲକିତ ହୋଇ ନାଚି ଉଠିଲା । ଆମ ଘରକୁ ପୁଅ ଆସିବ, ପୁଅ ଆସିବ କହି ଡେଇଁଲା । କୁନି ପୁଅକୁ କାଖେଇ ବୁଲିବ ସେ । ଘର ଏଥର ପୁରିବ ଛୁଆର କୁଆଁ କୁଆଁ ସ୍ୱରରେ । ପୁଅ କେବେ ହବ ? ମନରେ ତାର ଶିଶୁସୁଲଭ ଉତ୍କଣ୍ଠା । ଆନନ୍ଦ ଆଁତିଶଯ୍ୟରେ ସେ ବିହ୍ୱଳି ହୋଇ ପଡ଼ିଲା ।



Digitized by PPRACHIN, SOA

ସମ୍ବାଦ ଶାଶୁ କାନକୁ ଗଲା । ଗୁମ୍ ହୋଇ ଘଡ଼ିଏ ବସିଗଲେ ଦେବବୋଉ । ପୁଅ ମରିବା ଘଟଣା ଦିନରୁ ସବୁ ସୁଖ ସରିଛି । ଜେ ଜେ ମା' ହେବାର ଗର୍ବ, ଆନନ୍ଦ ଲିଭିଛି, ପୋଡ଼ି ପାଉଁଶ ହୋଇଛି । ଏ ପୁଣି କେଉଁ ବିଚିତ୍ର କଥା ! କିଏ ଜାଣେ ଆଜିକାଲି ଭୁଆଷୁଣୀଙ୍କ କାରବାର ! ଏତେ ଦିନ ଯାଏଁ କେଉଁଠି ଥିଲା, କ'ଣ କରୁଥିଲା ? ମନରେ ଗଭୀର ସନ୍ଦେହ ଜାତ ହେଲା । ମୁଣ୍ଡକୁ ପୋକ ବିନ୍ଧିଲା । ପୁଣି ଗୋଟିଏ ବଡ଼ ଦୁର୍ନାମ ! ମୁଣ୍ଡରେ ମହାଚିନ୍ତା ପଶିଲା । ବୋହୂ ପେଟରେ ବିଷ ବୃକ୍ଷ ! ଏ ସାହିରେ ସେ ଆଉ ମୁହଁ ଟେକି ଚାଲି ପାରିବତ ! ସାଇ ମାଇପେ ଥଟ୍ଟା କରିବେ, ଟାହି ଟାପରା କରିବେ– ନ ଦେଖିଲା ଲୋକ ଦେଖ, ଲାଗିଛି ଅଦ୍ଭୁତ ନାଟ । କାହା ମୁହଁରେ ବାଡ଼ବତା ଦେବ ? ଇସ୍ କି ଲଜ୍ଜା ! ବିଷ ଟିକିଏ ମିଳନ୍ତା ହେଲେ ମୁହଁରେ ଦେଇ ଆଖି ବୁଜନ୍ତା, କିଛି ଦୁର୍ନାମ ଶୁଣନ୍ତାନି, କିଛି ଖରାପ ଦେଖନ୍ତାନି । ହାୟରେ ମଣିଷର ଦୁର୍ଭାଗ୍ୟ ! ମନ ବିକ୍ଷୋଭ ଉଠିଲା । କ୍ରୋଧ ବଢ଼ିଲା, ଘର ଭିତରୁ ଗର୍ଜି ଆସିଲା, ମୁହଁରୁ ଛୁଟିଲା ବଜ୍ରବାଟୁଳି ।

: କିଲୋ ବାରଦ୍ୱାରୀ ଦାରୀ, ବଜାତୁଣୀ, କୋଉଠି ବେଧ ପକେଇ ଏଠିକୁ ଦୋଷ ଛଡ଼େଇବା ପାଇଁ ଧାଇଁ ଆସିଛୁ ? କୋଉ ଘଇତା ଘରେ ଯାଇ ଏତେ ଦିନ ହେଲା ପଶିଥିଲୁ ଲୋ ଛତରୀ ?

ଟିକିନୀ ରହସ୍ୟ ବୁଝିପାରୁ ନଥିଲା ଭଲ ଭବେ । ବୋଉ ମୁହଁରୁ ଅଶ୍ରାବ୍ୟ, ଅବାନ୍ତର ଅଙ୍ଗଯତ ଭଷା ନିର୍ଗତ ହେଉଥିଲା । ଏଇ କେତେ ଦିନ ହେଲା ବିଗିଡ଼ି ଯାଇଛି ତା' ମୁଣ୍ଡ । ଚଡ଼ି କହିଲା– ଏମିତି କାହିଁକି ମିଛୁଟାରେ ବସି ବକ୍ ବକ୍ ହେଉଚୁ କହିଲୁ ବୋଉ ? ନୂଆବୋଉଙ୍କର ଦୋଷ କ'ଣ ? ବିଚ୍ଚରୀ କେତେ କଷ୍ଟ ପାଉଛନ୍ତି ! ଭଲ ଥିଲେ ସେ କ'ଣ ଏମିତି ଭୋଗୁଥାନ୍ତେ ?

ଟିକିନୀର ଆଖି ଲୁହେଇଲା ।

ଦେହକୁ ପଥର କରି ସବୁ ଶୁଣି ରହୁଥିଲା ଶ୍ରାବଣୀ । ଅନ୍ତର ତଳେ ବ୍ୟଥାର ତରଙ୍ଗ ଖେଳୁଥିଲା ମଧ୍ୟ ସେ ଆଜି ଉଲସି ଉଠୁଛି ।



Digitized by PPRACHIN, SOA

ସ୍ୱାମୀର ସ୍ନେହ-ସନ୍ତକ ତା' ଦେହ ଭିତରେ ଆରୋପିତ । ଛାତିରେ ତା'ର ଫୁଲି ଉଠିଛି ସ୍ତନର ବର୍ତ୍ତୁଳତା । ମନ ଜାଣେ ପାପ, ମା'ସିନା ଜାଣେ ବାପ ! ମନ କଥା ସିନା ନିଜେ ଜାଣିବ, ପରକି ବୁଝିବେ ? ନିଜ ମନନେଇ ସେ ବଳୀୟାନ୍ । ମନରେ ତା'ର ଗୋପନ ଆନନ୍ଦ । ତା'ର ସଦ୍ ମାତୃତ୍ୱକୁ ଦୁନିଆଁ ସ୍ୱୀକାର ନ କଲେ ମଧ୍ୟ ସେ ନିଶ୍ଚେତ ଅସ୍ୱୀକାର କରି ପାରିବନି ! ପରଲୋକଗତ ସ୍ୱାମୀ-ଦେବତାଙ୍କୁ ମନେ ମନେ ନମସ୍କାର କଲା । ମହାକାଳର ଅବୋଧ୍ୟ ନିୟମରେ ସୃଷ୍ଟି ଛନ୍ଦାୟିତ, ଅବଲୀଳାକ୍ରମେ ଘଟିଯାଉଛି ଦୁର୍ବାର ଘଟଣା । ଘଟଣାର ପ୍ରବାହରେ ସବୁ ପ୍ରବାହିତ–ଜଡ଼, ଜୀବ, କୀଟ ପତଂଗାଦି । ଅଦ୍ଭୁତ ଏ ସୃଷ୍ଟିର ରହସ୍ୟ । ଶ୍ରାବଣୀ ଶିହରି ଉଠିଥିଲା । ଶାଶୁଙ୍କ ଗଞ୍ଜଣା କାନକୁ ନେଇ ନଥିଲା । ସହିବା ମନ୍ତ୍ରକୁ ମନରେ ଉଚ୍ଚାରଣ କରୁଥିଲା ବାରମ୍ବାର ।

ତାଜା ସମ୍ବାଦଟି ବ୍ୟାପିଗଲା ଗାଁ ସାରା, ଘୂର୍ଣ୍ଣିବାୟୁ ଭଳି ଘୂରିଲା ମୁହଁରୁ ମୁହଁକୁ । ସବୁ ଆଡ଼େ ଟୁପ୍ ଟାପ୍, ଭୁଟ୍‌ଭାଟ୍, ମହିଳା ମହଲରେ ସଭ ସୁଆର, ଉଷୁମ ଆଲୋଚନା ଲାଗି ରହିଲା । ପୋଖରୀ କୂଳରେ ହାଟ-ବିଗ୍ରହ ଲାଗି ରହିଲା । କେଡ଼େ ଅଲାଜୁକୀ ଛୋପରୀ ମାଇପିଟାଏ ହୋ । କେଉଁଠି କ'ଣ କରି ଏଠି ଆସି ସ୍ୱାମୀ ସୁଆଗେଇ ସତୀ ଦେଖେଇ ହଉଚି ? ମୁହଁରେ ଟିକେ ଲାଜ ଅଛି ନା ସରମ ! ଦେଖୁନ କେମିତି କୂଅକୁ ପାଣି ଆଣିଗଲା ଅଇଲା ବେଳେ କଣେଇ ବଙ୍କେଇ ଗ୍ୱହୁଁଚି ? ଗାଁ ଭେଣ୍ଡିଆଙ୍କଠି ତା'ର ବେଶୀ ଆଖୁ । ଦି' ପହର ନିଛାଟିଆ ନିଗେଜା ବେଳ ଦେଖି ଚଳସାହି କୂଅ ମୂଳକୁ ଧାଉଁଛି । ଏ ଗାଁ ଟୋକାଙ୍କୁ ଖରାପ କରୁଛି । ତା ଗ୍ୱହାଣିରେ କିମିଆ ଅଛି ; ଦେହରେ, ରୂପରେ ରହିଛି ସମ୍ମୋହନ ଶକ୍ତି ।

ମାଇପି ତୁଣ୍ଡକୁ ରୋକିବ କିଏ ? ନାରୀ ତୁଣ୍ଡରେ ବାଇଦ ବାଜିଲା । ଗ୍ରାମର ଲଳନାମାନେ ସକ୍ରିୟ ହୋଇ ଉଠିଲେ । କ୍ରମେ କୁତ୍ସା ବ୍ୟାପିଲା ଉଦୟଙ୍କର ଭବେ । ଗୁଜବ ବୁଲିଲା ଗାଁ ବାୟୁମଣ୍ଡଳର ପ୍ରତି ଅଣୁ କୋଣେ । ମର୍ଦ୍ଦମାନଙ୍କ କାନକୁ କଥା ଗଲା ସ୍ତ୍ରୀ କାନକୁହା ମନ୍ତ୍ର ମାଧ୍ୟମରେ, ମାନପୁର ଗାଁରେ ଦୋଗ୍ଚ୍ଛୁଣୀ ବାସ କରୁଛି ।



Digitized by PPRACHIN, SOA

ଖଣ୍ଡେଇତ ସାହି ଗୋଟେ ବେଶ୍ୟାପଡ଼ା ହେଲାଣି । ସନାତନ ବଡ଼ ଢେଙ୍କା ଘରେ ବେଶ୍ୟା ପାଙ୍କିଛି । ଗାଁ ବାୟୁମଣ୍ଡଳ ଦୂଷିତ ହେଉଛି । ମାନପୁର ଗାଁର ଅପଖ୍ୟାତି ବଢ଼ୁଛି । ସନାତନ ଜାଣିଲା ବୁଝିବା ବ୍ୟକ୍ତି । ଏତିକି ବୁଝି ପାରୁନି ବୋହୂର କଦର୍ଯ୍ୟ କାର୍ଯ୍ୟକଳାପ ! କାହା ପାଲରେ ପଡ଼ି, ଘଇତାକୁ ହତ୍ୟାକରି ଏ ଗାଁକୁ ଆସିଛି ପାପଧୋଇ ପ୍ରାୟଶ୍ଚିତ କରିବାକୁ । ହେଲେ ଗଙ୍ଗାରେ ଲକ୍ଷେ ବୁଡ଼ ପକାଇଲେ ଦାରୀଗୁଣ କ'ଣ ଦୂର ହେବ ? ଗୁଣ ତୁଟି ଯିବ ? କଥାରେ ପଗ ଅଛି, ଘୁଷୁରୀ ପ୍ରକୃତି ପଙ୍କରେ ଲୋଟେ, ମଣିଷ ସ୍ୱଭାବ ମଲେ ତୁଟେ ।

ସନାତନକୁ ଘାଘାଟିକ କଥାଟି କେହି କହିବାକୁ ସାହସ କରୁ ନଥିଲେ । ଫଳ ଯଦି ଓଲଟା ହେଲା ? କିଏ ଜାଣେ ତା'ର ମନୋଭାବ ? ସନାତନ ଯଦି ପ୍ରମାଣ ଲୋଡ଼େ ? ଚୁପ୍ ରହିବା ବରଂ ଭଲ । ଆପେ ଭଲତ ଜଗତ ଭଲ । ପର ଘରେ ପାପ ମୁଣ୍ଡେଇଲେ ଜନତାର ଗରଜ କାହିଁକି ? ପର ପାଇଁ ପୁଅ ମୁଣ୍ଡ ଛୁଇଁବା କଥା ସିନା ।

ସନାତନ ଅଭିସନ୍ଧିରେ ପଶି ପାରି ନଥିଲା । ଶ୍ରାବଣୀର ଅନ୍ତଃସରା ସମ୍ବାଦ ଦେବ ବୋଉ ମୁହଁରୁ ଯେଉଁଦିନ ଶୁଣିଥିଲା ସେ ଖୁସି ହୋଇପାରି ନଥିଲା କିମ୍ବା ଦୁଃଖିତ ନଥିଲା । ପୂର୍ବଭଳି କୌଣସିଥିରେ ତା'ର ସ୍ପୃହା ନଥିଲା । ସବୁଥିରେ ଶିଥିଳତା ଅନୁଭବ କରୁଥିଲା । ଧନୁର୍ଦ୍ଧର ଭେଣ୍ଡା ପୁଅ ଅକାଳରେ ମାଗ ହେବା ଦିନୁଁ ଭଗବାନ ତା ଆଖି ତାଡ଼ି ନେଇଛନ୍ତି । ସେ ଅନ୍ଧ, ଜଡ଼, କାଲ । ଦେବ ବୋଉର ଅବସ୍ଥା ମଧ୍ୟ ତତୋଧିକ । ଦେହ ତା'ର ଅଧା ହେଲଣି । ପୁତ୍ର ଶୋକର ବଜ୍ରାଘାତରେ ସେ ଅଶନ ବ୍ୟସନ ତ୍ୟାଗ କରିଛି । ବିଛଣା ସଙ୍ଗେ ସଇ ସଙ୍ଗାତ ବସିଛି ନା କ'ଣ ଘଡ଼ିଏ ବିଛଣା ଛାଡ଼ୁନି । ବୟସ ଯେମିତି ପ୍ରତିକ୍ଷେ ବଢ଼ି ଯାଇଛି ! ସନାତନ ଜାଣିଥିଲା, ଦେବ ବୋଉ ମୁଣ୍ଡ ବିଗିଡ଼ି ଯାଇଛି । ତା ତୁଣ୍ଡର ବାଗବାଇଶ ରହୁନି । ବୋହୂକୁ ସବୁଥିରେ ଦୋଷୀ ଭାବି ଅକଥା ବକୁଛି । ଏଣୁ ତେଣୁ କହୁଛି, ବାଉଳୁଛି । ବେଳେ ବେଳେ ସ୍ତ୍ରୀ ମୁହଁର ନିଆଁହୁଳା ତା ଉପରକୁ ଛିଟିକି ଆସିଛି । ଟିକିନୀ ମଧ୍ୟ ବାଦ୍ ପଡ଼ୁ ନାହିଁ ।



Digitized by PPRACHIN, SOA

ଦେବ ବୋଉ ବଚନରେ ଗୁରୁତ୍ୱ ନ ଦେଇ କାହା ସଙ୍ଗେ ନ ମିଳି ନ ମିଶି ସବୁ ଈଶ୍ୱରଙ୍କ ଇଚ୍ଛା ବୋଲି ଗ୍ରହଣ କରି ନେଇଥିଲା ସନାତନ । ଜୀବନ ପ୍ରତି ବୀତସ୍ପୃହ ଭାବ । କେବଳ ଟିକିନୀ ପାଇଁ ବଞ୍ଚିବା ଯାହା । ଚାରି ପାଇଁ, ପେଟ ପାଇଁ, ପାଟି ପାଇଁ ମାଟିରେ ମନଦେବା କଥା । ଟିକିନୀ ବଡ଼ ପିଲା ହୋଇନି । ତା ବେଳ ଆସିଲେ, ତାକୁ ହାତକୁ ଦି'ହାତ କରିଦେଇ ସେ ଆଖି ବୁଜିବ । ସେତିକି ।

ସନାତନ ମୁଣ୍ଡର ବିକୃତି ଘଟିଲା ଯେଉଁଦିନ ସେ ସୁରକଜା, ବିଶିନନା ଓ ଟିମା ଭାଇ ଆଦିଙ୍କ ମୁହଁରୁ ବିକୃତାକାରରେ ଶୁଣିଲା ବୋହୂର ଦୁର୍ନାମ । ଏବେ ଯାଇଁ ବୁଝିଲା ଗହନ କଥା । ମୁଣ୍ଡ ଟେକି ପାରିଲା ନାହିଁ । ଦେହ ସାରା ବିଷ ଚରିଗଲା । ଏପର୍ଯ୍ୟନ୍ତ ଦେବ ବୋଉ କଥାକୁ ଭ୍ରୂକ୍ଷେପ କରି ନଥିଲା । ଏଥର ଚେତା ପଶିଲା ।

ଶ୍ରାବଣୀର ବୈଧବ୍ୟ ରୂପ ସାଙ୍ଗକୁ ତାର ବର୍ଦ୍ଧିଷ୍ଣୁ ମାତୃତ୍ୱର ଦୃଶ୍ୟ ସନାତନର ଦୃଷ୍ଟିକଟୁ ହେଲା । ଜନମତ ମନମତ ଏକା ସଙ୍ଗେ ମାଡି ଉଠି ଉତ୍କ୍ଷିପ୍ତାକାର ଧାରଣ କଲା ଖର ବୈଶାଖୀର ଧୂମାଳ ଘୂର୍ଣ୍ଣିବାୟୁ ପରି । ସନ୍ଦେହର କୁହୁଳି ହଠାତ୍ ଜଳି ଉଠିଲା । ପିତ୍ତ ଚଢିଗଲା ମସ୍ତିଷ୍କ ଭିତରକୁ । ଏତିକି ବେଳକୁ ଦେବ ବୋଉର ସହଯୋଗ ବାରୁଦରେ ଅଗ୍ନି ସଂଯୋଗ ଭଳି କାମ କଲା ଏବଂ ସେ ଗର୍ଜି ଉଠିଲା ।

ଏଟା କ'ଣ ଗୋଟେ ଦାରୀ ଘର ! ସନାତନ ସବୁ ସହିପାରେ, ସମ୍ଭାଳି ପାରେ କିନ୍ତୁ ପାପ, ଅନ୍ୟାୟ, ଅନାଚାର ବରଦାସ୍ତ କରି ନପାରେ । ରାକ୍ଷସୀ ଚକ୍ରାନ୍ତ କରି ମୋ ପୁଅକୁ ମାରିଛି, ଆମ ସଂସାର ଉଜାଡ଼ିଛି । କେଉଁଠି ଛଚଲରେ ପଶିଥିଲୁ ? ପାପ ପ୍ରଣୟରେ ମାତି ଦେହ ବ୍ୟବସାୟ କରୁଥିଲୁ ? ଦେହରୁ ପାପ ଛଡ଼ାଇବା ପାଇଁ ଧାଇଁ ଆସିଛୁ ଏଠିକୁ ! କହି ଦେଉଛି, ମାନପୁର ବଡ଼ଜେନା ବଂଶର ରକ୍ତ ସୂର୍ଯ୍ୟଭଳି ପ୍ରଖର, ସ୍ୱର୍ଣ୍ଣଭଳି ତେଜିଆନ ସ୍ଫଟିକ ଭଳି ସ୍ୱଚ୍ଛ । ସନାତନ ବଞ୍ଚି ଥାଉଁ ଥାଉଁ ତା ବଂଶର କଳଙ୍କ ବୋଳିବାକୁ ଦେଇ ନ ପାରେ । ସ୍ୱାମୀହନ୍ତାର ଏ ଘରେ ସ୍ଥାନ ନାହିଁ । ନିକାଲ ଏ ବଜ୍ଜାତୁଣୀକୁ ଏ ଘରୁ । ଏଠି ତା'ର ଆଉ ମୁହୂର୍ତ୍ତେ ସ୍ଥାନ ନାହିଁ ।



Digitized by PPRACHIN, SOA

ମାନପୁର ଗ୍ରାମର ଆବାଳ ବୃଦ୍ଧ-ବନିତା ସନାତନର ହୁଙ୍କାର ଶୁଣି ରୁଣ୍ଡ ହୋଇଗଲେ ଦାଣ୍ଡ ପାଖେ । ତାମସା ଦେଖିବା ପାଇଁ ସେମାନେ ଅପେକ୍ଷା କରିଥିଲେ । ଏବେ ଦେଖୁଛନ୍ତି ଗୋଟିଏ ମଞ୍ଚସ୍ଥ ନାଟକର ନିଷ୍ଠୁର ଦୃଶ୍ୟ । ପରବର୍ତ୍ତୀ ଅଙ୍କ ପାଇଁ ଦର୍ଶକଙ୍କ ମନରେ ଉତ୍କଣ୍ଠା ।

ଶ୍ରାବଣୀ ଖଣ୍ଡାଖୁଣ୍ଟକୁ ଆଉଜି ବସିଥିଲା । ମୁଣ୍ଡର ଉନ୍ମୁକ୍ତ କେଶଗଣି ଘରିଯାଖକୁ ଆବୃତ୍ତ ରଖିଥିଲା । ଲୋତକ ଧାର ଝରି ଗଳିଥିଲା ଅବିରତ ଭବେ । ଘଟଣାର ଅନେକ ଉତ୍ପୀଡ଼ନ ସହିଛି । ଆଜି ଘନାନ୍ଧକାର ଭିତରେ ଅନୁଭବ କରୁଛି ଏକ ଆଲୋକର ସତ୍ତା– ଶୂନ୍ୟତା ଭିତରେ ପୂର୍ଣ୍ଣତା– ସ୍ୱାମୀଙ୍କର ମହାଦାନଟିକୁ ସାଇତି ରଖିବାର ସଂକଳ୍ପ । ସେ ଆଜି ଏକାକିନୀ ନୁହେଁ, ନିଜ ଭିତରେ ଅନୁଭବ କରୁଚି ସ୍ୱାମୀସତ୍ତା । ଶତ ନିର୍ଯ୍ୟାତନା ସତ୍ତ୍ୱେ ସମ୍ଭାଳି ନେବ ସବୁକୁ । ସ୍ୱାମୀଙ୍କ ଆଶୀର୍ବାଦ ତାର ହିଁ ହେବ ରକ୍ଷା କବଚ । ତା'ରି ମୁହଁ ଚାହିଁ ପୂଜିବ ପତି ଦେବଙ୍କୁ, ବିତେଇବ ତା'ର ଶୁଷ୍କ, ବିଧବା ଜୀବନ । ଅତଏବ ଶଶୁରଙ୍କ ବଜ୍ରଗମ୍ଭୀର ସ୍ୱରରେ ବିଶେଷ ବିଚଳିତା ନ ଥିଲା ଶ୍ରାବଣୀ ।

ଲୋକହସା ଦେଖିବା ପାଇଁ ଦେବବୋଉର ଆଉ ଧୈର୍ଯ୍ୟ ନଥିଲା । ଶ୍ରାବଣୀର ମୂକାବତାର ଦେଖି ଆହୁରି ଉତ୍କ୍ଷିପ୍ତ ହୋଇ ଗର୍ଜିଲା– ମୂକ ମାଇକିନା ଭଳି କିଛି ନ ଜାଣିଲା ଢଙ୍ଗରେ ବସିଛି କେମିତି ? ଟିକିଏ ଜହର ମିଳୁନି ତୋତେ ? ପାଚ ଦଉଡ଼ି ଅଭାବ ଅଛି ବଡ଼ ଜେନା ଘରେ ? ଆଉ କ'ଣ ଏ ଘରୁ ନେଇଥିଲେ ପିଶାଚୀ ଶାନ୍ତି ପାଇଥାନ୍ତୁ ? ଧରମଛଡ଼ା କାଣ୍ଡକରି ବଡ଼ଜେନା ଘର ନାଁ ପକେଇଲୁ ? ବଂଶରେ ଯୁଗ ଯୁଗ ପାଇଁ କଳଙ୍କ ଦେଲୁ ? ତୋ ମୁହଁ ଦେଖିଲେ ପାପ, ମହାପାପ । ଏ ଘର ଅଶୁଦ୍ଧ ହେଲଣି, ଠାକୁର ମାଗ ହେଲେଣି । ତୋତେ ଖାଲି ନର୍କ ଯୋଗ, ସାତଜନମରେ ତୁ ଉଦ୍ଧାର ପାଇବୁନି । ହଇଲୋ ... ହେ, ଘଇତାଖାଇ, ସତକହ କୋଉଠୁ ଏ ପାପ ଆଣିଛୁ ? ସତ ନ କହିଲେ ତୋତେ ମୁଁ ଛାଡୁନି ଆଜି ।



Digitized by PPRACHIN, SOA

ଦେବବୋଉ ଉନ୍ମତ୍ତ ହୋଇ ଶ୍ରାବଣୀ ଚୁଟିକୁ ଧରି ନେଇ, ତା ମୁଣ୍ଡକୁ ଖୁଣ୍ଟରେ ଦୁଇ ଚାରିଥର ପିଟି ଦେଇଥିଲା । ଶ୍ରାବଣୀ ମଥାକୁ ପୁନଃ ପୁନଃ ମାଟିରେ ପିଟି କାନ୍ଦିଲା । ଶାଶୁଙ୍କୁ ହାତଯୋଡ଼ି ଅବସାଦ ଭଗ୍ନ କଣ୍ଠରେ କାନ୍ଦି କାନ୍ଦି କହିଲା– ସତ କହୁଛି ବୋଉ, ହଲପ କରୁଛି, ଠାକୁର ଛୁଉଁଛି, ମିଛ କହିଲେ ଛାତି ଫାଟି ଯିବ । ମୁଁ ପାପ କରିନି । ଏ ତମ ପୁଅର ... ।

: କ'ଣ କହିଲୁ, କ'ଣ କହିଲୁ ଖାନିକି ମୌନମୁହିଁ ? ଦେବବୋଉ କର୍କଶ ତୁଣ୍ଡରେ ବାଘୁଣୀର ହେଣ୍ଟାଳ ।

: ଦାରୀଙ୍କ ମୁହଁ ପୁଣି ଏମିତି ଟାଣ ହୁଏ । ଆଲୋ ସବାଖାଇ ଡାଆଣୀ, କେତେ ସରି ହେଲେ ସତ କଥା ପାଟିରୁ ବାହାରିବ ତୋର ? ରଇଥା, ମୁହଁରେ କହିଲେ ଦେହ ଭେଦୁନି । ସତ ଥରକେ ବାହାର କରି ଦେଉଛି ଏଇନେ ... ।

ଦେବବୋଉ ହୋଇ ଯାଇଥିଲା ଉତ୍ୟକ୍ତ, ଅଗ୍ନିଶର୍ମା, ଅନ୍ଧ । ପତିହନ୍ତା ପାପୀନୀକୁ ଉତ୍ତମ ଶାସ୍ତି ଏବଂ ଉପଯୁକ୍ତ ଦଣ୍ଡ ଆବଶ୍ୟକ । ଘରଚାଳୁ ଭିଡ଼ି ଆଣିଲା ବାଉଁଶ ଫାଳିଆ ଖଣ୍ଡେ । ଚଟକ ଛିଣ୍ଡିଲା ଶ୍ରାବଣୀ ମୁଣ୍ଡରେ । ଅତି ନିର୍ମମ, ନିଷ୍ଠୁର ଭାବେ ପ୍ରୟୋଗ କଲା ଶ୍ରାବଣୀର ଭୂପତିତ ଶରୀର ଉପରେ, ସ୍ଥାନ ଅସ୍ଥାନ ନିର୍ବିଶେଷରେ ।

ବୋଉକୁ କ୍ଷାନ୍ତ କରିବା ପାଇଁ ଚେଷ୍ଟା କରିଥିଲା ଟିକିନୀ । ବିଫଳ ହୋଇ ନୂଆବୋଉକୁ ଆବୋରି ବସି ବିକଳ ସ୍ୱରରେ ଚିତ୍କାର କରୁଥିଲା– ମୋ ନୂଆବୋଉକୁ ମାରନା, ମୋ ନୂଆବୋଉକୁ ମାରନା, ମୁଁ ମରିଯିବି, ବିଷଖାଇ ଦେବି ।

ତୁଣ୍ଡଘୋଳରେ ଟିକିନୀର ସ୍ୱର ଭଲ ଭାବେ ଶୁଭୁ ନଥିଲା । ତେବେ ତା ପିଠିରେ ମଧ୍ୟ ବାଉଁଶ ପାହାର ବାଜି ଯାଇଥିଲା । ଦେବବୋଉ



Digitized by PPRACHIN, SOA

ଆହୁରି ଉଚ୍ଚ ସ୍ୱରରେ ଗର୍ଜୁଥିଲା– ଦୂର୍ ହ ଚିକିନୀ । ଏଠୁଁ ଉଠି ଯା କହୁଛି ! କନ୍ଦରପୁର ବଡ଼ ମହାଜନ ଗିରିଧାରୀ ଝିଅ ଦୁଇଣାଟି ! ମୋ ରୂପ କେହି ଦେଖୁ ନ ! ଡ଼ରେନି ସେ ଏଠି କାହାକୁ, ଧାରେନି କାହାର ସେ । ମୋ ପୁଅକୁ ଯେ ଖାଇ ନାଟ ନଗେଇଚି ତା' ରକ୍ତ ନ ଶୋଷିଲା ପର୍ଯ୍ୟନ୍ତ ମୋର ଶାନ୍ତି ନାହିଁ । ହଁା, ବୁଝି ଖବରଦାର ... ।

ଦେବବୋଉ ଦୁଇଣା ଆଖିରେ ନିଆଁ ଦପ୍ ଦପ୍ ଜଳୁଥିଲା, ଜଳୁଥିଲା କ୍ରୋଧାଗ୍ନି, ସର୍ବାଙ୍ଗରେ ପ୍ରତିଶୋଧାନଳ ।

ଶାବଣୀ ଆଖିରୁ ଲୁହ, ଦେହରୁ ଲହୁ, ଛାତିରୁ କୋହ ଝରୁଥିଲା । ଭୂତଳଶାୟୀ ହୋଇ କାନ୍ଦୁଥିଲା ବେଳେ କୋପୀ ଶାଶୁ ଶ୍ୱଶୁର ତାକୁ ଘୋସାରି ଘୋସାରି ଦାଣ୍ଡକୁ ଫିଙ୍ଗି ଦେଲେ । ଏ ଘରେ ବୋଣ୍ଟରୁଣୀ ଦୁଷ୍ଚରିତ୍ରା ଡାଆଣୀର ସ୍ଥାନ ନାହିଁ । ଶାସ୍ତି ।

ବଡ଼ଜେନା ଘରୁ ବଡ଼ ଦୟନୀୟ ଭାବେ ବହିଷ୍କୃତ ହୋଇଥିଲା ଶାବଣୀ । ହୃଦୟଫଟା ଥିଲା ସେ ଦିନଟିର ଦୃଶ୍ୟ ... ।





Digitized by PPRACHIN, SOA

ସୂର୍ଯ୍ୟ କେତେବେଳୁ ଆକାଶ ପଥରୁ ଓହ୍ଲାଇ ସାରି ଧରିତ୍ରୀ କୋଳରେ ଗାଢ଼ ନିଦ୍ରାରେ ଶୋଇ ରହିଲେଣି । ଗାଁ ଭୂଇଁ ଚୋଟା ବିଲମାଳରେ ଅନ୍ଧାରର ରାଜତ୍ୱ । ଘରିଆଡ଼ ଶୂନ୍ଶାନ । ଟିକିଏ ଦୂରରେ ମଶାଣି । କାହାର ଚିତା ଜଳୁଥିଲା ସେଠି । ଏ ପାଖ କିଆବୁଦା ଗହଳରୁ ବିଲୁଆଗଣ ଭୁକି ଉଠିଲେ– ହୁକେ ହୋ ହୁକେ ହୋ । ବିପରୀତ ପାଖ କୁଜି ମୁଣ୍ଡିଆର ଚଳମାଳ ଅଞ୍ଚଳରୁ ସାଥୀ ଶୃଗାଳମାନେ ଗୋଷ୍ଠୀ ସଦ୍ଭାବ ରକ୍ଷାକରି ସ୍ୱର ଧରିଲେ ଲହରେଇ ଲହରେଇ । କେତୋଟି ବାଦୁଡ଼ି ଡ଼େଣା ଫଡ଼ ଫଡ଼ କରି ଅନ୍ଧାର ପହଁରୁଥିଲେ । ନିକଟସ୍ଥ ବିରାଟ ଅଶ୍ୱତ୍ଥବୃକ୍ଷର ପ୍ରସାରିତ ଡାଳ ପତ୍ରରେ ଜୁଳୁ ଜୁଳିଆ ପୋକମାନେ ଅନ୍ଧାର ଘଉଡ଼ୁଥିଲେ । ନିଶାଚର ପକ୍ଷୀମାନଙ୍କର ପୁନଃ ପୁନଃ ଉଚ୍ଚାଟନ ନିର୍ଜନତାର ସ୍ୱର ତୋଳୁଥିଲା । ମୁଣ୍ଡ ଉପରେ କୋଟି ତାରାର ଆକାଶ– ସୃଷ୍ଟିର ବିସ୍ତାରିତ, ସୁବିସ୍ତୃତ କାୟା । ବିଶାଳ ପୃଥିବୀରେ ମୁଣ୍ଡ ଗୁଞ୍ଜିବାକୁ ଶ୍ରାବଣୀର ସ୍ଥାନ ନାହିଁ । ନିର୍ଜନ ନିଶୀଥର ଝଙ୍କାଳିଆ ଓସ୍ତମୂଳେ ବସି ରହି ଚିନ୍ତିତ ଥିଲା ଶ୍ରାବଣୀ । ମନରେ ଆକାଶ ପାତାଳ ଚିନ୍ତା । ଆକାଶ ଛିଣ୍ଡି ପଡ଼ୁଛି । ଏ ଅବସ୍ଥାରେ ଜଗତରେ ତାକୁ ଆଉ ସାହାଦେବ କିଏ ? ସମାଜ ଆଖିରେ ସେ କଳଙ୍କିନୀ, ଘୃଣିତା, ଦୁଷ୍ଚରିତା । ରଷ୍ୟାଶ୍ରମରେ ରହି ମଧ୍ୟ ସୀତାଙ୍କୁ ଲୋକାପବାଦରୁ ରକ୍ଷାମିଳି ନ ଥିଲା । ନାରୀ ଜାତିଟା ଏମିତି କ'ଣ ଗୋଟାଏ ନିର୍ଯ୍ୟାତନାର ବସ୍ତୁ, ଅପମାନର କେନ୍ଦ୍ର ! କିଏ ସତକୁ ବୁଝୁଛି ? ସତ ସୁରକ୍ଷିତ ଥାଏ ହୃଦୟର ଅନ୍ତରାଳରେ । ସେଇ ସତ୍ୟଟିକୁ ସେ କଦାପି ନିକାଳେ ନଷ୍ଟ କରିବାକୁ ଦେବନି । ତା ଅନ୍ତଃଭିତରେ ବଢ଼ୁଥିବା ସ୍ୱାମୀଙ୍କର ସ୍ମୃତି–ସନ୍ତକଠୁଁ ବଡ଼ ଆଶୀର୍ବାଦ ତା' ପାଇଁ ଆଉ କ'ଣ ଅଛି ?



Digitized by PPRACHIN, SOA

৫ରେ ଶ୍ରାବଣ

ଶ୍ରାବଣୀ ଶୋକାଶ୍ରୁ ପୋଛିଲା, ଆଖି ପରିଷ୍କାର କଲା । ସକାଳ ହୋଇ ଆସିଲାଣି । ଶାଶୁଘର ଇଲାକା । ତିଳକୁ ତାଳକରି ଦୁର୍ନାମ ରଟି ଯାଇଛି ଗ୍ରାମରେ ଗରିଆଡ଼େ । ଦୂରରେ ରହିଲେ ଭଲ । ମାମୁଁ ଘର କଥା ମନେ ପଡିଲା– କନ୍ଦରପୁର । ମାମୁଁ ଆନନ୍ଦ ନାୟକ ବଡ଼ ସ୍ନେହୀ, ତାଙ୍କୁ ବହୁତ ଶ୍ରଦ୍ଧା କରିଥିଲେ । ମାଇଁ ମଧ୍ୟ ତତୋଽଧିକ । ଦୁଃଖ ଦୁର୍ଦ୍ଦିନରେ ସାହାଯ୍ୟ କରିବାକୁ ସେମାନେ କେବେ ହେଲେ କାର୍ପଣ୍ୟ କରି ନାହାନ୍ତି । ଖାସ ଭଳି ଦମ୍ଭ ଦେଇଛନ୍ତି । ବାପା ମଲାପରେ ମଙ୍ଗଳା କନ୍ୟାକୁ ନିଜ ଘରେ ରଖି ବାହା କରେଇଲେ । ଭଲ ଘର । ଭଲ ବର ଦେଖି ଦେଇ ଥିଲେ । ଭାଗ୍ୟ ସହିଲା ନାହିଁ । କୋଉ ପୋଡ଼ା ମୁହଁରେ ଫଟା କପାଳ ଧରି ତାଙ୍କୁ ପୁଣି ଆଶ୍ରୟ ଭିକ୍ଷା କରିବ ? ସେଠି ମଧ୍ୟ ଶାଶୁଙ୍କର ବାପ ଘର । ବିଷ ଚହଲି ଯାଇଛି ଦିଗ ବିଦିଗକୁ । ସେଠିବି ସେମିତି ମୁଣ୍ଡ ଟେକିଥିବା ସନ୍ଦେହର ସପ୍ତଫଣା, ଦୁର୍ନାମର ଢେଉ । ବିଷାକ୍ତ ବୃତ୍ତର ଘେର ବାଡ଼ ଚତୁର୍ଦ୍ଦିଗ ଓଗାଳି ବସିଛି । ଛାହି ନାହିଁ, ରକ୍ଷା ନାହିଁ, ସ୍ଥାନ ନାହିଁ କେଉଁଠାରେ । ମୁହଁରେ ଅଶାନ୍ତି, ଅସନ୍ତୋଷ, ଅବଶୋଷର ମୁଦ୍ରା ଫୁଟି ଉଠିଲା । ଚିନ୍ତାରେ ଆସିଲା ସ୍ଥବିରତା । ଆଖି ପୁଣି ହେଲା ଲୁହ ଜର୍ଜରିତ, ଲୋତକ ପ୍ଳାବିତ । ବାଟ କିଛି ଦିଶୁନି । ଆଖି ବୁଜିଲେ ଅନ୍ଧାର, ଆଖି ଖୋଲିଲେ ଅନ୍ଧାର । ଆଲୁଅ ଅନ୍ଧାରର ତଫାତ୍ ନାହିଁ । ଚତୁର୍ଦ୍ଦିଗ ଅନ୍ଧକାରମୟ ।

ବୋଉକଥା ମନକୁ ଛୁଇଁଲା । ବୋଉ । ଦଶମାସ ଗର୍ଭଧରି, ଅନ୍ତଃଚିରି ଜନମ ଦେଲୁ । ଗୋଟିଏ ଝିଅ । ଆଗକୁ ନାହିଁ କି ପଛକୁ ନାହିଁ । ଏକୋଇର ବଳା ବିଶିକେଶନ ଭଳି ଖୁବ୍ ଗେଲବସରରେ ପାଳିଲୁ, ବଢେଇଲୁ, ବଡ଼କଲୁ । ଯୋଗ୍ୟ ବର ଖୋଜିଲୁ । ଝିଅର ସୁଖ ତୋଳିବା ପାଇଁ ବାପା ଜମି ବିକିଲେ, ଘର ବାଡ଼ି ବନ୍ଧକ ଦେଲେ, ମହାଜନକୁ ମୁଣ୍ଡ ବିକିଲେ । ଶେଷରେ ଠକାମିରେ ପଡ଼ି ପ୍ରାଣ ହାରିଲେ । ନାହିଁ ନ ଥିବା ଦୁଃଖ ଭୋଗିଲୁ ତୁ । କାହା ପାଇଁ ତୋର ଝିଅ ଶିର, ସାବି, ସାବିତ୍ରୀ, ଶ୍ରାବଣୀ, କେତେ ଅଳିଅଳ ନାଁ ତାର । ବଡ଼ ହୀନକପାଳୀ । ସୁନା ଛୁଇଁଲେ ଖପର ହେଉଛି, ଯେଉଁ ବାଟ



Digitized by PPRACHIN, SOA

ଧରୁଛି ସେ।ତାଙ୍କ ଛିଣ୍ଡୁଛି । ତୋର ଝିଅ ଆଜି ଅନାଥିନୀ, ମାଗିଖାଇ, ଦାଣ୍ଡର ଭିକାରୁଣୀ, କୁକୁର ବିଲେଇ ଠାରୁ ହୀନ, ନ୍ୟୂନ । ସେ ଆଜି ବାରଦ୍ୱାରୀ, ପେଟ ବିକଳି, ଭିକ୍ଷାଥାଳ ଧରି ବୁଲୁଛି । ସମସ୍ତେ ନାକ ଟେକୁଛନ୍ତି, ଚରିତ୍ର ଦୋଷ ଦେହରେ ବୋଳିଛନ୍ତି । ତୁ କ'ଣ ବୋଉ ଅବିଶ୍ୱାସ କରିବୁ ? ତୁ ତ ମା', ତୋରି ରକତ ମୋ ଦିହରେ ବୋହୁଛି । ସମସରପୁର ପଲ୍ଲୀର ଜଗୁ ପଧାନର ରକତ – ସ୍ୱଛ, ନିର୍ମଳ, ପବିତ୍ର ।

ବୋଉ ! ଜଗତର ସବୁଠୁ ମିଠା ନାଁ । ତୁ ତ ଅଭୟ ପ୍ରଦାୟିନୀ, ସନ୍ତାନର ସବୁଠୁ ନିରପଦ ସ୍ଥାନ, ଶ୍ରେଷ୍ଠ ଆଶ୍ରୟସ୍ଥଳୀ । ତୁ ତ ସ୍ନେହ, ଦୟା, କ୍ଷମାର ମୂର୍ତ୍ତିମନ୍ତ, ପ୍ରତିମା । ତୋର ବିଶାଳାକ୍ଷିରେ ସନ୍ତାନର କୌଣସି ଦୋଷ, ତ୍ରୁଟି ନାହିଁ । ତୋର କୋଳ ବ୍ରହ୍ମାଣ୍ଡର ଗର୍ଭଠୁ ଆହୁରି ବିଶାଳ । ସାରା ସୃଷ୍ଟିରେତ ଜନନୀର ହୃଦୟ ସବୁଠୁ ତରଳ, କୋମଳ । ତୋ ହୃଦୟରେ ଏ ସର୍ବହରା ଦୁଃଖିନୀକୁ ଟିକିଏ ସ୍ଥାନ ଦେବୁନି ? ତୋର ସେଇ ସରୁ, ସୁ-ମଧୁର, କଅଁଳ ଡାକ - ଶିର, ସାବି, ସାବିତ୍ରୀ ମୁଁ କ'ଣ ଆଉ ଶୁଣିବିନି ?

ମାତୃଭବନାରେ ଶ୍ରାବଣୀ ବିହ୍ୱଳ ହୋଇ ପଡ଼ିଥିଲା । ବୋଉର ଡାକ ତା ବେଦନାକ୍ରାନ୍ତ ହୃଦୟ କନ୍ଦରରେ ବାରମ୍ବାର ଧ୍ୱନି ତୋଳିଲା । ଆକାଶ ଫର୍ଚ୍ଚା ଦିଶିଲାଣି । ପାଦ ଧୀରେ ଅଗ୍ରସର ହେଲା ତା ଗାଁ ଆଡ଼କୁ । ସମସରପୁର ଏଠାରୁ ଅନେକ ଦୂର – ପାଦରେ ମାପିଲେ ଓଳିଏର ବାଟ । ଗାଁର ଆକର୍ଷଣ କେଡ଼େ ମଧୁର ସତେ ! ଗାଁ ମାଟିର ମଲ୍ଲୀ ସିଏ । ଚଞ୍ଚଳ ହୋଇଉଠିଲା ଶ୍ରାବଣୀ । ଦନ୍ତୁର ରାସ୍ତାର ମନ୍ଥର ଗତିରେ ଗତି କରୁଥିଲା ସେ । ତାର ବିଭଙ୍ଗ ଗତିରେ ଗୁଞ୍ଜରିତ ହେଉଥିଲା – ପଥ ଭ୍ରମରି ପିତା ଘର ଯିବା, ଆଉ ଅଯୋଧ୍ୟା ନ ଫେରିବା । କେତେ ମର୍ମାନ୍ତିକ ସତେ ସେ ବେଦନା !

କଣ୍ଟାବୁଦା ଘେର ଭିତରେ ଛୋଟ ମାଟିଘର - ବାପଘର । ନଥାଣିଆ ରୁଙ୍କ ଉପରେ ଡେଙ୍ଗା ନଡ଼ିଆ ଗଛର ଗହଳ ପତ୍ର ଛନ୍ଦାଛନ୍ଦି



Digitized by PPRACHIN, SOA

୯ରେ ଶ୍ରାବଣ

ହୋଇ ସୂର୍ଯ୍ୟକୁ ଛତା ଟେକିଥାନ୍ତି, ଘରକୁ ପବନ ବିଞ୍ଚୁଥାନ୍ତି । ବାଉଁଶ କଣିର ଚାଟି ଦ୍ୱାରଟିକୁ ଆସ୍ତେ ଖୋଲିଲା ଶ୍ରାବଣୀ ।

: ବୋଉ, ବୋଉ – ଶ୍ରାବଣୀ ଡାକିଲା ।

ଶିର ଡାକ ପରି ଶୁଭୁଛି । ଆଉ କାହାର ସ୍ୱର ଏଡ଼େ ମଧୁର ହୋଇପାରେ ?

ଏମିତି ବହୁଥର ଝିଅର ସ୍ୱର ସାରିଆ କାନରେ ବାଜିଛି । ଧଡ଼ ପଡ଼ ହୋଇ ବିଛଣାରୁ ଉଠିଛି । ଘରିଆଡ଼େ ଉଣ୍ଡିଛି । କାଇଁ, କେହି ନାହିଁ ତ ! ମନର ଭ୍ରମ । ସତେ କ'ଣ ସେ ଆଉ ଶିରକୁ ଦେଖିବ ?

: ବୋଉ, ବୋଉ, କୁଆଡ଼େ ଗଲୁ ।

ସାରିଆର ମଳହାଡ଼ରେ କିଏ ମଳୟ ବୋଳୁଛି ! ସତେ କ'ଣ ଶିର ଆଉ ଆସିଛି ! କଙ୍କାଳସାର ଦେହକୁ ବିଛଣାରୁ ଉଠାଇ ବସିଲା ସାରିଆ ।

ଶ୍ରାବଣୀ ଭିତରକୁ ଗଲା । ଭେଦୁଅ ଆକାଶର ଉସମାନ ବଉଦ ଭିତରେ ତା ମୁହଁ ଦିଶୁଥିଲା ଝୁଲ ମଇଳଛ ଭଳି ମଳିନ । ବିଧବା ଝିଅକୁ ଦେଖି ବୁଢ଼ୀର ଆଖି ଓଲଟିଗଲା । ଭେ କରି ରଡ଼ି ଛାଡ଼ିଲା । ଶ୍ରାବଣୀ କଇଁ କଇଁ କାନ୍ଦି ବୋଉ କୋଳରେ ଲେଟି ପଡ଼ିଲା । ଝିଅର ରୂପ, ତା'ର ବିଧବା ବେଶ ମା' ମନରେ ପ୍ରଚଣ୍ଡ ଆଘାତ ଆଣିଲା । ସେ କେବେ କଳ୍ପନା କରି ନଥିଲା ଏ କଥା । ଶ୍ରାବଣୀ କାନ୍ଦି କହିଲା, ସବୁ ସରିଗଲା ଲେ ବୋଉ, ମୋ ସଂସାର ଉଜୁଡ଼ି ଗଲା ।

ଉଭୟେ ଶୋକାର୍ତ୍ତ । କିଏ ବା କାହାକୁ ବୁଝେଇବ ?

ସାରିଆ ଦମ୍ଭ ଧରିଲା, ଦମ୍ଭ ଭରିଲା । ପ୍ରବୋଧନା ଦେଲା । ମୁଣ୍ଡଠୁଁ ଗୋଡ଼ ଯାଏଁ ଆଉଁସିଗଲା । ଚମକି ଉଠିଲା । ମୁଣ୍ଡରେ ଦାଗ, ଦେହରେ ଅନେକ କ୍ଷତ ଚିହ୍ନ, ଲୁଗାରେ ରକ୍ତ ଛାପ ! ଅତ୍ୟାଚାର



Digitized by PPRACHIN, SOA

ଅନୁମାନ କରିନେଲ । ସନାତନ ବଡ଼ଲୋକମାନର ବଡ଼ ପଣିଆକୁ ତିରସ୍କାର କଲ । ଦୁଲଣାର ଅମାନୁଷିକତାକୁ ଭର୍ତ୍ସନା କଲ । କେଡ଼େ ଅବିବେକୀ ସେମାନେ ? ଝିଅର ବିପତ୍ତି ପଡ଼ିଛି, ସିନ୍ଦୂର ଲିଭିଛି । ସାନ୍ତ୍ୱନା ଦେବେ କ'ଣ ? ଶାସ୍ତି ଦେଉଛନ୍ତି । କଟା ଘା'ରେ ଚୂନ ବୋଳିଛନ୍ତି । ପୋଡ଼ିଯାଉ ତାଙ୍କ ଟାଣପଣ । ଆମେ ଗରିବ ବୋଲି ସିନା ଏମିତି ହୀନକାମ କଲେ, ଥିଲବାଲ ବାପାର ଝିଅ ହୋଇଥିଲେ ଦେହରେ ହାତ ମାରିବାକୁ ସାହସ କରିଥାନ୍ତେ ? ଗରିବ ଉପରେ ସିନା ସାଲର ଦାଉ ! ମୋ ଝିଅ ଦିହରେ ଚିପ ଦେଲେ ? ଛିଡ଼ି ପଡ଼ୁ ତାଙ୍କ ଗୋଡ଼ ହାତ, ତାଙ୍କ ବଡ଼ପଣ ଗାତକୁ ଯାଉ । ଦେଖିବୁ ଲେ ଝୁଅ, ଗରିବର ଗରମ ନିଃଶ୍ୱାସ ନ ପଡ଼ି ଯିବ କୁଆଡ଼େ ? ଧଇର୍ଯ୍ୟ ଧରଲେ ମା, ସସାର କଲେ ବଜ୍ର ପଡ଼ିଲେ ବି ସହିବାକୁ ହୁଏ ... ।

ଶ୍ରାବଣୀ କହିଲ— ଥାଉ ବୋଉ । ସେମାନଙ୍କର କିଛି ଭୁଲ ନାହିଁ । ତାଙ୍କୁ ଦୋଷ ଦେଇ ଲଭ କ'ଣ ? ସବୁ ତା ଭଗ୍ୟର ।

: ଏତେ ସରି ହେଲୁଣି । ସେମାନଙ୍କୁ ଭର୍ତ୍ସିଲେ ଅସୁଖ ପାଉଛୁ ? ହଉ ଛାଡ଼ ସେ କଥା, ଭୁଲିଯା ପଛ କଥା ।

ବୋଉର କାନ କତିକୁ ଯାଇ ଶ୍ରାବଣୀ କଅଣ ସଞ୍ଜିବନୀ ମନ୍ତ୍ର ଫୁଙ୍କି ଦେଲ । ନାରୀ ହିଁ ବୁଝେ ସେ ସକ୍ଷିପ୍ତ ଶବ୍ଦାର୍ଥ । ଅପୂର୍ବ ଆନନ୍ଦରେ ସାରିଆ ନାଚି ଉଠିଲ, ମନ ପୂରି ଉଠିଲ । ମୁହଁରୁ ବିମର୍ଷ ପୋଛି ହର୍ଷ ତୋଳିଲ । ଦୁର୍ବଳ ଦେହକୁ ପୁଣି ବଳ ମାଡ଼ି ଆସିଲ । କିଏ କହୁଛି ମୋ ସୁବର୍ଣ୍ଣ ପ୍ରତିମା ଝିଅକୁ ଅଲକ୍ଷଣୀ ? ଆଖି ସେମାନଙ୍କର ଫୁଟି ଯାଇଛି କି ? ମୋ କୁଳଲକ୍ଷ୍ମୀ ମା' ବନିବ । ବୁଢ଼ୀ ସାରିଆ ଆଇଡ଼ାକ ଶୁଣି ଶାନ୍ତିରେ ମରିବ । ସେ ତ ଖୁବ୍ ସୌଭଗ୍ୟର କଥା । ବାପା ତ ବଞ୍ଚିଲ ନାହିଁ । କେତେ ଖୁସି ହୋଇ ନଥାନ୍ତା ! କିଏ ତାଙ୍କୁ ଖବର ଦେବ ପିଲର ରୁପ, ଗୁଣ ? ନିଜେ ସେ । ଖୁବ୍ ଭଲ ଖବର ।



Digitized by PPRACHIN, SOA

ଶ୍ରାବଣୀକୁ ଘସା, ଆଉଁସା, କରି ବସିଲି । କାଉହର କନ୍ୟା ଦେହରେ ସ୍ନେହ-ବିଭୂତି ବୋଳିଲି । ମଥାର ନୁଖୁରା, ଅଡୁଆ, ଅଲଗା ବାଳକୁ ସଜାଡ଼ି ବସିଲି । ପିଲା ଝୁଅଟା । ବୟସ କେତେ ବା ? ତୋଠୁ ପୁରୁଷେ ବଡ଼ ଝିଅ ଆଜି ବି ଅବିଆଡୀ ଅଛନ୍ତି । କିଛି କଥା ପାଇଁ ମନ ମାରିବା ଅଠିକ୍ କାମ । ଭଗବାନଙ୍କ ଦୟାରୁ ପିଲା କୋଳରେ ହସିବ ପୁନେଇଁ ଆକାଶର ଜହ୍ନ ଭଳି । ଦୁଃଖ ସରିବ ସୁଖ ଆସିବ । ଅନ୍ଧାର ଆଲୁଅର ଖେଳ ଲାଗି ରହିଛି ଏ ଜଗତରେ । ଝିଅ ପ୍ରାଣକୁ ପୁଷ୍ଟ କଲି, ମନକୁ ସନ୍ତୁଷ୍ଟ କଲି ସାରିଆ ।

ସାବି ଘରକୁ ଆସିଛି । ମା'ର ଉଚ୍ଛକିତ ମନ । ତା ଗୋଡ଼ ତଳେ ଲାଗିଲା ନାହିଁ, ପାଦ ଭୂଇଁ ଛୁଇଁଲା ନାହିଁ । ଝିଅ ପାଟି ଅରୁଚି ଧରିଛି । ବାଡି ବଗିଗ୍ରୁ ପରିବା, ଶାଗ, ସବଜି ସଂଗ୍ରହ କରି ସଦ ରନ୍ଧଣା ରନ୍ଧିଲା । ପିଠାପଣା ଯୋଗାଡ଼ କରି ଝିଅ ପାଟିରେ ଗୁଞ୍ଜିଲା । ପେଟ ପୂର ଖା, ନହିଲେ ଶୁଚ୍ଛଧରି ପାରିବୁନି । ମା' ହେବା ଏତେ ସହଜ କଥା ନୁହଁ । କଷ୍ଟ ସହିଲେ ସିନା କୃଷ୍ଣ ମୁଖ ଦେଖିବ ।

ବାପ ଥାନ୍ତା, ଝୁଅ ଆଇଚି, ଝୁଅ ଆଇଚି କହି ହୁର୍ଷି ମାରି ନାଚୁ ଥାନ୍ତା । ବିଭିନ୍ନ ଦରବ ଆଣି ତା ପାଟି, ପେଟରେ ପୂରନ୍ତା । ସୁସ୍ୱାଦୁ ଜିନିଷରେ ଝୁଅ ମୁହିଁ ମିଠା କରନ୍ତା । ଗର୍ଭବତୀ ଝିଅର ଚିକିତ୍ସା କରୁଥାନ୍ତା । ସୁଖ ଦେଖିବାକୁ ରହିଲେନି, ଅଜା ଡ଼ାକ ଶୁଣିବା ଭାଗ୍ୟରେ ଜୁଟିଲା ନାହିଁ । ସୁଖରେ ହେଉ, ଦୁଃଖରେ ହେଉ, ଝିଅ ତା ଘରକୁ ଆସିଛି । ଘର ପୂରିଛି । ବୁଢ଼ୀ ନିଃସଙ୍ଗତା ଅନୁଭବ କରୁଥିଲା । ଏଥର ଝିଅ ମୁହଁ ଦେଖି କାଳ କାଟିବ । ମଲା ବେଳକୁ ଟୋପେ ନିର୍ମାଲ୍ୟ ଜଳ ତ ମୁହଁକୁ ମିଳିବ !

ଝିଅକୁ ସୁସ୍ଥ ସବଳ ରଖିବା ପାଇଁ ସାରିଆ ବୈଦ୍ୟ କବିରାଜ ପାଖକୁ ଗଲା । ଦୁର୍ଦ୍ଦଶା ଦୂରକାରୀ ଡ଼େଙ୍ଗରିଆ ଝିଅ ବାହୁରେ ବାନ୍ଧିଲା । ସାବିର ଶୁର ମାନସିକ–ଅରକ୍ଷିତକୁ ବଢ଼ିବ ଯାହା ତୁଅନ୍ତ ଭଲରେ



Digitized by PPRACHIN, SOA

ଭଲରେ ଝିଅକୁ ଉଦ୍ଧାର କରନ୍ତୁ । ଚଉଠ ମୂଳେ ଭକ୍ତ ସନ୍ତବତୀ ଜାଣିଲ । ବିଧିଙ୍କ ପାଖେ ଉଦେଶ୍ୟ– ଅର୍ଘ୍ୟ ବାଢ଼ିଲ ।

ଶ୍ରାବଣୀର ଗର୍ଭ ଭିତରେ ଯେଉଁ ଅଙ୍କୁରଟି କ୍ରମେ ରୂପ ନେଉଥିଲ, ଆକାର ନେଉଥିଲ, ତାକୁ ଏକ ଅନିର୍ବଚନୀୟ ଅନୁଭବରେ ପୁଲକିତ କରି ତା ପାଇଁ ନୀରବ ନିଃଶ୍ୱାସର ମଧୁ ସଞ୍ଚ ଦେଉଥିଲ । ଉତ୍କଣ୍ଠାର ସହିତ ଅପେକ୍ଷା କରି ରହିଲ ସେଇ ଶୁଭ ଦିନଟିକୁ– ତା ନିଥର ନରକ ଜୀବନର ନବ ରବିକୁ ଆଖିରେ ଦେଖିବ । ନବୀନାନୁଭବ ସ୍ରୋତରେ ଘେମାଞ୍ଚିତ ହେଲ ଶ୍ରାବଣୀ ।

ଆଶାର ଦିନଟି ଆସିଲ । ଯେତେବେଳେ ଆକାଶରୁ ଆଲୋକ ଲିଭି ଆସୁଥିଲ, ରକ୍ତିମ ଶୋଭାରେ ପୂର୍ବାକାଶ ହସି ଉଠୁଥିଲ, ସଦ୍ୟଜାତ ଶିଶୁର କୁଆଁ କୁଆଁ ନାଦରେ କ୍ଷୁଦ୍ର କୁଟୀରଟି କମ୍ପି ଉଠିଲ । ପ୍ରଭାତ ଆଣିଲ ସାନ୍ତ୍ୱନାର ସନନ୍ଦ, ସୁସମ୍ବାଦ– ସନ୍ତାନଟିଏ– ତା ଜୀବନର ଅନ୍ଧାରୀ ଆକାଶରେ ନବୋଦିତ ସୂର୍ଯ୍ୟ । କୋଟିନିଧି ଘରେ ବିସ୍ମ ହୋଇଗଲ । ମନ ଅପୂର୍ବ ପୁଲକରେ ନାଚି ଉଠିଲ । ପୁଅ ନୁହେଁ ତ, ତା କଣ୍ଟକିତ ଜୀବନର ତ୍ରାଣକର୍ତ୍ତା । ଘୃଷଣ୍ଡେ ଛୁଆକୁ ଈଶ୍ୱର ନଇ ବାଲିର ଆୟୁଷ ଦିଅନ୍ତୁ, ଷଠୀ ବୁଢୀ ତାକୁ ନୀରୋଗୀ, ସୁସ୍ଥ, ବଳିଷ୍ଠ କରନ୍ତୁ । ଆର୍ତ୍ତର ଆଉ ଅଧିକ ମାଗୁଣି ବା କ'ଣ ?

ସାରିଆ ଲଣ୍ଡଭଣ୍ଡ ହୋଇ ପୋଖତି ଝିଅପାଇଁ ପ୍ରସବୋତ୍ତର ପଥ୍ୟ ଯୋଗାଡ଼ କଲ । ନିଜେ ନାଡିର ସେବା କଲ । ତେଲ ହଳଦୀ ମଖାଇଲ । ଉହ୍ଲେଇରେ ନିଆଁ ଜାଳି ସେକ ଦେଲ, ସାବିକୁ ସେକିଲ । ବଛ ଓ ଫଳ ଉଭୟଙ୍କର ଯଥାସାଧ୍ୟ ଯତ୍ନ ନେଲ ।





Digitized by PPRACHIN, SOA

ଲୋକ ତୁଣ୍ଡରେ ଖବର ଖେଳିଗଲା– ଜଗୁଝିଅ ସାବିର ପୁଅ ହୋଇଛି, ବିଧବା ବୁଢ଼ୀର ବିଧବା କନ୍ୟା, ବେଧ ପିଇ ଧରି ହୁଅନ୍ତି ଆନମନା । ଗାଁ ବାଲୁଙ୍ଗା ଭେଣ୍ଡିଆମାନେ କୌତୂହଳୀ ହୋଇ ଉଠଲେ । ଏମାନେ ଶ୍ରାବଣୀ ବାହାଘରରେ ଅନେକ କାଣ୍ଡ ଭିଆଇ ଥିଲେ । ବର ବେଦୀରୁ ବାହୁଡ଼ିଲା, ଜଗୁ ଚିରଦିନ ପାଇଁ ଆଖି ବୁଜିଲା । ବିଧିଁ ମଙ୍ଗୁଳା କନିଆଁକୁ ଠାବ ମିଳିଲାନି ଏଠି । ମାମୁଁ ଘରେ ରହି କୁଳରେ ଲାଗିଥିଲା ଶ୍ରାବଣୀ । ଗାଁ ବାୟୁମଣ୍ଡଳ ଏବେ ପୁଣି ଦୂଷିତ, ଠିକ୍ ବିନ୍ଦୁଏ ବିଷ ସମଗ୍ର ଜଳରାଶିକୁ ବିଷାକ୍ତ କଲାଭଳି । ଶାଶୁ ଘରର କୁହା ଏ ଇଲାକାକୁ ବ୍ୟାପି ଆସିଛି ଡିଆଁରୋଗ ଭଳି । ଚରିତ୍ର ଦୋଷ ଶ୍ରାବଣୀ ଦେହରେ ଲିପା ଯାଇଛି । ସେ ଷଡ଼ଯନ୍ତ୍ର କରି ତା ସ୍ୱାମୀକୁ ହତ୍ୟା କରିଛି, ପର ଘରେ ପଶି ଦେହ ବିକିଛି । ସମ୍ପତ୍ତି ଲୋଭରେ ସ୍ୱାମୀ ମୁଣ୍ଡରେ ଅଠାବୋଳି ଭଲେଇ ହେବାକୁ ଶାଶୁଘର ଧାଇଁଥିଲା, ଏବେ ସେଠୁଁ ତଡ଼ା ଖାଇଛି, କୁଳ ତାକୁ ଛାଡ଼ିଛି, ସମାଜ ତାକୁ ପ୍ରତ୍ୟାଖ୍ୟାନ କରିଛି । ସେ ଆଉ ସେ ଦିନର ଶ୍ରାବଣୀ ନୁହେଁ ; ଗାଁ ମାଟିର ମଲ୍ଲୀ ଏବେ ପଳାଶ ଫୁଲ ; ଦେବ ଦ୍ୱାର ତାକୁ ମନା । ସେ ସ୍ଖଳିତା, ସେ ପତିତା । ଅବୈଧ ସନ୍ତାନକୁ କୋଳରେ ଧରି ସତୀ ସାବିତ୍ରୀ ବୋଲେଇ ହେଉଚି, ଫୁଲେଇ ହେଉଚି । ଗଣ୍ଡ ମା' ଖଣ୍ଡକ ଆହୁରି ଫୁଲୁଚି । ବିଗ୍ରରୀ ପର ଘରେ ପାଇଟି କରି କଷ୍ଟରେ ପେଟ ପୋଷୁଥିଲା । ମାଟି କାମୁଡ଼ି ପଡ଼ିଥିଲା । ଏଥର ବୁଢ଼ୀକୁ ସୁଯୋଗ ଜୁଟିଲା, ଆଉ ପଧାନ ଘରେ କାମ କରିବ କିଆଁ ? ପରକୁ ହାତ ପାତି ଚଳିବ କାହିଁକି ? ଘରେ ଯୁଆନ୍ ଯୁବତୀ– ରୂପରଂଗ ଚହଟୁଛି, ବାସନା ମହକୁଛି । ଗତିଏ ଗଲେ ହାତୀଏ ଅର୍ଜିବ । ବୁଢ଼ୀର ଭଉ ଏଥର ବହୁତ ।



Digitized by PPRACHIN, SOA

ବାଳୁଙ୍ଗା ବାସୁଗଙ୍କ ମଧ୍ୟରେ ହାଟ ବସିଲା, ଆଲୋଚନା ହେଲା । କିଏ ଜଣେ ଗୀତ ଫାନ୍ଦିଲା । ସମସ୍ତେ ତାକୁ ଦୋହରେଇଲେ । ବାଳୁତ-ମାନଙ୍କ ଶୁଆତୁଣ୍ଡ ଗାଁ ଦାଣ୍ଡରେ ବୁଲିଲା–

ସମସରପୁର ହାଟ, ନ ଭୁଲ ବାଟ,<br>
ଗାଁରେ ଏଥର ଦେଖିବ ନାଟ ।<br>
ସତୀ ଘରେ ଏବେ ବସନ୍ତି ଭଟ ।

ବୁଢ଼ୀ କାନରେ କଥା ବାଜେ । ସେ ରଣଚଣ୍ଡୀ ରୂପ ଧାରଣ କରେ । ତା ମୁହଁରୁ ତୋପ ଫୁଟେ– କୁଆଡ଼େ ଗଲରେ ପର ଘର ବୁଢ଼ା, ବାଡ଼ିପଶା, ଯୋଗଣିଖିଆ ଗାଁ ଭଗାରିଏ– କୋଉଠି ସବୁ ଅଛ, ତମକୁ ଗୋଟି ଗୋଟି କରି ଗ୍ରେବେଇ ଖାଇବି, ତମ ମାଇପଙ୍କୁ ଗଣ୍ଡ କରିବି । କ'ଣ ତମର ସାରିଆ କ୍ଷେତି କରିଚି ? କାହିଁକି ଗରିବ ନିଆଶ୍ରୀ ଉପରେ ତମର ଅତ୍ୟାଗ୍ରର ? ତା ବାପକୁ ମାଇଲ । ପୁଣି ମୋ ଲଳକୁଳୀ ଇଚା ଉପରେ ଦାଉ ସାଧୁଚ ? ସଜ ମାଛରେ ପୋକ ପକାଉଛ ? ତା'ର ଦୁର୍ନାମ କରୁଛ ! ତମ ଆଖି ଫୁଟି ଯାଉ, ଅଧାବଅସରେ ଜୀବନ ଯାଉ, ତମ କୁଳ ବୁଡ଼ି ଯାଉ ... ତମର କ'ଣ ମା' ଭଉଣୀ ନାହାନ୍ତି ? କ'ଣ କରୁଚ ଏ ଗାଁର ମର୍ଦ୍ଦମାନେ ? ଗାଁ ଝିଅର ଇଜ୍ଜତ ଦାଣ୍ଡରେ ବିକୁଚ, କିଏ ହେଲେ ପଦେ ପାଟି ଫିଟାଉନ । ଚିହ୍ନିନ ଏ ସାରିଆକୁ । ରଗିଲେ ସେ କାହାର ନୁହଁ । ଆଜି ପଧାନଙ୍କୁ କହି ପଞ୍ଚାୟତ ଡ଼ାକିବି । ସତ ମିଛ ମୁକାବିଲା କରିବି । ଅଳପେଇସିଆଙ୍କୁ ଧରମ ଛାଡ଼ିଲାଣି ଏଥର ...

ସାରିଆର ହାଡୁଆ ନହକା ଦେହକୁ ଗାଁ ଦାଣ୍ଡରେ ନଚେଇ ନଚେଇ ପାଟିରୁ ଦୁର୍ଭିକ୍ଷା ଉତ୍କ୍ଷେପଣ କରି କ୍ଷୋଭ ଜର୍ଜ୍ଜରିତ ଦେହରେ ଘରକୁ ଫେରେ । ନାକ ପୁଡ଼ାରେ ଯା' ଆସ କରୁଥାଏ ଖର ନିଃଶ୍ୱାସ । ଶ୍ରାବଣୀ ବୁଝିପାରେ ବୋଉର କ୍ରୋଧ । ବୁଝାଏ କୋପାନି୍‌ତା ବୋଉକୁ । ନଈ କୂଳେ ଘର କରି କୁମ୍ଭୀର ସଙ୍ଗେ କିମ୍ପାଇ କଳି ? କ'ଣ ମିଳିବ ସେଥିରୁ ? ନିଜେ ଭଲ ତ ଦୁନିଆ ଭଲ । କଥାରେ କହନ୍ତି, ହାତୀ ବୁଲେ ବଜାର, କୁକୁର ଭୁକନ୍ତି ହଜାର । ତତଲା ପାଣିରେ କ'ଣ ଘର



Digitized by PPRACHIN, SOA

ପୋଡ଼ିଯାଏ ?  ପାଣି ଆପେ ଆପେ ଶୀତଳ ହୁଏ ।  ଏ ଗାଁ ଯୁବକ-ମାନେ ଏମିତି ମିଛରେ ମାତିଛନ୍ତି ।  ବୟସର ସ୍ୱଭାବ ।  ଆମ ବେଳ ଖରାପ ପଡ଼ିଛି ।  ଏମାନଙ୍କ ସଙ୍ଗେ କଳି କଜିଆ ଲଗିଲେ, ରାଗ ବଢ଼ିବ, ପୁଣି ଅକଥା କରିବେ ।  ଚୁପ୍ ରହିବା ଭଲ ।

: ଏ ମାନଙ୍କର ମୁଁ ଖାଏ, ନା ଧାରେ ?  ଡରିବି କାହିଁକି ? ଏ ଗାଁ ଲୋକଙ୍କ ଗୁଣକୁ ମୁଁ ହାଡ଼େ ହାଡ଼େ ଚିହ୍ନେ ।  ପରର ଶିରି ଦେଖି ପାରନ୍ତି ନାହିଁ ।  ପରର ଗୋହି ଖୋଳି ଖାତରେ ପକାନ୍ତି ।  ଠିକ୍ ଜବାବ୍ ନ ଦେଲେ ଆହୁରି ମାଡ଼ି ବସିବେ । ଲୁହାକୁ ଲୁହା କାଟେ । ଜାଣୁ ? ଘାରିଆର ମୁହଁ ଲୁହାଠୁଁ ଟାଣ ।

: ଛାଡ଼ ବୋଉ ତୁ ସେ କଥା ।  ଅଲଣା କଥାକୁ ଦୋହରେଇଲେ ନିଜର କ୍ଷତି, ପାଟି ଖରାପ, ଚଣ୍ଡ ଅଶୁଦ୍ଧ ହେବ ।  ନେ ତୋ ନାତିକୁ ଧର ।  ଦେଖ୍ କେମିତି ଆଖି ମିଟି ମିଟି କରୁଚି ... ।

ଘାରିଆ ନାତିକୁ ନେଇ ଗଲା, ଗୋଡ ଲମ୍ୱେଇ, ନାତି ଦେହରେ ତେଲ ହଳଦୀ ମାଖିଲା ।

ପୁଅ ଭୂଇଁରେ ଗୁରୁଣ୍ଡିଲାଣି ।  ଦିବ୍ୟ ରୂପ ତା'ର ।  ତା' ଗୁରୁଣ୍ଡି ଗୋପାଳକୁ ସ୍ୱଚକ୍ଷୁରେ ଦେଖୁଛି ଶ୍ରାବଣୀ ।  ଆଖି ପୂରି ଯାଉଛି, ମନ ଭରି ଯାଉଛି, ଚିତ୍ତରେ ଅଞ୍ଜନ ବୋଳୁଛି ।  ଶାନ୍ତା କୁମାରୀଙ୍କ ପୁଅ ଖୋକନକୁ ସେମିତି ଚକ୍ଷୁରେ ଦେଖିଥିଲା, ମୁଗ୍ଧ ହୋଇଥିଲା, ଲୋଭେଇ ଯାଇଥିଲା । ମନ କରିଥିଲା, ନିଜ ଗର୍ଭରୁ ଏମିତି ପିଲାଟିଏ ଜନ୍ମ କରନ୍ତା କି ! ତା' ଆଶା ଫଳବତୀ ହୋଇଛି । ସତେ ଯେମିତି ଶାନ୍ତା କୁମାରୀଙ୍କ ଖୋକୋନ୍ ଥିଲା ତା' ପୁଅର ଅଗ୍ରଦୂତ ! ଖୋକୋନ୍ କଥା ଭାବି ଶ୍ରାବଣୀ ପୀଡ଼ା ଅନୁଭବ କଲା ।  ସହରୀ ଗୁଣ୍ଡାମାନେ ଶାନ୍ତା କୁମାରୀଙ୍କୁ ଅପହରଣ କରି ନେଇ ଗଲେ ।  ଧ୍ୱସ୍ତ ବିଧ୍ୱସ୍ତ ହୋଇ ଯାଇଥିଲା ସେମାନଙ୍କ ସ୍ୱର୍ଗସମ ସଂସାର ।



Digitized by PPRACHIN, SOA

ଆହା, ବିଚରା ଖୋକନ୍ । ମା' ସ୍ନେହରୁ ବଞ୍ଚିତ ହୋଇ କିପରି ଲାଳିତ ପାଳିତ ହେଉଥିବ ? ଖୋକନ୍ ମା' ଛେଉଣ୍ଡ, ତା' ପୁଅ ବାପ ଛେଉଣ୍ଡ । ଦୁଇ ଜଣଙ୍କ ମଧ୍ୟରେ ଅଛି କିଛିଟା ସାମଞ୍ଜସ୍ୟ । ଏକି ଭଗବାନଙ୍କ ଲୀଳା ! ଶ୍ରାବଣୀ ଆଖି ପରିଷ୍କାର କଲା । ପୁଅକୁ କୋଳକୁ ଆଣି କୋଳ ଦେଲା । ତା' ପୁଅ ହୋଇଛି ତା'ର ଏକମାତ୍ର ସହାୟ । ତାକୁ ଦେଖି ଦିନ କାଟୁଛି । ତାକୁ କୋଳରେ ଧରି, ଛାତିରେ ଘୋଡ଼ି, ସ୍ତନରୁ କ୍ଷୀର ଦେଇ ସ୍ୱାମୀ ସରା ଅନୁଭବ କରୁଛି । ସେ ତା'ର ଦୁଃଖ ପାଶୋରା, ଜୀବନ ସଙ୍ଖାଳି, ପତି ସ୍ନେହର ସ୍ମାରକୀ । ତାକୁ ମଣିଷ କରି ଦୁନିଆଁ ଦାଣ୍ଡରେ ଛିଡ଼ା କରାଇବ, ତାହେଲେ ଯାଇଁ ତା' ମନରୁ ଦୁଃଖ ଲିଭିବ, ଶତ ନିର୍ଯାତନା ଭୁଲିବ, ସ୍ୱପ୍ନ ସାର୍ଥକ ହେବ । ସେ କେବଳ ବଞ୍ଚିରହିବ ତା' ତପସ୍ୟାର ଫଳ ଦେଖିବାକୁ । ତା' ମନରେ ପଙ୍ଗୁ ଗିରି ଲଘନ କରିବାର ସଙ୍କଳ୍ପ ।

ଆଇ, ବୋଉ ଉଭୟଙ୍କର ପୁଅ ଉପରେ ବିଶେଷ ଦୃଷ୍ଟି, ସତର୍କ ନଜର । ଡ଼ାଆଣୀ ଆଖିରୁ ଦୂରେଇ ରଖିବା ପାଇଁ ପୁଅ ବେକରେ ଝୁଲୁଛି ଆଷ୍ଟଧାତୁ ତ୍ରେଡ଼ଙ୍ଗିଆ, ଗାଲରେ ପଟେ କଜ୍ଜଳ ଦାଗ । ସମସରପୁର ଗାଁରେ ଅନେକ ଡଆଣୀ ଚିରୁଗୁଣୀ ବାସ କରୁଛନ୍ତି । ସେମାନଙ୍କୁ ସାରିଆ ଗୋଟି ଗୋଟି କରି ଚିହ୍ନିଛି । ସେଥିପାଇଁ ଘରେ ରଖିଛି ଗୁଣିଆ ମନ୍ତୁରଜଳ, କାଟ ପାଣି । ନାତି ବାହାରକୁ ଯିବା ସମ୍ପୂର୍ଣ୍ଣ ନିଷିଦ୍ଧ ।

ଥାଏ ଗାଁର ସେଇ କେମା ମାଷ୍ଟର– ମନୁ ମହାନ୍ତି । ରୂପ ଲୋଭୀ ଭଅଁରମାନେ ବାସନା ବାରି ପୁଷ୍ପାକୃଷ୍ଟ ହେଲାଭଳି, ସେ ବହୁ ଘରକୁ ଧାଇଁ ଆସୁଥିଲା ବିଭିନ୍ନ ବାହାନାରେ । ଚନ୍ଦ୍ରକୁ ହାତ ବଢେଇ ବିଫଳତା ଅର୍ଜନ କରିଥିଲା । ଯୁବଗୋଷ୍ଠୀଙ୍କର ସେ ଥିଲା ପରାମର୍ଶଦାତା । ଶ୍ରାବଣୀ ବାହାଘର ଦିନ ଏ ଗାଁରୁ ବରକୁ ଘଉଡ଼ି ଦେବାରେ ସେ ସେମାନଙ୍କୁ ଉସ୍କାଇ ଥିଲା । ଏବେ ସେ ମନୁ ମାଷ୍ଟେ ନିଜ ଉଦ୍ଦେଶ୍ୟ ନେଇ ପୁନଶ୍ଚ ତତ୍ପର ହୋଇ ଉଠିଛି– ଶ୍ରାବଣୀର ଜଳାପୋଡ଼ା ସଂସାର ଉପରେ ପୁଣି ଘରବାଡ଼ି ନିର୍ମାଣ କରିବାକୁ ପ୍ରୟାସୀ । ଉଦ୍ଦେଶ୍ୟକୁ ଗୋପନୀୟ ରଖି



Digitized by PPRACHIN, SOA

ବୁଢ଼ୀ ସଙ୍ଗେ ଭଲେଇ ହୋଇ ମିଠା କଥା କହୁଛି– ବୁଢ଼ୀକୁ ଶୁଣେଇ ବାଲୁଙ୍ଗା ଟୋକାଙ୍କୁ ଗାଳି ଦେଉଛି– ଶ୍ରାବଣୀ ଦୁଃଖରେ ସମବେଦନା ଜ୍ଞାପନ କରୁଛି– ଶ୍ରାବଣୀ ପୁଅକୁ ତାରିଫ୍ କରୁଛି ଯେମିତି ତା ପୁଅର ରାଜପୁତ୍ର ଚେହେରା, କୋଟିଏରେ ଗୋଟିଏ, ଜଗତ୍ର କୁଳୋଜ୍ଜ୍ୱଳ କରିବ, ଜନ୍ମ ଜନ୍ମର ପାପ– ଅନ୍ଧକାର ଗର୍ଭରୁ, ତା ବଂଶ ଉଦ୍ଧାର ପାଇବ, ସଗର ବଂଶକୁ ଋଷ୍ୟାଭିଶାପରୁ ରାଜା ଭଗୀରଥ ମୁକ୍ତି କଲା ଭଳି । ମାଷ୍ଟ୍ରଙ୍କ ମୁହଁରେ ରସରସିଆ କଥା । ଶ୍ରାବଣୀ ସବୁ ଶୁଣେ, ଜାଣେ, କିନ୍ତୁ ଆଉ ଆଖିରେ କେବେ ଅନାଏ ନାହିଁ । ମଣିଷ ମନକୁ ଠିକ୍ ରୂପେ ମାପିବାର ଅଭିଜ୍ଞତା ସେ ଅର୍ଜନ କରି ପାରିଛି । ପୂର୍ବଭଳି ତା'ର ସେଇ ନୀରବ, ନିସ୍ତରଙ୍ଗ ଢଙ୍ଗ । ନିର୍ଦ୍ଦୟ ନିୟତି ତାକୁ ନାହିଁ ନଥିବା ନିର୍ଯ୍ୟାତନା ଦେଉଛି । ସବୁ ସହିଛି, ସହୁଛି, ସହିବ ମଧ୍ୟ । ଏଥର ମଧ୍ୟ ସହିବ ପିଲାର ମଙ୍ଗଳ ପାଇଁ । ସହିବା ହେଉଛି ଦେବ ପ୍ରକୃତି ; କହିବା ଖଳ ପ୍ରବୃତ୍ତି, ରାକ୍ଷସ ବୃତ୍ତି । ସହିବାତ ଈଶ୍ୱରଙ୍କ ଆଶୀର୍ବାଦ । ସହିଲେ ସିନା ସଂସାରରେ ଘର କରିବ, ଉଦ୍ଦେଶ୍ୟ ଚରିତାର୍ଥ କରିବ ! ପର କଥାକୁ ପ୍ରତିବାଦ କରି ଅଯଥା ଶତ୍ରୁତା ଅର୍ଜନ କରିବା ସାର ହେବ, ନିଜେ ଅଶାନ୍ତି ଭୋଗିବ । କିଛି ନ କହିଲେ ସବୁଠୁ ଭଲ । ଏଣୁ ନୀରବତା ହିଁ ଶ୍ରେଷ୍ଠ ଅବଲମ୍ବନ ।

ବୁଢ଼ୀ ସାରିଆ ସାଉକାରର କାମ ପାଇଟିରେ ବାହାରକୁ ଯାଏ, ଶ୍ରାବଣୀ ପିଲା ପାଛେ । ସ୍ୱାମୀ ମଲାପରେ ସାରିଆ କାମ ଧରିଛି । ଝିଅ ବାହାଘର ମାମଲାରେ ପଞ୍ଚପଡ଼ାର ପୋଡ଼ାମୁହାଁ ପଦନ ପାଲରେ ପଡ଼ି ସବୁ ଜମିବାଡ଼ି ବିକ୍ରୀ ଯାଇଥିଲା । ଗାଁ ପଞ୍ଚାୟତ ନିଷ୍ପତ୍ତି– ଜମେ ଘର ଡ଼ିହଟା ବାଦ ପଡ଼ିଥିଲା । ବୁଢ଼ୀ ବଞ୍ଚିଥିବା ପର୍ଯ୍ୟନ୍ତ ଏ ଘରେ ରହିବ, ତା' ପରେ ସ୍ତୁର ପଧାନେ ଘର ନେବେ । ସେ ଏ ଘର ଖରିଦ କରିଛନ୍ତି । ଗାଁ ସମ୍ପତ୍ତି ଗାଁରେ ରହିଛି । ତାଙ୍କ ଘରେ ବୁଢ଼ୀ କାମଧନ୍ଦା କରୁଛି, ପେଟକୁ ମୁଠେ ଖାଉଛି, ଦେହରେ କନ୍ତା ଖଣ୍ଡେ ଗୁଡ଼େଇଛି ।

ଝିଅର ପ୍ରସବ କାଳରେ ପଧାନେ ବହୁ ଦୟା ପ୍ରଦର୍ଶନ କରିଥିଲେ । ଖୋଲା ହୃଦୟ । କହିଲା ମାତ୍ରେ ଗୁଡ଼, ଚାଉଳ, ଟଙ୍କା ଗଣି ଦେଇଥିଲେ ।



Digitized by PPRACHIN, SOA

ଝିଅର ପୋଷତି ପଥ୍ୟପାଇଁ ମଧ୍ୟ ସାହାଯ୍ୟ କରିଥିଲେ । ଟଙ୍କା ଅଶୁଝା ରହିଛି । ବିଶ୍ୱରବନ୍ତ ଲୋକଟିଏ । ଦୁଃଖରେ ସୁଖରେ ହାତ ପାତିଲ କ୍ଷଣି ମନା କରନ୍ତି ନାହିଁ । ସେ ବିପନ୍ନ ପରିବାରର ଅନ୍ନଦାତା । ଆଜିକାଲି ମହର୍ଗ ଯୁଗରେ କେତେ ଜଣ ଏମିତି ନିର୍ଲୋଭୀ ହୋଇ ପାରିବେ ? ପଧାନଙ୍କ ଦୟାପଣ, ଦାତାପଣକୁ ସାରିଆ ପ୍ରଶଂସା କରୁଥିଲା ଝିଅ ଆଗେ । ଶ୍ରାବଣୀ ନୀରବ ରହୁଥିଲା । କୌଣସି ମତଦାନ କରିବାକୁ ଅନିଚ୍ଛୁକ । ମଣିଷର ଗୁଣ ଚିହ୍ନିଛି ସେ । ମୁହଁରେ ମିଠା, ପେଟରେ ବିଷ୍ଠା– ଦୟାପଣର ଅନ୍ତର୍ନିହିତ ଉଦ୍ଦେଶ୍ୟ ତା' ଅଗୋଚର କାହାଣୀ ।

ସମସରପୁର ଗାଁରେ ସୁର ପଧାନ ବେଶ୍ ପ୍ରତିଷ୍ଠିତ ବ୍ୟକ୍ତି । ବହୁବାଟି ଚାଷ ଜମିର ମାଲିକ । ତାଙ୍କର ମୂଲିଆ, ହଳିଆ, ଟହଲିଆ ଅନେକ; ବଳଦ ମଇଁଷି ଗୋଠ, ଗୋଠ । ଧନର ପାହାଡ଼ ଠିଆ ହୋଇଛି ତାଙ୍କ ଖଳାବାଡ଼ି, ପାଳଗଦା, ଅମ୍ବାର ଘର ଭିତରେ ।

ଏ ଇଲାକାର ଏମିତି ଧନାଢ୍ୟ ବ୍ୟକ୍ତି ଅଛନ୍ତି ବୋଲି ବିପଦ ଆପଦରେ ସାହାହୁଅନ୍ତି ସିନା ! ମରୁଡ଼ି ମଡ଼କ ଦୁର୍ଭିକ୍ଷରେ ପୁଞ୍ଜି ମେଲନ୍ତି । ଏବେ ଗାଁ ଯୁବଗୋଷ୍ଠୀ ପୋଷି ହେଉଛନ୍ତି । ଭଗବତ ଘର ପାଖେ ତାଙ୍କ ଜାଗାରେ ଯୁବକ କେନ୍ଦ୍ର ଖୋଲିଛନ୍ତି; ଗାଁରେ ପାଲା, ଦାସକାଠିଆ, ଗୋଟିପୁଅ ନାଚ ଇତ୍ୟାଦିର ଖର୍ଚ୍ଚ ସେ ଏକା ବହନ କରନ୍ତି । ରେଡ଼ିଓ, ରେକଡ଼ ଆଦି ମୁକ୍ତ ହସ୍ତରେ ଦାନ କରିଛନ୍ତି । ବାତ୍ୟା, ଗୋଳବାୟୁ ଆଦି ଦୈବୀ ଦୁର୍ବିପାକରେ ଗ୍ରାମଶାଳୀ ଗ୍ରାମଘର, ସ୍କୁଲଛାତ ଆଦି ଉଡ଼ିଗଲେ ହାତରୁ ପଇସା ଗଣି ଛପର କରନ୍ତି । ଗରିବଙ୍କ ଘର ଭାଙ୍ଗିଲେ ଟୋକି ଦିଅନ୍ତି, ଅବଶ୍ୟ ସେ ଗୁଡ଼ିକର ଟିପାରଖୁଥାନ୍ତି, ଟିପା ଖାତା ବଢ଼େ, କେବେ ଛିଡ଼େ ନାହିଁ; ମୂଳ ରହେ, ଡାଳ ବଢ଼େ ।

ଗାଁରେ ତାଙ୍କର ଏକମାତ୍ର ପକ୍କାଘର– ସରୁଦାଣ୍ଡକୁ ଲାଗି କଡ଼ି ବରଗା ଛାତ ବିଶିଷ୍ଟ ଦି'ବଖୁରୀ ଘର ପଛକୁ ଆଟୁ ଘରର ଖୁଆଡ଼ । ଦାଣ୍ଡରୁ ଚାହିଁଲେ ଘରର ଶେଷ ଦିଶେନି । ଘରକୁ ଚାହିଁ ଲୋକ ନାହାନ୍ତି ।



Digitized by PPRACHIN, SOA

ବିଚରା ସେ ଏକଲା ଲୋକ– ଆଣ୍ଠୁକୁଡ଼ା, ସ୍ତ୍ରୀ ହରା । ଭଗବାନ କ'ଣ ଲୋକଙ୍କୁ ସବୁଦିଗରେ ସବଳ କରିଥାନ୍ତି ? ଆଗକୁ ପଛକୁ କେହି ନଥିବାରୁ ଦୁଃଖ କରନ୍ତି– କିଏ ତାଙ୍କ ସମ୍ପତ୍ତିର ଉତ୍ତରାଧିକାରୀ ହେବ ? ପଧାନଙ୍କର ସବୁବେଳେ ସେଇ ଚିନ୍ତା । ପଧାନଙ୍କ ଦୁଶ୍ଚିନ୍ତା ନେଇ ସାରିଆ ମୁହଁରେ ବାରମ୍ବାର ଦୋହରେଉଥିଲା । ଶ୍ରାବଣୀ ନିସ୍ତବ୍ଧ ହୋଇ ସବୁ ଶୁଣି ଯାଉଥିଲା ।

ଦୂର ସମ୍ପର୍କୀୟ ଭଉଣୀର ପୁଅକୁ ପୁଅ କରି ଆଣିଥିଲେ ପଧାନେ । ସେ କିନ୍ତୁ ମଣିଷ ହେଲା ନାହିଁ । ବାପକୁ ବାପ ମଣିଲା ନାହିଁ । ବହୁ ଅର୍ଥ ଅପବ୍ୟୟ କଲା । ଶେଷରେ ବାଉରୀ ଘରେ ପଶିଲା । ବାଉରୀ ସଙ୍ଗେ ପୀରତି କଲା, ବାଉରୀ ମାଇପ ଧରି ନାଚିଲା । ପଧାନଙ୍କ ମୁହଁରେ କଳା ବୋଳିଲା । ପଧାନେ ଅପମାନିତ ହେଲେ । ବରଂ ଆଣ୍ଠୁକୁଡ଼ା ହେବା ଭଲ । ପର ପୁଅକୁ ଉଧାର ଆଣି ଅକଲ ସଲମ ଗଣିବା କଥା । କ୍ଷୀରରେ ଧୋଇଲେ, ମଣ୍ଡରେ ମୋହିଲେ ନିମ କି ମଧୁର ହୋଇବ ? ପର ପିଲାକୁ ଯେତେ ନିଜର କଲେ ବି ସେ କି ଆପଣାର ହେବ ? ଏମିତି ନଁ! ପକା ହୀନବୁଦ୍ଧି ପୁଅକୁ ପଧାନେ ଉଚିତ ଶିକ୍ଷା ଦେଲେ । ତା' ପାଇଁ ପଧାନେ କବାଟ ବନ୍ଦ କଲେ ସବୁଦିନ ପାଇଁ । କୋର୍ଟ କଚେରୀରେ ଲେଖାପଢ଼ା କରି ପୋଷ୍ୟ ପୁତ୍ର କରିଥିଲେ, ପୁଣି ତେଜ୍ୟ ପୁତ୍ର କଲେ । ପଧାନ ଘର ରକ୍ତର ପବିତ୍ରତା ରକ୍ଷା କଲେ । ତୁ କ'ଣ ପ୍ରଧାନ ଘର କଥା ଜାଣୁନା ସାବି ?

ଏବେକାର ଘଟଣା । ବୁଢ଼ା ବଅସରେ ବିଭା ହେବାକୁ ମନ କଲେ ପଧାନେ । କିଏ କନିଆଁ ଦେବ ? ଖାଲି ଧନକୁ କ'ଣ କିଏ ଲୋଭ କରି କନ୍ୟାଦାନ କରିବ ? କିନ୍ତୁ ଧନ ଥିଲେ ମନ ଖରିଦ କରାଯାଇ ପାରେ । କନିଆଁ ଖରିଦ କରିବାକୁ ଚାହିଁଲେ ପଧାନେ । ତାଙ୍କୁ କିଏ ଗାଁରେ ସମର୍ଥନ ନ କରିବ ? ପଧାନେ ପଡ଼ିଲେ ପଦନ ହାବୁଡ଼ରେ । ତା' ସଙ୍ଗେ ସୁସମ୍ପର୍କ ବହୁ ଦିନରୁ । ନିକଟରେ ଗାଁ ପଞ୍ଚାୟତିର



Digitized by PPRACHIN, SOA

ଅନୁମୋଦନ କମେ କଗୁ ପଧାନର ଘର ଡ଼ିହବାଡ଼ି ପଦନଠୁଁହିଁ ଖରିଦ କରିଥିଲେ । ଏବେ ପଧାନେ ମନ କଥା ପଦନ ଆଗରେ କହିଲେ । ପଦନ ତାଙ୍କର ପରାମର୍ଶଦାତା । ପରିଣତ ବୟସରେ ପଧାନଙ୍କର ବିବାହ ଯେ ଏକାନ୍ତ ଜରୁରୀ, ପଦନ ପହିଲେ ସମର୍ଥନ କଲା । ପରେ ଅନ୍ୟମାନେ । ରୂପବତୀ, ଗୁଣବତୀ, ଗଳାବୟସୀ ଝିଅଟିଏ ଖୋଜିବାର ଦାୟିତ୍ୱ ପଦନ ଆଦର ଏବଂ ଉତ୍ସାହରେ ଗ୍ରହଣ କରିନେଲା ।

ପାଖାପାଖି କୌଣସି ଗାଁରେ ବନ୍ଧୁ ବାନ୍ଧିବା ପାଇଁ ପଧାନେ ଅନିଚ୍ଛୁକ, ଅମଙ୍ଗ । ପାଖରୁ ପୋଷ୍ୟ ପୁତ୍ର କରି ଅତୀତରେ ଅପଦସ୍ତ ହୋଇଛନ୍ତି । ସେ ଭୁଲ ପଧାନେ ଆଉ କରିବେ ନାହିଁ । ନିକଟ ବନ୍ଧୁଙ୍କର ଦାଉ ବଢ଼ିବ, ସମ୍ପତ୍ତି ଆଡ଼ିରେ ଦୃଷ୍ଟି ପଡ଼ିବ । ଦୂରବନ୍ଧୁ ପଧାନଙ୍କୁ ସୁନ୍ଦର । ଠିକ୍ ସେଇକଥା ପଦନର ଆଗରୁ ମତ ଥିଲା ବୋଲି କହିଲା ।

ଏ ଅଞ୍ଚଳର ଅନେକ ଲୋକ ମେଦିନୀପୁରରେ ବନ୍ଧୁ ବାନ୍ଧିଥିଲେ, ଝିଅ ଆଣିଥିଲେ, ଝିଅ ଦେଇଥିଲେ । ଦୂରରେ ବୈବାହିକସମ୍ପର୍କ– ବେଶ୍ ଭଲ । ଦୂର ବଂଧୁମାନଙ୍କ ସୁନାମ ଶୁଣିଛନ୍ତି ପଧାନେ । ସେଇ ମେଦିନୀପୁରିଆ କନ୍ୟାପାଇଁ ପଧାନେ ଆଶାୟୀ, ଆଗ୍ରହୀ । ପଧାନଙ୍କ ମନାନୁଯାୟୀ ଅଧିକ ଉତ୍ସାହରେ ପଦନ ପାତ୍ରୀ ଖୋଜିଲା । ଏକାଧିକଥର ଗଲା ମେଦିନୀପୁରକୁ ।

କନ୍ୟା ଯୋଗାଡ଼ ହୋଇଗଲା ଦିନ କେଇଟା ଭିତରେ । ପଧାନେ କନ୍ୟା ଦେଖିବାକୁ ଗଲେ । ବିଶ୍ୱସ୍ତ ପଦନତ ଦେଖିଥିଲା ପୂର୍ବରୁ । ପଧାନଙ୍କର ଆଉ ଅଧିକ ଦେଖି ପସନ୍ଦ କରିବାର ନ ଥିଲା । ଝିଅ ପସନ୍ଦ । କନ୍ୟାପିତା ଖାଲି ରାଜି ହେଲେ ବିବାହ ଦିନ ସ୍ଥିର ହେବ ।

କିନ୍ତୁ କନ୍ୟାପିତାଙ୍କର ଥିଲା ଗୋଟିଏ ସର୍ତ୍ତ– ଅର୍ଥ । ପିଲା ଝିଅକୁ ବୁଢ଼ା ବର, ଅନୂଢ଼ା ଯୁବତୀକୁ ବୃଦ୍ଧ ଜୋଇଁ । ଏହି ଅସମତାର ପୂରଣ କରାଯାଇ ପାରେ କେବଳ ଅର୍ଥ ମାଧ୍ୟମରେ, ଧନ ପ୍ରତିବଦଳରେ ।



Digitized by PPRACHIN, SOA

ପଧାନଙ୍କର ବିଚଳିତ ସ୍ୱର : ଟଙ୍କା, କେତେ ଟଙ୍କା ? ପ୍ରଧାନେ ବିହ୍ୱଳିତ ହୋଇ କହି ପକାଇ ଥିଲେ । ତାଙ୍କର ଧନ ଯେ ଅମାପ !

ପଧାନଙ୍କର ଉକ୍ତି : ପଦନ, ସେମାନଙ୍କୁ ମୋ ଅର୍ଥକ୍ଷମତା ବିଷୟରେ କହିନ ପର !

ପଦନର ପ୍ରତ୍ୟୁକ୍ତି : ପଦନକୁ ଆପଣେ ଚିହ୍ନି ନାହାନ୍ତି ତେବେ ! ପଦନ ଯେଉଁ କାମରେ ହାତଦିଏ, ଅକୃତକାର୍ଯ୍ୟ ହେବାର ପ୍ରଶ୍ନ ନାହିଁ ।

ସ୍ୱଚ୍ଛ ହସ ହସି କହିଲେ ପଧାନେ– ତା' ହେଲେ ସେମାନଙ୍କୁ କ'ଣ ଜବାବ ଦେଲ ?

କନ୍ୟା ପିତାଙ୍କୁ ପଦନ କହିଥିଲା– ସମସରପୁର ସୌଦାଗର ସ୍ୱର ପଧାନଙ୍କୁ ନ ଚିହ୍ନେ କିଏ ? ଏ ଖଣ୍ଡ ମଣ୍ଡଳରେ ସେହି ଗୋଟିଏ ଥିଲାବାଲା ଲୋକ, ନାମକରା ବ୍ୟକ୍ତି, ଧନର କୁବେର, ଶସ୍ୟର ପାହାଡ଼ ଉପରେ ଶୁଅନ୍ତି ସେ । ସମସରପୁର ଜମିଦାର ନୁହନ୍ତିତ ଆଉ କ'ଣ ? ଆମେ ତାଙ୍କୁ ଏଠାକାର ରଜା ବୋଲି ଭାବୁ । ତାଙ୍କ ପରି ଖ୍ୟାତିସମ୍ପନ୍ନ ଆଉ ବିତ୍ତବାନ ବ୍ୟକ୍ତି ଏ ଅଞ୍ଚଳରେ ଆଉ କିଏ ଅଛି ? ତମ ଝିଅ ଭାଗ୍ୟବତୀ, ଲକ୍ଷ୍ମୀବତୀ ହୋଇ ନଥିଲେ ଏମିତି ଧନପତିର ହାତ ଧରିବ ନାହିଁ । ଝିଅ ତମର ଅୟସରେ ବଢ଼ିବ, ଖଟ ପଲଙ୍କରୁ ତଳକୁ ଓହ୍ଲାଇବ ନାହିଁ । ସେ ଖାଲି ଦୋଳି ଖେଳୁଥିବ । ଚାକର, ବାକର, ପୂଜାରୀ କିଙ୍କର ହାଉଯାଉ । ଆଜିକାଲି ଯୁଗର ସେ ହେବ ରାଣୀ, ମହାରାଣୀ । ମହାଦେବଙ୍କୁ ଦୈନିକ ଲକ୍ଷେ ବେଲପତ୍ର ଚଢ଼ାଇ ଥିଲେ ଯାଇଁ ଝିଅ ପାଇବ ଏମିତି ବର । ବୁଝିଲ ?

ପଦନର ବାକ୍‌ପଟୁତା ଶୁଣି ସ୍ୱର ପଧାନେ ପ୍ରୀତ ହୋଇ ଧନ୍ୟ କହିଲେ ।



Digitized by PPRACHIN, SOA

: ତେବେ ଝିଅଘରର ପ୍ରକୃତ ଦାବୀ କ'ଣ ? କେତେ ଟଙ୍କା ସେମାନେ ଚାହାନ୍ତି ?

: ବିଶେଷ କିଛି ନୁହେଁ । ଆପଣଙ୍କ ଶକ୍ତିର ବାହାରେ ନୁହେଁ । ବଡ଼ ଘରେ ବନ୍ଧୁ ପ୍ରତିଷ୍ଠା କରୁଛନ୍ତି ସେମାନେ । ସେମାନଙ୍କ ଦାବୀରେ ମୁଁ ଏକମତ ହେଲି, ହଁ କଲି । ଲୋକେ ଦେଖନ୍ତୁ । ସମସରପୁର ସୌଦାଗରର ଶକ୍ତି, ସାମର୍ଥ୍ୟ ଆଉ ସମ୍ମାନ । ସେମାନେ ଚାହାନ୍ତି ଶହେ ଭରିର ସୁନା ଅଳଙ୍କାର ଝିଅ ପିନ୍ଧି ଶାଶୂ ଘର ଯିବ । ନାକର କଥା କ'ଣ ? ଅରଜି, ଅମତ ହେବାର କ'ଣ ଅଛି ? ଆମ ଧନ ଆମ ଘରକୁହିଁ ଆସିବ ।

ଶହେ ଭରି ସୁନା ! ଘରେ କେତେ ସୁନା ଅଛି ? ପଧାନଙ୍କର ହିସାବ ମନେ ପଡୁନି । ବନ୍ଧକ ଆକାରରେ ଅନେକ ସୁନା ଅବଶ୍ୟ ଗଚ୍ଛିତ ଅଛି । ତେବେ ସଠିକ୍ କେତେ ମନେ ପଡୁନି । ଖାତା ଖୋଲିଲେ ଜାଣି ହେବ । ପଦନ ସମ୍ମୁଖରେ ଖାତା ଦେଖାଯାଇ ନପାରେ । ତାଙ୍କ ସମୃଦ୍ଧି ପ୍ରକୋଷ୍ଠରେ ବାହାର ବ୍ୟକ୍ତିଙ୍କ ନଜର ପଡ଼ିବା ଅନୁଚିତ । ପୋତାଧନ ପଦାରେ ପଡ଼ିବ । କେମିତି ହଁ ଭରିବେ ? ଥତମତ ହେଲେ ପଧାନେ ।

ପଧାନଙ୍କ ମନାବସ୍ଥା ବୁଝିପାରି ପଦନ କହିଲା– ମନ ଥିଲେ ଆପଣଙ୍କୁ ଧନ କୋଉ ଅଭାବ ଅଛି ? ଏମିତି ସୁପାତ୍ରୀଟିଏ ହାତଛଡ଼ା କରିବା କଥା ନୁହେଁ । ରାଜକନ୍ୟାର ଚେହେରା ତା'ର । ସୌଦାଗର ଘରକୁ ଉପଯୁକ୍ତ ସାଧବ ବୋହୂ । ଏ ଘରକୁ ମାନିବ । ଆଉ ଚିନ୍ତା କରୁଛନ୍ତି କ'ଣ ? ପଦନ ନିର୍ଭର ଜବାବ ଦେଇ ସାରିଛି । ସେ କ'ଣ ପଧାନଙ୍କର କେବେ ଅମଙ୍ଗଳ କରିପାରେ ?

ବିବାହର ଦିନ ନିରୂପିତ ହେଲା ଶୁଭସ୍ୟ ଶୀଘ୍ରଂ ନୀତିରେ । ଆଗାମୀ ମଗୁଶିର ଅଷ୍ଟମୀ ତିଥିରେ ବାହାଘର । ଦୁଇ ପିଠି ବିବାହ ଖର୍ଚ୍ଚ ପଧାନେ ବହନ କରିବେ ବୋଲି ସେ ପ୍ରତିଶ୍ରୁତି ଦେଇଥିଲେ ପ୍ରଥମରୁ ।



Digitized by PPRACHIN, SOA

ସାତକାର ସ୍ତୁର ପଧାନଙ୍କ ଦ୍ୱିତୀୟ ବିବାହ । ଖୁବ୍ ଧୁମ୍‌ଧାମ୍‌ରେ ପ୍ରସ୍ତୁତି ଚାଲିଲା । ବନ୍ଧୁ, ବାନ୍ଧବ, ଜ୍ଞାତି କୁଟୁମ୍ବ, ସାଇ ଭାଇ ସମସ୍ତଙ୍କୁ ନିମନ୍ତ୍ରଣ କରାଗଲା । ସମସ୍ତଙ୍କୁ ସାଙ୍ଗରେ ଧରି ବିବାହୋଦ୍ଦିଷ୍ଟ ମଟର ଗାଡ଼ିରେ ନିର୍ଦ୍ଦିଷ୍ଟ ସମୟରେ ବରାନୁଗମନ ଆରମ୍ଭ ହେଲା । ଶଙ୍ଖ ମହୁରୀର ନାଦରେ ଗାଁ ଦାଣ୍ଡ ଉଚ୍ଛୁଳି ଉଠିଲା । ଦୂର ମେଦିନୀପୁର ଅଭିମୁଖେ ବରଦଳ ଯାତ୍ରା କଲେ ।

ଗ୍ରାମବାସୀମାନେ ବହୁତ ଖୁସି ହୋଇଥିଲେ । ପଧାନେ ଯୁବ ଗୋଷ୍ଠୀର ମୁହଁ ବାନ୍ଧି ରଖିଥିଲେ । ସେମାନଙ୍କ ବାପ, ଅଜା ପଧାନଙ୍କ ହଳିଆ, ମୂଲିଆ ଥିବା ଭାଗଚାଷୀ । ବୁଢ଼ା ବୟସରେ ପଧାନେ ଯୁବତୀ ପତ୍ନୀ ମୁହଁ ଦେଖିବେ, ପଧାନେ ବଂଶରକ୍ଷା କରିବେ । ଗାଁ ଲୋକେ ଉଦର ଭରି ମୁଠିଏ ଖାଇ ବାହାବା କରିବେ । ଚଉଠି ଦିନ ଗୋଟିଏ ବଡ଼ଭୋଜିର ଆୟୋଜନ କରାଯାଇଥିଲା । ପଧାନେ ଅତ୍ୟନ୍ତ ଖୁସି ହୋଇ ସେଥିପାଇଁ ଗ୍ରାମବାସୀଙ୍କ ଭକ୍ଷଣାର୍ଥେ ଅର୍ଥର ବ୍ୟବସ୍ଥା କରି ଯାଇଥିଲେ । ମନ ଯେଉଁଠି ତୁଷ୍ଟ, ସେଠାରେ ଧନ ବ୍ୟୟର କ୍ଲିଷ୍ଟତା ଅନୁଭୂତ ହୁଏ ନାହିଁ । ଗାଁ ଲୋକେ ସଜପଡ଼ା ହାଟରୁ ପାଞ୍ଚୋଟି ବଳିଷ୍ଠ ଛାଗ ଖରିଦ କରି ଆଣି ଗାଁ ଦାଣ୍ଡରେ ବାନ୍ଧି ରଖିଥିଲେ ଗ୍ରାମର ଆବାଳ-ବୃଦ୍ଧ-ବନିତାଙ୍କ ଉଦର ଭରଣ ପାଇଁ । ଏକତ୍ର ପାଞ୍ଚୋଟି ଛେଳି ବନ୍ଧା ହୋଇ ଥିବାରୁ ସେମାନେ ଆନନ୍ଦୋତ୍‌ଫୁଲ୍ଲ ହୋଇ ଉଠିଥିଲେ । ଏପରି ଆଖି ପୂରିଲା, ପେଟ ଭରିଲା ଦୃଶ୍ୟ ସେମାନେ ଆଗରୁ କେବେ ଦେଖି ନଥିଲେ । ଛେଳିଗୁଡ଼ିକୁ ବିଭିନ୍ନ ବୃକ୍ଷର କଅଁଳ ଡ଼ାଳ ଏବଂ ପେଜ ତୋରାଣି ଆଦି ଗୋଖାଦ୍ୟ ଯୋଗାଇବାରେ ଗାଁ ପିଲାଏଁ ଏବଂ ବୃଦ୍ଧ ବୃଦ୍ଧାମାନେ ବେଶ୍ ଯତ୍ନବାନ ହୋଇ ଉଠିଥିଲେ । ଛାଗମାନଙ୍କୁ ସବଳ କରି ନ ରଖିଲେ ମାଂସ ସୁସ୍ୱାଦୁ ହେବନି । ଭୋଜି ଦିନ ପାଖେଇ ଆସୁଛି । ସର୍ବ ମୁଖରେ ପଧାନଙ୍କ ଜୟଗାନ । ଯାହାର ଲୁଣ ଖିଆଯାଏ, ତାର ଗୁଣକୀର୍ତ୍ତନ କରିବା ଏମିତି ସ୍ୱାଭାବିକ । ସାତକାର ଭଳି ସଦାଶୟ ବ୍ୟକ୍ତି ଏ ଅଞ୍ଚଳରେ ଆଉ କିଏ ଅଛି ?



Digitized by PPRACHIN, SOA

ବିବାହର ଚତୁର୍ଥ ଦିନ ହେଲଣି, ତଥାପି ପଧାନେ ଫେରି ନାହାନ୍ତି । ଆଜି ଚଉଠି, ଘେଞ୍ଚି ଦିନ । ବରଯାତ୍ରୀମାନଙ୍କ ମଧ୍ୟରୁ କେହି ହେଲେ ଘରମୁହାଁ ହୋଇ ନାହାନ୍ତି । ଗାଁ ବାସିନ୍ଦାମାନଙ୍କ ମଧ୍ୟରେ ପ୍ରବଳ ବ୍ୟାକୁଳତା ଏବଂ ଉତ୍କଣ୍ଠା ପ୍ରକାଶ ପାଇଲଣି । ଛେଳିମାନେ ମଧ୍ୟ ନୂଆଘାନ ବାଗି ଅସ୍ତବ୍ୟସ୍ତ ହେଲେଣି । ସେମାନଙ୍କୁ ଶୀଘ୍ର ବଧ କରଯିବା ଉଚିତ । ଲୋକମାନଙ୍କ କ୍ଷୁଧାମୋଚନ ମଧ୍ୟ ଅବିଳମ୍ବେ ଆବଶ୍ୟକ ।

ଅସନ୍ତୋଷ, ଅସଫଳର କରୁଣ ରୂପଟିଏ ଧରି ପଧାନେ ଗାଁରେ ପହଞ୍ଚିଲେ । ଗୁରୁପାକ ଭୋଜନରୁ ବଞ୍ଚିତ ହୋଇ ଥିବାରୁ ଗାଁଲୋକେ ହତାଶ ହୋଇଥିଲେ । ରହସ୍ୟ ପ୍ରକାଶ ପାଇଲା ।

ଶ୍ୱଶୁରରେ ବିବାହ କାର୍ଯ୍ୟ ଶେଷ ହେଲା ପରେ ବରକନ୍ୟାଙ୍କର ବିଦାୟ ପର୍ବ ହୋଇଥିଲା । କନ୍ୟା ଶହେ ଭରିର ସ୍ୱର୍ଣ୍ଣାଳଙ୍କାର ପିନ୍ଧିଥିବାର ସୁନିଶ୍ଚିତ ରହି ନିଃସନ୍ଦେହରେ ପଧାନେ ଘରବାହୁଡ଼ା ହେଲେ । ମନରେ ତାଙ୍କର ବିଜୟୋଲ୍ଲାସର ଧ୍ୱଜା ଉଡୁଥିଲା । ବାଟରେ କନ୍ୟା ଗାଡ଼ି ରଖିବାକୁ ଅନୁରୋଧ କଲା । ତା' ଦେହ ଖରପ– ଝାଡ଼ା ବାନ୍ତିରେ ସେ ଆକ୍ରାନ୍ତ । ଆଉ ମୁହୂର୍ତ୍ତେ ଡ଼େରି ହେଲେ ଅବସ୍ଥା ଅଣାୟତ ହୋଇଯିବ । ଗାଡ଼ି ଅଟକିବାକୁ ବାଧ୍ୟ ହୋଇଥିଲା । କନ୍ୟାର ଆଦେଶକ୍ରମେ ପଥୁରି-ପଡ଼ା ପୋଖରୀ କୂଳରେ ଗାଡ଼ି ରହିଲା । ଏଠି ଶୌଚର ସୁବିଧା ଅଛି ।

ସଞ୍ଜ ଶେଷ ହୋଇ ଆସୁଥିଲା । ଅନ୍ଧାର ମାଡି ଆସୁଥିଲା ଚତୁର୍ଦ୍ଦିଗକୁ ଆଚ୍ଛନ୍ନ କରି । ପଧାନେ ବ୍ୟସ୍ତ ହେଉଥିଲେ ମଧ୍ୟ ଉପାୟନ୍ତର ନଥିଲା । କନ୍ୟାକୁ ପୋଖରୀ ବେମାରି ମାଡ଼ି ବସିଥିଲା ।

ପୋଖରୀ ହୁଡ଼ାରେ କିଆ ବୁଦାର ଥାଟ । ତା ପଛକୁ ବିଲମାଳ । କିଆବୁଦା ଆର ପାଖକୁ କନ୍ୟା ପୋଖରୀପାଣି କରିବାକୁ ଗଲା । ସ୍ତ୍ରୀର ସମ୍ପୂର୍ଣ୍ଣ ଗୋପନୀୟ କାମ । କେତେ ଡ଼େରି ହେବ ? ଘଣ୍ଟାଏ ଗଲା, ଦୁଇଘଣ୍ଟା ଟପିଲଣି । କ'ଣ ହେଲା କନ୍ୟାର ? ପଧାନଙ୍କ ଦେହକୁ ଚେଲ୍ଲକି ବିଛା କାମୁଡ଼ିଲା ଭଳି ଲଗିଲା । ଦୁଶ୍ଚିନ୍ତା ଆଘାତ କଲା ।



Digitized by PPRACHIN, SOA

ଯନ୍ତ୍ରଣାରେ ଅଧୈର୍ଯ୍ୟ ହୋଇ ଉଠିଲେ ସେ । ଘୋର ଅନ୍ଧକାର ପଲ୍ଲୀ ଅଞ୍ଚଳକୁ ଗ୍ରାସ କରିଥିଲା । ମୁହଁକୁ ମୁହଁ ଦିଶୁ ନଥିଲା । ଟର୍ଚ୍ଚ ବା ଆଲୁଅ କାହାପାଖେ ନଥିଲା । ସେଇ ଅନ୍ଧାର ଭିତରେ ଦଉଡ଼ି ହେଲେ ପଧାନେ । କିନ୍ତୁ କିଛି ଫଳ ମିଳିଲା ନାହିଁ, କେବଳ ଆଶଙ୍କା ଆଉ ଉଦ୍‌ବେଗ । ସେମାନେ ଗଳା ଫଟାଇ ଚିତ୍କାର କଲେ– ପ୍ରଣତି, ପ୍ରଣତି !

ପ୍ରଣତିର ଚିହ୍ନବର୍ଣ୍ଣ ଆଉ ସେଠି ନଥିଲା । କେଉଁ ଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା ? ବଣ୍ୟଜନ୍ତୁ ଖାଇଗଲା କିମ୍ବା ପ୍ରେତ ଅପହରଣ କରିନେଲା ? ଏଠିତ କୌଣସି ଜଙ୍ଗଲ ନାହିଁ, ବଣନଟା ନାହିଁ, ଖାଲି ଫସଲପୂର୍ଣ୍ଣ ଗୃଷଜମି । ପ୍ରଣତି ତେବେ ଗଲା କୁଆଡ଼େ ? ଭୂତଭୟ ସମସ୍ତଙ୍କୁ ଆତଙ୍କିତ କଲା ।

ନିକଟରେ ପଥୁରିପଡ଼ା ଗାଁ । ଅନ୍ୟ ଉପାୟ ନପାଇ ସେମାନେ ବିମର୍ଷ ମନରେ ଗାଁରେ ରାତି ବିତେଇଲେ । ପରଦିନ ସକାଳେ ରହସ୍ୟୋଦ୍ଦୀପକ ଘଟଣା ପ୍ରଚାରିତ ହେଲା ଏବଂ କ୍ରମେ ସତ୍ୟ ପ୍ରକାଶ ପାଇଲା ।

ପ୍ରଣତିର ମାଉସୀ ଘର ପଥୁରିପଡ଼ାରେ । ମାଉସୀ ମଉସାଙ୍କ ସ୍ନେହାଦର ପାଇ ସେ ବହୁ ସମୟରେ ପଥୁରିପଡ଼ା ଆସିଥାଏ । ତା'ର ପରିଚୟ ହୁଏ ପଥୁରି ପଡ଼ାର ସୁଶ୍ରୀ ଯୁବକ ବିଜୟ ସହିତ । ବିଜୟ ମଧ୍ୟ ମଉସାଙ୍କର ସମ୍ପର୍କୀୟ । କ୍ରମେ ପ୍ରଣତି ଏବଂ ବିଜୟ ପ୍ରେମ ପାଶରେ ବାନ୍ଧି ହୋଇ ପଡ଼ିଥିଲେ । ବିଜୟ ଥିଲା ଅର୍ଦ୍ଧପାଠୁଆ, ଧାନ୍ଦାନ୍ୱେଷୀ । ପ୍ରଣତିର ଜିଦ୍ କ୍ରମେ କନ୍ୟା ପିତା ବିବାହ ପାଇଁ ପ୍ରତିଶ୍ରୁତି ଦେଇଥିଲେ ମଧ୍ୟ ପାତ୍ରର ଉପାର୍ଜନ କ୍ଷମତା ଅଭାବରୁ ପ୍ରସ୍ତାବ ବାସ୍ତବରୂପ ନେଇ ପାରୁ ନଥିଲା । ହଠାତ୍ ନିର୍ମେଘ ଆକାଶରେ ବଜ୍ର ସୃଷ୍ଟି ହେଲା ଭଳି ପ୍ରେୟସୀ ପ୍ରଣତିର ଅନ୍ୟତ୍ର ବିବାହ ସମ୍ବାଦ ବିଜୟକୁ ବଜ୍ରାଘାତ କରିଥିଲା । ପିତାମାତାଙ୍କ ଷଡ଼ଯନ୍ତ୍ର ଏବଂ ପ୍ରତିଶ୍ରୁତିଘାତକତାକୁ ପଣ୍ଡ କରିବାକୁ ହେବ । ପ୍ରିୟ ଏବଂ ପ୍ରିୟା ମଧ୍ୟରେ ଚାଲିଲା ଖୁବ୍ ଗୋପନୀୟ ମନ୍ତ୍ରଣା– ଷଡ଼ଯନ୍ତ୍ର ବିରୁଦ୍ଧରେ ଚକ୍ରାନ୍ତ । ଯେଉଁଠି ମିଆଁ ବିବି ରାଜି, କ୍ୟା କରେଗା କାଜି ? କ୍ଷୀର, ନୀର ଥରେ ମିଶିଲେ ପୃଥକ କରିବା ବହୁ କଷ୍ଟକର,



Digitized by PPRACHIN, SOA

ଅସମ୍ଭବ ମଧ୍ୟ । କ୍ଷୀର ନୀରର ବିଚ୍ଛିନ୍ନ ଉଦ୍ୟମରେ ସ୍ବର ପଧାନଙ୍କୁ ବାରିସୀ ଭବେ ବ୍ୟବହୃତ କରଯାଇ ଥିଲ, କିନ୍ତୁ ପଧାନେ ବିଫଳ ହୋଇ ଦୁର୍ଭାଗ୍ୟ ମୁଣ୍ଡେଇ ଶିଶୁପାଳ ହୋଇ ଘରକୁ ଫେରିଥିଲେ । ସୁନା ଚଢ଼େଇ ପିଞ୍ଜର ଫିଟାଇ ଉଡ଼ି ଯାଇଥିଲ ଆପଣା ଆକାଶରେ ।

ମୁଖଭଙ୍ଗାରେ ପଧାନେ କିଛିଦିନ ମୁହ୍ୟମାନ ହୋଇ ଦାଣ୍ଡକୁ ବାହାରି ନ ଥିଲେ । ଛେଳିଗୁଡ଼ିକ ଅଧିକ ରଡ଼ି ଛାଡ଼ିବାରୁ ସେଗୁଡ଼ିକୁ ହାଟରେ ବିକ୍ରୟ କରିବା ପାଇଁ ବାହାରକୁ ଆସିବାକୁ ପଡ଼ିଲ । ଘର ପୋଡ଼ିରୁ କୁଟା ଖିଅଟାଏ ମିଳିଲେ ଅନ୍ତତଃ ଲଭ । ତାଙ୍କର ବିଶେଷ ଦୁଃଖ ନଥିଲ ଷୋଡ଼ଶୀ କନ୍ୟା ପାଇଁ, ଦରଦ ଥିଲ ଏକ ଶତ ଭରି ସୁନାପାଇଁ । ବହୁ କଷ୍ଟରେ ଠୁଳ କରିଥିଲେ ତାଙ୍କ ସ୍ବର୍ଣ୍ଣସମ୍ପଦ । ଅକାରଣରେ ଏମିତି ସପରି ଉଜୁଡ଼ିବା ଘଟଣାରେ ପଧାନେ ଭାଙ୍ଗି ପଡ଼ିଥିଲେ ଏବଂ ପଦନର ଅପରିଣାମଦର୍ଶିତାକୁ ବିକ୍ଷୋଦ୍‌ଗାର କରିଥିଲେ ।

ପଧାନଙ୍କ ଅଯଥା ହୀନସ୍ତା, ମନୋବସ୍ଥା ସାବିବୋଉ ଝିଅ ଆଗରେ ବଖାଣୁ ଥିଲ ପାଲ ଗାୟକ ଭଳି । ବୋଉ ମନରେ ସାଉକାର ପାଇଁ ସମବେଦନା ଶୁଣି ଚୁପ୍ ରହୁଥିଲ ଶ୍ରାବଣୀ । ସତେ ଯେମିତି ତା ବୋଉ ସାଉକାରର ସ୍ତାବକ, ଗୁଣକିର୍ତ୍ତନକାରୀ– ସାଉକାର ଦୁଃଖରେ ଖୁବ୍ ଦୁଃଖିତ ତାଙ୍କ ପାଇଁ ବୋଉ ମନରେ ଏତେ ପୀଡ଼ା କାହିଁକି ?

ପଧାନେ ଏବେ ଗାଁ ମୁଣ୍ଡ ମହାଦେବ ମନ୍ଦିରର ପୁନରୁଦ୍‌ଥାନ କାର୍ଯ୍ୟରେ ମନ ଦେଇଛନ୍ତି । ଚନ୍ଦନ ପୋଖରୀରୁ ପଙ୍କୋଦ୍ଧାର କାମ ଲଗି ରହିଛି । ବଡ଼ ଧାର୍ମିକ ବ୍ୟକ୍ତି ପରା !

ବିରକ୍ତିର ଅସଂଖ୍ୟ ଚିହ୍ନ ଆଙ୍କି ଶ୍ରାବଣୀ ମୁହଁ ମୋଡୁଥିଲ ।

ପଧାନେ ଏବେ ଅଧିକ ଉତ୍ସାହ ଦେଖାଇ ବୁଢ଼ୀକୁ ଶ୍ରାବଣୀର ଭଲମନ୍ଦ ପଚାରି ବୁଝୁଛନ୍ତି । ତା' ଦେହ କେମିତି ଅଛି ? ପୁଅ କେଉଁଟିଏ



Digitized by PPRACHIN, SOA

ହେଲାଣି ? ତା' ନାଁ କ'ଣ ଦେଲଣି ? ତାକୁ କାହିଁକି ଯାଢ଼େ ବୁଲେଇ ଆଣୁ ନାହୁଁ ? ଶ୍ରାବଣୀର କାହିଁ ଦେଖା ନାହିଁ ? ପଧାନଙ୍କ ମୁହଁରୁ ଶ୍ରାବଣୀର ଗୁଣଗାଣ ସାରିଆ ଶୁଣି ରହେ ।

ସାବିବୋଉ କହେ– ଲାଜ ସରମ ତାକୁ ଖାଉଚି ସାଆନ୍ତେ । ଅଭିଆଡୀ ଝିଅ ବେଳେ ସିନା ଲାଜ କରୁଥିଲା ; ଏବେ ପିଲାର ମା' ହେଲାଣ । ତଥାପି ସରମ ଛିଡ଼ିନି । ଏବେ ତାକୁ ବେଶୀ ବେଶୀ ଲାଜ । ଅନେକ ଥର ଆସିବାକୁ କହିଲିଣି । ଆଜି ନାହିଁ, କାଲି ନାହିଁ, ଏବେ ନୁହେଁ, ପରେ କେବେ ... ।

ସାଉକାର ସାଆନ୍ତେ ପାନୁଆ ପାଟିରେ ହସି କହନ୍ତି– ଏତୁଟିଏ ବେଳୁ ତାକୁ ମୁଁ ଦେଖୁଛି । ଲାଜକୁଳୀ ପିଲା । ଏ ଗାଁର ହୀରା ଖଣ୍ଡେତ ! ଭଗବାନଙ୍କର କେଡ଼େ ଅବିଗ୍ଭର ! ସେ କେବଳ ଭଲକୁ ହିଁ ଦଣ୍ଡିତ କରନ୍ତି । ପୋକ କେବଳ ସଜ ବାଇଗଣରେ ହିଁ ବସେ ।

ସାବିବୋଉ କହେ– ଅନାଥିନୀ, ନିଆଶ୍ରୀ ଗରିବଙ୍କ ଉପରେ ଭଗବାନଙ୍କର ବେଶୀ ଇର୍ଷା । ଦୁଷ୍ଟକୁ ଠାକୁରେ ଡ଼ରନ୍ତି ପରା ! ଦଇବ ନିଠୁର ହୋଇ ପିଲାଟା ହାତରୁ କାଚ କାଢ଼ି ନେଇ, ମୁଣ୍ଡରୁ ସିନ୍ଦୂର ପୋଛି-ନେଲା । କେଡ଼େ ନିଦାରୁଣ ବିଧାତା ସତେ ! ... କୋଳରେ ବକଟେ ପିଲା । ଆଜି ଥଣ୍ଡା, କାଲି ଜର, ପରଦିନ ବାନ୍ତି, ଝାଡ଼ା । ଛୁଆଟା ପିଛା ଲାଗିଲାଗି ସାବିର କଣ୍ଟା ରହିଲାଣି । ... ତମେ ମହାପ୍ରଭୁ ଦୟା କରିଛ ବୋଲି ମୁଁ ସିନା ସେମାନଙ୍କ ମୁହଁରେ ତୋଳେ ଦେଉଚି ! ନହିଲେ ଆଜିକାଲି କିଏ କାହାକୁ ସାହାଯ୍ୟ କରୁଚି ?

ସାଉକାରଙ୍କର ଅଭୟ ବାଣୀ– ମୁଁ ପଧାନ ଥାଉଁ ଥାଉଁ ସାବିର କିଛି ଅଭାବ ଅସୁବିଧା ହେବ ନାହିଁ । ସାବି ଏଇ ଗାଁର ଝିଅ । ତା'ର ଦୁଃଖ କ'ଣ ଆମର ନୁହେଁ ? ପିଲାଟା ଅଳପ ବୟସରେ ସିନା ଶାଶୁଘର ଗଲା ! ତା' ସାଙ୍ଗରେ ଗାଁ ଝିଅ କେତେଟା ବାହା ହୋଇ ଘର କଲେଣି



Digitized by PPRACHIN, SOA

କହତ ସାବିବୋଉ ? ସାବିର ଏବେ କ'ଣ ହୋଇଯାଇଛି ଯେ ! ଫଗାର କଥା, ଗଲ ଆଇଲ ଲାଗିଛି । ତା'ର ପିଲ ବୟସରେ ବାହାଘର କେଉଁ ବାହାଘରରେ ଗଣା ? କଣ୍ଠେଇ ବାହାଘର ନୁହେଁ ତ ଆଉ କ'ଣ ? ତା'ର ରୂପ ଅଛି, ଯୌବନ ଅଛି, ଗୁଣ ଅଛି । ମନ ଖୋଜିଲେ, ଗଢ଼ି ହେଲେ ଏବେ ବର କୋଉ ଅଭାବ ଅଛନ୍ତି ? ଖାଲି ମନ କଲେ ହେଲ ।

ସାବି ବୋଉ ମନରେ ଦୁର୍ବଳତାର ଭାବ ଚେଇଁ ଉଠିଲ । ସାଉକାର ଦେବତା ସମାନ । ତାଙ୍କ ଉପଦେଶ ଗୁରୁବଚନ । ଟିକିଏ ଚିନ୍ତାକରି କହିଲ– କିଏ ଏକଥା ତାକୁ କହିବ ? ବାଘୁଣୀ ଭଳି କଣ୍ଠା ଘୋବେଇ ଦେବ ଲେ ମା' !

ସାଉକାର ଉଦାର ଭାବ ଦେଖାଇ କହିଲେ– ଅବଶ୍ୟ ଦେହରୁ ଦରଜ ଛାଡ଼ିନି, କ୍ଷତ ଲିଭିନି, ଦୁଃଖ ଯାଇନି । ଦିନ ଗଡ଼ିଲେ ଆପେ ଆପେ ସେ ବୁଝିବନି ? ନିଜର ପିନା ସଉକ ନାହିଁ, ସୁଖ ନାହିଁ । କିନ୍ତୁ ଛୁଆର ଭବିଷ୍ୟତ ? ଥରେ ଭାବି ଦେଖ ସବିବୋଉ । ସ୍ବର ପଧାନ କେବେ ନାକଗ କଥା କୁହେନି । ଯାହା କହେ ସିଧା ସିଧା, କିଏ ଅବିଗୁଣ ପାଉ ପଛକେ, ଯିଏ ଯାହା ଭାବୁ ପଛକେ ... ।

ସାବି ବୋଉ ସାଉକାର କଥାକୁ ଘୋଷି ହେଉଥିଲ ମନେ ମନେ । ହଠାତ୍ ମନକଥା ମୁହଁରୁ ପ୍ରକାଶ ପାଇଲ । ଶ୍ରାବଣୀ ଫଣା ଉତ୍ତୋଳନ କଲ, ଭୀଷଣ ମୂର୍ତ୍ତି ଧାରଣ କଲ–

: ସେ କଥା ଯଦି ଥରେ ମୁହଁରେ ଧରୁ, ସଫା କହି ଦେଉଛି, ମୁଁ ଆଉ ରହିବି ନାହିଁ । ଜହର ଖାଇଦେବି । ମା' ହୋଇ ଝିଅ ମନକଥା ବୁଝି ପାରିଲୁ ନାହିଁ ? ସେ କଥା ମୁହଁରେ ଧରିବାକୁ ତୋତେ ଲଜ୍ଜା ଲଗୁନି ବୋଉ ? ବୁଢ଼ୀ ହେଲେ, ବୟସ ଖସିଲେ ମଣିଷର ବୁଦ୍ଧି, ବୁଦ୍ଧି ବିବେକ ଲୋପ ପାଇଯାଏ ନା କ'ଣ ?



Digitized by PPRACHIN, SOA

୯ରେ ଶ୍ରାବଣ

ବୁଢ଼ୀ ସାରିଆର ଦୁଶ୍ଚିନ୍ତା ବଢିଛି । ଶ୍ରାବଣୀ ଅବୁଝା । ପିଲାମନ, ବାୟାଣୀ ବୁଦ୍ଧି । କେତେ ଦିନ ଯାଏଁ ଏମିତି ମନଟାଣ କରି ରହିବ, ଦମ୍ଭ ବାନ୍ଧି ଜୀବନ କାଟିବ ? ମା' ଜୀବନ ଯାଉଚି, ଆଉଚି, ସେ ତ ପାକଲା ବାଉଁଶ, କେଉଁ ମୁହୂର୍ତ୍ତରେ ଟଳି ପଡ଼ିବ, ଗଛର ଶୁଖିଲା ପତ୍ର ଭଳି କେଉଁ କ୍ଷଣରେ ଖସି ପଡ଼ିବ । ବୁଢ଼ୀର ଗୋଡ଼ ହାତ ଚଳୁଥିଲା ପର୍ଯ୍ୟନ୍ତ ପାଟିରେ ଆହାର ମିଳୁଛି, ପଧାନେ ଦୟା କରିଛନ୍ତି ବୋଲି ସିନା ! ତାକୁ ତ ମହା ଲଜ୍ଜ । କାମ ପାଇଟିକି ମନ ନାହିଁ । ବୁଢ଼ୀ ଆଖି ବୁଜିଲେ ଘୋର ଅନ୍ଧକାର ଘୋଟି ଆସିବ । କ'ଣ କରିବ ସାବି ?

ଗାଁର ସାଆନ୍ତ ସୁର ସାଉକାର, କେଡ଼େ ଦୟାବନ୍ତ ପୁରୁଷ ! ଗଙ୍ଗାକୁ କୋଉ ଅବା ଖଙ୍ଗା ଅପୂର୍ବ ! ବୁଢ଼ା ବୟସରେ ବାହା ହେବାକୁ ପୁଣି ମନ କରିଛନ୍ତି । ବଂଶରକ୍ଷା ପାଇଁ ସ୍ତ୍ରୀର ଆବଶ୍ୟକତା, ନୋହିଲେ ବିବାହ କାହିଁକି ? ତାଙ୍କ ପରି ଲୋକ । ଭଗବାନ ଗଧ ପାଦ ଧରିଲା ଭଳି ସେ ସାବି ପାଇଁ ମୁହଁ ଫିଟାଇ କହିଲେଣି । ମୁଣ୍ଡ ବିକୃତ ନହେଲେ ଏମିତି ସୁଯୋଗ କ'ଣ କିଏ ହରାଏ ? ମିଛଟାରେ ଆଣ୍ଡ କରି କି ଲାଭ ମିଳିବ ? ରାଣୀ ହେବାର ଭାଗ୍ୟ ଝିଅର ନାହିଁ । ମନର ଅବଶୋଷ ଏବଂ ନାତିର ଭବିଷ୍ୟତଚିନ୍ତା ବୁଢ଼ୀକୁ ବ୍ୟସ୍ତ ବିବ୍ରତ କଲା । କିଛିଦିନ ତଳେ ଅଧିକ ଖଟଣି ପଡ଼ିବାରୁ ସେ ବିଛଣାରୁ ଉଠି ପାରୁ ନଥିଲା । ପୁରୁଣା ପେଟ ବେମାରି ଅଧିକ ଯନ୍ତ୍ରଣା ଦେଉଥିଲା ତାକୁ । ଗେରସ୍ତ ଥିଲାବେଳେ ରୋଗ ନିବାରଣ ପାଇଁ ସେ ଅନେକ ପଥି, ଔଷଧ, ଚେରମୂଳି ଏବଂ ଟୁଣୁଟୁଣୁକା ଖାଇଥିଲା । ସେତେବେଳେ ରକ୍ତ ତେଜ ଥିଲା, ତେଣୁ ରୋଗ ବ୍ୟାଧି ନଥିଲା । ଏବେ ବଳ ଖସିଲା, ରୋଗ ସକୋପ ବଢିଲା । ଗତ ଦୁଇଦିନ ହେଲା ସେ ବିଛଣାରୁ ଉଠି ନାହିଁ । ଏଣେ ଅନ୍ନ ଚିନ୍ତା ।

ଶ୍ରାବଣୀ ମୁଣ୍ଡରେ ଆଉ ଗୋଟିଏ ପ୍ରଚଣ୍ଡ ଚଡ଼କ ପଡ଼ିଲା । ବୋଉର ଶେଷ ନିଦ୍ରା, ଆଖି ବୁଜିଲା ଯେ ଆଉ ଖୋଲିଲା ନାହିଁ । ତା ଛାତିରେ ମୁଣ୍ଡ ପିଟି ବହୁତ କାନ୍ଦିଲା । ପଞ୍ଚରଥର ସେ କାନ୍ଦ । ଶେଷ ଆଶା ଆଉ ଆଶାଟିକକ ହଠାତ୍ ଧୂଳିସାତ୍ ହୋଇଗଲା । ବିପଦ ପରେ



Digitized by PPRACHIN, SOA

ବିପଦ, ଦୁର୍ଯୋଗ ପରେ ଦୁର୍ଯୋଗ– ଯେମିତି ପରସ୍ପର ହାତ ଧରାଧରି ହୋଇ ତା ଆଡ଼କୁ ମାଡ଼ି ଆସୁଥିଲେ, ତା'ର ଶେଷ ନଥିଲା ।

ଘରେ କାଣି କଉଡ଼ିଟିଏ ନଥିଲା । ଦୁଃଖ ଖବର ଶୁଣି ସୁର ପଧାନେ ନିଜେ ଆସିଲେ । ଯିଏ ଦିନେ କାଛେ ଆସି ନଥିଲେ, ବିପଦ ବେଳ ଦେଖି ସାହାଯ୍ୟ କରିବାକୁ ଧାଇଁ ଆସିଲେ । ମୁର୍ଦାର ମଶାଣିକୁ ଗଲା । ଶବ ସତ୍କାର, ଅନ୍ତେଷ୍ଟିକ୍ରିୟା ଆଦି ପଧାନେ ନିଃସଙ୍କୋଚରେ ଦୟା ମନୋବୃତ୍ତି ପ୍ରଦର୍ଶନ କରି ସମାପନ କଲେ । ସୁଯୋଗ ଦେଖି ଶ୍ରାବଣୀକୁ କହିଲେ– ତୁ କିଛି ଚିନ୍ତା କରନି ସାବି । ବୋଉର କାଳ ପୂରିଲା, ସେ ଗଲା । ହାତ ଗୋଡ଼ ସଚଳ ଥାଉଁ ଥାଉଁ ଭଲରେ ଗଲା । ଦୁଃଖ କରି ଲାଭ ନାହିଁ । ପିଲାର ଭବିଷ୍ୟତ ଏଣିକି ଦେଖିବା କଥା । ମୁଁ ଥାଉଁ ଥାଉଁ ତୋର କିଛି ଅସୁବିଧା ହେବ ନାହିଁ । ସୁର ପଧାନ ତୋ ନିଜର ବୋଲି ଭାବିବୁ । ପେଟ କଥା ପାଟିରେ ନ କହିଲେ ଦିଅଁବି ଅପୂଜା ରହନ୍ତି । ଏଥର ଆଉ ଲାଜ ନକରି ସବୁ କଥା ମୋଠି ପ୍ରକାଶ କରିବୁ । ତୋର ସେ ଲାଜୁଆ ଗୁଣ କେବେ ଆଉ ଯିବ ?

ଶ୍ରାବଣୀ ମୁହଁ ତଳକୁ କଲା । ତା ଛୁଆ କାନିତଳେ ଛାତି ଭିତରେ ମୁହଁ ପୂରାଇ ସ୍ତନାହାର କରୁଥିଲା । ମୌନଂ ସମ୍ମତି ଲକ୍ଷଣମ୍ ଭାବି ପଧାନେ ସାମାନ୍ୟ ଉତ୍ସାହିତ ହୋଇ ବ୍ୟକ୍ତ କଲେ– ତେବେ ଗୋଟିଏ ପ୍ରସ୍ତାବ ଦେଉଛି ତୋର ହିତାକାଂକ୍ଷୀ ଭାବେ । ଅନେକ ଥର ତୋ ବୋଉକୁ ମଧ୍ୟ କହିଥିଲି । ବୁଝି କହିବ ବୋଲି କହିଥିଲା, କିନ୍ତୁ କହିବା ପୂର୍ବରୁ ଚାଲିଗଲା । ପୁଣି ଥରେ ତୋତେ ସେଇ କଥା କହୁଛି । ... ଗାଁ ମୁଣ୍ଡରେ ତମର ଏ ଭଙ୍ଗା ଘର, ନିଛାଟିଆ ଡ଼ିହ । ଆଜିକାଲି ଏ ଗାଁର ଛତର ବଜାରୀ ଟୋକାଙ୍କ କଥା ଜାଣୁ । ଯୁଆନ ଝିଅ, ଘଟି କଥା, କେତେ ବେଳେ କୋଉ କଥା । ବିପଦ ଆପଦ ଅଛି । ବୁଢ଼ୀ ଥିଲା ବୋଲି ସିନା କୁତୀ ଭଳିଆ ଭୁକୁ ଥିଲା । ... ତେବେ ସାବଧାନ ରହିବା ଭଲ । ... ଏ ଡ଼ିହ ଆଉ ଘର ଖଣ୍ଡିକ ମୋ ନାଁରେ ଥିଲେବି ତମର । ମୋର ପ୍ରକାଣ୍ଡ ଘର ପଡ଼ିଛି । ପଛ ଖୁଆଡ଼ରେ କେହି ରହୁ



Digitized by PPRACHIN, SOA

ନାହାନ୍ତି । ସଂରିଆକୁ କହିଥିଲି ସାବିକୁ ସାଙ୍ଗରେ ଧରି ଏଠି ଆସି ନିର୍ଭୟରେ ରୁହ ବୋଲି । ସାରିଆ ମଲା । ଏଥର ନିଜ ଦାୟିତ୍ୱ ନିଜ ଉପରେ । ପର ବୋଲି ଭାବିବୁନି, ଏ ଘର ତମ ନିଜର ବୋଲି ମଣିବୁ । ସୁର ପଧାନ କାହାର କେବେ ଅମଙ୍ଗଳ ଚିନ୍ତା କରେ ନାହିଁ । ଏ ଗାଁର ଲୋକେ ସମସ୍ତେ ସୁଖରେ ବାସ କରନ୍ତୁ, ଏହାହିଁ ସୁର ପଧାନର ଉଦ୍ଦେଶ୍ୟ । ଏବେ ବି ବେଳ ଅଛି, ତୁ ଥରେ ଭଲ ଭାବେ ଚିନ୍ତାକରି ଦେଖ୍ । ତୋ ପାଇଁ ନହେଲେ ବି ତୋ' ପୁଅର ଭବିଷ୍ୟତ ପାଇଁ ... ।

ଏତେ ଗୁଡ଼ିଏ କଥା ଏକ ନିଃଶ୍ୱାସରେ କହି ଯାଇଥିଲେ ପଧାନେ । ତାଙ୍କ ଉକ୍ତିର ତାତ୍ପର୍ଯ୍ୟ ବେଶ୍ ବୁଝି ପାରିଥିଲା ଶ୍ରାବଣୀ । ସେ ଆଉ ଗତ କାଲିର ଲଙ୍ଗଳା ପିଲା ନୁହେଁ, ଆଜିର ଅନୁଭୂତି ସମ୍ପନ୍ନା ଅଭିଜ୍ଞା ନାରୀ । ଦୁନିଆରେ ଅନେକ ଘାତ ସଂଘାତର ସମ୍ମୁଖୀନା ହୋଇ ତା ଚିନ୍ତାନୁଭୂତି ମୋଟା ହୋଇଛି । ସୁର ପଧାନଙ୍କ ଅଭିସନ୍ଧି ବୁଝିବାକୁ ଡେରି ଲାଗି ନଥିଲା ତାକୁ । ଇଚ୍ଛା ହେଉଥିଲା ଖେକ୍ ଠୋକ୍ କେଇ ପଦ ଶୁଣାଇ ଦେବାକୁ, କିନ୍ତୁ ତା' ଜିଭ ଜଡ଼ ପାଇଟି ଯାଇଥିଲା । ପଧାନେ ଭଲ ମନ୍ଦରେ ବହୁ ସାହାଯ୍ୟ କରିଛନ୍ତି । ବୋଉ ଆଖିରେ ସେ ଦୟାବତାର । ଯଦି କିଛି ହଠାତ୍ ଦି'ପଦ କଟୁକଥା ପାଟିରୁ ବାହାରି ପଡ଼େ, ସେ ଅପମାନିତ ବୋଧ କରି ପାରନ୍ତି, ଦୟାବତାର କ୍ଷୋଭବତାର ବନି ଯାଇ-ପାରନ୍ତି । ତେଣୁ ସବୁଠୁଁ ଭଲ ଚୁପ୍ ରହିବା । ବଡ଼ ଲୋକଙ୍କୁ ଉତ୍ତର କ'ଣ ?

ଦାରିଦ୍ର୍ୟର ତାଡ଼ନା ଆଉରି ଉତ୍କଟ ହେଲା ଦିନ କେଇଟା ଭିତରେ । ଗୋଟେଇ ସାଉଁଟି ବୋଉ ସିନା ଦରବ ପୁରଉଥିଲା ଘରେ ! ଚୁଲି ଜଳୁଥିଲା, ପାଟିରେ ପେଜ ଢୋକଣି ମୁନ୍ଦେ ପଶୁଥିଲା, ଛୁଆର ଯତ୍ନ ନେଉଥିଲା, ତା'ର ପଥି ଯୋଗାଡ଼ କରୁଥିଲା । କିନ୍ତୁ ବୋଉ ଆଖି ବୁଜିଲା ପରଠୁଁ ଘରେ ଏବେ ମୁଠେ ହେଲେ ଖୁଦ ନାହିଁ । ଦୁଇଦିନ ହେଲା ହାଣ୍ଡି ଚୁଲି ଉପରକୁ ଉଠିନାହିଁ । ଯେତେ ଥନ ଚିପି ପୁଅ ମୁହଁରେ ଦେଲେବି ସେ ଝୁଣୁନି, ରହାଟେକି କାନ୍ଦୁଛି, ଟୋପେ ନିଗିଡ଼ୁନା ଭଲା !



Digitized by PPRACHIN, SOA

ଶୁଷ୍କ ସ୍ତନ । ଜଳାକିଣ୍ଣ ବୃକ୍ଷ ଗଛଟି ଟାଙ୍ଗର ଭୂଇଁରେ ମଥା ପିଟୁଛି । ଶ୍ରାବଣୀ ଆଖିରେ ଜୁଳୁଜୁଳିଆ ପୋକ ଯେମିତି ଦପ୍ ଦପ୍ ହୋଇ ଜଳୁଥିଲା ।

ହପ୍ତାଏ ହେଲା ଝଡ଼ି ଧରିଛି— ଅବିରତ ବର୍ଷା ତୁହାକୁ ତୁହା, ମୂଷଳ ଧାରରେ, କ୍ଷୀଣ ଆକାରରେ, ପୁଣି ପ୍ରବଳ ବେଗରେ । ଖର କୁଆଡ଼େ ଭସେଇ ଯାଇଛି । ସୂର୍ଯ୍ୟ ମେଘ ଆଚ୍ଛାଦନରେ ଆତ୍ମଗୋପନ କରିଛି । ମେଲା ଘରରୁ ଗଳ ଗଳ ପାଣି ଝରୁଛି, ଜଳ ସ୍ରୋତରେ ଘର ଭିଜିଛି, ମାଟି ଚଟାଣରେ ପାଣି ଇହଡ଼ି ମାରୁଛି, କାଦ ପୁଚ୍ ପୁଚ୍ ଘର । ଶୁଖିଲା ସ୍ଥାନଟିଏ ନାହିଁ ପୁଅକୁ ଶୋଇବାକୁ । ତାକୁ ଏଠିକି ସେଠିକି ଉଠାପକା କରୁଥିଲା ଶ୍ରାବଣୀ । ଡିବିରିରୁ କିରସିନି ନିଃଶେଷିତ ହୋଇ ଯିବାରୁ ଧୁମେଇ ଧୁମେଇ ଲିଭିଲା । ଘର ଅନ୍ଧାର । ବତାସୀ ବାଆ ନଡ଼ିଆ ଗଛ ମୁଣ୍ଡକୁ ଆଣି ଘର ମଥାନରେ ମାଡୁଥିଲା । ଶ୍ରାବଣୀ ଆଖିର ଜଳ ବର୍ଷାଜଳ ସଙ୍ଗେ ମିଶି ତା' ରଙ୍କ ରତନ ଦେହକୁ କରିଥିଲା ସିକ୍ତ ସଜଳ । ଝଡ଼ି ପୋକର ଗତି—ପୋକ ଗୁଡ଼ିକ ମାଟି ଉଠି ଘର ସାରା ଏଣେ ତେଣେ ଉଡ଼ି ବୁଲୁଥିଲେ, ଦେହରେ ଲାଗି ସୃଷ୍ଟି କରୁଥିଲେ ବିରକ୍ତି, ଅଶାନ୍ତି ।

ଶ୍ରାବଣୀ ଚମକି ଉଠିଲା । ପୁଅର ଦେହ ତାତିଛି । ଛିଙ୍କ ପରେ ଛିଙ୍କ ଲାଗି ରହିଛି । ବିକଳରେ କୋଳକୁ ନେଲା । ଆଖିମେଲି ଚାହୁଁନି । ଟବଟି ବଢୁଛି । ଭଲଭାବେ ତାକୁ ଢାକି ରଖିଲା ଛାତି ଭିତରେ, କାନି ଘୋଡ଼େଇଲା । ସକାଳ ହେଉ, ଯାହାକିଛି ବ୍ୟବସ୍ଥା କରିବ ।

ସକାଳ ହେଲା, ବର୍ଷା ଥମିଲା । ଶ୍ରାବଣୀ ବିଚାର କଲା—ସାଇକାର ସୁର ପଧାନହିଁ ଏ କ୍ଷେତ୍ରରେ ଏକମାତ୍ର ଭରସା, ରକ୍ଷାକର୍ତ୍ତା । ମିନତି କରୁଥିଲେ ତାଙ୍କ ଘରେ ଯାଇ ରହିବା ପାଇଁ । ସେ କିନ୍ତୁ ପ୍ରତ୍ୟାଖ୍ୟାନ କରିଥିଲା ନୀରବରେ ପଦାଘାତ କରିଥିଲା ତାଙ୍କର ଅନୁରୋଧକୁ । ପୁଣି କୋଉ ମୁହଁ ନେଇ ତାଙ୍କର ସାହାଯ୍ୟ ଲୋଡ଼ିବ, ହାତ ପାତିବ ? କିନ୍ତୁ



Digitized by PPRACHIN, SOA

ପରିସ୍ଥିତିର ତାଡନାରେ ଶ୍ରାବଣୀର ଦମ୍ଭ ଭାଙ୍ଗିଲା, ପୁଅର ଚିକିତ୍ସା ସର୍ବ ପ୍ରଥମେ ଆବଶ୍ୟକ, ନିହାତି ଜରୁରୀ, ବାଧକା ପୁଅକୁ କାଖରେ ଧରି ବାଡ଼ିପଟ ପଙ୍କୁଆ ରାସ୍ତାରେ ପାଦ ଚିପି ଚିପ ପଧାନଙ୍କ ଘରକୁ ଗଲା ।

ଶ୍ରାବଣୀକୁ ଦେଖି ସାଉକାର ସୁର ପ୍ରଧାନ ଆନନ୍ଦ ଆତିଶଯ୍ୟରେ ଅଧୀର ହୋଇପଡ଼ି କହିଲେ– ସାବି, ଏଡ଼େ ଝଡ଼ ବର୍ଷାରେ କିପରି ଥିଲୁ ? ଭାବୁଥିଲି, ଲୋକ ପଠାଇବି ବୋଲି । ମୋର ଏତେ ବଡ଼ ଘର ଖାଲି ପଡ଼ିଛି । ଡ଼ାକିଲି । ଅବିଗୁଣ ପାଇଲୁ ? ବିଶ୍ୱାସ କର, ମୁଁ ତୋତେ ସ୍ନେହ କରେ । ତୋ ବାପା ଜଗନ୍ନାଥ ପରି ନିର୍ମାୟା ଲୋକ ଏ ଗାଁରେ ଆଉ କେହି ନଥିଲେ । ତା' ପରି ସରଳ ନିଷ୍କପଟ ଲୋକର ଝିଅ ଦୁଃଖ ଭୋଗିବ, ଏ ଗାଁର ସୁର ପଧାନ ଆଖି ବୁଜି ବସି ରହି ପାରିବ ନାହିଁ । ମୋତେ ବିଶ୍ୱାସ କର ସାବି, ମୋ ଉପରେ ଭରସା ରଖ, ମୁଁ ତୋତେ ଭଲ ପାଏ । ତୁ ଇଚ୍ଛା କଲେ ସମସରପୁର ପଧାନ ବଂଶ ରକ୍ଷା କରି ପାରିବୁ ।

ତଥାପି ଶ୍ରାବଣୀର ସେଇ ସରଳ, ନିସ୍ତରଙ୍ଗ ଢଙ୍ଗ । ନୀରବରେ ମଥାପାତି ଶୁଣି ଯାଉଥିଲା ପଧାନଙ୍କ ଆକୁଳ ମିନତି, ଭିକ୍ଷା-ସ୍ୱର, ପରିଣତ ବୟସରେ ସଂସାର କରିବାର ଅଦମ୍ୟ ଲାଳସା । କିଛି ପ୍ରତ୍ୟୁତ୍ତର ନ ଦେଇ ଶ୍ରାବଣୀ ତଳ ମୁହାଁ ହୋଇ ଗୋଡ଼ ଆଙ୍ଗୁଠିକୁ ଭୂଇଁରେ ଘଷୁଥିଲା । ଶ୍ରାବଣୀର କଳାମେଘ ଖଣ୍ଡେ ମୁଣ୍ଡ ଉପରେ ଅତିକ୍ରମ କରୁଥିଲା ।

ଏତେବେଳ ଯାଏଁ କାଖର ନିସ୍ତେଜ ଶିଶୁଟି ଉପରେ ସାଉକାରଙ୍କ ନଜର ନଥିଲା । ଶ୍ରାବଣୀକୁ ଦେଖି ସେ ବିଭୋର ହୋଇ ପଡ଼ିଥିଲେ । ପିଲାଟି ନଜରକୁ ଆସିଲା ।

: ଖୁବ୍ ସୁନ୍ଦର ପିଲାଟିଏ ପାଇଛୁ ସାବି । ହେଲେ ଏତେ ଦୁର୍ବଳ କାହିଁକି ଦିଶୁଛି ?



Digitized by PPRACHIN, SOA

ପୁଅକୁ ଗେହ୍ଲ କରିବା ବାହାନାରେ ପଧାନେ ଖୁବ୍ ନିକଟକୁ ଘୁଞ୍ଚି ଆସିଲେ, କିନ୍ତୁ ଗେହ୍ଲର ମୋହରଟି ମା' ଗାଲରେ ଲାଗିଲା । ଏବଂ ଅତ୍ୟନ୍ତ ଉନ୍ମାଦିତ ହୋଇ ପଧାନେ ଶ୍ରାବଣୀର ହାତକୁ ଧରି ନେଇଥିଲେ ପ୍ରଣୟ ଭିକ୍ଷା ଭଙ୍ଗୀରେ । ଘଟଣାଟି ତଡ଼ିତ୍ ବେଗରେ ଯାହା ଯେମିତି ଘଟିଗଲା, ଶ୍ରାବଣୀ ତାହା କଳ୍ପନା କରି ନଥିଲା । ସେ ଉତ୍କ୍ଷିପ୍ତା ହୋଇ ଉଠିଲା, ଖୁବ୍ ଭୟଙ୍କର ଦିଶିଲା ଏବଂ ପରିଣାମକୁ ଆଦୌ ଭ୍ରୂକ୍ଷେପ ନକରି ବୁଢ଼ା ହାଡୁଆ ଗାଲରେ ଶକ୍ତ ଚାପୁଡ଼ାଟିଏ ଇଦି ଦେବାକୁ ଦ୍ୱିଧା ବୋଧ କରି ନଥିଲା । ଧର୍ମକୁ ଆଖି ଠାର ମାରି ଗରିବ ବିଧବା ସ୍ତ୍ରୀ ଉପରେ ନଜର ରଖିଲେ ଫଳ ହୁଏ ବିଷମ । ସେ ଯେତେ ପ୍ରଭାବଶାଳୀ ବ୍ୟକ୍ତି ହେଉନା କାହିଁକି, ଧର୍ମବଳକୁ ସଠିକ୍ ଜବାବ ମୁହଁରେ ନୁହେଁ, ଚାପୁଡ଼ାରେ । ଶ୍ରାବଣୀକୁ ସେ ଚିହ୍ନି ନାହାନ୍ତି । ଦରିଦ୍ର ହେଲେ ବି ତା ଇଜ୍ଜତ ନେଇ ସେ ବଞ୍ଚିଛି । ତା' ଜୀବନ ପଛେ ନର୍କେ ପଡ଼ିଥାଉ, ତା' ଇଜ୍ଜତ ସୁରକ୍ଷିତ ଥାଉ । ଇଜ୍ଜତକୁ ବଞ୍ଚାଇ ରଖିବା ପାଇଁ ଆଜି ପର୍ଯ୍ୟନ୍ତ ପ୍ରାଣାନ୍ତକ ଉଦ୍ୟମ କରି ଆସିଛି, ସେଥିପାଇଁ ଜୀବନ ଦେବାକୁ ପଛେଇବ ନାହିଁ କେବେହେଲେ ।

ପଧାନ ବୁଢ଼ା ହତବମ୍ବ ହୋଇ ଚାହିଁ ରହିଥିଲେ । ଗାଲ ଆଉଁସିଲେ । ଚାପୁଡାଟି କୋମଳ କି କଠିନ ଚିନ୍ତା କରିବା ଅବସ୍ଥାରେ ନଥିଲେ । କେବେ କଳ୍ପନାରେ ଆଶା କରି ନଥିଲେ ଏମିତି ପରିସ୍ଥିତି ଉପୁଜିବ ବୋଲି ।

ଯେମିତି ସନ୍ତର୍ପଣ ଏବଂ ସଯତ୍ନରେ ମାଟି ଚିପି ଚିପି ପଧାନ ଘରକୁ ଯାଇଥିଲା ସେଇଭଳି ପୁଣି ବାଡ଼ି ବାଟେ ତା କୁଡିଆ ଘରକୁ ଫେରିଥିଲା । ନଥିକିନି ବସି ପଡ଼ିଲା ଓଦା ଖୁଣ୍ଟ ମୂଳେ । ଛାତି ଭିତରେ ରେଳ ଗାଡ଼ିଟିଏ ଘୁ ... ଘୁକାର ଛାଡ଼ି ଦୁମ୍ ଦୁମ୍ ହୋଇ ଚାଲୁଥିଲା । ଦେହ ଝାଳରେ ବୁଡ଼ି ଯାଇଥିଲା । ଛାତିର କୋହ ବାଷ୍ପୀଭୂତ ହୋଇ ଆଖିରେ ବର୍ଷାବିନ୍ଦୁ ସୃଷ୍ଟି କରୁଥିଲା ।



Digitized by PPRACHIN, SOA

ସ୍ଥୁର ପଧାନେ ଘୋର ଅପମାନ ବୋଧ କରିଥିଲେ । ଛାର ଭିକାରୁଣୀର ପୁଣି ଏଡ଼େ ସାହସ ! ସାମାନ୍ୟ ଗୋଟାଏ ଦରିଦ୍ର ବିଧବା ନାରୀର ଏତେ ହିମ୍ମତ ? କ'ଣ ନକଲା ସେ ! ସମସରପୁର ସାଉକାର ମୁହଁରେ କଟା ବୋଲି ଦେଇ ଗ୍ଲଲିଗଲା ! ଆଜି ପର୍ଯ୍ୟନ୍ତ ପଧାନଙ୍କ ମୁହଁରେ କେହି ଜବାବ ଦେବାକୁ ସାହସ କରି ନଥିଲେ । ଆଜି ତାଙ୍କ ମାନ ଟିକକ ପାଣିରେ ପଡ଼ିଲା ! କେହି ଦେଖୁ ନାହାନ୍ତି ତ ! ପଧାନେ ଗ୍ଲରିଆଡ଼କୁ ଗ୍ଲହିଁଲେ । କେହି ଦେଖୁ ନାହାନ୍ତି । ସାମାନ୍ୟ ଆଶ୍ୱସ୍ତ ହେଲେ ।

ଏ ଗାଁର ଝିଅ ଶ୍ରାବଣୀ, କାଙ୍ଗାଳ ଙ୍ଗୁର ଝିଅ । ଦେହରେ ସାମାନ୍ୟ ରୂପ ଅଛି ବୋଲି ବଡ଼ ବଡ଼େଇ କରିଛି । ପତଂଗ ସମାନ ଜୀବନ ତା'ର । ଚିଙ୍ଗୁଡ଼ି ଚିପିଲେ ମୁଣ୍ଡରେ ଗୁହ । ପଧାନଙ୍କୁ ବେଖାତିର କରିଛି, ପର୍ବତକୁ ଧୂଳି ସମାନ ମନେ କରିଛି ! ପଧାନେ କେବେ ଏହା ବରଦାସ୍ତ କରି ନ ପାରନ୍ତି । ତା'ର ଉଦ୍ଧତପଣିଆ ଛଡ଼ାଇବାକୁ ନିମିଷେ ମାତ୍ର ସମୟ ଲାଗିବ । ଗାଁର ଯୁବଗୋଷ୍ଠୀ ତାଙ୍କ ଇଙ୍ଗିତରେ ପରିଗ୍ଲଳିତ । ଗାଁର ସବୁ ଲୋକ ତାଙ୍କ ହାତ ମୁଠାରେ । ସେହି ଗ୍ରାମର ଅପ୍ରତିଦ୍ୱନ୍ଦୀ ମୁଖିଆ, ପଞ୍ଚାୟତର ସର୍ବେ ସର୍ବା— ସରପଞ୍ଚ । ମୁଖିଆ ମୁହଁରେ କାଳି ? ତାଙ୍କ ଦେହସାରା ପ୍ରତିହିଂସାର ବିଷ ଚରିଗଲା । ପ୍ରତିଶୋଧର ବହ୍ନି ଜଳି ଉଠିଲା ସମଗ୍ର ଶରୀରରେ । କ୍ରୋଧାଗ୍ନି ବିସ୍ତାରିତ ହେଲା । ଆଗ୍ନେୟ ଶିଖା ଭଳି ଦୋଷୀକୁ ଅବିଳମ୍ବେ ଦଣ୍ଡ ଦେବାପାଇଁ ସେ ତତ୍ପର ହୋଇ ଉଠିଲେ । ଉଚ୍ଚ ପାଟି କରି କୁହାଟ ଛାଡ଼ିଲେ ; ଚିତ୍କାର କଲେ— କିଏ ସବୁ ଏଠି ଅଛରେ ?

ସାଉକାରଙ୍କର ଆତଙ୍କ ଧ୍ୱନି ଶୁଣି ମୂଲିଆ, ହଳିଆ ଏବଂ ବେଠିଆମାନେ ଯିଏ ଯେଉଁଠି ଥିଲେ ଘର ଭିତରକୁ ଧାଇଁ ଆସିଲେ । କେତେ ଜଣ ଗ୍ରାମଲୋକ ମଧ୍ୟ ରୁଣ୍ଡ ହୋଇଗଲେ । ପଧାନେ କ୍ରୋଧରେ ଫାଟି ପଡୁଥିଲେ । ତାଙ୍କର ଏମିତି ବିଶ୍ୱରୂପ ଗାଁ ଲୋକେ କେବେ ଦେଖି ନଥିଲେ । ସମସ୍ତେ ଉଦ୍‌ବିଗ୍ନ ହୋଇ ଗ୍ଲହିଁ ରହିଥିଲେ ତାଙ୍କ କୋପନ୍ୱିତ ମୁଖମଣ୍ଡଳକୁ । ଉପସ୍ଥିତ ଜନତାକୁ ପଧାନେ ଶୁଣାଇଲେ ତାଙ୍କ କ୍ଷୋଭ ବାଣୀ—



Digitized by PPRACHIN, SOA

ଜଗୁ ଉରିଯା ମଲପରେ ତା' ଝିଅର ବହପ ବଢିଯାଇଛି । ଦେଖ ହେ, କ'ଣ ସେମାନଙ୍କ ପାଇଁ ମୁଁ ନ କରିଛି ! ଆଜିକାଲି ଧର୍ମ ଓଲଟା, ଯୁଗ ବିପରିତ ! ବଜାଚୁଣୀ ଟୋକିଟା କେଉଁ ଉଦେଶ୍ୟ ନେଇ ଏଠିକି ଆସିଥିଲା ! ମୁଁ ତାକୁ ଝିଅ ଦୃଷ୍ଟିରେ ଦେଖୁଛି, ସେ ମୋ ପାଖକୁ ଦେହ ବିକିବାକୁ ଆସିଛି ! ମତେ ଫସେଇ ଦେବାକୁ ଚେଷ୍ଟା କରୁଥିଲା । ଛିଃ ଛିଃ, ସେ ଦୃଶ୍ୟ କହିବାକୁ ମୋ ପାଟି ଖୋଲୁନି, ଜିଭ ଲେଉଟୁନି । ଦିନ ବେଳଟା, ଭୟ ଭ୍ରାନ୍ତି ନାହିଁ, ବାଡ଼ିପଟେ ଘର ଭିତରକୁ ପଶି ଆସିଲା ଏବଂ ହଠାତ୍ କିଛି ନ କହି ଉଲଗ୍ନ ହୋଇ ପଡ଼ିଲା ମୋ ସାମ୍ନାରେ ! ମୁଁ ଆଖିବୁଜି ଦେଲି । ମୋ ମୁଣ୍ଡ ଘାଉଁରୀ ଖାଇଲା । ଗମ ଗମ ... ।

ଜନତାଙ୍କ ମୁହଁରୁ ସମବେତ ସ୍ୱର ଉଚାରିତ ହେଲା– ଇସ୍, ଇସ୍ !

: ଧୈର୍ଯ୍ୟ ଧର, ଖାଲି ସେତିକି ନୁହେଁ, କହୁଛି ... ତା ଲଙ୍ଗଳା ଦେହକୁ ମୋ ଉପରେ ଲଦି ଦେଲା । ତା'ର ମନ୍ଦ ଉଦେଶ୍ୟ ମୁଁ ବୁଝି ପାରିଲି । ଭାବିଲି ତାକୁ ଉନ୍ମାଦ ରୋଗ ହୋଇଛି । ସଂଯତ କରି ନିଜକୁ ଏବଂ ତାକୁ ଦୁଇ ଚଟକଣି ଦେଇ ନିଷ୍କ୍ରାନ୍ତ ହେଲି । ମିଁ ବୋଲି ସିନା ! ଏ ଗାଁ ଟୋକାଙ୍କ କଥା ମୁଁ ବିଶ୍ୱାସ କରୁ ନଥିଲି । ଏବେ ସତ ମଣୁଛି । ସତରେ ସେ ବେଶ୍ୟାଟାଏ । ତମେ ସବୁ ଭବିଯାର, ପଧାନେ ମିଛ କହୁଛନ୍ତି । ପଧାନେ ମିଛ କାହିଁକି କହିବେ ? ମୋ ଘରକୁ ବାଡ଼ି ପଟେ ଆସିବାର କ'ଣ କେହି ଦେଖି ନାହିଁ ? ଆଗକୁ ଆସି ଆକୁଳି କହିଲା–ହଁ, ହଜୁର, ମୁଁ ବାଡ଼ିରେ କାମ କରୁଥିଲି । ଗଲାବେଳେ ମୁଁ ତାକୁ ଦେଖିଛି । ପୁଅ କାଖେଇ ଚୁପ୍‌କରି ମୁହଁ ତଳକୁ କରି ପାଦ ଚିପି ଚିପି ଗ୍ଭଲି ଯାଉଥିଲା ବାଡ଼ିପଟେ । ବଡ଼ ଚୁପ୍‌ସଇତାନୀ ଖଣ୍ଡେ ।

ପଧାନେ ପୁଣି ଉତେଜିତ ଗଳାରେ କହିଲେ– ମୋର ମଧ୍ୟ ପ୍ରମାଣ ଅଛି । ଏଇ ଦେଖ, ଏ ଡେଙ୍ଗିଆଟି କାହାର ? ଗ୍ଭେର ଗ୍ଭେରି କଲାବେଳେ କିଛି ନା କିଛି ଛାଡ଼ି ଯାଇଥାଏ । ଏ ଡେଉଁରିଆ



Digitized by PPRACHIN, SOA

ସୂତା ସହିତ ତା' ବାହୁରୁ ଛିଣ୍ଡି ପଡ଼ିଥିଲା ସେ ଯେତେବେଳେ ଉନ୍ମାଦ ବେଗରେ ଏଠି ନାଚିଲା । ଏଥର ସମସ୍ତେ ବିଶ୍ୱାସ କରୁଛ ତ ?

ସମସ୍ତେ ଡେଙ୍ଗୁରିଆକୁ ନେଇ ପରଖିଲେ ।

: ଆପଣ ଧର୍ମାବତାର । ଗାଁର ଉନ୍ନତି କରୁଛନ୍ତି, ଭଲମନ୍ଦ ବୁଝୁଛନ୍ତି । ଆପଣଙ୍କ ଦୟାରେ ପାଞ୍ଚ ଲୋକ ପୋଷି ହେଉଛନ୍ତି । ଆପଣଙ୍କ ବଚନ ଗୁରୁବଚନ । ଆପଣଙ୍କୁ କିଏ ଦୋଷ ଦେବ ? ଆପଣଙ୍କ ନିଷ୍ପତ୍ତି ଶିରୋଧାର୍ଯ୍ୟ ।

ଆଉ ଜଣେ ବଳିପଡ଼ି କହିଲା– ଜଗୁ ଝିଅଟା ଗୋଟେ ଦୁଷ୍ଚରିତ୍ରା ନାରୀ । କିଏ ନ ଜାଣେ ? ଦେହ ଧନ୍ଦା ପାଇଁ ସ୍ୱାମୀକୁ ମାରିଛି । ଧନ ଲୋଭରେ ଶାଶୁଘରେ ପଶିଥିଲା, ଶାଶୁଘରୁ ତଡ଼ା ଖାଇଛି । ଏବେ ବୋଧ ପିଲାକୁ କାଖେଇ ରସଲୀଳା କରୁଛି । ପଧାନଙ୍କ ଧନ ଉପରେ ତା'ର ଲୋଭ । ସେ ବୋଲି ସିନା ବର୍ତ୍ତିଗଲେ ରକ୍ଷଯୀ ହାବୁଡ଼ରୁ ! ଆଉ କିଏ ହୋଇଥିଲେ ସର୍ବନାଶ ହୋଇଥାନ୍ତା । ସତ କହୁଚୁ ଆଜ୍ଞା, ଏ ଦାରୀଟାକୁ ଏ ଗାଁରୁ ନ ତଡ଼ିଲେ ଡାହି ନାହିଁ । ସାଇ ଗାଁର ନାଁ ପକେଇଛି । ସମସ୍ତଙ୍କୁ ଖରାପ କରୁଛି । ଆଉ ଡେରି କାହିଁକି ? ସମସ୍ତେ ଉଚ୍ଚ ସ୍ୱରରେ କହି ଉଠିଲେ- ମାର ଶାଳୀକୁ, ତଡ଼୍ ଶାଳୀକୁ ଏ ଗାଁରୁ । ବର୍ତ୍ତମାନ ତଡ଼୍ । ହଜୁର ଖୁସିଲେ ଏଇନେ ତାର ବ୍ୟବସ୍ଥା କରି ଦେବୁଁ ।

ପଧାନେ ଲକ୍ଷ୍ୟକଲେ, ପରିସ୍ଥିତି ଜଟିଳ ଏବଂ ଅଣାୟତ ହେବାକୁ ଯାଉଛି । ଗାଁର ବହୁଲୋକ ରୁଣ୍ଡହୋଇ ଗଲେଣି । ଟିକିଏ ଦୂରତା ରକ୍ଷାକରି ସ୍ତ୍ରୀମାନେ ମଧ୍ୟ ସଙ୍ଗଦୃଶ୍ୟ ଦେଖୁଛନ୍ତି, କାନ ଡେରି ଶୁଣୁଛନ୍ତି । ଆଉ ସାମାନ୍ୟ ଉସ୍‌କେଇ ଦେଲେ ଅବସ୍ଥା ଅସମ୍ଭାଳ ହୋଇପାରେ । ମୁଣ୍ଡକୁ ପିତ ଚଢି ଯାଇଥିଲା ବୋଲି ସେ ବୃଦ୍ଧି ହରାଇ ଥିଲେ, କ'ଣ



Digitized by PPRACHIN, SOA

ବୋଲି କ'ଣ ଝିଅଟା ନାଁରେ କହିଗଲେ । ଏବେ ସ୍ଥିର ଚିନ୍ତା କଲେ ମନେ ମନେ । ଶ୍ରାବଣୀ ପିଲଝିଅ, ଗରିବ ହେଲେ କ'ଣ ହେବ, ଇଜ୍ଜତ ଜଗି ଚଳୁଛି । ତାକୁ ଧୀରେ ଆସ୍ତେ କଅଁଳେଇ ସାକୁଲେଇ ବୁଝେଇ କାମଟି ହାସଲ କରିଥିଲେ ଭଲ ହୋଇଥାନ୍ତା । ଆସୁନଥିଲା, ଆସିଥିଲା ଅସୁବିଧାରେ ପଡ଼ି । ହଠାତ୍ ତା ପ୍ରତି ଏମିତି ଅନୁଚିତ ବ୍ୟବହାର ବିଛାମନ୍ତ୍ର ନ ଜାଣି ସାପ ଗାତରେ ହାତ ପୂରେଇଲା ଭଳି ହେଲା । ସେ ତରକି ଗଲା । ଅସାବଧାନତାର ଫଳ । ପଧାନେ ବେହୁସିଆର କାମପାଇଁ ମନକୁ ମନ ଅନୁତପ୍ତ ହେଲେ । ତେବେ ସମୟ ଅଛି, ପରିସ୍ଥିତିକୁ ସମ୍ଭାଳିବାର କାଇଦା ତାଙ୍କୁ ଭଲଭାବେ ଜଣା । ଏଇ ଗାଁ ବାଲାଙ୍କ କଥାତ ! ହଠାତ୍ କଣ୍ଠ ବଦଳାଇ ଧର୍ମାବତାର ଭଳି କହିଲେ– ନା, ନା, ଏମିତି ଉତ୍ୟକ୍ତ ହେଲେ ଆମର ଭୁଲ ହେବ । ପଞ୍ଚାୟତ ବସୁ ପାଞ୍ଚ ଲୋକ ମତ ଦିଅନ୍ତୁ......

ପଞ୍ଚାୟତ ଆଉ କିଏ ମହାପ୍ରଭୁ ! ଆପଣେ ଅଛନ୍ତି । ଆପଣେ ଆମ ଗାଁର ମୁଖ୍ୟ–ସରପଞ୍ଚ, ଗାଁର ସବୁ । ହାନିଲାଭ ବୁଝୁଛନ୍ତି । ନ୍ୟାୟନିସାପ କରୁଛନ୍ତି । ଆପଣଙ୍କ ନିଷ୍ପତ୍ତିକୁ ବେଖାତିର କରିବ କିଏ ? ଅମାନ୍ୟ କରିବ କିଏ ?

ପଧାନେ ଗଳା ପରିଷ୍କାର କରି କହିଲେ– ତେବେ ଅନ୍ୟମାନେ ତ ଅଛନ୍ତି । କାହାର କ'ଣ ମତ ଥିବ ! ସେମାନେ ଆସି ନାହାନ୍ତି । ସମସ୍ତଙ୍କୁ ନ ପଚାରି ନିଷ୍ପତ୍ତି ନେବା ଠିକ୍ ନୁହେଁ, ପଞ୍ଚାୟତ ନିୟମର ବିରୁଦ୍ଧ । ଏମିତି ବେନିୟମ କାମ ସ୍ବର ପଧାନ ଜାତକରେ ନାହିଁ । ତମେ କ'ଣ ଜାଣିନ ?

: ଜାଣୁ ହଜୁର । ବେନିୟମ କାମ ? ଅନ୍ୟାୟ କ'ଣ ଏଥିରେ ହେବ ? ଜଗୁ ଡ଼ିହ, ଘରବାଡ଼ି ପାଇଁ ତମେ ଆପଣେ କବଲା କରିଛ । ଖୋଦ ଟଙ୍କା ଗଣେ କିଣିଛ । ଦୟା ଦେଖେଇ ବୁଢୀ ଜୀଇଁଥିଲା ପର୍ଯ୍ୟନ୍ତ ଛାଡ଼ିଥିଲ । ଏଇତ ପଞ୍ଚାୟତି ନିଷ୍ପତ୍ତି କରିଥିଲା । ତେବେ ତମ ଜାଗା ତମେ ନେବ । ସେଥିରେ କାହାର କ'ଣ କହିବାର ଅଛି ? ଗଣ୍ଡ ଏଥର ଦାଣ୍ଡରେ



Digitized by PPRACHIN, SOA

ବୁଝିଲେ ବୁଦ୍ଧି ହଜିଯିବ । ହବା କଥା, କାଙ୍ଗାଳକୁ ଟିକିଏ ଦୟା ଦେଖେଇଲେ ମୁଣ୍ଡରେ ଚଢ଼ିବେ ? କେତେ ସାହସ ସେ ଖାନିକି ମାଇପିଟାର ! ଗଣ୍ଡାଳୁଣୀକୁ ଆଜି ଏ ଗାଁରୁ ନିକାଳ...

ଦୟାବତାର ଏଥର ମୁହଁରେ ସ୍ମିତ ହସି କହିଲେ– ଗାଁ ବାଲାଙ୍କ ନିଷତ୍ତି ମୋର ନିଷତ୍ତି । ତେବେ ସେ ଏ ଗାଁର ଝିଅ, ଆମର ସମ୍ମାନ । ଗାଁ କଥା ବାହାରକୁ ନେବା ଠିକ୍ ନୁହେଁ । ମତେ ତମେ ସମସ୍ତେ ଜାଣ । ମୋ ନିଜ ପାଇଁ କିଛି କରିବାର ନାହିଁ । ଗାଁର ଉନ୍ନତି ପାଇଁ ଯାହା କିଛି କରିବାର ଅଛି । ମୋ ମତରେ ଝିଅଟା କୁଳରେ ଲାଗି ଗଲେ ଭଲ ହୁଅନ୍ତା । ମଣିଷ ଭୁଲ କରେ, ଭୁଲର କ'ଣ ସଂଶୋଧନ ନାହିଁ ?

ସମସ୍ତେ ଆଚମ୍ବିତ ହେଲେ । କୁଳଛଡ଼ା, ବିଧବା, ବିଟପୀ ପାଇଁ ପଧାନଙ୍କ କୁଳଚିନ୍ତା । ତାଙ୍କ ପରି ଉଦାର ଆଉ ପରୋପକାରୀ ବ୍ୟକ୍ତି ଏ ଅଞ୍ଚଳରେ ଆଉ କିଏ ଅଛି ?

ଏମିତି ସ୍ତ୍ରୀକୁ ବାହା ହେବାକୁ କିଏ ମନ କରିବ ? ପଧାନେ ପରିଷ୍କାର କରି ବୁଝେଇ କହିଲେ– ସେ ଯଦି ତମମାନଙ୍କର ମତ ନେଇ ମୋ ହାତ ଧରିବାକୁ ଚାହିଁଥାନ୍ତା ମୋର ଆପତ୍ତି ନଥିଲା । ତଥାପି ତମେମାନେ ଯଦି ମତ ଦିଅ ମୁଁ ତାକୁ ସ୍ତ୍ରୀ ଭାବେ ଗ୍ରହଣ କରିବାକୁ ପ୍ରସ୍ତୁତ । ହେଉ ପଛକେ ସେ ଜାରଜର ସନ୍ତାନ, ହେଉ ପଛକେ ସେ ଦୁଶ୍ଚରିତ୍ରା, ହେଉ ପଛକେ ସେ ସ୍ୱାମୀହନ୍ତା, ମୁଁ ତାକୁ ଗ୍ରହଣ କରିବି ଗ୍ରାମର ମଙ୍ଗଳ ପାଇଁ । ଆମ ଗାଁର ଇଜ୍ଜତ ରହୁ...

ପଧାନଙ୍କ ପ୍ରସ୍ତାବ କେତେ ମହତ୍ ! ପ୍ରକୃତରେ ଏ ଯୁଗର ସେହି ପତିତପାବନ । ତାଙ୍କର ମଧ୍ୟ ଘରଣୀଟିଏ ଦରକାର । ଏପରି ଦୟାଳୁ ଧାର୍ମିକ ପୁରୁଷର ବଂଶରକ୍ଷା ପାଇଁ ସନ୍ତାଟିଏ ନ ଥିଲେ ଧର୍ମ ଲୋପ ପାଇଯିବନି ?



Digitized by PPRACHIN, SOA

ଉତ୍ତେଜନା ଥମିଲା । ସଞ୍ଜବେଳେ ଗାଁ ପଞ୍ଚୁଆତିର ସଭ ଡ଼ାକରା । ସଭର ନିଷ୍ପତ୍ତି କ୍ରମେ କୁଳଛଡ଼ା ଶ୍ରାବଣୀର କୁଳରକ୍ଷା ହେବ । ସେ ପୁଣି ଖଡ଼ୁ କାଚ ପିନ୍ଧି ସିନ୍ଦୂର ମଥାରେ ନାଇ ପ୍ରଧାନଙ୍କ ହାତ ଧରିବ, ସଂସାର ଗଢ଼ିବ । ସଭିଙ୍କ ମୁଖରେ ଗାଁ ପଧାନଙ୍କ ଜୟ ଜୟ ଗାନ । ଗ୍ରାମର ମଙ୍ଗଳ ପାଇଁ ସେ ସବୁକିଛି ତ୍ୟାଗ କରିବାକୁ ପ୍ରସ୍ତୁତ । ଧନ୍ୟ କହିବ ତାଙ୍କୁ । ଏ ଗାଁର ଚଳନ୍ତି ଦେବତା ନୁହେଁ ତ ଆଉ କ'ଣ ?

ପଞ୍ଚାୟତ ସଭର ଘୋଷଣା କାନରେ ଶୁଣିବାକୁ ଶ୍ରାବଣୀ ଆଉ ସମସରପୁରରେ ନଥିଲା । ଦୀର୍ଘଶ୍ୱାସ ଛାଡ଼ି ସ୍ଥିର ପଧାନେ କହିଥିଲେ– ମଣିଷର ମଙ୍ଗଳ ଚିନ୍ତା କରିବା ଏ ଯୁଗରେ ଅନ୍ୟାୟ । କଳିକାଳର ବିପରୀତ ଧର୍ମ ।



ଯାଦବପୁର ଜେଲ ଖାନାରେ ଦେବକାନ୍ତ କାରଦଣ୍ଡ ଭୋଗୁଥିଲା । ଏହି ଦୁଇ ବର୍ଷର ଦଣ୍ଡ ତାକୁ ଦୁଇଟି ଯୁଗଭଳି ଲାଗୁଥିଲା । ବନ୍ଦୀଖାନାର କଏଦୀମାନଙ୍କ ମଧ୍ୟରେ ସେ ଥିଲା ଶାନ୍ତ, ସରଳ ଏବଂ କର୍ମଠ । ସେ ଜଣେ ଶିକ୍ଷିତ ଯୁବକ ବୋଲି ଜେଲ କର୍ତ୍ତୃପକ୍ଷ, ଜେଲ ଆରକ୍ଷୀ ଏବଂ ସହବାସୀ କଏଦୀମାନଙ୍କ ଆଗରେ କଦାପି ପ୍ରକାଶ କରି ନଥିଲା । ନିଜକୁ ଶିକ୍ଷିତ ବୋଲାଇବାର ଗର୍ବ, ଗୌରବ ପଣ୍ଡ ହୋଇଛି । ନିଜ ଶିକ୍ଷାକୁ ଘୃଣା କରିଥିଲା । ଶିକ୍ଷାଗତ ଯୋଗ୍ୟତାକୁ ଏକ ଅପମାନ ବୋଲି ଧରି ନେଇଥିଲା । ପ୍ରକାଣ୍ଡ କାରାଗାର ପ୍ରକୋଷ୍ଠ ଥିଲା ଏକ ଭିନ୍ନାନୁଭୂତିର ଭୂମି; ତା'ପାଇଁ ଭିନ୍ନ ପୃଥିବୀର ପରିସର । ଏଠି ଅଛି ଖଟି ଖାଇବାର ପ୍ରତିଶ୍ରୁତି, ଏଠି ଅଛି ବଞ୍ଚିବାର ଉପାୟ । ଏଠି ଅଛନ୍ତି ରଙ୍କ



Digitized by PPRACHIN, SOA

ପିପାସୁ ନରହନ୍ତାକାରୀ ଦୁର୍ଦ୍ଦାନ୍ତ ଡ଼କାୟତମାନେ, ଏଠି ବି ଅଛନ୍ତି ତା ଭଳି କେତେ ନିରୀହ ପ୍ରାଣୀ । ଏଠି ଅଛନ୍ତି ବାଘ ଆଉ ଛେଳି । ମଣିଷ ସୃଷ୍ଟିର ଏକ ରହସ୍ୟ, ରୋମାଞ୍ଚମୟ ସମାବେଶ । ଏହି ରୋମାଞ୍ଚ ପରିବେଶ ଭିତରେ ମଧ୍ୟ ରଚନା କରିହୁଏ କଏଦୀମାନଙ୍କ ଆତ୍ମ ଜୀବନୀ । ମନେ ପଡ଼େ ଗୋପବନ୍ଧୁଙ୍କ ବନ୍ଦୀର ଆତ୍ମକଥା ; ଗାନ୍ଧୀ, ଜବାହାରଙ୍କ କାରବାସରୁ ଉତ୍ପାଦିତ ରଚନା ବଳୀ, ଦେଶାତ୍ମବୋଧର ପ୍ରୀତିଧାର, ଦୁର୍ବାର ଦେଶପ୍ରେମର ନିର୍ଝରିଣୀ । ମାନେ ପଡ଼େ କାରବାସୀ ଟମାସ ରେଙ୍କ 'ଇଟିଓପିଆ', ଓ୍ୱାଲ୍‌ଟରସଟଙ୍କ 'ପୃଥିବୀ ଇତିହାସ' । ଏଇ କାରବାସରୁ ଉତ୍ପତ୍ତି ହୋଇଥିଲା ବହୁ ଚିନ୍ତାଶୀଳ ବ୍ୟକ୍ତିଙ୍କ ବୈପ୍ଳବିକ ଗ୍ରନ୍ଥରାଜି, ଆଜି କିନ୍ତୁ ସମୟ ଭିନ୍ନ, ଧୂଆ ମୂଳା, ଅଧୂଆ ମୂଳା ସମାନ । ଶିକ୍ଷିତ ଦେବକାନ୍ତ ଗୋଟାଏ ଅଧମ, ଅପାଂକ୍ତେୟ ଜୀବ । ଆଇନ୍‌ର ଚାବୁକ ତା ପିଠିରେ ବାଜିଛି । ମନ ବିକ୍ଷେଇ ଉଠିଲା । କ୍ଷତାକ୍ତ ମନକୁ ପୁଣି ବୁଝେଇଲା । ମୁକ୍ତିର ଦିନ ପାଖେଇ ଆସୁଥିଲା ।

ଶେଷରେ ସେଇ ପ୍ରତୀକ୍ଷିତ ଦିନଟି ପହଞ୍ଚିଲା । ମୁକ୍ତିର ଆନନ୍ଦ ଉପଲବ୍ଧି କରିବାକୁ ତା'ର ଆଉ କିଛି ନଥିଲା, କେବଳ ହତାଶ ଆଉ ବିଷଣ୍ଣତା ସତେ କ'ଣ ଶ୍ରାବଣୀ ଆଉ ଏ ସଂସାରରେ ବଞ୍ଚିଥିବ ! ଏଠି ଏଣେ ତେଣେ ଖୋଜିବା ତାର ବୋକାମୀ ଏବଂ ମୂର୍ଖାମି, ଅନ୍ଧାରରେ ବାଡ଼ି ବୁଲେଇବା ଯାହା ସାର ହେବ । ମନେ ପଡ଼ିଲା ବାପା ବୋଉଙ୍କ କଥା । କେତେ ବ୍ୟସ୍ତ ଆଉ ଅଧୈର୍ଯ୍ୟ ହେଉ ନ ଥିବେ ସେମାନେ ! ବିଗତ ଦୁଇବର୍ଷ ହେବ ଅକଥନୀୟ ଉଦ୍‌ବେଗ ଏବଂ ଆଶଙ୍କାରେ ଦିନାତି ବାହିତ କରିଥିବେ । ତାର ଦୀର୍ଘ ନୀରବତା ଏକ ଅକ୍ଷମଣୀୟ ଅପରାଧ । ଶୀଘ୍ର ଯାଇ ଦୋଷ ପାଇଁ କ୍ଷମା ମାଗିବ । ଫେରନ୍ତା ରାସ୍ତା ସାରା ଦେବକାନ୍ତ ସେଇ କଥା ଚିନ୍ତା କରି ଫେରୁଥିଲା । ଗ୍ରାମ୍ୟ ଜୀବନର ପୂର୍ଣ୍ଣାଙ୍ଗ ଦୃଶ୍ୟ ଚଳଚିତ୍ର ରିଲ ପରି ତା' ମନ ମୁକୁରରେ ଉଦ୍ଭାସିତ ହୋଇ ଉଠୁଥିଲା ।

ଦେବକାନ୍ତର ଆବିର୍ଭାବ ମାନପୁର ବାସିନ୍ଦାମାନଙ୍କୁ କମ୍ ପରିମାଣରେ ସ୍ତମ୍ଭୀଭୂତ କରି ନଥିଲା । ଏହା ଏକ ପରମାଶ୍ଚର୍ଯ୍ୟ ଘଟଣା । ନେଢ଼



Digitized by PPRACHIN, SOA

ବିଶ୍ୱାସ କରି ପାରୁନଥିଲା । ସନାତନ ବଡ଼ଜେନାର କଙ୍କାଳପ୍ରାୟ ଶରୀର ଏକ ଅପୂର୍ବ ପୁଲକରେ ନାଚି ଉଠିଲା ଅନ୍ଧ ଚକ୍ଷୁଦାନ ପାଇଲା ଭଳି । ଦେବବୋଉ ମରଣ ଦ୍ୱାରରୁ ଫେରି ଆସି ଅନିର୍ବଚନୀୟ ଆନନ୍ଦରେ ବିଭୋର ହୋଇ ଉଠିଲା । ସେମାନଙ୍କ ପୁଅ ଯମଶାଳରୁ ଫେରିଛି, ଶ୍ମଶାନରୁ ଉଠି ଜୀବନ ନେଇ ଫେରିଛି, ଅସମ୍ଭବ ସମ୍ଭବ ହୋଇଛି, ଭଷ୍ମନା ଧାନ ଗଜା ହୋଇଛି । କେତେ ସୌଭଗ୍ୟର କଥା ! ଘରସାରା ହର୍ଷୋଲ୍ଲାସ, ପ୍ରତି ଅଣୁରେ ଖେଳିଲା ନବୋଚ୍ଛ୍ୱାସ ।

ଟିକିନୀ ଦେବକାନ୍ତ ବେକରେ ଝୁଲିପଡ଼ି ଭାଇର ଦାଢ଼ିଆ ମୁହଁରେ ଅଜସ୍ର ଚୁମ୍ବନ ଆଙ୍କି ଦେଇଥିଲା । ଏବଂ ଛଳ ଛଳ ଆଖିରେ କହିଥିଲା– ଭାଇ, ଆମକୁ ଏତେ ଦିନଯାଏଁ ଭୁଲି ତମେ କେଉଁଠି ରହିଥିଲ ? ତମ ଅନୁପସ୍ଥିତିରେ ଆମେ ନାହିଁ ନ ଥିବା ଦଣ୍ଡ ଭୋଗିଛୁ ।

ଦେବକାନ୍ତର ଦେହ ଦୁର୍ବଳ ଦିଶୁଥିଲା, ତା'ର ଟୋପା ମୁହଁ କଳାକାଠ ପଡ଼ି ଯାଇଥିଲା, ମୁଖମଣ୍ଡଳରେ ଜ୍ୟୋତି ନଥିଲା । ଦେହରେ କଣ୍ଟା ଝୁଲୁଥିଲା, ଛାତିରୁ ପଞ୍ଜରା ହାଡ଼ ଗଣି ହୋଇ ଯାଉଥିଲା । ମାତୃ ହୃଦୟ ସମ୍ଭାଳୁଛି କେଉଁଠି ? ତା'ର ଦେହଠୁ ମୁଣ୍ଡ ପର୍ଯ୍ୟନ୍ତ ଆଉଁସି ଗଲା ବୋଉ । ତା କୋରଡ଼ାଗତ ଆଖିରୁ ଆନନ୍ଦାଶ୍ରୁ ଝରି ପଡୁଥିଲା ଆଜି ସେ କୋଟିନିଧି ପାଇଛି ଭଗବାନଙ୍କ ଅସୀମ କରୁଣାକୁ ଚୁଣ୍ଡରେ ଧରି ଅଦୃଶ୍ୟ ଶକ୍ତିର ଜୟଗାନ କରୁଥିଲା । କିଏ କହିଲା ଠାକୁରେ ନାହାଁନ୍ତି ? ତା ମୁହଁରେ ଦୁର୍ଭାଷା ଉଚ୍ଚାରିତ ହେଉଥିଲା ସେଇମାନଙ୍କ ପ୍ରତି, ଯେଉଁମାନେ ତା ପୁଅର ଜୀବନ ନେଇ ଏ ଗାଁରେ ଅଦ୍ଭୁତ କାଣ୍ଡ କରି ବସିଲେ, ମିଥ୍ୟା ଗୁଜବ ପ୍ରଚାର କରିଥିଲେ, ଜୀଇଁଲା ଲୋକକୁ ମଶାଣିରେ ଦାହ କରିଥିଲେ । ସନାତନ ମଧ୍ୟ ସେଇ ଚକ୍ରାନ୍ତକାରୀ, ଅଶୁଭକାମୀ ଲୋକମାନଙ୍କର ଚୌଦ ପୁରୁଷ ଉଦ୍ଧାର କରି ସେମାନଙ୍କ ମା' ଭଉଣୀ ନେଇ ଅଖଣ୍ଡ ପୁରାଣ ଆରମ୍ଭ କରି ଦେଇଥିଲା । କୁଆଡ଼େ ଗଲା ସେ ହିଂସୁକୁଟିଆ କୁଳବୁଡ଼ା ଚନ୍ଦରା ? କୁଆଡ଼େ ଗଲା ସେ ଚୁପଶା ବାଡ଼ିଖିଆ ମଦନା ? ଆଖି ଫୁଟି ଯାଇଛି



Digitized by PPRACHIN, SOA

କିରେ ତମର ସବୁ ? କୁଆଡ଼େ ଗଲରେ ଗାଁ ମାଇପିମାନେ ? ଆସ ଦେଖିପାଅ– ମୋ ଗଙ୍ଗା, ମୋ ଭେଣ୍ଡାପୁଅ ପହଞ୍ଚିଛି ମୋ ଘରେ । ଯେଉଁମାନେ କୁମ୍ଭୀର କାନ୍ଦଣା କାନ୍ଦୁଥିଲେ, ଦୁଃଖ ଦେଖି ଭଲେଇ ହେଉଥିଲେ, ସେମାନଙ୍କୁ ଖୁବ୍ ଅଶ୍ଳୀଳ ପାଟିରେ ଦେବବୋଉ ଶୋଧୁଥିଲା, ଗଗ ଗୁଝାଉ ଥିଲା ।

ଯେଉଁମାନେ ସନାତନର ପ୍ରକୃତ ହିତାକାଂକ୍ଷୀ, ସ୍ନେହ-ଆନ୍ତରିକତା ଥିଲା ତାଠି, ସେମାନେ ଆସି ସନାଙ୍କୁ ବଧେଇ ଜଣାଇଲେ । କହିଲେ, ସନାଭାଇ ଆଉ ଗାଳି ଗୁଲଜ ଦିଅନି । ଯେଉଁମାନେ ତୁମର ଅମଙ୍ଗଳ ଗ୍ରହୁଁଥିଲେ ସେମାନଙ୍କ ମୁହଁରେ କଳା କନା ବୁଲିଗଲାଣି । କହନ୍ତି– ମାରନା ମୁଁ ମଲିଣି । ଯାହାକୁ ରଖିବେ ଅନନ୍ତ, କେ କରିପାରେ ବଳବନ୍ତ ? ଆଉ ବିରକ୍ତ ହୁଅନି ସନାଭାଇ, ଦେବର ଆୟୁଷ ବର୍ଦ୍ଧିବ, ସେ ହେବ ଦୀର୍ଘାୟୁ । ଭଗବାନ ସମସ୍ତଙ୍କର ମଙ୍ଗଳ କରନ୍ତୁ ।

ସଙ୍ଗେ ସଙ୍ଗେ କୀର୍ତ୍ତନିଆ ଦଳ ଡ଼କା ହୋଇ ଦାଣ୍ଡରେ କୀର୍ତ୍ତନ ଚାଲିଲା । ଖୋଳ, ମୃଦଙ୍ଗ, ଝାଞ୍ଜ, ଗିନିରେ ଗାଁ ଦାଣ୍ଡ କମ୍ପିତ ହେଲା । ଗାଁ ପିଲାଙ୍କୁ ମୁଆଁ ବଣ୍ଟା ଗଲା । ଗ୍ରହଶାନ୍ତି ଏବିଂ ବ୍ରାହ୍ମ ଆଶୀର୍ବାଦ ପାଇଁ ବ୍ରାହ୍ମଣମାନଙ୍କୁ ଗୋଦାନ, ସ୍ୱର୍ଣ୍ଣଦାନ ଏବଂ ବସ୍ତ୍ରଦାନ କରାଗଲା । ଘରର ପ୍ରକୃତ ଧନ ଫେରି ଆସିଛି, ସେ ନବଜୀବନ ଲାଭ କରିଛି । ତା'ର ଦୀର୍ଘଜୀବନ ପାଇଁ ବାପ ମା' ସବୁକିଛି ଦାନ କରିବାକୁ ପ୍ରସ୍ତୁତ ।

ଦେବକାନ୍ତ କିଛି ରହସ୍ୟ ଭେଦକରି ପାରୁ ନଥିଲା । ଜଡ଼ ପିଣ୍ଡଟିଏ ଭଳି ସବୁ ଶୁଣୁଥିଲା, ସବୁ ଦେଖୁଥିଲା । ଖୋଲିଲା ଆଖିରେ ଚାହୁଁଥିଲା ଜଣକୁ । ଆଖି ନିରଶ ହୋଇଥିଲା । ତା' ବିଷୟରେ ପଚାରି ବୁଝିବା, କହିବା, ଜାଣିବା ସମ୍ଭବ ନଥିଲା ତା' ପକ୍ଷେ ।

କ୍ରମେ ରହସ୍ୟ ପ୍ରକାଶିତ ହେଲା । ସବୁ ଶୁଣିଲା, ବୁଝିଲା । ଏ ଗାଁରେ ଅଦ୍ଭୁତ ଘଟଣା ଘଟିଛି ତା'ର ଦୀର୍ଘ ନୀରବତା ଯୋଗୁଁ ।



Digitized by PPRACHIN, SOA

ସେ ଆଉ ଦେବକାନ୍ତ ନୁହେଁ, ତା'ର ଭୂତ । ଗାଁ ବାଲଙ୍କ ଭୁଲ୍ ବା କ'ଣ ? ସବୁ ତ୍ରୁଟି ତା ନିଜର । ବାପାଙ୍କୁ ସାମାନ୍ୟ ଖଣ୍ଡିଏ ଚିଠି ଲେଖି ଦେଇଥିଲେ ଏଡ଼େ ବଡ଼ କାଣ୍ଡ ଘଟି ନଥାନ୍ତା । କିନ୍ତୁ ତା'ର ଯୁକ୍ତି ଥିଲା ଭିନ୍ନ । କିଏ ଜାଣିଥିଲା ସାମାନ୍ୟ ଘଟଣା ନେଇ ମହାଭାରତ ଭଳି ମହାକାଣ୍ଡ ସୃଷ୍ଟି ହେବ ବୋଲି ? ଯାକୁ କହିବ ଦୁର୍ଭାଗ୍ୟ । ଯାହା ଭୋଗକରିବାକୁ ଥିବ ତାହାହିଁ ଘଟିବ । ସବୁ ସ୍ଥଳରେ ଅନିବାର୍ଯ୍ୟତାହିଁ ସ୍ୱୀକାର୍ଯ୍ୟ ।

ଶ୍ରାବଣୀ ବଞ୍ଚିଛି ! ! ଦେବକାନ୍ତ ବିଶ୍ୱାସ କରି ପାରିଲା ନାହିଁ । କାହିଁ ସେ ? କେଉଁଠି ଅଛି ? ? କୁଆଡ଼େ ଗଲା ? ? ? ପାଗଳ ଭଳି ପ୍ରଳାପ କରି ଉଠିଲା ଦେବକାନ୍ତ ।

କ୍ରମଶଃ ଶ୍ରାବଣୀର ବହିଷ୍କାର ଘଟଣା ଉନ୍ମୋଚନ କଲା ଦେବକାନ୍ତ । ଧୈର୍ଯ୍ୟର ସୀମା ଡ଼େଇଁ ଉତପ୍ତ ଲୌହ ଖଣ୍ଡ ଭଳି ଉତ୍‌କ୍ଷିପ୍ତ ହୋଇ ଉଠିଲା– ତମେ ସବୁ ପଶୁ ନା ପିଶାଚ ! ରସାତଳରୁ ବର୍ତ୍ତି ଶ୍ରାବଣୀ ଯେ ଏ ଗାଁ ମାଟି ଛୁଇଁ ପାରିଥିଲା, ଏହା ଥିଲା ଏ ଯୁଗର ସବୁଠୁଁ ଆଶ୍ଚର୍ଯ୍ୟର ବିଷୟ । ସୈନିକଟିଏ ବିଭୀଷିକାମୟ ମହା ସମରରୁ ବର୍ତ୍ତି ଜୀବନ ଧରି ଫେରିବା ଭଳି, ସମସରପୁର ଗାଁ ମାଟିକୁ ଶ୍ରାବଣୀର ପ୍ରତ୍ୟାବର୍ତ୍ତନ ଥିଲା ସେହିଭଳି ଆଶ୍ଚର୍ଯ୍ୟକର ଆଉ ଅକଳ୍ପିତ । ଧନ୍ୟ ତା'ର ଧୈର୍ଯ୍ୟ, ଧନ୍ୟ ତା'ର ବୁଦ୍ଧି, ଧନ୍ୟ ତା'ର ସାହସ । ତାକୁ ପ୍ରଶଂସା କଲ, ବାହାବା କଲ ଏବଂ ବାଘ୍ରଙ୍କ ଭଳି ବାଉଳି ଖାଇଲ– କୁଆଡ଼େ ଗଲ, କୁଆଡ଼େ ଗଲ ? କ'ଣ ସବୁ ଏମିତି ବୋକାଙ୍କ ଭଳି ଗ୍ଡ଼ହିଛ ଆଖିକୁ ଏଡ଼େ ଏଡ଼େ କରି ? ବାରମ୍ବାର ପଗ୍ଋରିଲେ ମଧ୍ୟ କାହାର ପାଟି ଫିଟୁନାହିଁ ?

ଦେବକାନ୍ତର କ୍ରୋଧ ପଞ୍ଚମକୁ ଉଠିଯାଇଥିଲା ଓ ସେ ଚିତ୍କାର କରୁଥିଲା । ପୁଅକୁ ସମ୍ଭାଳିବା ମୁସ୍କିଲ ହୋଇ ପଡ଼ିଥିଲା ।

ବାପା, ବୋଉ ବ୍ୟଥା ବିଗଳିତ ସ୍ୱରରେ କଅଁଳେଇ କହିଲେ– ତୁ ଜାଣୁନା ଦେବ, ସେଟା ଗୋଟେ ବେଶ୍ୟା, ବାରଙ୍ଗନା, କୁଳଟା । ତୋତେ ଛାଡ଼ି କଲିକତା ସହରରେ ଦେହ ବେପାର କରୁଥିଲା, ପର ପୁରୁଷ ଧରି ସୁଖ



Digitized by PPRACHIN, SOA

ଭେଟୁଥିଲ, ଟଙ୍କା ଭିଆଉଥିଲ । ନେଡ଼ି ଗୁଡ଼ କହୁଣିକୁ ବୋହି ଯିବାରୁ ପାପ ପେଟକୁ ଧରି ଏଠାକୁ ଆସିଥିଲ । ପାପ ପୋଛିବାକୁ ଆଉ ଜାଗା ମିଳିଲନି ଛୋପରୀ ବଜାଚୁଣୀଟାକୁ ! ଆମ ମାନ ଇଜ୍ଜତ ସବୁ ପାଣିରେ ପଡ଼ିଲ, ମର୍ଯ୍ୟାଦା ମାଟିରେ ମିଶିଲ, ମୁଣ୍ଡ ତଳକୁ ନୋଇଁଲ । ଆଉ ଡେରି ନ କରି ଆମେ ବାଧ୍ୟ ହୋଇ ତାକୁ ଏ ଘରୁ ତଡ଼ିଲୁ । ଏହା ଛଡ଼ା ଆମର ଆଉ କ'ଣ ଉପାୟ ଥିଲ ? ଆମ ବଂଶରେ କଳଙ୍କ ବୋଳିଥାନ୍ତା, ବଡ଼ଜେନା ବଂଶ ରକ୍ତ ଗୋଳିଆ ହୋଇଥାନ୍ତା ? ତାକୁ ବହିଷ୍କାର କରି ବଡ଼ଜେନା ବଂଶର ପବିତ୍ରତା ରକ୍ଷାକରିଛୁଁ । ତୁ ନିଜେ କହିଲୁ, କେମିତି ଏ କୁଳଛଡ଼ା ଛତରୀଟାକୁ ଏ ଘରେ ରଖିଥାନ୍ତୁ ? ପିତୃପୁରୁଷ ତା' ହାତରୁ ପାଣ ପାଇଥାନ୍ତେ ? ... ଆମେ କ'ଣ ତୋର ଶତ୍ରୁ ? ଆମେ ଯଦି ମିଛ କହୁଛୁ, ତୁ ନିଜେ ଏ ଘଟଣା ପଗ୍ଗରି ବୁଝ, ଅନୁସନ୍ଧାନ କର । ଆମେ ଯାହା କରିଛୁ, ଭବିଚିନ୍ତି, ବୁଝି ବିଗ୍ଗରି କରିଛୁ । ଆମେ ପରା ତୋର ଶୁଭକାଂକ୍ଷୀ ପିତାମାତା । କୌଣସି ବାପମା' କ'ଣ ପୁଅର ଅମଙ୍ଗଳ ଚିନ୍ତା କେବେ କରି ପାରନ୍ତି ?

ଦେବବୋଉ ବଳିପଡ଼ି କହିଲ— ବାପ ଘରକୁ ନ ଯାଇ ପୋଡ଼ାମୁହିଁ ଆଉ ଯିବ କେଉଁ ଆଡ଼େ ? ଶୁଣିଲୁ, ସେଠି ତା'ର ପୁଅଟିଏ ହୋଇଛି । ତଥାପି କ'ଣ ସେ ସନ୍ତୁଷ୍ଟ ହେଲ ସେଥିରେ ! ଦୁଷ୍ଚରିତ୍ରା ସ୍ତ୍ରୀର ଦୁର୍ଗୁଣ ଯିବ କୁଆଡ଼େ ? ପାପ-ପ୍ରଣୟରେ ଥରେ ଗୋଡ଼ ଖସିଲେ ସେଥିରୁ କ'ଣ ଆଉ ଫେରି ଆସିବାକୁ ଇଚ୍ଛା ହେବ ? ବିଟ ପୁରୁଷ, ବିଟପୀ ନାରୀର ମାମଲ, ସହଜେ ଛାଡ଼େନି ଝାମେଲ । ଯେଉଁ ସ୍ତ୍ରୀକୁ ଏ ରୋଗ ଧରେ, ସେ ଜୀବନ ସାର ସେହି ରୋଗ ଧରି ମରେ । ଏଠୁ ବିଦା ହେଲପରେ ବାପଘର ଗାଁରେ ମଧ୍ୟ ସେ ରଙ୍ଗ ରସରେ ମାତିଲ । ଟୋକାକୁ ଧରି ନାଟ କଲ । ଶେଷକୁ ଗାଁ ପଧାନକୁ ଆଖି କଲ, ତାଙ୍କ ସମ୍ପତ୍ତିରେ ଲୋଭ ବଳିଲ, ତାକୁ ଧରିବାକୁ ଫାଶ ବାନ୍ଧିଲ । କେତେ କୁତ୍ସିତ ତା'ର ଉଦ୍ଦେଶ୍ୟ ! ପଧାନେ ଗାଁରେ ନିଶାପ ଡ଼ାକିଲେ । ସେଠୁ ବି ଛତରୀ ତଡ଼ା ଖାଇଲ । ବେଧ ଛୁଆକୁ କାଖରେ ଜାକି କୁଆଡ଼େ ଗ୍ଗଲି ଯାଇଛି ଯେ ତା'ର ଆଉ ପତ୍ତା ନାହିଁ । ଏମିତି ଚୁପ୍‌ସଇତାନୀ, ଚରିତ୍ରହୀନା ଝିଅମାନଙ୍କୁ ମରଣ ହେଉନି କାହିଁକି ? ଧିକ୍ ସେମାନଙ୍କ ଜନମ ... ।



Digitized by PPRACHIN, SOA

ଦେବବୋଉର ଦେବଙ୍କୁ ପୁନର୍ବାର ପ୍ରବୋଧନା– କେତେ ସଗଗରେ, କେତେ ଆଶାନେଇ ବାହାଘର କରି ନ ଥିଲିରେ ପୁଅ ! ଅଲକ୍ଷଣୀଟା ସବୁ ଛାରଖାର କରିଦେଲା । ତା' ଯୋଗୁଁ ସିନା ମୋ ସୁନା ପୁଅର ଆଜି ଏ ଅବସ୍ଥା ! ତୋର ରୂପ କ'ଣ ହେଲଣି ? ଗଜପୁତ୍ର ପରି ଚେହେରା, ଅଥଚ ମାଙ୍କଡ଼ ପରି ଦିଶିଲୁଣି । ଦେହ ମାଂସ ହାଡ଼ରେ ମିଶିଲଣି । ମୋ ଚନ୍ଦ୍ରବଦନ ହେଲଣି ଖପର ଭଳି ମଳିନ । ମୋ ହୃଦୟ ଫାଟି ହୋଇ ଯାଉଛିରେ ! ଗୋଟାଏ ଛାର ଦାଗୀ ସ୍ତ୍ରୀ ପାଇଁ ଭେଣ୍ଡା ମର୍ଦ୍ଦ ପୁଅର ଏତେ ଭାବନା କ'ଣ ? ଚିନ୍ତା କାହିଁ ପାଇଁ ? ପୁଅ ଥିଲେ ଗଣ୍ଡା ଗଣ୍ଡା ଝିଅ ମିଳିବେ । ... ସେଟାକୁ ବୋହୂ କରି ଆଣିବାଟା ମୋର ଭୁଲ୍ ହୋଇଛି । ତା' ରୂପ ମୋତେ ବଶ କଲା, ତା' ମୁହଁ, ତା' ଭାଷାରେ ଯେମିତି ଯାଦୁ ଥିଲା । କିଏ ଜାଣିଥିଲା ଭିତରେ ତା'ର ଏମିତି ଗୁଣ ଅଛି ବୋଲି, ଚରିତ୍ରରେ ଖୁଣ ଅଛି ବୋଲି ? ... ଗାଁରେ ମୋତେ ଦୋଷ ଦେଉଛନ୍ତି । ଉଠା ଝିଅ, ମଙ୍ଗୁଳା କନ୍ୟାକୁ କ'ଣ କିଏ ବୋହୂକରି ଆଣେ ? ଆମର ଅନିଷ୍ଟ ହେବନିତ ଆଉ କାହାର ? ... ରାମ, ରାମ, ଏ ଭୁଲ ଆଉ ଥରେ ହେବନି । ଅନ୍ଧ ସିନା ଥରେ ବାଡ଼ି ହଜାଏ, ଦ୍ୱିତୀୟବାର ନୁହେଁ । ମୋ ସୁନାଟା ପରା, ଥୟ ଧର, ଦମ୍ଭଧର, ଧୈର୍ଯ୍ୟଧର । ସବୁ ଠିକ୍ ହୋଇଯିବ । ମୋ ଘର ପୁଣି ଆନନ୍ଦ ଉଲ୍ଲାସରେ ନାଚି ଉଠିବ । ... ଏଥର କିନ୍ତୁ ବାଛି ବାଛି ଆଣିବି ଭଲ କଣ୍ଢେଇଟିଏ, ହେଉ ପଛେ କାଳୀ, ଗୁଣବତୀ ହୋଇଥିବ । ଗୁଣ ନଥାଇ ରୂପକୁ କ'ଣ ଘଷିବ ? ଗୁଣ ନଥାଇ ଦେଖା ସୁନ୍ଦର ବଉଳା ଗାଈ, ହଜାରେ ପୋଷିଲେ କି ଲାଭ ପାଇଁ ? ... ଏଥର ବାୟାବୁଦ୍ଧି ଛାଡ଼, ଚାକିରୀ ପଛରେ କୁହୁଡି ପହଁରିବା ଆଉ ଦରକାର ନାହିଁ ଆମ୍ଭର । ଯାହା ଜମି ଅଛି, ସେତିକି ଯଥେଷ୍ଟ । ଲୋକ ନାହିଁ ଚାଷ କାମ ବୁଝିବାକୁ । ବାପା ତ ଦୁର୍ବଳ ହେଲେଣି । ଆଉ ପାରୁ ନାହାନ୍ତି ମାଟି କାମକୁ । ତୁ ଏଥର ସବୁ ବୁଝାସୁଝା କର । ପଛ କଥା ମନରୁ ପୋଛିଦେଇ ନଆ ଉତ୍ସାହ ନେଇ ପୁଣି ଅଣ୍ଟାଭିଡ଼ି ବାହାରି ପଡ଼ । ସବୁ ଠିକ୍ ହୋଇଯିବ । ଏ ସଂସାର ପୁଣି ହସି ଉଠିବ ।



Digitized by PPRACHIN, SOA

ଦେବକାନ୍ତ ଲକ୍ଷ୍ୟ କରିଥିଲା ଘରର ଆର୍ଥିକ ଦୁରବସ୍ଥା । ଦାରିଦ୍ର୍ୟ ହେତୁ ଘରର ସଚଳ ଅବସ୍ଥା ବାଧାପ୍ରାପ୍ତ ହୋଇଛି । ଦୁଇତିନି ବର୍ଷ ଭିତରେ ଅର୍ଥାବସ୍ଥା ଅନେକ ଦୁର୍ବଳ ହୋଇ ପଡ଼ିଛି । ଜମିବାଡ଼ି ଉପଯୁକ୍ତ ହେପାଜତ ଅଭାବରୁ ପତିତ । ବାପା ମଧ୍ୟ ବହୁ ଦୁର୍ବଳ ହୋଇ ପଡ଼ିଛନ୍ତି ; ପୂର୍ବ ତତ୍ପରତା, କର୍ମସହିଷ୍ଣୁତା ଆଉ ନାହିଁ । ଦେବକାନ୍ତ ଅନୁଭବ କଲା ଏସବୁ ପାଇଁ ସେ କେବଳ ଦାୟୀ !

ବୋଉର ଉକ୍ତି, ବାପାଙ୍କର ଯୁକ୍ତି– ସେମାନେ ତେବେ କ'ଣ ଠିକ୍ କହୁଛନ୍ତି ? ମାତ୍ର କେଇଦିନ ସ୍ତ୍ରୀ ସହିତ ସମ୍ପର୍କ, ସହବାସ । ହିସାବ କରି, ଦିନ ମାସ ଯୋଗ ବିୟୋଗ କରି ସନ୍ତାନ ପ୍ରସବର ସମ୍ଭାବିତ ଦିନ ନିର୍ଦ୍ଧାରଣ କଲା । ଅନୁମାନ ଅନୁସାରେ ସମ୍ମୁଖ ପ୍ରାୟତଃ ମେଳ ଖାଉଛି । ତେବେ ଶ୍ରାବଣୀ ସଙ୍ଗେ ସାକ୍ଷାତ ନ ହେଲା ପର୍ଯ୍ୟନ୍ତ ସଠିକ୍ ସିଦ୍ଧାନ୍ତରେ ଉପନୀତ ହୋଇ ପାରୁନାହିଁ । ଥରଟିଏ ହେଲେ ଦେଖା ମିଳନ୍ତା, ସତକଥା ନିଶ୍ଚେ ଧରା ପଡ଼ିଯାନ୍ତା । କେଉଁଠି ଥାଇପାରେ ସେ ବର୍ତ୍ତମାନ ? ବଞ୍ଚିଛି ନିଶ୍ଚୟ, ତେବେ ବିପୁଳ ପୃଥିବୀର କେଉଁ ଅଜ୍ଞାତ ସ୍ଥାନରେ ? ଖୋଜି ପାଇବା କ'ଣ ଆଉ ସମ୍ଭବ ?

ଯାରଜର ସନ୍ତାନ ! ଅବୈଧ ଶିଶୁ ! ! ନା, ତା ନିଜ ରକ୍ତର ସ୍ୱାକ୍ଷର ?

ମନ ବୁଝୁ ନଥିଲା ଦେବକାନ୍ତର । ସାଙ୍ଘାତିକ ମାନସିକ ମନ୍ଥନ ଭିତରେ ଆହାତ ହୋଇ ପଡୁଥିଲା ସେ । ଏକ ପକ୍ଷରେ ତା' ମୁଣ୍ଡ ଭିତରେ ଭର୍ତ୍ତି କରାଯାଇ ଥିବା ବିଷ ଏବଂ ଅପର ପକ୍ଷରେ ସ୍ତ୍ରୀ ଉପରେ ତା'ର ଅଖଣ୍ଡ ବିଶ୍ୱାସ ... ପରସ୍ପର ବିରୋଧୀ ଚିନ୍ତା ତା'ର ମାନସିକ ଭାରସାମ୍ୟକୁ ବିପର୍ଯ୍ୟସ୍ତ କରୁଥିଲା । ଚକାଭଉଁରୀ ଭଳି ସେଗୁଡ଼ିକ ତା' ମୁଣ୍ଡ ଭିତରେ ଖେଳି ବୁଲି ଘାଣ୍ଟଚକଟ କରୁଥିଲେ । ସତ୍ୟସନ୍ଧାନ ପାଇଁ ଅଥୟ ହୋଇ ଉଠୁଥିଲା ତା'ର ମନ ।

ଦେବବୋଉ ଏଥର ଚଞ୍ଚଳ ହୋଇ ଉଠିଲା, ସୁପ୍ତ ମନ ପୁଣି ଜାଗ୍ରତ ହେଲା । ତା'ର ଅବତାରଣା ଥିଲା– ବଂଶ ରକ୍ଷା ପାଇଁ ସ୍ତ୍ରୀର ଆବଶ୍ୟକତା



Digitized by PPRACHIN, SOA

ମାତ୍ର ନହିଲେ ପୁନର୍ବିବାହ କାହିଁକି ? କେବଳ ପଗଗ- ପୀରତି ପାଇଁ ବିବାହ ନୁହେଁ, ବିବାହ ଏକ ସାମାଜିକ ଆବଶ୍ୟକତା, ଯୁଗ ଯୁଗାନ୍ତର ପାଇଁ ବନ୍ଧନ । ଏଥର କିନ୍ତୁ ସାମାଜିକ ନୀତି ନିୟମ ଅନୁଯାୟୀ, ବୈବାହିକ ପ୍ରଥାକୁ ଅକ୍ଷରେ ଅକ୍ଷରେ ପାଳନ କରି ଭଇଭବେ କୋଷ୍ଠୀ ମେଳାଇ ପୁଅର ବାହାଘର କରିବେ । ଶଙ୍ଖମହୁରୀ, ଢୋଲ ବାଜି ପୁଅର ପୁନର୍ବିବାହ ଘୋଷିତ ହେବ ଗାଁ ଦାଣ୍ଡରେ । ପାଲିଙ୍କିରେ ବସି ବାହା ହେବାକୁଯିବ ଦେବକାନ୍ତ ।

ଅକ୍ଳେଶରେ କନ୍ୟା ପାତ୍ରୀଟିଏ ଯୋଗାଡ଼ ହୋଇଗଲା– ନୂଆପଡ଼ା ନିବାସୀ ଚିନ୍ତାମଣିଙ୍କ କନ୍ୟା କନକଲତା । ଥିଲାବାଲା ଘରର ଝିଅ । ମୋଟା ଯୌତୁକ ନିଶ୍ଚୟ ମିଳିବ । ବିବାହର ଦିନ ବାର ତିଥି ଠିକ୍ ହୋଇଗଲା । ପ୍ରାରମ୍ଭିକ ଆୟୋଜନ କାର୍ଯ୍ୟ ଚାଲିଲା ବିପୁଳ ଆନନ୍ଦ ଉତ୍ସାହରେ । ଘରେ ନବୀନ ଉଦ୍ଦୀପନା ଖେଳିଲା । ଦୁଲଣୀର ମନ ଦୋଳି ଖେଳିଲା । କିନ୍ତୁ ଏ ସମସ୍ତ ଉତ୍ସାହ ଉଦ୍ଦୀପନା ଭିତରେ ଦେବକାନ୍ତ ଥିଲା ବୀତସ୍ପୃହ, ସେ ଯେମିତି ଦିଶୁଥିଲା ବୁଦ୍ଧଙ୍କ ଭଳି ନିର୍ଲିପ୍ତ, ଅନାସକ୍ତ ବାପମା'ଙ୍କ ପ୍ରସ୍ତାବ ପ୍ରତି ସମର୍ଥନ ନଥିଲା ତା'ର ବିରୋଧ ମଧ୍ୟ କରି ନଥିଲା ।

ଦିନେ ଦେବକାନ୍ତ ସମସରପୁରରେ ଯାଇଁ ପହଞ୍ଚିଲା । ଯାହା ସତ୍ୟ, ତାହା ବୁଝି ଜାଣିବା ପାଇଁ ମନରେ ଅଦମ୍ୟ ଇଚ୍ଛା । ଜଣେ ବୟସ୍କ ଗ୍ରାମବାସୀଙ୍କୁ ସେ ପଚାରିଲା–

: ଏଠି ଜଗୁ ପରିଡ଼ାଙ୍କ ଘର କେଉଁଠି ?

: ସେ ତ ମଲାଣି ।

: ତାଙ୍କ ଝିଅ ?

: ଛାଡ଼ ଛାଡ଼ ତା କଥା । ଯେଉଁଆଡ଼େ ଗଲା ସେ ଗାଁର ନାଁ ପକାଇଲା । ବଡ଼ ଅଲକ୍ଷଣୀ ଝିଅଟେ ବାବୁ । ବାପକୁ ଖାଇଲା,



Digitized by PPRACHIN, SOA

ସ୍ୱାମୀକୁ ମାଇଲା । ଗାଁରେ ଅବୈଧ ସନ୍ତାନ ଧରି ନାଟ ନଗେଇଲା । ପର ପୁରୁଷପଣା, ଖୋଲିଲା ଗାଁରେ ବେଭସା । କେଡ଼େ ସାହସ ନୁହେଁ ତା'ର । ଗାଁ ପଧାନଙ୍କୁ ଦୃଷ୍ଟି ଦେଲା, ଧଗ ପଡ଼ିଲା । ପଞ୍ଚାୟତ ନିଷ୍ପତ୍ତିକ୍ରମେ ଗାଁରୁ ତଡ଼ା ଖାଇଲା । କାହିଁକି ପଗ୍ଚରୁ ଥିଲ କି ବାବୁ ?

: ସରକାରୀ ଗ୍ଚକିରିଆ ମୁଁ, ଗୋଇନ୍ଦା ବିଭଗରେ କାମ କରେ । ତା'ର ନିଖୋଜ ଖବର ଉଚ୍ଚ ଅଫିସରଙ୍କୁ ଜଣାଇବାକୁ ହେବ । କୁଆଡ଼େ ଗଲା ସେ କହି ପାରିବ ?

: ନାଇଁ ବାବୁ । ଦେହ ବିକିବା ଯାହାର କାମ, ତାକୁ ରହିବା ପାଇଁ କ'ଣ ସ୍ଥାନର ଅଭବ ଅଛି ? କେଉଁ ସହର ବା ଟାଉନରେ ରହି ତା' ଧନ୍ଦାରେ ମାତିଥିବ । ଏଭଳି ନଷ୍ଟ-ଚରିତ୍ରା ନାରୀର ମୁହଁ ଗ୍ଚହିଁବା କେବଳ ଅମଙ୍ଗଳ ନୁହେଁ, ପାପ ମଧ୍ୟ ।

ଲୋକଟିର ମୁହଁରେ ଥିଲା ଶ୍ରାବଣୀପ୍ରତି କୁତ୍ସା ରଟନା ଆଉ ବଚନ ଭଙ୍ଗୀରେ ଦୃଢ଼ତା ।

ଶ୍ରାବଣୀ । ହୃଦୟ ସିଂହାସନରେ କେତେ ଉଚ୍ଚାସନ ଦେଇ ନଥିଲି ତୋତେ ? ସ୍ୱାମୀର ସ୍ନେହକୁ ଗୋଡ଼ରେ ଦଳି ତୁ ପରପୁରୁଷ ସଙ୍ଗେ ପ୍ରୀତି କଲୁ, ଯୌନରସରେ ମାତିଲୁ । ଥରେ ହେଲେ ମୋ କଥା ଭବିଲୁ ନାହିଁ ? ତୋ ପାଇଁ ମୁଁ କେତେ ଯେ ଦୁର୍ଦ୍ଦଶା ଭୋଗିଛି, କିଏ ବିଶ୍ୱାସ କରିବ ? ମନହିଁ ମୋର ମୂକ ସାକ୍ଷୀ ! ତାହେଲେ ଏ ଦୁନିଆରେ ନାରୀ କ'ଣ ସ୍ୱାର୍ଥପରତାର ଏକ ନିଛକ ସଜ୍ଞା ? ନାରୀ କ'ଣ ଲାମ୍ପଟ୍ୟର ଏକ ଉତ୍କଟ ପ୍ରତିମୂର୍ତ୍ତି ? ଏକଥା ଯଦି ସତ୍ୟ, ଦେଖିବୁ ତୁ, ଦେବକାନ୍ତ ମଣିଷ ନୁହେଁ, ସେ ସଇତାନ । ଶ୍ମଶାନରୁ ଯିଏ ଥରେ ଉଠି ଆସିଥାଏ, ସେ ଆଉ ମଣିଷ ନୁହେଁ, ତା'ର ପ୍ରେତ । ବିନା ଦୋଷରେ ଯିଏ ଦୁଇବର୍ଷ ଜେଲ ଭୋଗି ପୁଣି ବାହାରକୁ ଆସିଥାଏ, ସେ ଆଉ ମଣିଷ ନୁହେଁ, ରାକ୍ଷସ ; ସାମାଜିକ ପ୍ରାଣୀ ନୁହେଁ, ଦୁର୍ଦ୍ଧର୍ଷ ଡ଼ାକୁ ; ଦେବ ନୁହେଁ,



Digitized by PPRACHIN, SOA

ଦାନବ ! ଦୁନିଆ ଏଥର ଦେଖିବ ତା'ର ଭୟଙ୍କର ରୂପ । ଆଉ ବିଳମ୍ବର ଅବକାଶ ନାହିଁ । ପ୍ରତି-ଶୋଧର ଜ୍ୱାଳା ତୀବ୍ର ହୋଇ ଉଠିଲାଣି । କୋପାନଳ ପ୍ରଚଣ୍ଡାକାରରେ ଉଗ୍ର ହୋଇ ଉଠିଲାଣି ମନ ଭିତରେ । ଦେବକାନ୍ତର ଉଷ୍ମ ରକ୍ତରେ ଜାଗରିତ ହୋଇ ଉଠିଲା ଧ୍ୱଂସାନଳର ଲେଲିହାନ ଶିଖା, ହୃଦତନ୍ତ୍ରୀରେ ବାଜି ଉଠିଲା ରଣ ଦୁନ୍ଦୁଭି, ମନରେ ଖେଳିଲା ପ୍ରତିହିଂସାର ରକ୍ତହୋରି । ସମଗ୍ର ସମାଜକୁ କରିବ ସେ ରକ୍ତ ରଞ୍ଜିତ । ସମାଜପତି, ଶାସନ ପତିଙ୍କ ଅନ୍ଧତ୍ୱ, ଅବିଚାର ବିରୁଦ୍ଧରେ ସେ କରିବ ସଶସ୍ତ୍ର ସଂଗ୍ରାମ, ଅନ୍ଧ କାନୁନ୍‌ର ଜବାବ ଦେବ ଅନ୍ଧ ଉପାୟରେ, ଅନ୍ୟାୟର ଜବାବ ଅନ୍ୟାୟରେ ।

ମନଟା ଥରେ ଆଘାତପ୍ରାପ୍ତ ହୋଇ ଗର୍ଜିଗଲେ ଏମିତି ଭୀଷଣ, ଭୟଙ୍କର ହୋଇ ଉଠେ । ବିଦ୍ରୋହୀ ମନକୁ ମଜଭୁତ କରିନେଲା ଦେବକାନ୍ତ । ଯେତେବେଳେ ତାଙ୍କ ଘରେ ପୁନଃ ବିବାହର ପ୍ରାରମ୍ଭିକ କାର୍ଯ୍ୟକ୍ରମ ଧୁମଧାମ୍‌ରେ ଚାଲିଥିଲା, ବିବାହ ସାମଗ୍ରୀ ଖରିଦ୍ ଆଳରେ ଅନେକ ଅର୍ଥ ଧରି କଟକ ସହର ଆସିଲା । ରୁଚିସମ୍ପନ୍ନ ପୋଷାକ ଖରିଦ କଲା । ଭେକ ଥିଲେ ସିନା ଭିକ ମିଳିବ ! ଏଥର କିନ୍ତୁ ତା'ର ଭିକ୍ଷାବୃତ୍ତି ବଦଳିଛି, ଦୀକ୍ଷାନୀତିର ପରିବର୍ତ୍ତନ ଘଟିଛି । ପ୍ରକୃତି ଆଉ ପ୍ରବୃତ୍ତି ହଠାତ୍ ମୋଡ଼ ନେଇଛି ଭିନ୍ନ ଦିଗରେ । ଗାଁ ମାଟି ଛାଡ଼ିଛି, ସମସ୍ତଙ୍କ ଆଖିରୁ ଉଭାନ ହୋଇଛି । ତା' ଆବିର୍ଭାବ ଯେପରି ଥିଲା ଅଭୂତ-ପୂର୍ବ, ଅନ୍ତର୍ଦ୍ଧାନ ମଧ୍ୟ ସେହିପରି ଚମକପ୍ରଦ । ବାପା ମା' ହତଚକିତ ହୋଇ ପଡ଼ି ଥିଲେ ।





Digitized by PPRACHIN, SOA

ଦେବକାନ୍ତ ନିଜକୁ ପ୍ରସ୍ତୁତ କରି ନେଇ ବସିଲା ହାବଡ଼ାମୁଖୀ କ୍ଷିପ୍ରଗାମୀ ଟ୍ରେନ୍‌ର ଶୀତତାପ ନିୟନ୍ତ୍ରିତ ପ୍ରଥମ ଶ୍ରେଣୀ ଡ୍ୱାରେ । ଦେହରେ ତା'ର ସାହେବୀ ଛାପ, ଉନ୍ନତ ପୋଷାକ ପରିଛଦ । ଡ୍ୱାରେ ଥିଲେ ମାତ୍ର ଜଣେ ସହଯାତ୍ରୀ । ଆଟାଚି ଭିତରୁ ଇଂରେଜୀ ପତ୍ରିକା ଗୁଡ଼ିକ ଉଦ୍ଧାର କରି ସେଥିରେ ଆଖି ଖୋଜେଇଲା ଦେବକାନ୍ତ । ସହଯାତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟାକଲା । ସହଯାତ୍ରୀଙ୍କୁ ଭଦ୍ରଭାବେ ପ୍ରଶ୍ନକଲା–ଯଦି କିଛି ନଭାବନ୍ତି, ଆପଣଙ୍କ ନାମ ପଚାରି ପାରେ ?

: ଦୀନେଶ ଗୁପ୍ତା, ମ୍ୟାକ୍ କମ୍ପାନୀର ଚିଫ୍ ଏକ୍‌ଜିକ୍ୟୁଟିଭ ।

ଦୈବାତ୍ ମ୍ୟାଗାଜିନ ପୃଷ୍ଠାଟିରେ ମ୍ୟାକ୍ ପ୍ରଡ଼କ୍‌ସନର ସୁନ୍ଦର ସଚିତ୍ର ବିଜ୍ଞାପନଟିଏ ପ୍ରକାଶ ପାଇଥିଲା । ବିଜ୍ଞାପନଟିକୁ ଅଙ୍ଗୁଠିରେ ଦର୍ଶାଇ ଦେବକାନ୍ତ ଉତ୍‌ଫୁଲ୍ଲିତ ହୋଇ କହିଥିଲା–ହେଇ ଦେଖନ୍ତୁ, ଆପଣଙ୍କ ଅନୁଷ୍ଠାନ ମଧ୍ୟ ଏ ପତ୍ରିକା ଭିତରେ । ଆପଣଙ୍କ ଯାତ୍ରା ସଫଳ ହେବାର ପ୍ରତିଶ୍ରୁତି ମିଳୁଛି ଏଥିରୁ ।

: ଧନ୍ୟବାଦ । ଆପଣଙ୍କ ନାମ ମଧ୍ୟ ବୁଝିପାରେ ?

: ସଂଗ୍ରାମ କେଶରୀ ; ନବନିର୍ମିତ ଫେୟାର ଡ଼ିଲ୍ କମ୍ପାନୀର ମୁଖ୍ୟ ମାର୍କେଟିଂ ଅଫିସର ।

: କମ୍ପାନୀର ଉଦ୍ଦେଶ୍ୟ ?

: ଅଚଳ ଜିନିଷକୁ ସଚଳ କରିବା, ଯେ କୌଣସି ଯନ୍ତ୍ରର ଯାନ୍ତ୍ରିକ ତ୍ରୁଟିକୁ ସଜାଡ଼ିବା ଆମର କାମ । ଏପରିକି ହେଲିକପ୍‌ଟର ଠାରୁ ପାଣିଉଠା ପମ୍ପ ମେସିନ୍ ପର୍ଯ୍ୟନ୍ତ । ଆମର ଅଛନ୍ତି ବିଶେଷଜ୍ଞ ଦଳ । ମୁଖ୍ୟ ଅଫିସ୍ ମାନ୍ଦ୍ରାଜ ଠାରେ ଅବସ୍ଥିତ । କାରିଗରୀ, ବୈଷୟିକ ପରାମର୍ଶ ମଧ୍ୟ ଆମ କମ୍ପାନୀ ତରଫରୁ ଆହ୍ୱାନ କରାଯାଇଥାଏ ।



Digitized by PPRACHIN, SOA

: ଖୁବ୍ ଭଲକାମରେ ନୂଆ କମ୍ପାନୀ ନିର୍ମିତ । ଦେଶରେ ସମ୍ପୂର୍ଣ୍ଣ ନୂଆ । ଶୀଘ୍ର ସାଫଲ୍ୟ ଅର୍ଜନ କରିବ ବୋଲି ଆଶା କରଯାଏ ।

ଦୀନେଶ ଗୁପ୍ତା ସଗ୍ରାମକେଶରୀଙ୍କୁ ତାରିଫ କରିବା ସଙ୍ଗେ ସଙ୍ଗେ ତାଙ୍କ ତରଫରୁ ରାତ୍ରି ନୈଶାହାର ବନ୍ଦୋବସ୍ତ କରିଥିଲେ । ସଗ୍ରାମ କେଶରୀ ମଧ୍ୟ କୋର୍ଟ ପକେଟରୁ ଦାମୀ ସିଗ୍ରେଟ୍ ବାହାର କରି ତାଙ୍କୁ ଆପ୍ୟାୟିତ କରିଥିଲେ । ଉଭୟେ ଗପ ଜମେଇ ଯାତ୍ରା କରୁଥିଲେ । ଅନେକ ବିଷୟ– ଦେଶୀୟ, ଆନ୍ତର୍ଜାତିକ, ଶିଳ୍ପନୀତି, ରାଜନୀତି–ସେମାନଙ୍କ ଆଲୋଚନାର ବିଷୟବସ୍ତୁ ହୋଇଥିଲା ।

ଉଭୟ ଯାତ୍ରୀଙ୍କ ଯାତ୍ରାର ଶେଷ ଖୁଣ୍ଟଥିଲା କଲିକତା । କାମାକ୍ ଷ୍ଟ୍ରିଟ୍ର ଅମ୍ପାୟାର ବିଲ୍ଡିଙ୍ଗର ତେର ତାଲାରେ ଦୀନେଶଙ୍କ ରଭର୍ନିଙ୍ଗବଡ଼ି ମିଟିଂ ଏବଂ ସଗ୍ରାମ କେଶରୀଙ୍କ ସେଇପରି ବ୍ରାବୋନ୍ ରୋଡ଼ରେ ରାସ୍ତକ୍ରମ । ଉଭୟେ ଆହୁରି ନିକଟତର ହୋଇ ଯାଇଥିଲେ ।

ଛଦ୍ମବେଶୀ ସଗ୍ରାମ କେଶରୀଙ୍କ ବଚନରେ ବାଟୁଳି ବାଜୁ ନଥିଲା । ଇଂରାଜୀ, ହିନ୍ଦୀ, ବଙ୍ଗଳା ଭାଷା କହିବାରେ ସେ ଓସ୍ତାଦ ବନି ଯାଇଛନ୍ତି । ତାଙ୍କ ବାକ୍ଚାତୁରୀରେ ବ୍ୟକ୍ତିତ୍ୱ ପରିପୂର୍ଣ୍ଣ । ଦୀନେଶ ଗୁପ୍ତା ଚମତ୍କୃତ ହେଉଥିଲେ । ସଗ୍ରାମ କେଶରୀ ତାଙ୍କ ନାମ, ପଦବୀ ଏବଂ ଠିକଣା ଛପା ଥିବା କାର୍ଡ଼ଟି ଧରାଇ ଦେଇଥିଲେ ଦୀନେଶଙ୍କ ହାତରେ । ବନ୍ଧୁତ୍ୱ କ୍ରମେ ଘନେଇ ଆସିଥିଲା ।

ରାତି ବଢ଼ିଲା । ସଗ୍ରାମକେଶରୀ ଶୋଇବା ପାଇଁ ବାହାନା କରି ଆଖି ବୁଜିଲେ । ଦୀନେଶ ମଧ୍ୟ ଆଖି ବନ୍ଦ କଲେ ରାତ୍ରି ନିଦ୍ରାର ଆହ୍ୱାନ କ୍ରମେ । ଭଲ ସହଯାତ୍ରୀଟିଏ ପାଇଛନ୍ତି ଭାବି ନିର୍ଭୟରେ ଘୁଙ୍ଗୁଡ଼ି ମାରିଲେ ଦୀନେଶ ।

ପାହାନ୍ତା ପହର ବେଳକୁ ଦୀନେଶ ଉଠି ଦେଖନ୍ତି, ତାଙ୍କ ମୂଲ୍ୟବାନ ଆଟାଚିଟି ହରଣଚାଳ ହୋଇ ଯାଇଛି । ସେଥିରେ ଥିଲା ଅନେକ ଗୁପ୍ତ କାରବାରର ନଥିପତ୍ର, ନଗଦ ପଚାଶ ହଜାର ଟଙ୍କା, କିଛି ମୂଲ୍ୟବାନ



Digitized by PPRACHIN, SOA

ପଥର ଏବଂ ଶକ୍ତିଶାଳୀ ପିସ୍ତଲଟିଏ । ଦୀନେଶ ଗୁପ୍ତା ଅନ୍ଧହୋଇ ଯାଇଥିଲେ । ଚତୁର୍ଦ୍ଦିଗ ତାଙ୍କୁ ଅନ୍ଧାର ଦିଶୁଥିଲା । କ'ଣ କରିବେ ସେ ? ପୋଲିସକୁ ଖବର ଦେବେ ? ଅଟାଚିରେ କ'ଣ ଥିଲା ଦର୍ଶାଇବେ ? କିନ୍ତୁ ସମ୍ଭବ ହୋଇ ନଥିଲା । ପାପାର୍ଜ୍ଜିତ ସମ୍ପତ୍ତି ପ୍ରାୟଶ୍ଚିତରେ ଗଲାଭଳି ତାଙ୍କ ଚୋର ଧନର କିୟଦଂଶ ଚୋର ଗର୍ଭରେ ଗଲା । ଚୋରକୁ ବାଘ ନେଲା ଭଳି ଘଟଣା । ନିଜ ଅସାବଧାନତା ନେଇ ନିଜକୁ ଧିକ୍‌କାରିଲେ । ଚୋର ମା ଲୁଚାଇ ଲୁଚାଇ କାନ୍ଦିଲା ଭଳି ତାଙ୍କର ଆତ୍ମବେଦନ । ତାଙ୍କ ନିଜ ପରିଚୟ ନାମ ମଧ୍ୟ ଭୁଲ ଥିଲା । ସଂଗ୍ରାମ ବୋଲାଉ ଥିବା ଭଦ୍ରଚୋର ଆଗରେ ଯାହା ପ୍ରକାଶ କରିଥିଲେ ତାହା ମଧ୍ୟ ଥିଲା ଠକାମି । ଏମିତି ଭଦ୍ର ଚୋରଙ୍କ ସଂଖ୍ୟା ବେଶୀ ବୃଦ୍ଧି ପାଉଛି ବୋଲି ତାଙ୍କର କ୍ଷୋଭ ।

ଦୁଃସାହସିକ ଅଭିଯାନରେ ଦେବକାନ୍ତର ପ୍ରଥମ ସଫଳତା ଆଶାତୀତ ଭାବେ ହାସଲ କରିଥିବାରୁ ସେ ନିଜକୁ ବଢେଇ ଜଣାଇଲା । ମନେ ମନେ ହୋଇଥିଲା ଅଭିନନ୍ଦିତ । ଧନ୍ୟକଲା ତା' ନିଜ ବୁଦ୍ଧି, ବିଦ୍‌ବତ୍ତା ଏବଂ ସାହସକୁ । ମନେପଡ଼ିଲା ତା'ର ସେହି ଦିନର ଘଟଣା । ଶ୍ରାବଣୀକୁ ସାଙ୍ଗରେ ଧରି କଲିକତା ଆସୁଥିଲାବେଳେ ରେଳରେ ତା'ର କ୍ଷୁଦ୍ର ସୁଟ୍‌କେଶ୍‌ଟି କିଏ ହରଣଚାଳ କରି ନେଇଥିଲା ଏବଂ ପରବର୍ତ୍ତୀ ଘଟଣାପ୍ରବାହରେ ସେ ଗୋଟିଏ ଅସହାୟ ଶିଶୁଭଳି କେବଳ କ୍ରନ୍ଦନରତ ଥିଲା । ସତରେ ସେ ଘଟଣାଗୁଡ଼ିକ କେତେ ମର୍ମନ୍ତୁଦ ଆଉ ଦୟନୀୟ ! କିଏ ବୁଝିଥିଲା ତା'ର ମର୍ମକଥା, ମନବ୍ୟଥା ! ସଚ୍ଚୋଟ ବେମାରୀରେ ସେ ଛଟପଟ ହୋଇଥିଲା । ମାନବିକ ମୂଲ୍ୟବୋଧକୁ ମୁଣ୍ଡରେ ବୋହି ବୋହି ଲଜ୍ଜନା ପାଇଥିଲା । ପାପପୁଣ୍ୟର ଅହେତୁକ ଧାରଣା ଗଭୀର ଭାବେ ଆଲୋଡ଼ିତ କରିଥିଲା । ଆଜି ନିମିଷକ ମଧ୍ୟରେ ମନର ସେଇ ଧାରଣାକୁ ସେ ଓପାଡ଼ି ଫୋପାଡ଼ି ଦେଇଛି । ପାପପୁଣ୍ୟ କେବଳ ମନର ଦୁର୍ବଳତା ଓ ଭ୍ରମ ଧାରଣା । ପୁଣ୍ୟ କଳ୍ପନାର, ପାପ ବାସ୍ତବର । ବାସ୍ତବହିଁ ସତ୍ୟ, ସେଇ ସତ୍ୟକୁ ସେ ଆଜି ଉପଲବ୍ଧି କରିଛି । କଳ୍ପନାର ପୁଣ୍ୟ ପ୍ରତି ପ୍ରତିଶୋଧପରାୟଣ ହୋଇଉଠିଛି । ଏଇତ ତା' ଦୁରଭିଯାନର



Digitized by PPRACHIN, SOA

ଅଯମାରମ୍ଭ ମାତ୍ର ! ଏଥର ତା' ପଥ ପରିଷ୍କାର । ମୁକାବିଲା କରିବ ସାଙ୍ଘାତିକ ପରିସ୍ଥିତିର । ଆଇନ୍‌ର ଅଙ୍କୁଶ ପ୍ରତି ତା'ର ଆଉ ଟିକେ ମାତ୍ର ଭୟ ନାହିଁ, ଖାତିରବି ନାହିଁ । ସେ ଜାଣେ, ଆଇନ୍ ହେଉଛି ପୋଲିସର ହତିଆର, ସନ୍ଦେହର ଉପଗ୍ରହ ମାତ୍ର ! ମୃତ୍ୟୁକୁ ସେ ଆଉ ଡ଼ରୁ ନାହିଁ । ସମୟ ଓ ସମାଜର ନିଷ୍ଠୁରଘାତରେ ଯିଏ ଥରେ ମରି ପୁଣି ଜୀଇଁ ଉଠିଛି, ତାକୁ ପୁଣି ମରଣଭୟ କ'ଣ ? ମୃତ୍ୟୁତ ତା' ପାଇଁ ନିର୍ବାଣ !

କଳ୍ପନାଗୁଡ଼ିକ ଠୁଳକଲା ! ଆରମ୍ଭ କଲା ତା' ଯୋଜନାବଦ୍ଧ କାର୍ଯ୍ୟକ୍ରମ । ଗୁଳି, ଗୋଳା, ବାରୁଦଆଦି ମାରଣାସ୍ତ୍ର ପ୍ରସ୍ତୁତିରେ ସେ ହେବ ପାରଙ୍ଗମ, ବନ୍ଧୁକ ବ୍ୟବହାରରେ ସେ ହେବ ସିଦ୍ଧହସ୍ତ, ଲକ୍ଷ୍ୟରେ ଅଭ୍ରାନ୍ତ । ଜୁଡ଼ୋ, କୁଙ୍ଗୋ, କାରେଟେ ଆଦି ଆତ୍ମରକ୍ଷା ଏବଂ ଆକ୍ରମଣ ପଦ୍ଧତିରେ ସେ ହେବ ଅପରାଜେୟ । ଦୁର୍ଦ୍ଧର୍ଷ, ଦୁର୍ଦ୍ଦମନୀୟ ଦସ୍ୟୁଦଳର ସେ ହେବ ଦଳପତି । ତା'ର ଇଙ୍ଗିତରେ ପରିଚାଳିତ ହେବ ଏକ ନିୟମ ନିୟନ୍ତ୍ରିତ, ସୁସଂଗଠିତ ଡକାୟତ ଦଳ । ସେମାନେ ଲୁଣ୍ଠନ କରିବେ ଯେଉଁଠି ଠୁଳ ହୋଇଛି ବିପୁଳ ଅର୍ଥର ପାହାଡ଼, ଯେଉଁଠି ଗଢ଼ି ଉଠିଛି ଅନ୍ୟାୟ, ଦୁର୍ନୀତିର ଦୁର୍ଗ, ଯେଉଁଠି ମୁଣ୍ଡ ଟେକିଛି ଭ୍ରଷ୍ଟାଚାରୀ ଶାସନର ମିନାର ଆଉ ବ୍ୟଭିଚାରର ମନ୍ଦିର । ଅନ୍ଧ ଠାକୁରର ଆଜି ସେ କଳାପାହାଡ଼ ।



Digitized by PPRACHIN, SOA

ଶ୍ରାବଣୀ ତା ଧନସଙ୍ଖାଳିକୁ କାଖେଇ କୁଣ୍ଢେଇ କଟକ ସହରରେ ପହଞ୍ଚି ଯାଇଥିଲା । ସହର ତା ପାଇଁ ଅନେକ ଶ୍ରେୟସ୍କର । ତା ପାଇଁ ଗାଁର କାଠିଣ୍ୟ ଏଠି ନାହିଁ, ନାହିଁ ଚରିତ୍ରର କାଳିମା, ନାହିଁ ଲୋକାପ୍ରବାଦର ଅଙ୍କୁଶ, ନାହିଁ ସାମାଜିକ ବାସନ୍ଦ, ନାହିଁ ଗ୍ରାମ୍ୟ ମୁଖିଆର କୁଟ ଚକ୍ରାନ୍ତ । ଏଠି କେହି ନାହିଁ ତା କଳଙ୍କଲଗା ଇତିହାସ ଉନ୍ମୋଚନ କରିବାକୁ । ବରଂ ଗ୍ରାମ ଅପେକ୍ଷା ଏଠି ଜୀବନ ନିରପଦ । ଏଠି ଅଛି ଖଟି ଖାଇବାର ସୁବିଧା, ବଞ୍ଚିବାର ପ୍ରତିଶ୍ରୁତି, ତା ଉଦ୍ଦେଶ୍ୟକୁ ସଫଳ କରିବାର ଏକମାତ୍ର ରାସ୍ତା । କହନ୍ତି, ଏଇ କଟକ ସହର ଭିତରେ ମୋହର । ସେଦିନ ରେଳରେ ଏଇ କଟକ ବାଟ ଦେଇ ଗଲାବେଳେ ସ୍ୱାମୀଙ୍କଠୁଁ ସହରର ଐତିହ୍ୟ ସମ୍ପର୍କରେ ଅନେକ କଥା ଶୁଣିଥିଲା । କଟକର କିମ୍ବଦନ୍ତୀ ଆଜି ବି ମନେଅଛି । ଆଜି ସେଇ ସହରରେ ପାଦ ଦେଇଛି । ଚାଲିବାକୁ ସାହସ କରିଛି, ବଞ୍ଚିବାର ଆଶାନେଇ ଧାଇଁ ଆସିଛି । କଲିକତା ରହଣି କାଳରେ ତାର ସହାନୁଭୂତି ବୃଦ୍ଧି ପାଇଛି, ଯଦିଓ ତିକ୍ତ । ଅନୁଭବ, ଅନୁଭୂତି ମଣିଷକୁ ଶିକ୍ଷାଦିଏ, ସତର୍କ କରାଏ, ଆଗାମୀ ପାଦକୁ ପରିଚାଳିତ କରେ, ପଦକ୍ଷେପକୁ ସଂଯତ ଏବଂ ନିୟନ୍ତ୍ରିତ କରେ । ଆଜି ସେଦିନ ଭଳି ସେ ନିଃସଙ୍ଗ ନୁହେଁ, ସାଥି ଶୂନ୍ୟ ନୁହେଁ । ତା କୋଳ ଆଜି ପୂର୍ଣ୍ଣ । ସ୍ୱାମୀଙ୍କର ଯେଉଁ ପବିତ୍ର ଆଶୀର୍ବାଦଟି କୋଳରେ ଧରିଛି ସେହି ତା'ର ଅବଶିଷ୍ଟ ଜୀବନର ସହଚର, ସର୍ବସ୍ୱ, ତା'ର ପ୍ରାଣବିନ୍ଦୁ, ସ୍ୱର୍ଗାଦପି ସ୍ୱର୍ଗ ।

ଶ୍ରାବଣୀର ଛାତି ଗୁଡ଼୍‌ଗୁଡ଼୍‌ କଲା । ପୁଅର ଜ୍ୱର କମିନାହିଁ । ସେ ନିସ୍ତେଜ ଦିଶୁଚି, ସବୁବେଳେ ଆଖି ବୁଜୁଚି, କାନ୍ଧରେ ପେଟେଇ ପଡ଼ି ରହିଛି । ବେଳେ ବେଳେ ବାନ୍ତି କରୁଚି । ପ୍ରାଣ ଛାଡ଼ିଗଲା ମା'ର । କ'ଣ କରିବ ?



Digitized by PPRACHIN, SOA

ପଗ୍ରିରି ପହଞ୍ଚିଲା ଜଣେ ଡାକ୍ତରଙ୍କ ଘରେ ।

: ବାବୁ, ଡାକ୍ତର ବାବୁ, ମୋ ପୁଅକୁ ତିନିଦିନ ହେଲା ଜର । ବାନ୍ତି କରୁଚି, ପୋଖରୀ ହେଉଚି । ଧର୍ମ ହେବ ବାବୁ, ମୁଁ ଗରିବ ସ୍ତ୍ରୀଲୋକ । ମୋର ଆଉ କେହି ନାହାନ୍ତି । ବହୁ ବାଟରୁ ଆସିଛି ବାବୁ । ଟିକିଏ ଔଷଧ ଦିଅ, ମୋ ପୁଅକୁ ବଞ୍ଚାଅ । ଶ୍ରାବଣୀ କାନ୍ଦି ପକେଇ ଥିଲା । ଡାକ୍ତର କହିଲେ–ମୁଁ ବ୍ୟସ୍ତ ଅଛି । ବର୍ତ୍ତମାନ ବାହାରକୁ ବାହାରିଛି ରୋଗୀ ଦେଖିବାକୁ । ଭଦ୍ରଲୋକ ଗାଡ଼ି ନେଇ ଆସିଛନ୍ତି । ତାଙ୍କର ଛୋଟ ପୁଅ ବେମାର । ତା'ର ଅବସ୍ଥା ଖୁବ୍ ସାଂଘାତିକ । ତୁ ଅପେକ୍ଷା କର, ମୁଁ ଫେରିଆସେ ।

ଡାକ୍ତରବାବୁ ଦେଖିଲେ, ବିଧବା ସ୍ତ୍ରୀଲୋକଟିଏ ଆଖିରୁ ଲୁହ ଝରୁଛି ଟୋପା ଟୋପା । ତାଙ୍କର ସାମାନ୍ୟ ଦୟା ଉଦ୍ରେକ ହେଲା । କାର୍‌ରେ ବସିବା ବେଳେ ବ୍ୟାଗ୍‌ରୁ ଗ୍ରେଟି ବଟିକା ଚଟାପଟ୍ ବାହାର କରି ଶ୍ରାବଣୀ ହାତକୁ ବଢ଼େଇ ଦେଲେ । କହିଲେ, ପତି ଦୁଇ ଘଣ୍ଟାରେ ଗୋଟିଏ ଲେଖାଁଏ ବଟିକା ଦେବୁ । ପୁଣି କାଲି ସକାଳେ ଦେଖା କରିବୁ । ବୁଝିଲୁ ?

: ହଁ, ବାବୁ । ଜଳପୂର୍ଣ୍ଣ ଆଖିରେ ଶ୍ରାବଣୀ ନମସ୍କାର କଲା ।

ଯିବ ଆଉ କେଉଁ ଆଡ଼େ ? ବୃକ୍ଷମୂଳ, ଆକାଶ ତଳ ତା'ର ଆଶ୍ରୟ ସ୍ଥଳୀ । ଖଗ, କାକର ତାର ଦେହସୁହା ହୋଇସାରିଛି । ବାହାରର ବାୟୁ, ଖୋଲା ପବନ ତା'ର ଆପଣାର । ସେଥିରେ ନାହିଁ ସାମାଜିକ କଟକଣା, ମଶକ ଗଡ଼ା ବାଛନ୍ଦ । ଡାକ୍ତରଙ୍କ ବାସଗୃହ ବାରଣ୍ଡା ତଳେ ପୁଷ୍ପପୂର୍ଣ୍ଣ ଝଙ୍କାଳିଆ ଟଗର ଗଛଟିଏ । ନିକଟସ୍ଥ ରାଜ ରାସ୍ତାରେ ସର୍ବସାଧାରଣଙ୍କ ପାଣିକଳ । ଅନ୍ୟତ୍ର ନ ଯାଇ ଏହି ଗଛମୂଳେ ଶ୍ରାବଣୀ ପୁଅକୁ କୋଳରେ ଧରି ପଡ଼ି



Digitized by PPRACHIN, SOA

ରହିଲା । ଡାକ୍ତର କହିବା ମୁତାବକ ପୁଅ ପାଟିରେ ଔଷଧ
ଦେଲା ! ବଟିକା ଗଳି ବାଧକା ଶିଶୁ ମା' କୋଳରେ ପୁଣି
ନିଦ୍ରାଗଲା । ଶ୍ରାବଣୀ ସମୟ ଗଣୁଥିଲା ।

ଡାକ୍ତରବାବୁ ରାତିରେ ଆଉ ବସାକୁ ଫେରି ନ ଥିଲେ । ସକାଳେ ଘରେ ପହଞ୍ଚି ଦେଖନ୍ତି, ପିଲାଟି ସ୍ତନ୍ୟାହାରରେ ଲାଗିପଡ଼ିଛି, ଫୁଙ୍ଗୁଳା ଗୋଡ଼ ଦଇଟିରେ ପବନକୁ ଲାତ ମାରୁଛି । ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ଡାକ୍ତରବାବୁଙ୍କର । ଗତକାଲି ସନ୍ଧ୍ୟାର ରୋଗାକ୍ରାନ୍ତ ଶିଶୁଟି ହଠାତ୍ ଆଶ୍ଚର୍ଯ୍ୟଜନକ ଭାବେ ଦିଶୁଛି ପ୍ରଫୁଲ୍ଲ, ସତେଜ । ତରବରରେ କ'ଣ ଔଷଧ ଦେଇ ଯାଇଥିଲେ ? ଜ୍ୱର, ସର୍ଦ୍ଦି, ଝାଡ଼ାରେ ଏମିତି ନିତ୍ୟ ବ୍ୟବହାର୍ଯ୍ୟ ସାଧାରଣ ଔଷଧଗୁଡ଼ିଏ ଅନେକ ଅଛି । ତେବେ ସେ ଜାଣି ପାରିଥିଲେ, ଶିଶୁଟି ସାଂଘାତିକ ବେମାରରେ ଆକ୍ରାନ୍ତ ଥିଲା-ଦୁରାରୋଗ୍ୟ ମେନିଞ୍ଜାଇଟିସ୍ । ମରଣ ତା ମୁଣ୍ଡ ଉପରେ ଅପେକ୍ଷା କରି ରହିଥିଲା, ରୋଗ ବିପଦର ସଙ୍କେତ ଟପିଯାଇଥିଲା । ଜିଭ ସଙ୍କୁଚିତ ହୋଇ-ଯାଇଥିଲା । ଆସନ୍ନ ମୃତ୍ୟୁ ସଙ୍ଗେ ସଂଘର୍ଷ କରୁଥିଲା ଶିଶୁଟି । ଡାକ୍ତରବାବୁ ଚିନ୍ତା କଲେ । କେଉଁ ବଟିକାର ଏପରି ଅଲୌକିକ ଗୁଣ ? ତାଙ୍କ ବିଦ୍ୟାଶକ୍ତି ଇତସ୍ତତଃ ହେଉଥିଲା ।

ଡାକ୍ତରବାବୁଙ୍କୁ ଦେଖି ଶ୍ରାବଣୀ ଦେହକୁ ସଂଯତ କରିଦେଲା । ଧଡ଼ ପଡ଼ ହୋଇ ପୁଅକୁ ତଳେ ଥୋଇ ଦେଇ ଡାକ୍ତରଙ୍କ ପାଦତଳେ ପ୍ରଣତି ଜାଣିଲା । ପୁଅ ଗୁରୁଣ୍ଡିଲା । କୃତଜ୍ଞତାପୂର୍ଣ୍ଣ ଛଳ ଛଳ ଆଖିରେ କହିଲା –

: ତମେ ଦୟାର ଅବତାର, ମୋ ପୁଅକୁ ବଞ୍ଚାଇଦେଲ ବାବୁ । ମହାବିପତ୍ତିରୁ ନିଆଣ୍ଟିକୁ ରକ୍ଷାକଲ । ବାବୁ, ମୋ ପାଖେ କିଛି ପଇସା ନାହିଁ । ବହୁତ ଗରିବ ମୁଁ, କ'ଣ ମୁଁ ତମକୁ ଦେବି ? ଭଗବାନ ତମର ମଙ୍ଗଳ କରନ୍ତୁ । ତମର ଯଶ ବ୍ୟାପିଯାଉ ଗଇଜ ସାଗ ... ।



Digitized by PPRACHIN, SOA

ଡାକ୍ତରବାବୁ କିନ୍ତୁ ଭିନ୍ନ ଚିନ୍ତା କରୁଥିଲେ । ବୁଝିନଥିଲେ ଶିଶୁଟିର ଆରୋଗ୍ୟ ରହସ୍ୟ । ଠିକ୍ ଏଇ ଭଳି ଏକ ରୋଗାକ୍ରାନ୍ତ ଶିଶୁକୁ ବଞ୍ଚାଇବା ପାଇଁ ଗତ ରାତିରେ ସେ ଅକ୍ଲାନ୍ତ ପରିଶ୍ରମ କରି ହତାଶ ହୋଇଥିଲେ । ଧନିକ ପରିବାରର ଶିଶୁଟିଏ । ଏଇ ଝାଡ଼ା, ବାନ୍ତି ଜ୍ୱରରୋଗ—ଆକ୍ୟୁଟ୍ ମେନିଞ୍ଜାଇଟିସ୍ । ତାଙ୍କର ସବୁ ଡାକ୍ତରୀ ଜ୍ଞାନ, ଅଭିଜ୍ଞତା ଏବଂ ଅବ୍ୟର୍ଥ ଔଷଧ, ଇଂଜେକ୍ସନ୍, ସାଲାଇନ୍ ଆଦି ପ୍ରୟୋଗ କରି ଶିଶୁର ଜୀବନ ରକ୍ଷାକରି ପାରି ନଥିଲେ । ମା' କୋଳରୁ ନିର୍ଦ୍ଦୟ ଯମ ଶିଶୁଟିକୁ ଓଟାରି ନେଇଗଲା । ଦୁଃଖ ମନରେ ଡାକ୍ତର ଘରକୁ ଫେରିଥିଲେ ଦଶ । ହୁଏତ ଏଇ ଦରିଦ୍ର ଶିଶୁଟି ଆଦୌ ଚିକିତ୍ସା ନ ପାଇ ମାତ୍ର କେଇଟା ବଟିକା ବିନିମୟରେ ସମ୍ପୂର୍ଣ୍ଣ ରୋଗମୁକ୍ତ ହୋଇ ଖେଳୁଛି ! ତାଙ୍କର ସବୁ ଜ୍ଞାନ ଗାରିମା ହାର ମାନୁଥିଲା ।

ଅନ୍ୟମନସ୍କତା ଭାଙ୍ଗି ମୁହଁରେ ହସର ବିଦ୍ୟୁତ୍ ଖେଳାଇ ଶାନ୍ତ ଗଳାରେ କହିଲେ ଡାକ୍ତର ବାବୁ– ମୁଁ କିଛି କରି ନାହିଁ ଲୋ ବାୟାଣୀ । ତୋ ପୁଅକୁ ଯେ ବଞ୍ଚାଇଛି, ସେ ବହୁ ଶକ୍ତିମାନ, ଅନାଦି ଅନନ୍ତ ପୁରୁଷ । ମୁଁ ନିମିତ୍ତ ମାତ୍ର ! ତାଙ୍କରି ସେବକଟିଏ, ତାଙ୍କରି ନିର୍ଦ୍ଦେଶରେ ପରିଚାଳିତ । ତୋ ପୁଅକୁ ମୁଁ ଆଶୀର୍ବାଦ କରୁଛି, ସେ ଗୋଟିଏ ଭଲ ମଣିଷ ହେଉ ।

ଡାକ୍ତରବାବୁ ଘର ଭିତରକୁ ଯାଇ ଔଷଧ ଥାକରୁ ଆଉ କେତେ ଗୁଡ଼ିଏ ଜରିମୁଦା ବଟିକା, ତରଳ ଔଷଧ ଶିଶି ଏବଂ ଗୁଣ୍ଡକ୍ଷୀର ଡ଼ବାଟିଏ ଶ୍ରାବଣୀ ହାତକୁ ବଢାଇ ଦେଲେ । ଶ୍ରାବଣୀ କୃତଜ୍ଞ ଅନୁଭବ କରି ସେ ଗୁଡ଼ିକୁ କାନିରେ ବାନ୍ଧି ଡାକ୍ତରଙ୍କୁ ଆଉଥରେ ଜୁହାର ହେଲା । ସହର ଭିତରକୁ ପାଦ ବଢେଇଲା । ସେ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ଡାକ୍ତର ତାକୁ ଚାହିଁ ରହିଥିଲେ ନିର୍ନିମେଷ ନୟନରେ । ମହାଶକ୍ତିର ସତ୍ତା ଅନୁଭବ କରୁଥିଲେ ସେ ।

ଜୀବନ ଓ ମୃତ୍ୟୁ ମନୁଷ୍ୟର ଅଧୀନତା ସ୍ୱୀକାର କରେନାହିଁ । ବରଂ ତାର ଆଜ୍ଞାଧୀନ । ସେତ ଏକ ଦୁର୍ଭେଦ୍ୟ ଶକ୍ତି, ଯାହାର ଆଦି ନାହିଁ କି ଅନ୍ତ ନାହିଁ । ଗର୍ବିତ ମାନବର କ୍ରମାର୍ଜିତ ଜ୍ଞାନ କ୍ରମଶଃ



Digitized by PPRACHIN, SOA

ଅଜ୍ଞତା ସ୍ୱୀକାର କରୁଛି । ଡାକ୍ତର କେବଳ ସେହି କଥା ଚିନ୍ତା କରୁଥିଲେ ବହୁ ବେଳ ପର୍ଯ୍ୟନ୍ତ । ଅଦ୍ଭୁତ ।

କଟକ ସହର ଉପକଣ୍ଠରେ ନୟାବଜାର ଅଞ୍ଚଳ । ଅଞ୍ଚଳର ଶେଷ ଆଡ଼କୁ ଗୋଟିଏ ପ୍ରକାଣ୍ଡ ହତା ଭିତରେ ଦ୍ୱିତଳ ବିଶିଷ୍ଟ ସୁନ୍ଦର ପ୍ରାସାଦଟିଏ ନିର୍ମିତ । ପୁରୁଣା ହେଲେ ହେଁ ନୂତନ ରଂଗରେ ଶୋଭିତ । ଆମ୍ର, ବଉଳ, ନାରିକେଳ ଆଦି ଘନବୃକ୍ଷ ଗୃହ ଉଚ୍ଚତାକୁ ଅତିକ୍ରମ କରି ଅଟ୍ଟାଳିକାର ଅଗ୍ରଭଗକୁ ପତ୍ରାଚ୍ଛାଦିତ କରିଛନ୍ତି । ସାମନାରେ ଫାଟକ ପର୍ଯ୍ୟନ୍ତ ପୁଷ୍ପୋଦ୍ୟାନ ବିବିଧ ରଂଗ, ବିଭିନ୍ନ ଢଙ୍ଗର ପୁଷ୍ପ ଲତାର ଉଦ୍ୟାନଟି ଉନ୍ନତ ଏବଂ ରୁଚି ସମ୍ପନ୍ନ । କେଉଁ ବଡ଼ ଲୋକର ବାସଗୃହ ନିଶ୍ଚୟ ।

ହତାରେ ସୁ-ଉଚ୍ଚ ଲୌହ ଫାଟକ ରାଜରାସ୍ତାକୁ ଲାଗି ରହିଛି, ସିମେଣ୍ଟର ପ୍ଳାକାରଟିଏ ସଂଯୋଗ କରୁଛି ରାସ୍ତା ସହିତ । ଶ୍ରାବଣୀ ପ୍ରବେଶ ପଥର ପ୍ଳାକାର ଉପରେ ବସିଥିଲା । ତା ପୁଅ ଧୂଳି ସହିତ ଖେଳରତ ଥିଲା । ଖେଳରେ ମାତି ଯାଇଥିଲା । ଟାଣିଲେ କୋଳକୁ ଆସୁ ନ ଥିଲା । ଶ୍ରାବଣୀ ପଥଚଲା କ୍ଳାନ୍ତି ମେଣ୍ଟାଉଥିଲା । ଆଖିକୁ ଛାଇନିଦ ମାଡ଼ି ମାଡ଼ି ଆସୁଥିଲା, ତଥାପି ସେ ନିଜକୁ ଟାଗିଦ୍ କରୁଥିଲା । ମନ ତା'ର କେବଳ ପୁଅଠେଇଁ । ଖେଳୁଛି ଖେଳୁ, ନିରାପଦ ସ୍ଥାନ । ଗାଡ଼ି ମଟର ନାହିଁ ।

ହଠାତ୍ ମୁଖ୍ୟ ରାସ୍ତାରୁ ମୋଡ଼ ନେଇ ନୂଆ କାର୍‌ଟିଏ ଫାଟକ ଆଡ଼କୁ ମାଡ଼ି ଆସିଲା । ଶ୍ରାବଣୀ ଆଖିରୁ ନିଆଁ ଝରିପଡ଼ିଲା । ମୋ ପୁଅ, ମୋ ପୁଅ କହି ଦୌଡ଼ି ଯାଇଥିଲା ପୁଅ ପାଖକୁ । ଗାଡ଼ିର ବ୍ରେକ୍ ଦିଆ ଯାଇଥିଲେ ମଧ୍ୟ ଚକ ଆଗକୁ ଘୁଷୁରି ଯାଇଥିଲା ଖଣ୍ଡେ ବାଟ । ପୁଅକୁ ରାସ୍ତାରୁ ଉଠେଇ ନେଲାବେଳେ ଆଘାତ ଲାଗିଥିଲା ପୁଅ ମୁଣ୍ଡରେ ଏବଂ ନିଜ ହାତରେ । ତା ପୁଅ ସଂଜ୍ଞାହୀନ ହୋଇ



Digitized by PPRACHIN, SOA

ପଡ଼ିଥିଲା । ଶ୍ରାବଣୀ ଦେହରୁ ଜୀବନ ଛାଡ଼ିଗଲା । ତଡ଼ିତ ଆଘାତରେ ମୂକ ବନିଗଲା ଭଳି ଶ୍ରାବଣୀ ଷାଣୁ ପାଲଟି ଯାଇଥିଲା, କିଛି କଥା କହି ପାରି ନ ଥିଲା । ଆଖିକୁ ଜଳକା ଦିଶିଲା । ଘଟଣାଟି ଘଟିଗଲା ଆଖି ପିଛୁଳାକେ । କାକୁସ୍ତ ସ୍ୱରରେ ଚିତ୍କାର କରି କହିଲା – ହେ ଭଗବାନ ! ମୋ ପିଲାର କ'ଣ ହେଲା ? ଚେତାଶୂନ୍ୟ ଶିଶୁକୁ କାନ୍ଧରେ ପକାଇ ଶ୍ରାବଣୀ ବୁକୁ ଫଟାଇ କାନ୍ଦିଲା । ଅତ୍ୟନ୍ତ କରୁଣ ଥିଲା ତାର ବିଳାପ ।

ତତ୍‌କ୍ଷଣାତ୍ ଗାଡ଼ି ଭିତରୁ ଓହ୍ଲାଇ ପଡ଼ିଥିଲେ ଭଦ୍ର ମହିଳା ଏବଂ ଭଦ୍ରବ୍ୟକ୍ତି । ସେମାନେ ମଧ୍ୟ ଆତଙ୍କିତ ହୋଇ ପଡ଼ିଥିଲେ । ବାବୁଆଣୀ କାନ୍ଧରୁ ଆହତ ପିଲାକୁ ଟାଣି ନେଇ କୋଳରେ ରଖି ଆଉଁସିଲେ । ବାବୁ ମଧ୍ୟ ଅତି ବ୍ୟସ୍ତ ହୋଇ ଶିଶୁ ଦେହରୁ ଧୂଳି ଝାଡ଼ିଲେ । ସାମାନ୍ୟ ଆଶ୍ୱସ୍ତ ହେଲେ । ଦେହର କେଉଁଠି ହେଲେ ରକ୍ତ ବିନ୍ଦୁ ନାହିଁ । ଆଘାତ ଜୋର ହୋଇନି । ରକ୍ଷା । ବୁଢ଼ା ଜୀବନରେ ଶିଶୁ ହତ୍ୟା ପରି ମହାଦୋଷରୁ ଅନ୍ତତଃ ରକ୍ଷା ପାଇଛନ୍ତି । ମହାକାଶକୁ ଲକ୍ଷ୍ୟ କରି ଦୁଇହାତ ଉପରକୁ ପ୍ରସାରିତ କଲେ, ହାତ ଯୋଡ଼ିଲେ ।

ଶ୍ରାବଣୀ ଅଧୈର୍ଯ୍ୟା ହୋଇ ପଡ଼ିଥିଲା । ପୁଣି ଗୋଟିଏ ବଡ଼ ବିପଦ ତାକୁ ବିପର୍ଯ୍ୟସ୍ତ କରିଛି । ତା' ନୟନ ପତୁଳା ଦୁର୍ଘଟଣାଗ୍ରସ୍ତ । କ'ଣ କହିବ, କ'ଣ କରିବ କିଛି ଚିନ୍ତା କରି ପାରୁ ନ ଥିଲା । ଆତ୍ମା ଖାଲି ହାହାକାର କରୁଥିଲା । ଛାତି ଉଠୁଥିଲା, ପଡୁଥିଲା; ନାକ ପୁଡାରେ ପବନର ଗତି ପ୍ରଖର ହୋଇଥିଲା । ଏମାନେ ଉଚ୍ଚ ଲୋକ, ଧନବାନ ବ୍ୟକ୍ତି । କ'ଣ କହିବ ? ଦୀର୍ଘଶ୍ୱାସ ଛାଡ଼ିଲା କେବଳ ।

ସେମାନେ ପୁଅକୁ ଘର ଭିତରକୁ ଡୋକାଇ ନେଇ ଶୁଶ୍ରୂଷା ଆରମ୍ଭ କରି ଦେଇଛନ୍ତି । ଗରିବ ପିଲା ବୋଲି ଘୃଣା ନାହିଁ, ମନରେ ଟିକେହେଲେ ସଙ୍କୋଚ ନାହିଁ । ପିଲା ମଖମଲ ଚାଦର ବିଛା କୋମଳ ବିଛଣାରେ



Digitized by PPRACHIN, SOA

ଶୋଇଛି । ଉଷ୍ମ ଜଳ ଏବଂ ସୁଗନ୍ଧ ସାବୁନରେ ତା'ର ଦେହ ପୋଛା ଯାଇଛି । ତାକୁ ଆରାମ ଦରକାର । ଶୀତଳ ଯନ୍ତ୍ର ଘରକୁ ଥଣ୍ଡା ରଖିଛି । ପ୍ରାଥମିକ ଚିକିତ୍ସାପରେ ବାବୁ ଫୋନ ଉଠାଇଲେ ।

: କିଏ, ମନୋଜ ?

: ହଁ, କହୁଛି ।

: ମୁଁ ଅଭୟ କହୁଛି । ଚଞ୍ଚଳ ମୋ ଘରକୁ ଆସ । ମୁଁ ଗୋଟିଏ ଆକ୍ସିଡେଣ୍ଟ କରି ପକାଇଛି । ଗରିବ ଶିଶୁଟିଏ ......

: ପିଲା କିପରି ଅଛି ?

: କେଉଁଠି ଆଘାତ ଲାଗିଛି ଜଣାପଡୁନି । ତେବେ ସେ ଅଲିଜିଆ ହୋଇ ଶୋଇଛି । ମୁଁ ବଡ଼ ଚିନ୍ତିତ ଅଛି । ଶୀଘ୍ର ଆସୁଛ ତ ? ବଡ଼ ଭୟ ଲାଗୁଛି ......

: ଏଇ ଗଲି ।

ଡାକ୍ତର ମନୋରଂଜନ ଅବିଳମ୍ବେ ଉପସ୍ଥିତ ହୋଇଗଲେ । ଶଯ୍ୟାଶାୟୀ ଶିଶୁଟି ଉପରେ ତାଙ୍କର ନଜର ପଡ଼ିଲାମାତ୍ରେ ସେ ଚମକି ଉଠିଲେ । ଏତ ସେଇ ପିଲାଟି ଯାହାର ଜୀବନରକ୍ଷା ଅତି ଆଶ୍ଚର୍ଯ୍ୟଜନକ ଭାବେ ହୋଇଥିଲା ଗତକାଲି । ବିଶେଷ ବାକ୍ୟ ବିନିମୟ ନ କରି ପିଲାର ମସ୍ତିଷ୍କ, ହୃତ୍‌ପିଣ୍ଡ, ପିଞ୍ଜରା, ନାକ, କର୍ଣ୍ଣ ଆଦି ବିଭିନ୍ନ ଡାକ୍ତରୀ ଯନ୍ତ୍ର ସାହାଯ୍ୟରେ ପରୀକ୍ଷା କରି ଆଶ୍ୱସ୍ତ ବୋଧକଲେ ଏବଂ ଦରହସି କହିଲେ – ସେ ସମ୍ପୂର୍ଣ୍ଣ ସୁସ୍ଥ ଅଛି, ବ୍ୟସ୍ତ ହେବାର କୌଣସି କାରଣ ନାହିଁ । ସେ ବର୍ତ୍ତମାନ ବିପଦମୁକ୍ତ ...... ।

ଡାକ୍ତର ସିରିଞ୍ଜ ପ୍ରସ୍ତୁତ କରି ନିଦ୍ରା ଇଂଜେକ୍‌ସନଟିଏ ଫୋଡ଼ିଥିଲେ କେବଳ । ବାଧକାକୁ ବିଶ୍ରାମ ହିଁ ଆରୋଗ୍ୟ-ଔଷଧ ।

ଶ୍ରାବଣୀ ଡାକ୍ତରବାବୁଙ୍କୁ ଚିହ୍ନିପାରି ତାଙ୍କ ପାଦଛୁଇଁ ବାରମ୍ବାର ପ୍ରଣିପାତ କରୁଥିଲା, ବିକଳରେ ମିନତି କରୁଥିଲା । ପୁଅର ପ୍ରାଣରକ୍ଷା



Digitized by PPRACHIN, SOA

ପାଇଁ ମା'ର ଆତୁର ଆବେଦନ ଡାକ୍ତର ଆଖିରେ କିଛି ଅସ୍ୱାଭାବିକ ଦୃଶ୍ୟ ନୁହେଁ । ମାତୃ ହୃଦୟ ସୃଷ୍ଟିରେ ସବୁଠୁ ସରଳ, ତରଳ, ବିରଳ । ସନ୍ତାନର ସର୍ବସୁଖ ପାଇଁ ସେ ସବୁ କିଛି ତ୍ୟାଗ କରିଥାଏ । ଭଦ୍ରମହିଳା ଶ୍ରାବଣୀକୁ ସାନ୍ତ୍ୱନା ଦେଉଥାନ୍ତି – କିଛି ହେବନି ତୋ ପୁଅର, ସେ ଶୋଇଛି, ଭଲଅଛି । ଆଉ କାନ୍ଦ ନାହିଁ, ଭଗବାନ ହିଁ ଭରସା । ବ୍ୟସ୍ତ କାହିଁକି ହେଉଛୁ ? ଡାକ୍ତରତ ପାଖେ ପାଖେ ଅଛନ୍ତି ।

ଡାକ୍ତରଙ୍କ ମୁହଁରୁ ଅଭୟ ବଚନ ଶୁଣି ଅଭୟାନନ୍ଦ ଏବଂ ତାଙ୍କ ପତ୍ନୀ ସୁଶୀଳାଦେବୀ ସୁସ୍ଥ ଅନୁଭବ କଲେ । ଅନ୍ତତଃ ଦମ୍ପତିଦ୍ୱୟ ଏକ ପାତକରୁ ଖୁବ୍ ଅଳ୍ପକେ ରକ୍ଷା ପାଇଛନ୍ତି । ବୃଦ୍ଧ ବୟସରେ ଯଦି ଗୋଟାଏ କିଛି ମୃତ୍ୟୁଜନିତ ଦୁର୍ଘଟଣା କରି ବସିଥାନ୍ତେ, ଅବଶିଷ୍ଟ ଜୀବନ ଦୁଃଖମୟ ହୋଇଥାନ୍ତା, ଅନୁତାପ ଅନଳରେ ଜୀବନ ବିତିଥାନ୍ତା । ସନ୍ତାନ ଅଭାବରୁ ତାଙ୍କ ଘର ଶୂନ୍ୟ ପଡ଼ିଛି, କୋଳ ଅପୂର୍ଣ୍ଣ ରହିଛି । ତିନୋଟି ଶିଶୁ ସୁଶୀଳାଙ୍କ ଗର୍ଭରୁ ବିଦାୟ ନେଇଛନ୍ତି । ଦୁଇଟି ସନ୍ତାନ ପ୍ରସବ ପରେ ପରେ ନାହିଁ ନ ଛିଡ଼ିବା ପୂର୍ବରୁ କୋଳତ୍ୟାଗ କରିଛନ୍ତି । ଡାକ୍ତର ମନୋରଞ୍ଜନ ଏସବୁ ଘଟଣାର ପ୍ରତ୍ୟକ୍ଷଦର୍ଶୀ । ଗର୍ଭବେଳ ଠାରୁ ପ୍ରସବ ପର ମୁହୂର୍ତ୍ତ ପର୍ଯ୍ୟନ୍ତ ସୁଶୀଳା ତାଙ୍କ ଦ୍ୱାରା ଚିକିତ୍ସିତା ବନ୍ଧୁ ପତ୍ନୀ । ଶିଶୁ ବିହୁନେ ଏ ଘର ଶ୍ରୀହୀନ । ଏବେ ଅବସର ସମୟ ବୁଢ଼ାବୁଢ଼ୀ ଧର୍ମକର୍ମରେ ବ୍ୟୟ କରୁଛନ୍ତି । ଏହି ଦୁଃଖାବସ୍ଥାରେ ପରର ପୁଅଟିଏ ଯଦି ତାଙ୍କ ଅବହେଳା ବା ଭାଗ୍ୟଦୋଷରୁ ତାଙ୍କ ଗାଡ଼ି ଚକାତଳେ ପ୍ରାଣହରାଇଥାନ୍ତା, କେଡ଼େ ପାପ ମୁଣ୍ଡାଇ ନ ଥାନ୍ତେ ସେମାନେ !

ଡାକ୍ତର ମନୋରଞ୍ଜନ କହିଲେ – ବୁଝିଛ ଅଭୟ, ଏ ଶିଶୁଟିର ଭାଗ୍ୟ ଖୁବ୍ ଟାଣପରି ମନେ ହେଉଛି । ସେ ଅମର । କୌଣସି ବିପଦ ତା'ର କ୍ଷତି କରିବ ନାହିଁ । ତାର କପାଳ ଭଲ । ତା'ର ଭବିଷ୍ୟତ ଯେମିତି ଉଜ୍ଜ୍ୱଳ ଦିଶୁଛି ... ... ।

ଡାକ୍ତରବନ୍ଧୁଙ୍କ ଉକ୍ତିର ତାତ୍ପର୍ଯ୍ୟ ବୁଝି ନ ପାରି ଆଶ୍ଚର୍ଯ୍ୟ ଆଖିରେ ଚାହିଁ ରହିଲେ ଅଭୟାନନ୍ଦ ଏବଂ ସୁଶୀଳା ଦେବୀ । ମନୋରଂଜନ



Digitized by PPRACHIN, SOA

ଗତକାଲିର ଅଲୌକିକ ଘଟଣାଟିକୁ ସଂକ୍ଷେପରେ ବୟାନ କଲେ । ସମସ୍ତେ ଚକିତ ଏବଂ ଚମତ୍କୃତ ହେଉଥିଲେ ।

ଶ୍ରାବଣୀ ନୀରବରେ ଆଖି ପୋଛୁଥିଲା । ଆଖିରେ ତା'ର ଥିଲା ଆନନ୍ଦ ଓ ବିଷାଦର ଅଶ୍ରୁ । ସେ ଆନନ୍ଦିତା ଥିଲା କାରଣ ତା' ପୁଅ ମରଣ ମୁହଁରୁ ଅଳ୍ପକେ ବର୍ତ୍ତିଛି । ସେ ବିଷାଦଗ୍ରସ୍ତା ଥିଲା, କାରଣ ବାପ ଛେଉଣ୍ଡ ପୁଅର ଥଇଥାନ ସମସ୍ୟା, ଭବିଷ୍ୟତ ଚିନ୍ତା ତାକୁ ବିପନ୍ନ କରିଥିଲା । ଯେଉଁଠି ପେଟକୁ ମୁଠାଏ ଦାନା ନାହିଁ, ଦେହକୁ ଖଣ୍ଡେ କନା ନାହିଁ, ରହିବାପାଇଁ ଗୁଖଣ୍ଡେ ସ୍ଥାନନାହିଁ, ପ୍ରତି ମୁହୂର୍ତ୍ତରେ ମୃତ୍ୟୁ ମୁଣ୍ଡ ଉପରେ ବସିଛି, ସେଠି କ'ଣ ମନର ଏତେ ବଡ଼ ଗୁରୁ ଆଶାନେଇ ସେ ସଫଳ ହୋଇ ପାରିବ ? ତା'ର ଉଚ୍ଚାଭିଳାଷ ଚରିତାର୍ଥ ହେବା କ'ଣ ସମ୍ଭବ ? ମନ ଯଦି ଘୋଡ଼ା ବନିଯାନ୍ତା ସମସ୍ତେ ତା' ପିଠିରେ ବସି ବୁଲନ୍ତେ । ଶ୍ରାବଣୀ ମନ ଭିତରେ ହତାଶଭାବ ଅନୁଭବ କରୁଥିଲା ।

ମନୋରଂଜନ ଏବଂ ଅଭୟାନନ୍ଦ ଅନେକ ଦିନର ଅନ୍ତରଙ୍ଗ ବନ୍ଧୁ । ବାଲ୍ୟବନ୍ଧୁ । ସାଙ୍ଗ ହୋଇ ପାଠ ପଢୁଥିଲେ । ମନୋରଂଜନ ଡାକ୍ତରୀ ପାଶକରି ଘରେଇ ଚିକିତ୍ସା ଆରମ୍ଭ କରିଥିଲେ । ବେଶ୍ ପ୍ରତିଷ୍ଠିତ । ପରିବାର ସୀମିତ । ଅର୍ଥ ପ୍ରତି ବିଶେଷ ଲାଳସା ନାହିଁ ତାଙ୍କର । ସେବା ମନୋବୃତ୍ତି ନେଇ ଜୀବିକାର୍ଜ୍ଜନ କରନ୍ତି । ସନ୍ତୋଷରେ କାଳ କାଟନ୍ତି । ସେହିପରି ଅଭୟାନନ୍ଦ ଆଇନ୍ ପାଠ ପଢି ଓକିଲାତି ଆରମ୍ଭ କରିଥିଲେ । ସେଥିରେ ସେ ବେଶ୍ ନାମ ଅର୍ଜ୍ଜନ କରିଥିଲେ । ପରେ ତାଙ୍କ କାର୍ଯ୍ୟଦକ୍ଷତା ଯୋଗୁଁ ଉଚ୍ଚନ୍ୟାୟାଳୟରେ ବିଗ୍ଭରପତି ଭବେ ଅଧିଷ୍ଠିତ ହୋଇଥିଲେ ଏବଂ ସର୍ବଶେଷରେ ମୁଖ୍ୟ ନ୍ୟାୟାଧୀଶ ଭବେ ଅବସର ଗ୍ରହଣ କରିଥିଲେ । ବର୍ତ୍ତମାନ ଅବସରପ୍ରାପ୍ତ ଜୀବନ । ଖାଲି ବସି ରହିବାକୁ ଭଲ ଲାଗୁନି । କଦବା କ୍ୱଚିତ କୋର୍ଟ କଚେରୀ ଯାଉଛନ୍ତି, ଓକିଲାତି ଅଭ୍ୟାସ ରଖିଛନ୍ତି । ଦରିଦ୍ରକୁ ଦାନ, ଗରିବକୁ ସାହାଯ୍ୟ ଅବ୍ୟାହତ ରଖିଛନ୍ତି । ବହୁ ଗରିବ ଛାତ୍ର ମଧ୍ୟ ତାଙ୍କର ସାହାଯ୍ୟପ୍ରାର୍ଥୀ । ଏବେବି ଅନେକ ଛାତ୍ର ଆସନ୍ତି—ଆର୍ଥିକ ସାହାଯ୍ୟ ପାଇଁ, ପରାମର୍ଶ ପାଇଁ,



Digitized by PPRACHIN, SOA

କିଏ ବା ଆଶୀର୍ବାଦ ପାଇଁ । ସମସ୍ତଙ୍କୁ ସେ ସାହାଯ୍ୟ ବାଣ୍ଟିଥାନ୍ତି ବିନା ସଂକୋଚରେ । କିନ୍ତୁ ଏବେ ବହୁ ସମୟ ସେ ଧର୍ମଚର୍ଚ୍ଚାରେ ମନ ଦେଇଥାନ୍ତି । ଏତେ ବଡ଼ ପ୍ରକାଣ୍ଡ ଗୃହଟି ଶୂନ୍ୟ ହୋଇପଡ଼ିଛି–କେବଳ ସ୍ୱାମୀ ସ୍ତ୍ରୀ ଏବଂ ପରିଗ୍ରହକ । ସନ୍ତାନବିହୀନ ଘର ଖାଁ ଖାଁ ଡ଼ାକୁଛି । ଗାଁ ହରିଦାସପୁରରେ ମଧ୍ୟ ତାଙ୍କର ଅଚଳାଚଳ ସମ୍ପତ୍ତି । ଭୋଗ କରିବାକୁ କେହି ନାହିଁ । ସେଠାରେ ମଧ୍ୟ ମଠ, ମନ୍ଦିର ତୋଳିଛନ୍ତି, ସାଧୁ ସନ୍ଥଙ୍କ ଯତ୍ନ ନେଉଛନ୍ତି । ନିଃସନ୍ତାନର ଦାରୁଣ ଯନ୍ତ୍ରଣା ପରିଣତ ବୟସରେ ଉତ୍କଟତର ହୋଇ ଉଠିଛି । ବାର୍ଦ୍ଧକ୍ୟ–ଜୀବନରେ ନାହିଁ ପ୍ରାଣୋଚ୍ଛଳତା । ନିଃସଙ୍ଗତାର ସ୍ୱର ତୀବ୍ର ହୋଇ ଉଠିଛି ଏବେ ।

ଏମିତି ମଝିରେ ମଝିରେ ଦୁଇ ବନ୍ଧୁ ମିଳିତ ହୁଅନ୍ତି । ପାରିବାରିକ ସୁଖ ଦୁଃଖ ଭଲମନ୍ଦ ଆଲୋଚନା କରନ୍ତି, ବନ୍ଧୁ ସୁଲଭ ପରାମର୍ଶ ଆଦାନ ପ୍ରଦାନ କରନ୍ତି । ଚା’ ପାନ ଅବସରରେ ମନୋରଂଜନ ଉତ୍‌ଥାପନ କଲେ, – ଅଭୟ, ତମେତ ଅନେକ ଥର କହିଛ ପୋଷ୍ୟପୁତ୍ର କଥା । ଏଥର କ’ଣ କିଛି ଚୂଡ଼ାନ୍ତ କଲଣି ? ସୁଶୀଳାଙ୍କର କ’ଣ ଇଚ୍ଛା ?

: ଆମେ ଭାବୁଛୁଁ, ଅନାଥାଶ୍ରମରୁ ପିଲାଟିଏ ଆଣି ପାଳିବା ପାଇଁ । ଥିଲା ଘରୁ ପିଲା ଆଣି ପାଳିବାରେ ସେବା ଆଉ କ’ଣ ରହିଲା ? ପୂର୍ଣ୍ଣପାତ୍ରରେ ପାଣି ଢାଳିଲେ ଯାହା ହୁଏ । ବରଂ ଯାହାର କେହି ନାହିଁ, ତାକୁ ସ୍ନେହ ଦେଇ ପାଳିବାରେ ଅନେକ ସନ୍ତୋଷ, ଆତ୍ମତୃପ୍ତି ଅଛି । ଅନାଥ ଶିଶୁକୁ ମଣିଷ କରିବାରେ ହିଁ ଅଛି ପ୍ରକୃତ ପୁଣ୍ୟ । ସେଇଭଳି ଲକ୍ଷ୍ୟ ଆମର ରହିଛି । ପିତୃ ଅର୍ଜିତ ଧନ ଏବଂ ସ୍ୱ-ଅର୍ଜିତ ସମ୍ପତ୍ତି ସେଇ ଅନାଥମାନଙ୍କ ଉନ୍ନତିରେ ବିନିଯୋଗ ହେବ । ଏତ ମୋର ଏକ ପ୍ରକାର ଊଇଲ । ତୁମ ବନ୍ଧୁପତ୍ନୀଙ୍କର ମଧ୍ୟ ସେଇଭଳି ମତ । ତେବେ କିଭଳି ଭାବେ କରାଯିବ ତାର ବାସ୍ତବ ରୂପରେଖ ନେଇ ତମ ସୁଚିନ୍ତିତ ପରାମର୍ଶ ଲୋଡ଼ିବି ବୋଲି ଭାବୁଥିଲି ।



Digitized by PPRACHIN, SOA

: ଛେଡ଼ିବେ ଆଉ କ'ଣ ? ଘଟଣା ଚକ୍ରରେ ଅନାଥଟିଏ ତ ତୁମ ଘରେ ଉପସ୍ଥିତ । ଆଉ ଡେରି କାହିଁକି ?

: ଆରେ ସତେ ତ ! ପ୍ରସ୍ତାବଟି ଖୁବ୍ ଭଲ । ଅଦୃଷ୍ଟର ଇଚ୍ଛା ! ତେବେ ପିଲର ମା' ଯଦି ଆପତ୍ତି କରେ ?

ଡାକ୍ତର ବନ୍ଧୁ ମତ ଦେଲେ – ସେ କାହିଁକି ଆପତ୍ତି କରିବ ? କୌଣସି ମା' କ'ଣ ପୁଅର ରଜାସନ ସୁଖଭୋଗ ପାଇଁ କୁଣ୍ଠା କରେ ? ତା ଅନାଥ ପୁଅ ଉପରେ ହାତୀ କଳସ ଢାଳୁଛି । ସେ ହୁଏତ ଆନନ୍ଦ ବିଭୋର ହୋଇପଡ଼ିବ । ଭଙ୍ଗଣିତ ଗଳାରେ ଅଭୟାନନ୍ଦ କହିଲେ – ପିଲର ମା' ? ସେ କେଉଁଠି ରହିବ ? ବିଧବା ସ୍ତ୍ରୀ । ଖୁବ୍ କମ୍ ବୟସରେ ସ୍ୱାମୀ ହରାଇଛି । ପୁଅକୁ ଛାଡ଼ି ସେ ଆଉ କେଉଁଠି ରହିବା କ'ଣ ସମ୍ଭବ ?

ମନୋରଂଜନ ପୁଣି ମତ ଦେଲେ – ଏଇଠି ରହିଲେ କ୍ଷତି ବା କ'ଣ ? ଜନ୍ମଦାତ୍ରୀ ମା' ଏବଂ ପାଳନକର୍ତ୍ତ୍ରୀ ମାତା, ଉଭୟଙ୍କ ସ୍ନେହାଦାର ପାଇ ପିଲା ସୁଖରେ ରହିବ । ସମସ୍ତେ ସୁଖୀ ହେବେ । ଅଦୃଷ୍ଟର ଇଚ୍ଛା ପୂରଣ ହେବ । ଖୁବ୍ ଭଲ ହୁଅନ୍ତା । କ'ଣ କହୁଛ ?

ଅଭୟାନନ୍ଦ ଚିନ୍ତାକରି କହିଲେ – ସିଦ୍ଧାନ୍ତ ନେବା ପୂର୍ବରୁ ସୁଶୀଳାଙ୍କ ପରାମର୍ଶ ଆବଶ୍ୟକ ।

: ତେବେ ତାଙ୍କ ଇଚ୍ଛାନୁଯାୟୀ କାର୍ଯ୍ୟ ହେଉ । ଯେଉଁ କର୍ମରେ ସେ ଶାନ୍ତି ପାଇବେ, ସୁଖ ଲଭିବେ, ତାହା ହିଁ କାର୍ଯ୍ୟକାରୀ ହେଉ । ମତ ଦେଲେ ମନୋରଂଜନ । ବନ୍ଧୁଦ୍ୱୟଙ୍କର ରୁଦ୍ଧ-କୋଠରୀ ଆଲୋଚନା ଶେଷ ହେଲା । ଡାକ୍ତରବାବୁ ବିଦାୟ ନେଲେ ପରିବାରର ସୁଖ ଶାନ୍ତି କାମନା କରି । ସୁଶୀଳାଦେବୀ ଗୃହ କର୍ମରେ ବ୍ୟସ୍ତ ଥିଲେ । ଘରେ ନନ୍ଦଗୋପାଳ । ତାଙ୍କୁ ଖୁବ୍ ଖୁସି ଲାଗୁଥିଲା । ସେ କର୍ମତତ୍ପର ଏବଂ ଚଞ୍ଚଳ ମୁଖର ହୋଇ ଉଠିଥିଲେ । ନବ ଜୀବନ ଲଭିଲା ଭଳି ତାଙ୍କୁ ମନେ ହେଉଥିଲା ।



Digitized by PPRACHIN, SOA

ପୁଅ ଶୋଇ ରହିଥିଲା ପଲଙ୍କ ଉପରେ । ଶ୍ରାବଣୀ ଚଟାଣରେ ବସିରହି ତାକୁ ଗ୍ରହିଁଥିଲା ଅପଲକ ନୟନରେ । ପୁଅ ହଲ୍‌ଚଲ୍ ହୋଇ ଆଖି ଖୋଲିଲା । ଖୋଜିଲା ବୋଉକୁ । ଶ୍ରାବଣୀ ଉଠିପଡ଼ି ତାକୁ କୋଳକୁ ନେଲା । ବସ୍ତ୍ରାଭରଣ ବକ୍ଷ ଭିତରେ ସ୍ତନ ଯୁଗଳକୁ ପୁଅ ମୁହଁରେ ଦେଲା । ଶିଶୁର ନିଦ୍ରାଭଙ୍ଗ ସ୍ୱର ଶୁଣି ଗୃହକର୍ତ୍ତା ଶୟନ କୋଠରୀରେ ପ୍ରବେଶ କରି ସାରିଥିଲେ । ପବିତ୍ର ଦୃଶ୍ୟଟିରେ ତାଙ୍କ ଆଖି ପୂରିଉଠିଲା । ଏହି ଅବସରେ ପାଟିରେ ଚୁରୁଟ୍‌ଟିଏ ଧରି ଅଭୟାନନ୍ଦ ପ୍ରଶ୍ନ କଲେ – ତୋର ନାମ ?

ଧୀର ଏବଂ ନମ୍ରତା ସହକାରେ ଶ୍ରାବଣୀ କହିଲା – 'ଶ୍ରାବଣୀ' । ବାପା ବୋଉ ଗେହ୍ଲାରେ ଡାକୁଥିଲେ ସାବି, ଶିର ... ସମସ୍ତେ ଡାକନ୍ତି – ସାବି ।

: ପୁଅ ନାଁ କ'ଣ ଦେଇଛୁ ?

ବିଷଣ୍ଣ ବଦନରେ କହିଲା ଶ୍ରାବଣୀ – ଅନାଥ, ଅରକ୍ଷିତ ପିଲାର ନାଁ ଆଉ କ'ଣ ଦେବି ବାବୁ ? ଡାକୁଛି, ଦୁଃଖୀ ।

: କିଏ କହିଲା ସେ ଅନାଥ ବୋଲି ? ଏ ଦୁନିଆଁରେ କେହି ଅନାଥ ନୁହଁନ୍ତି । ସମସ୍ତଙ୍କ ନାଥ ହେଉଛନ୍ତି ସେଇ ସୃଷ୍ଟିକର୍ତ୍ତା । ପ୍ରତ୍ୟେକ ଶିଶୁ, ଧନୀ ଗରିବ – ସମସ୍ତେ ଭଗବାନଙ୍କର ଆଶୀର୍ବାଦ – ଏଥର ଅନାଥ ନ କହି ଶ୍ରୀନାଥ କହିବୁ । ବୁଝିଲୁ ?

ସୁଶୀଳା ଗିଲାସେ ଗରମ ଦୁଧ ଧରି ପ୍ରବେଶ କଲେ । ସାଦରରେ ଗିଲାସଟିକୁ ଶ୍ରାବଣୀ ହାତରେ ଧରାଇ ଦେଇ କହିଲେ– ନେ ପୁଅକୁ ଦେ । ପୁଅର ନାଁ କ'ଣ ଦେଇଛୁ ?

: ମୁଁ ତ ସେଇ କଥା ପଗ୍ରରୁଥିଲି ସାବିକୁ, ହସି ହସି କହିଲେ ଅଭୟାନନ୍ଦ ।



Digitized by PPRACHIN, SOA

ପୁଣି କହିଲେ– ପୁଅର କୌଣସି ନାମ ନିର୍ବାଚନ ହୋଇନି । ସାବି ଡାକୁଛି ଦୁଃଖୀ, କହୁଛି ସେ ଅନାଥ । ସେ କାହିଁକି ଦୁଃଖୀ ବା ଅନାଥ ହେବ ? ମୁଁ କହିଲି ତା' ନାମ ରଖ ଶ୍ରୀନାଥ । ତେବେ ମନୋଜ କହିଛି, ସେ ଅମର । କେଉଁ ନାଁଟି ପସନ୍ଦ ହେଉଛି ତମର ?

ସୁଶୀଳା ହସି କହିଲେ– ମତେ ଲୁଚେଇ ଲୁଚେଇ ଏତେ କଥା କରିଗଲଣି । ମୋର ଆଉ କ'ଣ କହିବାର ଅଛି ଏଥିରେ !

ଅଭୟାନନ୍ଦ କହିଲେ–ତୁମେ ତ ସର୍ବୋମୟ କର୍ତ୍ତୀ । ତୁମ ସୁପାରିଶ ବା ବିନାନୁମତିରେ କ'ଣ କିଛି କରିହୁଏ ? ମନୋଜର ମତ କ'ଣ ଜାଣିଲଣି ?

ସୁଶୀଳା ଆଖି ବିସ୍ତାରିତ କଲେ । ବୈଠକ କୋଠରୀକୁ ସ୍ୱାମୀ ସ୍ତ୍ରୀ ଦୁହେଁ ଗ୍ଲଲିଗଲେ ଗୁପ୍ତ ଆଲୋଚନା ପାଇଁ ।

ଅଭୟାନନ୍ଦ କହିଲେ– ଭଗବାନ ମନକୁ ମନ ଆଣି କୋଳରେ ପିଲଟିଏ ଦେଇଛନ୍ତି । ପିଲଟିକୁ ଦେଖିଲେ ଖୁବ୍ ଭଲ ଲାଗୁଛି । ଗରିବ କୋଳରେ ଏଡ଼େ ସୁନ୍ଦର ଶିଶୁ କେଡ଼େ ଶୋଭା ନ ପାଉଛି !

ସୁଶୀଳା କହିଲେ– ଭଗବାନ ବଡ଼ କପଟୀ । ଅଦ୍ଭୁତ ତାଙ୍କର ଲୀଳା । ସେ ଦାନ କରନ୍ତି ସେଇଠି, ଯେଉଁଠି ଯାହା ଅନାବଶ୍ୟକ । ସେ ଆଖି ବୁଜି ଦିଅନ୍ତି ସେଇଠି, ଯେଉଁଠି ହାହାକାର ପଡୁଛି । ବଡ଼ ଅବିଗ୍ଚରୀ ସେ ।

ସୁଶୀଳା ଦୀର୍ଘଶ୍ୱାସ ତ୍ୟାଗ କଲେ ।

: ଅଭୟାନନ୍ଦ ପ୍ରବୋଧନା ଦେଇ କହିଲେ ଆଉ ବ୍ୟସ୍ତ ବା ଦୁଃଖ କରିବାର କ'ଣ ଅଛି ? ତମ ଇଚ୍ଛା ଉପରେ ସବୁ ନିର୍ଭର କରେ । ଆଉ ଅନାଥାଶ୍ରମ ଯିବା ଦରକାର ନାହିଁ । ଅନାଥ ଆପେ ଆପେ ତମ କୋଳରେ ଉପସ୍ଥିତ । ସେ ଆଉ ଅନାଥ ନୁହେଁ, ଶ୍ରୀନାଥ, ଈଶ୍ୱରଙ୍କ ଇଚ୍ଛା ପୂରଣ ହେଉ ।



Digitized by PPRACHIN, SOA

ସୁଶୀଳା ମନେ ମନେ ସିଦ୍ଧାନ୍ତ କରି ସାରିଥିଲେ । ସ୍ତ୍ରୀ ଲୋକଟିକୁ ଦେଖିଲେ କେହି ଗରିବ ଘର ଝିଅ ବୋହୂ ବୋଲି ଭାବିବନି । ବିନୟୀ ନାରୀ ଜଣେ, ବ୍ୟବହାର ମାର୍ଜିତ, ଭଦ୍ର, ଖୁବ୍ ନମ୍ର, ବଚନରେ ମଧୁରତା । ଅକାଳରେ ସ୍ୱାମୀ ହରେଇଛି, ଦାରିଦ୍ର୍ୟ ଗ୍ରାସ କରିଛି । ଅସୁବିଧାରେ ପଡ଼ି ହାତ ପାତୁଛି । କୋଳର ଶିଶୁଟି ମଧ୍ୟ ମନଲୋଭା । ତାକୁ କୋଳକୁ ଆଣି ସବୁଦିନ ପାଇଁ ନିଜର କରିବାକୁ ଇଚ୍ଛା ହେଉଥିଲା । ଅପେକ୍ଷା କରିଥିଲେ ସ୍ୱାମୀଙ୍କ ସମର୍ଥନ । ଉଭୟଙ୍କ ମନ ମେଳ ଖାଇ ଯିବାରୁ ଏକାବେଳକେ କହିଉଠିଲେ – ସେୟା ହେଉ ।

ଗୋଟିଏ ପ୍ରତିବନ୍ଧକ – ପିଲାର ମା' । ସେ କ'ଣ ତା ନୟନପିତୁଳାକୁ ଛାଡ଼ି ବଞ୍ଚିପାରିବ ?

ସୁଶୀଳା କହିଲେ – ଫଏସଲା ହୋଇଗଲେ ଭଲ । ସେ ଯଦି ପ୍ରସ୍ତାବରେ ରାଜି ନ ହୁଏ, ଆଜି ହିଁ ବିକଳ୍ପ ବ୍ୟବସ୍ଥା କିଛି କରିବାକୁ ପଡ଼ିବ । ତାକୁ ପଚାରି ଯାଉ ।

ସ୍ୱାମୀ ସ୍ତ୍ରୀ ଉଭୟେ ସ୍ନେହାର୍ଦ୍ର ସ୍ୱରରେ କହିଲେ – ସାବି, ତତେ ଆମେ ଗୋଟିଏ ଭଲ ଜିନିଷ ମାଗୁଛୁ । ଦେଇ ପାରିବୁ ?

ଶ୍ରାବଣୀର ଛାତି ଥରିଉଠିଲା । ମନ ଦବିଗଲା । ଏ ଦୁନିଆରେ ପୁତ୍ର ଛଡ଼ା କ'ଣ ବା ତା'ର ଧନ ଅଛି ଦାନ କରିବାକୁ ? କିଛି ସମୟ ବାକ୍ୟଶୂନ୍ୟ ହୋଇପଡ଼ିଲା । ପୁତ୍ର ଭିକ୍ଷା କରୁଛନ୍ତି ଏମାନେ; ବଡ଼ ଲୋକଙ୍କ ମୁହଁରେ ଭିକ୍ଷାଂଦେହିର ଆର୍ତ୍ତସ୍ୱର । କିନ୍ତୁ ଏହା କ'ଣ ସମ୍ଭବ ? କେତେ କଷ୍ଟ, କେତେ ନିର୍ଯ୍ୟାତନା, ତାଡ଼ନା, ବିଡ଼ମ୍ବନା ସହି ବଞ୍ଚିଛି କେବଳ ତା'ରି ପାଇଁ । ତାକୁ ଦଣ୍ଡେ ଛାଡ଼ି ବଞ୍ଚିବା ଅସମ୍ଭବ । ଭଗବାନଙ୍କର ଏ କି ପରୀକ୍ଷା ! ଶ୍ରାବଣୀର ବୁଦ୍ଧି ବାଉଳି ଖାଇଲା । ଚୁପ୍ ରହିଲା । ତା'ର ମନ ଏକ କରୁଣ ଶୋଚନୀୟତାରେ କ୍ଷଣକ ଲାଗି ମ୍ରିୟମାଣ ହୋଇଉଠିଲା ।

: କ'ଣ ଚିନ୍ତା କରୁଛ ?



Digitized by PPRACHIN, SOA

: ମୋର କେହି ନାହିଁ ବାବୁ, ଏଇ ଛୁଆଟି ମୋର ସର୍ବସ୍ୱ, ମୋ ପ୍ରାଣ । ଦୁଃଖୀକୁ ଛାଡ଼ି କିପରି କେଉଁଠି ବଞ୍ଚିବି ? ବୁଦ୍ଧି ବାଟ ଦିଶୁନି ବାବୁ ......

ଅଭୟାନନ୍ଦ ଦୟାର୍ଦ୍ର କଣ୍ଠରେ କହିଲେ – ଏଥିରେ ଚିନ୍ତା କରିବାର କ'ଣ ଅଛି ? ତୁ ବି ଏଠି ରହିବୁ । ସୁଶୀଳା ହସ୍ତକ୍ଷେପ କରି କହିଲେ – ତେବେ ଆମ ଭିତରେ ଗୋଟେ ସାଲିସ ହେଉ । ଦୁନିଆ ଜାଣିବ, ସମସ୍ତେ ଜାଣିବେ, ସେ ମୋ ପୁଅ । ବିଗ୍ରରପତି ଅଭୟାନନ୍ଦଙ୍କ ପୁଅ ଏବଂ ସାବି ଏ ଘରର ଦାସୀ, ଆୟା । କ'ଣ ଗଳିତ ?

ଠୋ କରି ହସିଉଠି କହିଲେ ଅଭୟାନନ୍ଦ – ଚମତ୍କାର ସୁଶୀଳା ତୁମର ବିଗ୍ରର ବୁଦ୍ଧି । ମୁଁ ସିନା ମୋକଦମା ବିଗ୍ରର କରୁଥିଲି । ଫଏସଲା କରିପାରୁ ନ ଥିଲି । ଦୋଷୀକୁ ଅବଶ୍ୟ ଦଣ୍ଡ ଦେଉଥିଲି । ନିର୍ଦ୍ଦୋଷକୁ ଖଲସ କରୁଥିଲି । କିନ୍ତୁ ମୁଁ ଦେଖୁଛି ତମେ ତ ସୁନ୍ଦର ଭାବେ ବଡ଼ ପ୍ରଶ୍ନଟିଏ ସମାଧାନ କରିଦେଲ ମୁହୂର୍ତ୍ତକ ମଧ୍ୟରେ । ତମ ବିଗ୍ରର ଶକ୍ତିକୁ ମୁଁ ପସନ୍ଦ କରେ । ତମକୁ ଅଭିନନ୍ଦନ ଜଣାଉଛି ।

ଶ୍ରାବଣୀର ଶୁଷ୍କ ମୁହଁକୁ ଲକ୍ଷ୍ୟକରି ଅଭୟାନନ୍ଦ କହିଲେ – ତୁ ଏଥର ଖୁବ୍ ଖୁସି ହେବା କଥା । ତୁ ରହିବୁ ଏଇଠି ଏବଂ ତୋର ପୁଅ ମଧ୍ୟ । କେହି କାହାକୁ ଛାଡ଼ିବାର ପ୍ରଶ୍ନ ଉଠୁନି । କେବଳ ଦୁନିଆ ଆଖିରେ ସେ ହେବ ଆମର ପୁତ୍ର, ଆମର ଉତ୍ତରାଧିକାରୀ, ଆମରି କୁଳଚନ୍ଦ୍ରମା । ମନ ଜାଣିଲେ, ଦୁନିଆ ନ ଜାଣିଲେ କ'ଣ ହେଲା ?

ଉକ୍ତିଟି ତାକୁ ହିଁ ପ୍ରଯୁଜ୍ୟ । ସମାଜ ଆଖିରେ ସେ ଚରିତ୍ରହୀନା । କିନ୍ତୁ ତା ମନ ମୁକୁରରେ ସେ ସ୍ୱଚ୍ଛ, ପବିତ୍ର । ସେଥିପାଇଁ ତ ଯଥାର୍ଥରେ ଭାଗବତରେ ବର୍ଣ୍ଣିତ ଅଛି – ମନ ତୋହର ନିଜ ଗୁରୁ, ଉଦ୍ଧବ କେତେ ତୁ ପଗ୍ରରୁ ?



Digitized by PPRACHIN, SOA

ଶ୍ରାବଣୀ ପୁଣି ଚିନ୍ତାକଲା– ଅଳ୍ପ ସମୟ ପୂର୍ବେ ତା'ର ଭବିଷ୍ୟତକୁ ନେଇ ସେ ଖୁବ୍ ଭାରାକ୍ରାନ୍ତ ଥିଲା । ସୁବର୍ଣ୍ଣ ସୁଯୋଗଟିଏ ହାତକୁ ଆସିଛି । ସୁଯୋଗ ଆସେନି ବାରମ୍ବାର । ଥରେ ହାତଛଡ଼ା କଲେ, ଜୀବନଯାକ ପସ୍ତେଇବାହିଁ ସାରହେବ । ବାବୁ ବାବୁଆଣୀଙ୍କ କଣ୍ଠରେ ଭାଗ୍ୟଦେବୀ ବିଜେ କରିଛନ୍ତି । ପୁଅର ମଙ୍ଗଳ ହେବ । ସେ ମଣିଷ ହେବ । ତା'ର ଭବିଷ୍ୟତ ଉଜ୍ଜ୍ୱଳ ହେବ । ହାତୀ ବନସ୍ତରେ ବୁଲିଲେ ବି ରଜାଙ୍କର । ବହୁ ଚିନ୍ତା କରି ଲୁହ ଭିଜା ଆଖିରେ ଶ୍ରାବଣୀ କହିଲା– ଆପଣ ଧର୍ମାବତାର । ବାପଛେଉଣ୍ଡ ଗରିବ ପିଲାର ମଙ୍ଗଳ ପାଇଁ ମା' ସବୁକିଛି ତ୍ୟାଗ କରିପାରେ । ମୁଁ ଆପଣଙ୍କ ମହାନ ହସ୍ତରେ ମୋ ପୁଅକୁ ଅର୍ପଣ କରୁଛି । ସେ ଆଜିଠୁଁ ଆପଣଙ୍କ ପୁତ୍ର ।

ସୁଶୀଳା ସହାସ୍ୟ ବଦନରେ ପୁଅକୁ ସାଉଁଟି ନେଇ ତା' ମୁହଁରେ ଚୁମ୍ବନ ଦେଲେ ଏବଂ କହିଲେ– ଠାକୁର ଛୁଇଁ ତୁ ଶପଥ କର କେବେହେଲେ କୌଣସି ପରିସ୍ଥିତିରେ ତୁ କହିବୁନାହିଁ ଯେ ଏ ତୋର ପୁଅ । ତୁ କେବଳ ଏ ଘରର ରୋଷେଇଆ–ପିଲା ପାଳିକା–ଆୟା ।

: ଶପଥ କରି କହୁଛି, ମା ... ।

: ତିନିବାର ସତ୍ୟ କର ।

: ତିନିବାର ସତ୍ୟ କରୁଛି ।

ଶ୍ରାବଣୀ ଆଖିରେ ଲୁହର ଲହରୀ ମାଳା ... ଅନନ୍ୟୋପାୟ ହୋଇ ପୁଅକୁ ଟେକି ଦେଇଥିଲା ସେମାନଙ୍କ ହସ୍ତରେ ।

ବିଧାତା କାହାପାଇଁ କେତେବେଳେ କ'ଣ ସାଇତି ରଖିଛି କିଏ କହି ପାରିବ ? ସୃଷ୍ଟିର ତତ୍ତ୍ୱ ରହସ୍ୟାବୃତ । ସୃଷ୍ଟିତ କେବଳ ଯୋଗାଯୋଗର ସମଷ୍ଟି ମାତ୍ର । ଅକଳ୍ପିତ ଘଟଣାଟି ଶ୍ରାବଣୀକୁ ବିସ୍ମୟ ବିମୂଢ଼ କରିଥିଲା । ସେ ଅଦୃଷ୍ଟର ଆଦେଶ ପୂରଣ କରିଥିଲା କେବଳ । ନିଜସ୍ୱ ନାହିଁ, ମାଲିକର ନିର୍ଦ୍ଦେଶମତେ ନିର୍ଜୀବ ପିଲାଖେଳନାଟିଏ ଭଳି ଏଠି ସେଠି ହେଉଛି ।



Digitized by PPRACHIN, SOA

ପରମ ସନ୍ତୋଷର ମଧୁର ଗୁଞ୍ଜନ ଘର ବାୟୁମଣ୍ଡଳରେ ଖେଳି ବୁଲିଲା । ଏକ ସ୍ୱର୍ଗୀୟ ଆନନ୍ଦରେ ଅଭୟାନନ୍ଦ ଏବଂ ସୁଶୀଳା ବିଭୋର ହୋଇ ପଡ଼ିଲେ । ପାଞ୍ଜି ପରାମର୍ଶ କଲେ । ପୁଅର ସନକ୍ଷତ୍ର ଦିନ ଗଣନା କରି ସ୍ଥିର କଲେ । ସେହି ଦିନହିଁ ତା'ର ପ୍ରକୃତ ନାମ ସ୍ଥିର କରାଯିବ । ଖୁବ୍ ଆଡ଼ମ୍ବରରେ ଉତ୍ସବ ପାଳିବେ ।

ସୁଖ ସମ୍ବାଦଟି ଅଭୟାନନ୍ଦ ମନୋରଂଜନଙ୍କୁ ଟେଲିଫୋନ୍ ଦ୍ୱାରା ଜଣାଇଥିଲେ । ବିଶ୍ୱାସୀ ବଂଧୁ ମନୋରଂଜନ ଆନନ୍ଦିତ ହୋଇ କହିଥିଲେ– ପୁତ୍ରଲାଭ ପାଇଁ ତୁମ ଦୁହିଁଙ୍କୁ ଅଭିନନ୍ଦନ କରୁଛି । ତମର ପୁତ୍ର ଚିରଂଜୀବୀ ହେଉ । ପୁଅର ଜନ୍ମୋତ୍ସବ କେବେ କରୁଛ ?

: ଖୁବ୍ ନିକଟରେ । ତୁମେହିଁତ ଉତ୍ସବର ମୁଖ୍ୟ ଅତିଥି– ବ୍ରହ୍ମା । ପୁଅର ନାମକରଣ ତୁମେ ହିଁ କରିବ ବୋଲି ସୁଶୀଳାଙ୍କ ଇଚ୍ଛା ।

: ମୁଁ ତ ତା'ର ନାମ ଦେଇ ସାରିଛି ! ସେତ ମୃତ୍ୟୁଞ୍ଜୟୀ, ଅମର !

: ତେବେ ଆନୁଷ୍ଠାନିକଭାବେତ ଘୋଷଣା କରାଯିବା ଉଚିତ ?

: ନିଶ୍ଚୟ, ନିଶ୍ଚୟ । ତମ ପୁତ୍ରକୁ ମୁଁ ଆଶୀର୍ବାଦ କରୁଛି । ପିତାପରି ସେ ହେଉ ଗୁଣବାନ, ଦୟାବାନ ଏବଂ ଯଶବାନ । ଉପଯୁକ୍ତ ପିତାର ଉପଯୁକ୍ତ ଦାୟାଦ । ଟେଲିଫୋନ୍ ମାଧ୍ୟମରେ ଦୁଇବନ୍ଧୁଙ୍କର ବାର୍ତ୍ତା ବିନିମୟ, ଆନନ୍ଦ ଓ ଉଲ୍ଲାସ ଲାଗି ରହିଥିଲା ବହୁସମୟ ପର୍ଯ୍ୟନ୍ତ । ସୁଶୀଳାଙ୍କ ହୃଦୟରେ ଯଶୋଦାର ସନ୍ତାନବାତ୍ସଲ୍ୟତା ଫୁଟି ଉଠୁଥିଲା ।

ପୁଅ ପେଟେ ଦୁଗ୍‌ଧାହାର କରି ମୋଜାଇକ୍ ଚଟାଣରେ ଗୁରୁଣ୍ଡୁଥିଲା । ମୁଣ୍ଡର ଗହଳ ବାଳ, ବେକରେ ତାବିଜ, ଅଣ୍ଟାରେ କଳାସୂତା, ନାହି ପର୍ଯ୍ୟନ୍ତ କେବଳ କୁର୍ତ୍ତା, ତା ତଳକୁ ଫୁଙ୍ଗୁଳା, ଲଙ୍ଗଳା ପୁଅର ମୋହନଟି ନାହି ତଳେ ଝୁଲୁଥିଲା । ବାବୁ ମା'ଙ୍କ ଅଗାଧ ଆଖିକୁ ଦୃଶ୍ୟଟି ମୁଗ୍‌ଧକର ମନେ ହେଉଥିଲା । ସଙ୍ଗେ ସଙ୍ଗେ ସେମାନେ କାରୁ



Digitized by PPRACHIN, SOA

ଛୁଟାଇଥିଲେ ବଜାରକୁ । ଖରିଦ କରି ଆଣିଲେ ଅନେକ ପୋଷାକ, ଖେଳନା ଏବଂ ସ୍ୱାଦିଷ୍ଟ ପୁଷ୍ଟିସାର ଶିଶୁଖାଦ୍ୟ । ସେମାନଙ୍କ ସଂସାରର ଜଞ୍ଜାଳ ବଢ଼ିଲା । ପ୍ରସ୍ତୁତ ହେଲେ ଜନ୍ମୋତ୍ସବ ପାଳନ ପାଇଁ ।

ଉତ୍ସବର ଦିନ ଉପଗତ ହେଲା । ଅଭୟାନନ୍ଦଙ୍କ ଗୃହରେ ନନ୍ଦଲୀଳା । ଶ୍ରାବଣୀର ମନେ ହେଉଥିଲା, ଏହା ଯେମିତି ଏକ ରାଜ୍ୟାଭିଷେକର ମହୋତ୍ସବ । ବହୁ ବନ୍ଧୁ, ବାନ୍ଧବୀ, ସାଥୀ ସହୋଦର ଉପସ୍ଥିତ ରହି ଜନ୍ମୋତ୍ସବ ପାଳନ କଲେ । ବଡ଼ଲୋକଙ୍କ କାରବାର । ଏମିତି ବର୍ଣ୍ଣାଢ୍ୟ ଉତ୍ସବ ଆଗରୁ କେବେ ଶ୍ରାବଣୀ ଦେଖି ନ ଥିଲା, ଶୁଣି ନ ଥିଲା । ନେତ୍ର ତା'ର ପବିତ୍ର ହୋଇଯାଇଥିଲା । ଝରିପଡୁଥିଲା ବୁନ୍ଦା ବୁନ୍ଦା ଲୁହ । ଇଚ୍ଛା ହେଉଥିଲା, ମନ ଡାକୁଥିଲା, ପୁଅକୁ ଯାଇ କୁଣ୍ଢେଇ ଫୁଲ ଗାଲରେ କେତୋଟି ଚୁମ୍ବନ ଡୋଳି ଦେବାକୁ । କିନ୍ତୁ ନିଜକୁ ସଂଯତ କରିନେଲା, ମନକୁ ଚାବୁକ ମାରିଲା । ସେ ଏ ଘରର ଦାସୀ, ଚାକରାଣୀ, ଆୟା । ଆୟା ପ୍ରଭୁଙ୍କ ପିଲାଙ୍କୁ କେବଳ ସେବା କରିପାରେ । ସେବା ହିଁ ତା'ର ଧର୍ମ, କର୍ତ୍ତବ୍ୟ । ସ୍ନେହ, ଶ୍ରଦ୍ଧା, ଆଦର କେବଳ ଦାସୀର ହୃଦୟ ଅନ୍ତରାଳରେ ସୀମାବଦ୍ଧ । ଜନତା ସମ୍ମୁଖରେ ପ୍ରଦର୍ଶନ କରିବା ତା'ର ଧୃଷ୍ଟତା, କ୍ଷମତା ବହିର୍ଭୂତ । ଦୁର୍ବଳ ମନ ଉପରେ ପୁଣି ଥରେ ନିଷ୍ଠୁର ନିଷେଧାଜ୍ଞା ଜାରି କଲା । ସମସ୍ତେ ହର୍ଷରୋଳ ମଧ୍ୟରେ ପାଟି କରିଉଠିଲେ – ହାପି ବାର୍ଥ ଡେ ଟୁ ୟୁ, ଅମର । ଅମର ଦୀର୍ଘଜୀବୀ ହେଉ ।

'ଅମର' । ସୃଷ୍ଟିରେ ଖୁବ୍ ସୁନ୍ଦର ନାଁଟିଏ । ବାପ ମା' ବାଛି ବାଛି ଦେଇଛନ୍ତି ନାଁଟି । ତା'ର ସେବା, ତା ପତାମାତାଙ୍କର ସେବା ହିଁ ଦାସୀ ଶ୍ରାବଣୀର ଏକମାତ୍ର ଲକ୍ଷ୍ୟ । ସେବା ତ ତା'ର ସ୍ୱର୍ଗ । ଶ୍ରାବଣୀ ମନରେ ଦାସାନୁଦାସ ଭବ ।

ଅମରର ଜନ୍ମଦିବସ ଖୁବ୍ ଆଡ଼ମ୍ବର ଏବଂ ଆଦରରେ ପାଳିତ ହୋଇଥିଲା । ସୁଶୀଳାଙ୍କ ସେ ଗେହ୍ଲା ପୁଅ, ଅତି ଆପଣାର, ଖୁବ୍



Digitized by PPRACHIN, SOA

ନିଜର, ଉତ୍ତର, ଯୁଗ ଯୁଗର । ତାଙ୍କର ସ୍ନେହ ସାଗର ଭଳି ଗଭୀର, ଆକାଶ ଭଳି ବ୍ୟାପ୍ତ, ଶ୍ୱେତପଦ୍ମ ଭଳି ଶୁଭ୍ର, ଉଜ୍ଜ୍ୱଳ । କେହି ଆଖିରେ ନ ଦେଖିଲେ ବିଶ୍ୱାସ କରିବେନି । ଶ୍ରାବଣୀ ଆଖିକୁ ମଧ୍ୟ ବିଶ୍ୱାସ କରିପାରୁନି । ହାର ମାନୁଛି ମନେ ମନେ । ସ୍ନେହ ସରଗର ଚିଜ । ସ୍ନେହ ବିତରିଲେ ସଂସାର ହୁଏ ନିଜର । ସ୍ନେହଠୁଁ ବଡ଼ ଦୁର୍ମୂଲ୍ୟ ଦ୍ରବ୍ୟ ଏ ସଂସାରରେ ଆଉ କ'ଣ ବା ଅଛି ?

ଶ୍ରାବଣୀ ଏଥର ନିଜକୁ ଗୃହ କର୍ମରେ ମନପ୍ରାଣ ଢାଳି ନିୟୋଜିତ କଲା । ପ୍ରାଣୋତ୍ସର୍ଗ ସେବାରେ ସମସ୍ତଙ୍କ ମୁହଁ ବାନ୍ଧିଲା । ଚାକର ପୂଜାରୀର ଆବଶ୍ୟକତା ଦୂର କରିଥିଲା । ତାର ଉକ୍ତି – କେତେ ଜଣ ବା ଲୋକ ଏ ଘରେ ? ମୁଁ ଥାଉଁ ଥାଉଁ ନୌକର, ଚାକର, ପୂଜାରୀ କ'ଣ ବା ଅଧିକ କରିବେ ? 

ଦେବକାନ୍ତର ପୁନର୍ବିବାହ ପାଇଁ ନିର୍ବନ୍ଧ ହୋଇସାରିଥିଲା । ବାହାଘର ମୁଣ୍ଡ ଉପରେ, ମାତ୍ର ଆଉ ଦୁଇଦିନ ଥିଲା । ସେ ଆଉ ଘରକୁ ଫେରି ନ ଥିଲା । ବାପା ବୋଉକୁ ହତାଶ କରି, ଗ୍ରାମବାସୀଙ୍କୁ ଚକିତ କରି ସେ ନାଟକୀୟ ଭାବେ ମାନପୁର ଗାଁରୁ ଉଭେଇ ଯାଇଥିଲା । ସନାତନ ବଡ଼ ଅପଦସ୍ତ ହୋଇଥିଲା । କନ୍ୟାପିତାଙ୍କୁ ଜବାବ ଦେଇ କଥାରକ୍ଷା କରିପାରି ନ ଥିବାରୁ ଖୁବ୍ ଅପମାନିତ ବୋଧ କରିଥିଲା ନିଜକୁ । ଗୋଟାଏ ହୋସ୍‌ରେ ପୁଅର ବାହାଘର ପାଇଁ ସେମାନେ ଆଗେଇ ଯାଇଥିଲେ, ମାଡି ଯାଇଥିଲେ । କିଏ ଜାଣିଥିଲା ଦେବ ମନରେ ଏତେ କପଟ ଥିଲା ବୋଲି ? ପ୍ରସ୍ତାବ ଆଗେଇଥିଲା ବେଳେ ଗୋଟେ ଠୋକ୍ ମନାକରି ନ ଥିଲା କାହିଁକି ? ଏମିତି ପୂର୍ବରୁ ସ୍ତ୍ରୀକୁ ସାଙ୍ଗରେ



Digitized by PPRACHIN, SOA

ଧରି ବିଦେଶ ଯାଇଥିଲା ଯେ ଅନେକ ଅଜବ, ଅକଥା ଏକାନ ଶୁଣିଲା ! ସାମାନ୍ୟ ଚିଠି ଖଣ୍ଡେ ନ ଦେଇ ଆମକୁ ଅଜ୍ଞାନ ଅନ୍ଧକାରରେ ରଖି ଏ ଗାଁରେ ଅଦ୍ଭୁତ କାଣ୍ଡ ଭିଆଇଲା । ଢାଇଁ ଥାଉ ଥାଉ ଏ ଗାଁ ଲୋକ ତା ଶୁଦ୍ଧି କ୍ରିୟା କରାଇଲେ । ଫିଲା ଖେଳଭଳି ଏ ଗାଁରେ ତାମସା, ନାଟ ଲାଗିଲା । ପୁଣି ଦେବର ବିକୃତି ଘଟିଲା ? ବାହାଘର ଦିନ ପାରହେଲା ସେ ଆଉ ନ ଫେରିଲା ! ଅପଦସ୍ତ, ଅପମାନିତ ହେବାରତ ଗୋଟିଏ ସୀମା ଅଛି । ଲୋକହସା ହେବାର ଗୋଟେ ସ୍ତର ଅଛି । ଭଲ ଫିଲାକୁ ପାଠ ପଢେଇଲ ଯେ ସୁଖ ଦେଖିବ କ'ଣ ଦୁଃଖରେ ଭାସୁଛି । ନା, ସେ ଆଉ ହୀନସ୍ତା ହେବନି, ପୂର୍ବ ଘଟଣାର ପୁନରାବୃତ୍ତି କରିବ ନାହିଁ । ପୁଅ କୁଆଡ଼େ ଗଲ, ହଜିଲ, ସେ ଆଉ ଆଦୌ ମୁଣ୍ଡ ଖେଳାଇବ ନାହିଁ । ଯାଉ । ବାବାଜୀ ହେଉ, ସନ୍ନ୍ୟାସୀ ହେଉ, ଗ୍ରେର ହେଉ, ବା ଡାକୁ ହେଉ । ତା' ସଙ୍ଗେ ଆଉ କିଛି ସମ୍ପର୍କ ନାହିଁ । ଏଥର ସେ ତେଜ୍ୟପୁତ୍ର । ବୁଢାଙ୍କାର ପୁଅର ଆବଶ୍ୟକତା କ'ଣ ? ବାପ ମା' ସୁଖ ଯେଉଁ ପୁଅ ନ ଗୁହିଁଲ, ତାଙ୍କ ମନ ବୁଝି କାମ ନ କଲ, ସେ କୋଉ ପୁଅ ? ବରଂ ଆଣ୍ଟୁକୁଡ଼ା ହେବା ଭଲ । ତା'ର ଆଉ ପୁଅ ନାହିଁ, ଦେବ ତା'ର ପୁଅ ନୁହେଁ । ଯେମିତି ନାଁ ପକେଇ ବୋହୂକୁ ଏ ଘରୁ ବହିଷ୍କାର କରିଛି, ବୁଢାଙ୍କାର ପୁଅ ମଧ୍ୟ ଏ ଘରୁ ବାହାରି ଯାଇଛି । ପରବାୟ ନାହିଁ । କେଉଁ କଥାରେ କାହାକୁ ସେ ହାତ ପାତିନି । ହାତ ଗୋଡ଼ ଚଳୁଥିଲ ପର୍ଯ୍ୟନ୍ତ ସେ ଆତ୍ମନିର୍ଭରଶୀଳ । ଜିଭ ପିତା ହେଲେ ପୁଣି ମିଠା ହୋଇଯିବ ମୁହୂର୍ତ୍ତକ ମଧ୍ୟରେ । ମନ ପିତା ହେଲେ ସହଜେ ନ ହୁଏ ମିଠା ।

କେବଳ ଟିକିନୀ କଥା । ଚାରି ପାଇଁ ଚିନ୍ତା । ତା'ର ହାତକୁ ଦି'ହାତ କରିଦେଲେ ପାଇଟି ଶେଷ, ଝଞ୍ଜାଳ ସମାପ୍ତ, ମୁକ୍ତ । ବରଂ ତା' ପରେ କେଉଁ ମଠ ମନ୍ଦିରରେ ରହି ବୁଢାବୁଢୀ ଶେଷ କାଳ କାଟିବେ । ଏତେ ଦହଗଞ୍ଜ ସେ ସହ୍ୟ କରି ପାରିବେନି ।

ଏବେ ଭଦ୍ରଲୋକଙ୍କୁ କ'ଣ କୈଫିୟତ ଦେବ ? ବେଇଜିତ ହେବ ପାଞ୍ଚଲୋକ ଆଗରେ । ସମସ୍ତେ କହିବେ ସନାତନ ବଡ଼ ଧପ୍‌ପାବାଜ, ମିଛୁଆ, ଠକ । ତା' କଥାରେ ଓଜନ ନାହିଁ । ତା' କଥା ପାଣିର ଗାର ।



Digitized by PPRACHIN, SOA

ଯେଉଁ ବାପର ଜବାବରେ ଠିକଣା ନାହିଁ, ବଚନର କୌଣସି ମୂଲ୍ୟ ନାହିଁ, ପିଲଙ୍କ ଉପରେ ଅଧିକାର ନାହିଁ, ତା' ପିତୃତ୍ୱ ମୂଲ୍ୟହୀନ, ମୂଲ୍ୟହୀନ ତା' ମୁରବୀପଣିଆ । ସେ ଭଦ୍ରଲୋକ ନୁହେଁ, ଗୋଟେ ଏଣୁ ତେଣୁ ଇତର ପ୍ରାଣୀ, ବାଜେଲୋକ ।

ସନାତନର କ'ଣ କିଛି ମୂଲ୍ୟ ନାହିଁ ? ସେ କ'ଣ ଏମିତି ଗୋଟେ ଅପଦାର୍ଥ ? ? କନ୍ୟାପିତାକୁ ଦେଇଥିବା ପ୍ରତିଶ୍ରୁତି ତାକୁ ବିଷୋଦ୍ଧଟ କରୁଥିଲା । ନିଜ ମୁହଁକୁ ବଞ୍ଚାଇବାକୁ ପଡ଼ିବ । ମହତକୁ ରକ୍ଷା କରିବାକୁ ପଡ଼ିବ । ମାନ ମହତ ସୁରକ୍ଷିତ ରହିଲେ ସିନା ବଞ୍ଚିବା ସାର ! ନହିଲେ ମଣିଷର ମୂଲ୍ୟ କ'ଣ ? କିଛି ଗୋଟେ ଉପାୟ କରିବାକୁ ପଡ଼ିବ ।

ଉପାୟ ? ?

ଉପାୟ ଆଉ କ'ଣ ଅଛି ? କୁଳାଙ୍ଗାର ପୁତ୍ରତ ଅଗ୍ରୀମ ଅର୍ଥନେଇ ଚମ୍ପଟ ମାରିଛି । ଚୌରବୃତ୍ତି । ହୀନକାମ । ଛିଃ, ଉପାୟହୀନତାର ତୀବ୍ର ତାଡ଼ନାରେ ସନାତନ ଅନାଶ୍ୱସ୍ତ ବୋଧକଲା ।

ମନେ ମନେ ଯାହା ଆଶା କରୁଥିଲା, ତାହା ଘଟିଲା । ଚିନ୍ତାମଣି ଆସି ସଦଳବଳ ହାଜର ହୋଇଥିଲେ । ସାଙ୍ଗରେ ଅନ୍ୟ ଭଦ୍ରଲୋକ, ଆତ୍ମୀୟ ଲୋକ କେଇ ଜଣ । ପହିଲେ ଚିନ୍ତାମଣି ମୁଣ୍ଡରେ ହାତଦେଇ ବସିଗଲେ ସଲପପଗ ବାରଣ୍ଡା ଉପରେ । ବେଦୀ ଉପରୁ ବର ବାହୁଡ଼ିଗଲା ଭଳି ଘଟଣା । ପ୍ରଥମେ ସେ ଦେବକାନ୍ତ ପାଇଁ ରାଜି ହେଉ ନଥିଲେ । ବରର ଦୋହରା ବିବାହ । ସ୍ତ୍ରୀ ବଞ୍ଚିଛି । ଗାଉଁଲୀ ଭାଷାରେ କହିଲେ ଦୋବେହି ବର । କେଉଁଠବେଳେ କୋଉ କଥା– ସୁବିଧା ଅସୁବିଧା ଅଛି । କିଛି ଝିନ୍‌ଝଟ୍ ହେଲେ କିଏ ମୁଣ୍ଡେଇବ ? ଝିଅ ଅଶାନ୍ତି ପାଇବ । କିନ୍ତୁ ସନାତନ ଅଭୟ ମନ୍ତ୍ର କାନରେ ଫୁଙ୍କିଥିଲା । ଏବେ ? କାହିଁଗଲା ସନାତନର ସେ ନିର୍ଭୟ ପ୍ରତିଶ୍ରୁତି ?

ବିଶ୍ୱାସ କରି ସନାତନ ହାତକୁ କିଛି ଆଗୁଆ ଅର୍ଥ ବିବାହ ଖର୍ଚ୍ଚ ପାଇଁ ଗଣି ଦେଇଥିଲେ ଚିନ୍ତାମଣି । ଭଦ୍ରଲୋକମାନଙ୍କ ସମ୍ମୁଖରେ



Digitized by PPRACHIN, SOA

ଦବା ନବା ପ୍ରଶ୍ନ ସମାହିତ ହୋଇ ସାରିଥିଲା । ଏବେ ସେଇ ଭଦ୍ର-ଲୋକମାନଙ୍କୁ ଧରି ସନାତନ ଘରେ ସମସ୍ତେ ଉପସ୍ଥିତ । ସନାତନର ସେଥିପାଇଁ ପ୍ରବଳ ଉଦ୍‌ବେଗ । ତୁରନ୍ତ ଅର୍ଥ ଫେରସ୍ତର କିଂକ୍ଷତା ତା ମୁଣ୍ଡକୁ ଉଦ୍‌ଭ୍ରାନ୍ତ କରିଥିଲା ।

ଚିନ୍ତାମଣି ଅନୁଯୋଗ କରି କହିଲେ– ତମ କଥାକୁ ବିଶ୍ୱାସ କରି ଗଛ ଚଢ଼ିଗଲି ସମୃଦ୍ଧି । ତମେ କିନ୍ତୁ ଗଛ ମୂଳରୁ କାଟି ଦେଲ । ବୁଝି ପାରୁଛ ମୋ ମାନସିକ ଅବସ୍ଥା ? ମୋ ଝିଅର ଅବସ୍ଥା ? ତା'ର ଭବିଷ୍ୟତ ? ଝିଅ ଜନମ ସମସ୍ତେ କରିଛେଟି ! ମାଛିଟେ ଉଡ଼ିଗଲେ ହାତୀଟେ ଗଳ୍ପ ବୋଲି ଲୋକେ କହିବେ । ଲୋକ ତୁଣ୍ଡକୁ ରୋକିବ କିଏ ? ତମ ପୁଅର ମତ ନେଇ, ମନ ନେଇ ଆଗେଇବାର ଥିଲା । ଭଲ ଲୋକମାନେ କ'ଣ ଏମିତି କାରବାର କରନ୍ତି ? ମୁଁ ଏଇନେ କ'ଣ କରିବି ?

ସନାତନ ବିବ୍ରତ ଏବଂ ଶୋକାଗ୍ରସ୍ତ ହୋଇ ରୁଦ୍ଧ କଣ୍ଠରେ କହିଲା– ବିଶ୍ୱାସ କର ସମୃଦ୍ଧି, ଏମିତି ହବ ବୋଲି ମୁଁ ଆଦୌ କଳ୍ପନା କରି ନଥିଲି । ମୋର ଦୁର୍ଭାଗ୍ୟ । ଆଜିକାଲି ପିଲାଙ୍କ ଉପରେ ଭରସା କରିବାଇ ବାପମାନଙ୍କ ବୋକମୀ, ମୂଢ଼ତା । ପୁଅକୁ ପାଠ ପଢ଼େଇବା ମଧ୍ୟ ଭୁଲ । ସେ ପାଇଁ ପସ୍ତେଇ ହେଉଛି । ଦେଖୁଛ, ଶିକ୍ଷିତ ପିଲାର କେମିତି କାରବାର ! ଆଖି ଆଗରେ ତାଜୁବ ଘଟଣା ଘଟୁଛି । ହୃଦୟକୁ କିଏ ଖଣ୍ଡ ଖଣ୍ଡ କରି ହାଣିଲା ଭଳି ଲାଗୁଛି, ଦେହକୁ ପଥର କରି ସହିବା କଥା । କ'ଣ କୈଫିୟତ ଦେଇ ମୋ ନିର୍ଦ୍ଦୋଷତାକୁ ପ୍ରମାଣ କରିବି ? ବିଶ୍ୱାସ କର ସମୃଦ୍ଧି, ମୁଁ ଜାଣି ଜାଣି ଏହା କରି ନାହିଁ । ମୋ ପୁଅ ମୋତେ ଠକିଛି । କିନ୍ତୁ ମନେ ରଖିଥାଅ ସମୃଦ୍ଧି, ସନାତନର ଜବାବ ଏତେ ମୂଲ୍ୟହୀନ ନୁହେଁ । ଗାଁର ସମସ୍ତଙ୍କଠୁଁ ବୁଝ ସନାତନ ବଚନର ଓଜନ କେତେ । ମୁଁ ଯାହା କୁହେ, ମଲେବି ତାକୁ ପାଳନ କରେ । କିନ୍ତୁ ଆଜି ପରିସ୍ଥିତି ଭିନ୍ନ । ଦଇବର କୋପ ପଡିଛି ଆମ ଉପରେ । ମୋ ନିଜ ଉପରେ ମୋର ଅଧିକାର ନାହିଁ । କ'ଣ ବା କହି ତମକୁ



Digitized by PPRACHIN, SOA

ବୁଝେଇବି ?  ଚମ ଟଙ୍କା କେବେ ହେଲେ ସନାତନ ରଖିବ ନାହିଁ ; ସନାତନ ପେଟରେ ଅନ୍ୟାୟ ଅର୍ଥ ହଜମ ହେବନି ।  ତେବେ କିଛି ସମୟ ଦେଲେ, ସୁଧମୂଳ ସହିତ ପରିଶୋଧ କରିବି । କିଛିଦିନ ମହଲତ ମାଗୁଛି, ମାଗୁଣି କରୁଛି ... ।

ସନାତନର ଆଖି ଛଳଛଳ ହୋଇଗଲା ।  ତା'ର ବିନୟତା ଦେଖି ଚିନ୍ତାମଣି ନରମି ଯାଇଥିଲେ ।  ହାଲୁକା ସ୍ୱରରେ କହିଲେ– ମୁଁ ସେ କଥା କହୁନି ସମୁଦି ।  ଟଙ୍କା ମୋର ବୁଡ଼ି ଯିବନି, ମୁଁ ଜାଣେ । ମୋର କହିବା କଥା– ବର୍ତ୍ତମାନ କ'ଣ କରଯିବ ?

ସନାତନ ସେହି କଥାକୁଇ ବାରମ୍ବାର ଚିନ୍ତା କରୁଥିଲା ।  ଆଉ ଟିକିଏ ଚିନ୍ତାକରି ଯୋଡ଼ ହସ୍ତରେ କହିଲା– କନକ ଖାଲି ଚମ ଝିଅ ନୁହେଁ, ମୋର ମଧ୍ୟ ।  ଆଉ ଦି'ଟା ଦିନରେ ବାହାଘର ହୋଇଥାନ୍ତା, ନହେଲେ ଦି'ମାସ ଘୁଞ୍ଚିଯିବ ।  ଭଗବାନ ଯେଉଁ ଝିଅକୁ ଜନ୍ମ ଦେଇଛନ୍ତି, ତା' ପାଇଁ ମଧ୍ୟ ଜୀବନସାଥୀଟିଏ ସୃଷ୍ଟି କରିଛନ୍ତି ।  ପ୍ରଜାପତିଙ୍କ କରୁଣା । କନକର ବିବାହ ଅନ୍ୟତ୍ର ବୁଝାଯାଉ ।  ମୁଁ ସାହାଯ୍ୟ ସହଯୋଗ କରିବି । ସୁଧମୂଳ ସହିତ ପରିଶୋଧ କରିବି ।  ବିଲବାଡ଼ିବି ମୋର ଆଉ କ'ଣ ହେବ ?  କହନ୍ତି, ପୁଅ ଯୋଗ୍ୟ ହେଲେ ଧନ କାହିଁକି ସଞ୍ଚୁବ, ପୁଅ ଅଯୋଗ୍ୟ ହେଲେ ଧନ କାହିଁକି ସଞ୍ଚୁବ ?  ମୋର ଜାଣ ପୁଅ ନାହିଁ । ଖାଲି ଟିକିନୀଟା ପାଇଁ ଯାହା ଚିନ୍ତା ।  ତାକୁ କେଉଁଠି ଛନ୍ଦି ଦେଇ, ବିବାହ ବନ୍ଧନରେ ବାନ୍ଧି ଦେଇ, ଏ ଘର ଦ୍ୱାର ସବୁ ତା' ବର ହାତରେ ଧରେଇ ଦେଇ ଆମେ ମଠ ଧରିବୁ ।

ଟିକିନୀ ଭଦ୍ରଲୋକମାନଙ୍କୁ ସରବତ୍‌, ଜଳଖିଆ ଦେଇ ଆପ୍ୟାୟିତ କରୁଥିଲା ।  ସମସ୍ତେ ତା' ଆଚରଣରେ ତୁଷ୍ଟ ।  ଚିନ୍ତାମଣିଙ୍କ ଦୃଷ୍ଟି ତା' ଉପରେ ପରିକ୍ରମା କରୁଥିଲା । ଦଶ ବାର ବର୍ଷର ଆନ୍ଦୁଡ଼ା ଝିଅ । ପୂରିଲା ପୂରିଲା ଅଙ୍ଗପୁଷ୍ଟ ।  ଶ୍ୟାମଳୀ, ସୁନ୍ଦରୀ– ସୁଗଠିତ ଶରୀର ।



Digitized by PPRACHIN, SOA

ପେଣ୍ଟଫ୍ରକ୍ ପିନ୍ଧିଛି । ମୁଣ୍ଡଟିକୁ ସୁନ୍ଦର ଭବେ କୁଣ୍ଡାଇ ଛାତି ଉପରେ ଡ଼ବଲ ବେଣୀ ଛାଡ଼ିଛି । ଆଗନ୍ତୁକମାନଙ୍କୁ ମନଦେଇ ଚର୍ଚ୍ଚା କରୁଛି । ଗୁଣର ମନେ ହେଉଛି ।

: କ'ଣ ଆଉ ଭବୁଛ ସମୃଦ୍ଧି ? ଦୁଃଖ ବେଳ ତ ମୋର ପଡ଼ିଛି । ମତେ ଆଉ କିଛିଦିନ ସମୟ ଦିଅ କମି ବିକ୍ରୀ ହେବା ପର୍ଯ୍ୟନ୍ତ ।

: ମୁଁ ଭିନ୍ନ କଥା ଭବୁଛି ସମୃଦ୍ଧି ।

: କ'ଣ ? କୋଉ କଥା ?

: ତମ ଏଇ ଝିଅ କଥା । ଭଲ ପିଲଟିଏ । ମନକୁ ମୁଗ୍ଧ କରୁଛି । ସମୃଦ୍ଧି ଡ଼କାଡ଼କି ହେଲେଣି । କେତେ ମିଠା ସେ ଡ଼ାକ । ସେ ମଧୁର ସମ୍ବୋଧନ କ'ଣ ମଣିଷ ସୃଷ୍ଟି କରିଥାଏ ? ଏ ତ ଭଗବାନଙ୍କର ସୃଷ୍ଟି । ଆମେ ଖାଲି ଏଣେତେଣେ ଧନ୍ଦି ହେଉନା ! ଯିଏ ଯାହା ହାଣ୍ଡିରେ ଗୁଡ଼ଳ ପକାଇଛି ତାକୁ କିଏ ଅନ୍ୟଥା କରିବ ? ତେବେ ଆମ ସମୃଦ୍ଧି ଡ଼ାକ ଅକ୍ଷୁଣ୍ଣ ରହିଲେ ଭଲ ହୁଅନ୍ତା । ଝିଅ ଦେଇଥାନ୍ତି, ନହିଲେ ଝିଅ ନେବି । ବହୁ ବନ୍ଧୁ ଅର୍ଜିବାର ସୌଭଗ୍ୟ ଅଛି ମୋର । ଗୋଟିଏ ସିନା ଝିଅ, ଆଗ ପଛ ହୋଇ ପାଞ୍ଚ ପୁଅ । ସମସ୍ତେ ଧୁରନ୍ଧର । ତମେ କ'ଣ ଜାଣନି ? ପଞ୍ଚୁ ପାଣ୍ଡବଙ୍କ ଭିତରୁ କେହି ତମର ମନୋନୀତ ହେଲେ ହେଲ । କ'ଣ କହୁଛ ସମୃଦ୍ଧି ?

ସନାତନ ବିସ୍ମୟ ବିମୂଢ଼ ହୋଇ ସ୍ଥିର ହୋଇ ଯାଇଥିଲ କ୍ଷଣେ । ସୁନ୍ଦର ପରିକଳ୍ପନା ସମୃଦ୍ଧିର । ତା' ମୁଣ୍ଡରେ କେବେ ଏ କଥା ଢୁକି ନଥିଲ । ଏଥର ମୁହଁରେ ସାମାନ୍ୟ ହସ ଚହଟିଲ । ସମୃଦ୍ଧିର ଡ଼ାକ କେଡ଼େ ସୁମଧୁର ! ସେ ତ ଈଶ୍ୱରଙ୍କର ଆହ୍ୱାନ ... । ଧନ୍ୟ ଚିନ୍ତାମଣିଙ୍କର ଭବନା, ଧନ୍ୟ ତାଙ୍କର ବୁଝିବା ଶକ୍ତି । ଯାକୁସିନା କହିବ ମଣିଷପଣିଆ !



Digitized by PPRACHIN, SOA

ଦେବ ଏ ଘରକୁ ମଶାଣି କରି, ମହି ନଈରେ ସମସ୍ତଙ୍କୁ ଭସେଇ ଦେଇ ଅନ୍ତର୍ଦ୍ଧାନ ହୋଇଗଲ । ଚିନ୍ତାମଣି ହୃଦୟଙ୍ଗମ କରିଛନ୍ତି, ବାପର ବେଦନା ବୁଝିଛନ୍ତି । ଟିକିନୀକୁ ପସନ୍ଦ କରୁଛନ୍ତି । କେଡ଼େ ଦୂରଦର୍ଶୀ ସେ ? ଖୁବ୍ ଭଦ୍ରଲୋକ । ଏମିତି ଭଦ୍ର ସେ ଆଜି ପର୍ଯ୍ୟନ୍ତ କେଉଁଠି ଦେଖି ନାହିଁ । ମନେ ମନେ ପ୍ରଶଂସା କଲ ତାଙ୍କୁ ଅତି ଅନ୍ତର ଭିତରୁ । କୃତଜ୍ଞ ଆଖିରେ ଚାହିଁ ରହିଲ । କହିଲ– ସମ୍ବନ୍ଧି, ଝିଅ ଆଣିଥାନ୍ତି, ଯୋଗ କପଟ କଲ । ଏବେ ଝିଅ ଦେବି । ଠାକୁରଙ୍କୁ ପ୍ରାର୍ଥନା କରୁଛି, ଆମ ସମ୍ବନ୍ଧିଡ଼ାକ ଅକ୍ଷୁଣ୍ଣ, ଅତୁଟ ରହୁ । ମହାମୟ ଈଶ୍ୱରଙ୍କ ଇଚ୍ଛା ପୂରଣ ହେଉ । ତେବେ ଟିକିନୀ ତ ଛୋଟ ପିଲ । ଆହୁରି ସମୟ ଅଛି ... ।

ଭଦ୍ରଲୋକ ଜଣେ ସମର୍ଥିତ ଗଳାରେ କହିଲା– ମନ ମାନିଲେ, ବର୍ଷ କେଇଟା କାଲିପରି କଟିଯିବ । ସମୟ ଦୌଡୁଛି ଘୋଡ଼ା ପିଠିରେ, ଦ୍ରୁତ ଗତିରେ । ଝିଅ ପିଲ, ଚାହୁଁ ଚାହୁଁ ଭୁଆସୁଣୀ ହୋଇଯିବ ... ।

ପ୍ରସ୍ତାବଟି ମନକୁ ମୋହିଲ, ଚିତ୍ତକୁ ଛୁଇଁଲ । ଗୋଟିଏ ବଡ଼କଥା ଆଶ୍ଚର୍ଯ୍ୟଭବେ ସମାଧାନ ହୋଇଗଲ । ମଣିଷ ଲକ୍ଷ୍ୟ ହାସଲ ପାଇଁ ଉଦ୍ୟମ କରେ ଗୋଟିଏ ଦଗରେ । କିନ୍ତୁ ଯୋଗ ବାଟ କଢାଇ ନିଏ ଭିନ୍ନ ରସ୍ତାରେ । ଉଦ୍ୟମ ଏବଂ ଉଦ୍ଦେଶ୍ୟ ପ୍ରାପ୍ତିରେ ଥାଏ ବହୁ ବ୍ୟବଧାନ । କିନ୍ତୁ ଯଥୋଚିତ ଉଦ୍ୟମ ବ୍ୟର୍ଥ ନ ହୋଇ ବିଳମ୍ବରେ ହେଲେହେଁ ସୁଫଳ ପ୍ରଦାନ କରିଥାଏ । ଆଜିର ଘଟଣା ଥିଲ ଠିକ୍ ସେହିପରି । ସର୍ବଶେଷର ସୁଫଳ ସ୍ୱରୂପ ସେମାନେ ପୁନର୍ବାର ବନ୍ଧୁତ୍ୱର ସ୍ୱର ଫୁଙ୍କିଥିଲେ । ଉଭୟେ ଉଭୟଙ୍କୁ ଆଲିଙ୍ଗନ କଲେ ଏବଂ ଦୃଢ ପ୍ରତିଶ୍ରୁତିରେ ବାନ୍ଧିହେଲେ ।

ସନାତନ କହିଲ– ମୋର କିନ୍ତୁ ଆଉ ଟିକିଏ କହିବାର ଅଛି । ଟିକିନୀ ତମ ଘରକୁ ଗଲେ ଆମେ ଅନ୍ଧ ହୋଇଯିବୁ । ଏ ଘରେ ଆଉ କିଏ ରହିବ ? କିଏ ଭୋଗ କରିବ ? ସେ ଆମ ପୁଅ ଏବଂ ଝିଅ । ତମରତ ବହୁ ପୁଅ ଅଛନ୍ତି । ସେଥିରୁ ମୋତେ ଗୋଟିଏ ଦିଅ । ମୁଁ ତାକୁ ଘରଜୋଇଁ କରିବି । ଘର ଜମିବାଡ଼ି ସବୁ ଉତ୍ସର୍ଗ କରିଦେବି ଝିଅ ଜୁଆଇଁଙ୍କ ନାମରେ, କହିବତ ଆଜିଠୁଁ ।



Digitized by PPRACHIN, SOA

ଚିନ୍ତାମଣି ଆଶ୍ଚର୍ଯ୍ୟ ହୋଇ କହିଲା– ଆଜିଠୁ ? ନା, ନା, ବଡ଼ ଅସୁନ୍ଦର କଥା । ଆମେ ସିନା ବିଚାର କରୁଛେଁ । ଭଲକଥା ଭାବୁଛେଁ । ଫଳତ ଆମ ହାତରେ ନାହିଁ ! ତେବେ ତମେ ଯାହା କରିବ ବାହାଘର ପରେ, ତା' ପୂର୍ବରୁ ନୁହେଁ । ଚିନ୍ତାମଣି ଏଡେ ଅବିବେକୀ ଲୋକ ନୁହେଁ ।

ବଡ଼ ନିଷ୍କପଟୀ ଲୋକ ସେ– ବାସ୍ତବବାଦୀ ମଧ୍ୟ । ମନକୁ ପାଇଲା ସନାତନର । ତେବେ କେଉଁ ପୁଅଟିକୁ ଜୋଇଁ କରିବ ?

ଆଶ୍ୱସ୍ତ ଅନୁଭବ କରିଥିଲା ସନାତନ ।

ଟିକିନୀ ଗୁରୁଜନମାନଙ୍କ କଥୋପକଥନ ଶୁଣିଥିଲା । ବୁଝି ପାରିଥିଲା ସେମାନଙ୍କ ବାର୍ତ୍ତାଳାପର ସାରାଂଶ, ଜାଣି ପାରିଥିଲା ମର୍ମକଥା । ମୁହଁକୁ ଗମ୍ଭୀର କଲା । କାନ୍ଦି ଉଠିଲା । ଅଭିଯୋଗ କଲା– ମୁଁ କେବେ ବାହା ହେବିନି ।

: ଆରେ ତୁଟା ପାଗଳୀନା କ'ଣ ? କିଏ ତୋତେ ବାହାହେବା କଥା କହୁଛି ଏଇନେ ? ତୁ ତ ପିଲା ଝିଅ, ପିଲାମାନେ କ'ଣ ବାହା ହୁଅନ୍ତି ?

: ତମେ ସବୁ କ'ଣ କଥାବାର୍ତ୍ତା ହେଉଥିଲ ଯେ !

: କଣ୍ଢେଇ ବାହାଘର କଥା । ତମେ ସବୁ କେମିତି କଣ୍ଢେଇ ବାହାଘର କରୁଛ, ଖେଳୁଛ ? ଆମେ ସେମିତି ... ଆମର ତମେ ସବୁ କଣ୍ଢେଇ, ନୁହେଁ ?

ଟିକିନୀ ଗୋଡ଼ ଛାଟି କହିଲା–ତମେ ସବୁ ମିଛ କହୁଛ । ମୁଁ ବାହା ହେବିନି, ଏ ଘରୁ ଯିବିନି ।

ବୋଉ ବୁଝେଇ କହିଲା– ବାହାଘର ଗୋଟେ ସଂସାର ଖେଳ । ଯେତେ ଝିଅ ସେତେ ବର, ଯେତେ ପୁଅ ସେତେ ଘର । ସେ ବେଳକୁ ତ



Digitized by PPRACHIN, SOA

ଅଛି । ତୁ କାହିଁକି ବ୍ୟସ୍ତ ହେଉଛୁ ? ନଈ ନ ଦେଖି ଆଜନ୍ମ ନଙ୍ଗଳା କାହିଁକି ? ଆମେ କ'ଣ ତୋତେ ଛାଡ଼ି ରହି ପାରିବୁ ? ଘରଜ୍ୱାଇଁ କରିବୁ । ମଲାବେଳେ ତା'ରି ହାତରୁ ନିର୍ମାଲ୍ୟଜଳ ପାଇବୁ, ତା'ରି କାନ୍ଧରେ ଆମ ମଡ଼ା ଉଠିବ । ବୁଝିଲୁ ?

: ହଁ, ହଁ, ମୁଁ ପାଠ ପଢ଼ିବି ।

: ସେ କଥା ଆଉ ପାଟିରେ ଧରନାହିଁ । ପୁଅକୁ ପଢାଇ ପସ୍ତାଉଛୁ । ତତେ ପୁଣି ପଢେଇ ବୁଦ୍ଧି ଶିଖିବୁଁ ? ଝିଅ ଜନମତ ଚୁଲି ମୁଣ୍ଡକୁ । ମାଇନର ପାଶ୍ ଯଥେଷ୍ଟ ।

ବର୍ଷ ଗଡ଼ିଲା, ବାଳିକା ଅଙ୍ଗରେ ରଙ୍ଗ ଲାଗିଲା, ଦେହ ପୁରିଲା, ଟିକିନୀ ବୟଃପ୍ରାପ୍ତ ହେଲା । ଯୁବତୀ ରୂପରେ ସେ ସୁନ୍ଦର ଦିଶିଲା । ତା' ବାପାବୋଉ ଅପେକ୍ଷା କରି ରହିଥିଲେ ସେହି ଶୁଭ ଦିନଟିକୁ– ଝିଅର ପାଣିଗ୍ରହଣ ଦିନ, ପ୍ରତିଶ୍ରୁତି ପୂରଣର ଦିବସ । ଚିନ୍ତାମଣିଙ୍କ ତୃତୀୟ ପୁତ୍ର ବିଦ୍ୟାର୍ଥୀ ମଦନମୋହନ ସହିତ ତା'ର ଶୁଭ ପରିଣୟ ପକ୍କା ହୋଇ ଥିଲା ନିର୍ବନ୍ଧ ସୂତ୍ରରେ । 

ଘଣ୍ଟା ବଢିଛି, ଦିନ ଗଡ଼ିଛି, ମାସ ସରିଛି, ବର୍ଷ ପୂରିଛି । ଅମଙ୍ଗ ପଢୁଛି ସାହେବୀ ପାଠ । ସୁଶୀଳାଙ୍କ ଇଚ୍ଛା ନଥିଲା । ଅଭୟାନନ୍ଦ ଜିଦ୍ କରି ତାକୁ ଭର୍ତ୍ତି କରିଛନ୍ତି ସୈନିକ ସ୍କୁଲରେ । ସୁଶୀଳା ଅଭିଯୋଗ କରିଥିଲେ– ଗୋଟିଏ ବୋଲି ପୁଅ । ତାକୁ କ'ଣ ସୈନିକ କରିବ ? ସେ ମୋ ପାଖେ ରହି ପଢିବ । ମୁଁ ତାକୁ ମୁହୂର୍ତ୍ତେ ଛାଡ଼ି ପାରିବି ନାହିଁ ।



Digitized by PPRACHIN, SOA

ଅଭୟାନନ୍ଦ ଯୁକ୍ତି ବାଢ଼ିଥିଲେ– ସେ ଗୋଟିଏ ସୁଶୃଙ୍ଖଳିତ, ସୁନାଗରିକ ହୋଇ ଉତ୍ତୀର୍ଣ୍ଣ ହେବ । ସୈନିକ ସ୍କୁଲରେ ପାଠ ପଢ଼ିଲେ ଯେ କେବଳ ସୈନିକ ହୁଅନ୍ତି, ଏ ଭ୍ରାନ୍ତ ଧାରଣା କିଏ ଦେଲା ତୁମକୁ ? ସୈନିକ ସ୍କୁଲର ପାଠ୍ୟକ୍ରମ ବଡ଼ କଠିନ । କେବଳ ବୁଦ୍ଧିମାନ ଏବଂ ମେଧାବୀ ପିଲା ହିଁ ସେଠାରେ ସ୍ଥାନ ପା'ନ୍ତି । ଏଠାରୁ ଠିକ୍‌ଭାବେ ଅଧ୍ୟୟନ କରି ଉତ୍ତୀର୍ଣ୍ଣ ହେଲେ ଶିକ୍ଷାର୍ଥୀ କେବଳ ସୈନ୍ୟ ବିଭାଗ ନୁହେଁ, ଯେ କୌଣସି ପ୍ରତିଯୋଗିତାରେ ସେ ଅଗ୍ରାଧିକାର ଭିତ୍ତିରେ ଚାକିରୀ ପାଇବ । କିଶୋରମାନଙ୍କ ପାଇଁ ସୈନିକ ସ୍କୁଲଠୁଁ ବଳି ସମ୍ଭ୍ରାନ୍ତ ଏବଂ ଶୃଙ୍ଖଳିତ ଶିକ୍ଷାନୁଷ୍ଠାନ ଆଉ ଆମ ଦେଶରେ ନାହିଁ । ଅମର ପାଇଁ ଏହି ଶିକ୍ଷା ଏକାନ୍ତ ପ୍ରୟୋଜନ ।

ସୁଶୀଳା ଅମରର ସର୍ବୋନ୍ନତି ପାଇଁ ବାଧ୍ୟ ହୋଇ ସ୍ୱୀକାର କରିଥିଲେ, ସ୍ୱାମୀଙ୍କ ଆଦେଶ ମାନିଥିଲେ, ଉପଦେଶ ପାଳିଥିଲେ । ପୁଅର ଶିକ୍ଷାର୍ଜନ ପାଇଁ ଅମରକୁ ପାଖରୁ ଛାଡ଼ି ସୈନିକ ସ୍କୁଲ ପାଠ୍ୟକ୍ରମରେ ଭର୍ତ୍ତି କରିଥିଲେ ।

ଅମରର ଅନୁପସ୍ଥିତିରେ ଏ ଘରେ ନୀରବତା ରାଜୁତି କରେ, ନିର୍ଜନତା ବିଳାପ କରେ । ଛୁଟି ଦିନ ମାନଙ୍କରେ ସେ ଘରକୁ ଆସିଲେ ଘର ହସି ଉଠେ । ଗୃହ ପୁଣି ଆନନ୍ଦମୁଖର ହୋଇ ଉଠେ । ସୁଶୀଳାଙ୍କ ମୁହଁରେ ହସର ଲହଡ଼ି ଭାଙ୍ଗେ । ଶ୍ରାବଣୀର ପ୍ରାଣ ଚଞ୍ଚଳ ହୋଇ ଉଠେ । ଶିଶୁ ନଥିଲେ ଘର ଶୁଷ୍କ ମରୁଭୂମିତୁଲ୍ୟ । ପିଲାମାନଙ୍କ ହସ କାନ୍ଦ, କଳି କଜିଆ, ନାଚକୁଦରେ ଘରଟିଏ ମୁଖରିତ, ଶୋଭିତ । ସେମାନେ ସମସ୍ତେ ଏହି ସତ୍ୟ ଏବେ ଅନୁଭବ କରୁଛନ୍ତି ।

ଅମର ଘରକୁ ଆସିଛି ଗ୍ରୀଷ୍ମାବକାଶ ବିତାଇବା ପାଇଁ । ଶ୍ରାବଣୀ ପେଟକୁ କ୍ଷୁଧା ନାହିଁ । ସୁଶୀଳା ଅମରକୁ ପାଖରୁ ଛାଡୁନାହାନ୍ତି । ତା' ସାଙ୍ଗେ ଲାଗିଛନ୍ତି ତାଙ୍କ ଗଳ୍ପରନ୍ଧନ ଭଳି, ଟିକିଏ ସୁଯୋଗ ମିଳିଲା ।



Digitized by PPRACHIN, SOA

ବାବୁଆଣୀ ବାହାରି ଗଲେ ଧର୍ମକର୍ମରେ । ଧର୍ମକାର୍ଯ୍ୟ, ଧର୍ମାଲୋଚନା, ସଭାସମିତିରେ ସେମାନେ ଏଥର ଅଧିକ ସମୟ ବ୍ୟୟ କରୁଛନ୍ତି । ଅମର ରହିଯାଇଥିଲା ଘରେ । ଶ୍ରାବଣୀର ଇଚ୍ଛା ହେଉଥିଲା ତାକୁ ଧରି ଗୁଡ଼ାଏ ଗେଲ ଡାକି ଦେବାକୁ । ପୁଣି ନିଜକୁ ବାରଣ କଲା । ଚାକରାଣୀ ସେ । ଖୁବ୍ ପାଖକୁ ଚାଲି ଆସିଥିଲା ଅମର ।

: ଆୟା, ତମେ ଖୁବ୍ ଭଲ । ତମ କଥା ମତେ ଖୁବ୍ ଭଲ ଲାଗେ । ତମେ ମୋ ଆଖିକୁ ଖୁବ୍ ସୁନ୍ଦର ଦିଶ, ଠିକ୍ ମୋ ବୋଉ ପରି ।

ଲୁହରେ ଶ୍ରାବଣୀର ଆଖି ଜକେଇ ଆସିଥିଲା । ନିର୍ନିମେଷ ନୟନରେ ଚାହିଁ ରହିଥିଲା ଅମରର ଚନ୍ଦ୍ରୋଜ୍ଜ୍ୱଳ ମୁହଁକୁ । ଶୁଣି ଯାଉଥିଲା ତା ବଚନାମୃତ ।

: ଆୟା, ତମେ କାହିଁକି ଭଲ ଲୁଗା ପିନ୍ଧୁନ ? ତମେ କାହିଁକି ବୋଉ ଭଳି ମୁଣ୍ଡରେ ସିନ୍ଦୂର ହାତରେ ଚୁଡ଼ି ପିନ୍ଧୁନ ? ଅମରର ପ୍ରଶ୍ନିଳ ମୁହଁରେ ହାତ ଦେଇ ଶ୍ରାବଣୀ କହିଲା– ଛି, ତମେ ଛୋଟ ପିଲା ବାବୁ, ବଡ଼ ହେଲେ ବୁଝିବ । ଯେଉଁ ସ୍ତ୍ରୀ ଲୋକର ସ୍ୱାମୀ ନଥାନ୍ତି, ସେ ସିନ୍ଦୂର ପିନ୍ଧେନି, କାଚ ଲଗାଏନି । ତା' ପାଇଁ ସେ ସବୁ ସୁନ୍ଦର ନୁହେଁ ।

: କାହିଁକି ଆୟା ? ଝିଅ ପିଲା ମାନେଇତ କାଚ ପିନ୍ଧିବା କଥା । କାଚ ହାତକୁ ସୁନ୍ଦର ସାଜେ । ରଞ୍ଜୁ, ପୁଷ୍ପା, ଗୀତାଞ୍ଜଳି, ସେମାନେ ଝିଅ ପିଲା, କାଚ ପିନ୍ଧିଛନ୍ତି । ସେମାନଙ୍କର କ'ଣ ସ୍ୱାମୀ ଅଛନ୍ତି ? ତମେତ ଝିଅ । କାଚ ପିନ୍ଧିଲେ ତମ ଗୋରା ହାତକୁ ଖୁବ୍ ମାନିବ । ମୁଁ ଏଥର ବଜାରରୁ ସୁନ୍ଦର ଦାମୀ କାଚ ତମ ପାଇଁ କିଣିକରି ଆଣିବି । ପିନ୍ଧିବ ? ସତ କହ ଆୟା, ପିନ୍ଧିବ ? ?



Digitized by PPRACHIN, SOA

ଶ୍ରାବଣୀ ବ୍ୟଥା ଅନୁଭବ କରିଥିଲା । ଆଖିରେ ଲୁହ ଜମିଗଲା । ମୁହଁ ଲୁଚାଇଲା । ଶିଶୁ ସୁଲଭ ପ୍ରଶ୍ନର ଉପଯୁକ୍ତ ଉତ୍ତର ତା ପାଖେ ନଥିଲା । ଶିଶୁର ଉତ୍କଣ୍ଠା ଦମନ କରି ପାରିନଥିଲା । ଯନ୍ତ୍ରଣାର ଲହରୀ ତଳେ କୋହ ଚାପିଲା । ଅମରକୁ କୋଳାଗ୍ରତ କରି ମୁହଁରୁ ଦୁଃଖ ପୋଛିଲା ।

ଅମର କହିଲା— ଆୟା, ତମକୁ ଆୟା ନ ଡାକି ବୋଉ ଡାକିବାକୁ ଇଚ୍ଛା ହେଉଛି । ମୁଁ କ'ଣ ତୁମ ପୁଅ ନୁହେଁ ?

ଅକୁହା କଥା ଓଠ ଆଗରେ ଧରା ନ ଦେଇ ଉଡ଼ି ଯାଉଥିଲା । ଶ୍ରାବଣୀର ସ୍ନେହ ସଞ୍ଚରିତ ହୃଦୟ ବିଦୀର୍ଣ୍ଣ ହୋଇ ଉଠୁଥିଲା । ମନର ଅଭ୍ୟନ୍ତରରେ ସତ୍ୟ ଲୁଚି ରହିଥିଲା, ହୃଦୟ ଭିତରେ ଉବୁଟୁବୁ ହେଉଥିଲା । ପ୍ରକାଶ ପାଇଁ କଣ୍ଠ ପର୍ଯ୍ୟନ୍ତ ଉଠି ଆସିଥିଲା । ନା, ଶ୍ରାବଣୀ ସତ୍ୟ ଲଂଘନ କରିବ ନାହିଁ । ସେ ସତ୍ୟବଦ୍ଧ, ପ୍ରତିଜ୍ଞା ବଦ୍ଧ । ଅମର ତାର ପୁଅ ନୁହେଁ । ସେ ବିଗ୍ରହପତି ଅଭୟାନନ୍ଦଙ୍କ ପୁଅ, ସୁଶୀଳା ଦେବୀଙ୍କ ସୁପୁତ୍ର । ଶ୍ରାବଣୀ ଏ ଘରର ଚାକରାଣୀ, ଦାସୀ, ଆୟା ସବୁ କିଛି । ସତ୍ୟ ପୁଣି ଲୀନ ହୋଇଗଲା ହୃଦୟର ଅତଳ ଗର୍ଭରେ । ବାଷ୍ପରୁଦ୍ଧ କଣ୍ଠରେ ଶ୍ରାବଣୀ କହିଲା— ଅବଶ୍ୟ ତମକୁ ମୁଁ ପୁଅ ଭଳି ଛୋଟବେଳୁ ପାଳିଛି । ଗୁହମୁତ ପୋଛିଛି । କିନ୍ତୁ ତମେ ବାବୁ ପୁଅ । ବାବୁପୁଅ କ'ଣ ଆୟାର ପୁଅ ଭଳି ? ତମ ବୋଉ ତମର ଜନ୍ମଦାତା ମା, ମୁଁ ତୁମର ସେବାକାରୀ ମା, ଚାକରାଣୀ ହେଲେ ବି ମା' ଭଳି ।

ଶ୍ରାବଣୀ ହୃଦୟରେ ଅନ୍ତର୍ବିଳାପର ଧ୍ୱନି । ସେ ଅଣନିଃଶ୍ୱାସୀ ମନେ କରୁଥିଲା । ମନକୁ ପ୍ରବୋଧ କଲା ।

ସୁଶୀଳା କାହିଁକି ହଠାତ୍ ଫେରି ଆସିଲେ । ଅମର ଶ୍ରାବଣୀ କୋଳରେ ବସି କଥାବାର୍ତ୍ତା କରୁଥିବାର ଦୂରରୁ ଦେଖି ପାରିଥିଲେ । ଟିକିଏ ଉଚ୍ଚ ଗଳାରେ ପୁଅକୁ ସତର୍କ କରିଥିଲେ— ଆୟା ସଙ୍ଗେ ଅଳେଇବାକେ କଥାବାର୍ତ୍ତା କରି ସମୟ ନଷ୍ଟ କରିବା ଆଦୌ ଉଚିତ ନୁହେଁ । ଶ୍ରାବଣୀକୁ



Digitized by PPRACHIN, SOA

ମଧ୍ୟ ନିର୍ଦ୍ଦେଶ ଦେଇ ସତର୍କ ଗଳାରେ କହିଥିଲେ– ଅମର ଆଉ କୋଳର ଶିଶୁ ନୁହେଁ ଯେ ତାକୁ କାଖେଇ, ଜହ୍ନମାମୁଁ ଦେଖେଇ ଭୁଲାଇ, ବୁଝାଇ ଶୁଝାଇ କ୍ଷୀର ଖୁଆଇବ ? ସେ ଏବେ ବଡ଼ ହେଲାଣି– କିଶୋର । ପାଠ ପଢ଼ିବା କେବଳ ତା'ର କାମ । ତମେ ଏଥର ନିଜ କାମ କର । ଯେତିକି ଆବଶ୍ୟକ ସେତିକି କଥା କୁହ ।

ଶ୍ରାବଣୀ ନଗ୍ନର ଥିଲା । ସୀମା ଅତିକ୍ରମ କରିଥିବାରୁ ଆପଣା ହସ୍ତେ ଜିହ୍ୱା ଛେଦିଛି । ସେ ପାଇଁ ଅନୁତପ୍ତ ହେଲା ।

ବୋଉର ବ୍ୟବହାର ଅମର ନାପସନ୍ଦ କରିଥିଲା– ପାଟିରେ ନୁହେଁ, ମୁହଁର ଢଙ୍ଗରେ । ଶ୍ରାବଣୀ ଅନ୍ଧ, ତା' ଆଶାବାଡ଼ି ହଜି ସାରିଛି । ସେଦିନ ରାତିରେ ଶ୍ରାବଣୀ ଶୋଇ ପାରି ନଥିଲା । ଅନ୍ୟ କୋଠରୀରେ ସେମାନେ ସୁଖ ନିଦ୍ରାରେ ଶୋଇଥିଲେ । ସୁଶୀଳାଙ୍କ ବକ୍ଷ ଦେଶରେ ଅମର ମୁଣ୍ଡ ଗେଞ୍ଜି ନିଦ୍ରାଗତ । ଗୋଟିଏ ମା' କୋଳ ଖାଲି ପଡିଛି, ଶୂନ୍ୟତାର ଯନ୍ତ୍ରଣାରେ ଛଟପଟ ହେଉଛି, ଆଉ ଗୋଟିଏ ମାତୃକୋଳରେ ଶୂନ୍ୟ ସ୍ଥାନ ପୂରଣ ହୋଇଛି । ଜଣେ ହସୁଛି, ଅନ୍ୟ ଜଣେ କାନ୍ଦୁଛି । ଜଣେ ତ୍ୟାଗୀ, ଆଉ ଜଣେ ଭୋଗୀ । ଲୁହରେ ତକିଆ ଭିଜିଲା, ଅବୁଝା ମନକୁ ବୁଝାଇବାକୁ ଚେଷ୍ଟା କଲା, ନ ବୁଝିଲାରୁ ପୁଣି ଶାସନ କଲା, ପୁନର୍ବାର ସାନ୍ତ୍ୱନା ଦେଲା ନିଜକୁ । ଅମର ଭାଗ୍ୟରେ ଗଜଭୋଗ । ଯାଠୁଁ ବଳି ବଡ଼ ଗର୍ବ ଏବଂ ଗୌରବର କଥା କ'ଣ ଅଛି ? ହାତୀ ବନସ୍ତରେ ଥିଲେବି ଗଜାଙ୍କର । ଆଜି କିନ୍ତୁ ତା ମନହସ୍ତୀ ବଣରେ ନାହିଁ, ଅଛି ସମ୍ମୁଖରେ, ଆଖି ଆଗରେ । ସେତିକି ସୌଭାଗ୍ୟ ସେ ପାଇଛି– ଯଥେଷ୍ଟ । ଆଉ ଅଧିକ କ'ଣ ତା'ର ମିନତି ? ଆଉ ଅନ୍ତର୍ବିଳାପ ନକରି, ଅମରର ସର୍ବସୁଖ କାମନା କରି ଭାଗ୍ୟ ଆଦରି ରହିଲା । ନିଜ ଉପରେ ନିଷ୍ଠୁରଦେଶ ବଳବତ୍ତର ରଖିଲା । ସେ ପତିହରା, ନିଃସନ୍ତାନ । ଆଶ୍ରୟଦାତାଙ୍କର ସୁଖ, ଶାନ୍ତି, ସମୃଦ୍ଧି ତା'ର ଉଚ୍ଛିଷ୍ଟ, ଅବଶିଷ୍ଟ ଜୀବନର ଏକାନ୍ତ କାମ୍ୟ । 



Digitized by PPRACHIN, SOA

ସୁଲୁସୁଲିଆ ପବନ ଚଇତାଳି ସାଥିରେ ବାଜି ପକାଇ ବସନ୍ତ ଖେଳୁଛି । ଫୁଲ ବଗିଚାରେ ମହୁମାଛି ଓ ପ୍ରଜାପତିଙ୍କର ରଙ୍ଗ ସଭା ବସିଛି । ଅନୂଢ଼ା କନିଆରୀ ଆମ୍ବ କଷି କାନ ପାତିଦେଇ କୋଇଲି କଣ୍ଠର ମହୁରୀ ବାଜଣା ଶୁଣୁଛି । ପ୍ରକୃତି ଭଉଜର ପ୍ରତି ରନ୍ଧ୍ରେ ରନ୍ଧ୍ରେ ବସନ୍ତର ମହକ ସବୁରି ହୃଦୟରେ ସୃଷ୍ଟି କରିଛି ଅଜଣା ପୁଲକ । ହେଲେ ଶ୍ରାବଣୀ ଆଜି ବସନ୍ତର ଏ ମାଦକତା ଅନୁଭବ କରିବାରେ ଅସମର୍ଥ । ତା' ଅନ୍ତରରେ ଯେମିତି କାଳ ବୈଶାଖୀର ନିଷ୍ଠୁର ଆଘାତ ? ଅଧିକାଂଶ ସମୟରେ ନୃତ୍ୟଶୀଳ ବୃକ୍ଷ ଗୁଡ଼ିକୁ ଚାହିଁ ଚାହିଁ ଶ୍ରାବଣୀ ଦିନ କଟାଇଥାଏ । କେତୋଟି ବସନ୍ତ ଋତୁ ଏଠି କଟିଲାଣି ? ଟିପ ଗଣି ହିସାବ କଲା– ନଅ । ଅମରକୁ ତା' ହେଲେ ନଅପୂରି ଦଶବର୍ଷ । ଶ୍ରାବଣୀର ନିଜ ବୟସ ? ଅନୁମାନ କରି ସ୍ଥିରକଲା– ଛବିଶ ହେବ । ଯୌବନର ବସନ୍ତ ଋତୁ ଅସମୟରେ ଅପସରି ଯାଇଛି । ଜୀବନ ଏବେ ପ୍ରାଣପାଚୁର୍ଯ୍ୟ ଶୂନ୍ୟ ଶୁଷ୍କନଦୀ । ବାଲୁଚରଭରାନ୍ତ ସରୁ ଧାରଟିଏ ପ୍ରବାହିତ ହେଉଛି ତା' ବୈଧବ୍ୟ ଜୀବନର ସଜ୍ଞା । ଶରୀର ଶୁଖିଲା କାଠଟିଏ ଭଳି ରଂଗହୀନ, ବର୍ଣ୍ଣହୀନ, ସ୍ୱାଦହୀନ, ନୀରସ, ନିର୍ଜୀବ । ହିନ୍ଦୁ ବିଧବା ନାରୀର ସବୁ ନିଷ୍ଠା, ନୀତି, ନିୟମ ତିଳେ ତିଳେ ପାଳନ କରୁଛି । ବର୍ଷ ତମାମ ସମ୍ପୂର୍ଣ୍ଣ ନିରମିଷ ଆହାର, କାର୍ତ୍ତିକ ମାସରେ ହବିଷ୍ୟାନ୍ନ । ଓଷା, ବ୍ରତ, ବାର ମାନଙ୍କରେ ନିର୍ଜଳା ଅବା ନିୟନ୍ତ୍ରିତ ଆହାର । ଅମାବାସ୍ୟା, ସଂକ୍ରାନ୍ତି, ଏକାଦଶୀ ଏବଂ ପୂର୍ଣ୍ଣିମା ତିଥିମାନଙ୍କରେ ପାକତ୍ୟାଗ । ଶରୀର ଉପରେ ତା'ର ସ୍ୱୟଂକାରୀ ସଂଯମ ଏବଂ କଠୋର ନିଷେଧାଦେଶ । ଛବିଶ ବର୍ଷର ନାରୀ ଦିଶୁଛି ବୁଢ଼ୀଭଳି । ମନକୁ ମାରି ଦେଲେ, ତନୁକୁ ତିରସ୍କାର କଲେ, ବୟସ ଏମିତି ବଢ଼ିଯାଏ ହୁହୁ ।



Digitized by PPRACHIN, SOA

৯রে শ্রাবণ

ଅତୀତର ବିଡ଼ମ୍ବିତ ମୁହୂର୍ତ୍ତଗୁଡ଼ିକ ମନେ ପଡ଼ିଲେ ଦେହ ଶିତେଇ ଉଠେ । କେଡ଼େ ନିଷ୍ଠୁର ସେ ଅତୀତ । ଦୁର୍ଦ୍ଦିନର ଦାଗ ଦେହରୁ ଲିଭିନି, ମନରୁ ହଜିନି । ସ୍ୱାମୀଙ୍କର ସ୍ମୃତି ହୃଦୟରୁ ପୋଛି ପାରିନି । ବିସ୍ମୃତିର ବାଲୁଚର ଭିତରୁ ସ୍ମୃତିର ଶାମୁକା କେତେବେଳେ କେମିତି ହାବୁକା ମାରି ଉପରକୁ ଉଠେ; ବକ୍ଷୋଜରୁ ଗରମ ଉର୍ଦ୍ଧ୍ୱଶ୍ୱାସ ଘନୀଭୂତ ହୋଇ ଆଖି-ଆକାଶରେ ବର୍ଷାବିନ୍ଦୁ ସୃଷ୍ଟି କରେ । ବର୍ତ୍ତମାନ ନିଷ୍ଠୁର ହେଲେ ମଧ୍ୟ ତା' ଭିତରେ ଲୁଚି ରହିଛି କାଠିନ୍ୟ କୋମଳତା—ଦାସସେବା ଭିତରେ ଗୋପ୍ୟରହିଛି ମାତୃତ୍ୱର ତୃପ୍ତି, ତାହାହିଁ ତା'ର ସାର୍ଥକତା । ପରିତ୍ୟକ୍ତ ବୈଧବ୍ୟ ଜୀବନରେ ତା'ର ଆଉ ଅଧିକ ଆଶା ବା କ'ଣ ? ଅଭିଳାଷ କ'ଣ ? ସେ ଆଶାଶୂନ୍ୟ, ଅଭିଳାଷ ହୀନା । ସେବାହିଁ ତା'ର କର୍ତ୍ତବ୍ୟ, ଆତ୍ମତୃପ୍ତି—ଗୃହକର୍ତ୍ତୀର ସେବା, ଦାସୀର ସେବା, ଆୟାର ସେବା । ସେଇ ସେବାରେ ସେ ମନକୁ ତୁଷ୍ଟ କରିଛି, ପ୍ରାଣକୁ ପୁଷ୍ଟ କରିଛି ।

ଏକାନ୍ତରେ ବସି ଶ୍ରାବଣୀ ଅପରାହ୍ନର ଆଳସ୍ୟ ଦୂର କରୁଥିଲା । ବଗିଚାର ବୃକ୍ଷମାନଙ୍କରେ ପକ୍ଷୀମାନଙ୍କ କଳକୂଜନରେ ସ୍ଥାନଟି ମୁଖରିତ ଥିଲା । ଆମ୍ବ ଗଛର ଗହଳ ଡ଼ାଳ ଭିତରେ କପୋତୀଟିଏ ଘୁମୁରୁ ଥିଲା । ଘରର ପାଇଟି ସାରି ଦାଣ୍ଡରେ ବସି ଶ୍ରାବଣୀ ଭାବନା ସାଗରରେ ବୁଡ଼ି ରହିଥିଲା— ଅତୀତ—ବର୍ତ୍ତମାନ—ଭବିଷ୍ୟତ । ମନରେ ଉଦାସ, ନିସ୍ତରଙ୍ଗ ଭାବ ।

ଭଦ୍ରବେଶୀ ଯୁବକ ଜଣେ ଫାଟକ ଖୋଲି ହତା ଭିତରକୁ ପ୍ରବେଶ କଲେ ।

: ବାବା, ଅଛନ୍ତି ?

: ହଁ, ବସନ୍ତୁ । ଶ୍ରାବଣୀ ଘର ଭିତରକୁ ଗଲା ।

: କିଏ, ମଦନ ଯେ !

: ହଁ ସାର୍, ନମସ୍କାର ।



Digitized by PPRACHIN, SOA

: ବସ ବସ । ବହୁଦିନ ହେଲ ତୁମର ଦେଖା ନାହିଁ ? ଫୁରସତ୍ ପାଉନ ବୋଧେ । କ'ଣ ଛୁଟି ଫୁଟି ମିଳୁନି ?

: ଦୂରକୁ ବଦଳି ହୋଇଛି ସାର୍ । ବଲାଙ୍ଗୀର ।

: କେବେଠୁଁ ?

: ଛ' ମାସ ହେଲଣି ।

: ବଲାଙ୍ଗୀର ଦୂର ଜାଗା ଆଉ କ'ଣ ?

ଏ ବିଜ୍ଞାନ ଯୁଗରେ ଭୌଗୋଳିକ ଦୂରତା ବୋଲି ଆଉ କ'ଣ କିଛି ଅଛି ? ଚାକିରୀ କାଳରେ ଏମିତି ବହୁସ୍ଥାନ ବୁଲିବାକୁ ହୁଏ । ଯୁବକ ବୟସରେ ଦୂରସ୍ଥାନ ବୁଲି ଆସିଲେ ଭଲ । କେବେ ଆସିଛ ?

: ସାତ ଦିନ ହେଲଣି । ବାହାଘର ଉଦ୍ଦେଶ୍ୟରେ ।

: ଓ, ଖୁବ୍ ଭଲ କଥା, ଶୁଭ ଖବର । ମୁଁ ଆନନ୍ଦିତ । ତୁମକୁ ଅଭିନନ୍ଦନ କରୁଛି । କନ୍ୟା କେଉଁଠିକାର ? ଘର ? ?

: ପୁରୀ ଜିଲ୍ଲା ମାନପୁର ଗାଁ । ମଧ୍ୟବିତ୍ତ ପରିବାରର ଝିଅ । ତାଙ୍କ ବାପା କୃଷିକାମ କରନ୍ତି । ଝିଅ କିନ୍ତୁ ବିଶେଷ ପାଠ ପଢ଼ିନି, ଅଳ୍ପ ଶିକ୍ଷିତା, ମାଇନର ପାସ୍ । କିନ୍ତୁ ଗୃହ କର୍ମରେ ନିପୁଣା । ଭଲ ଗୀତ ଗାଏ । ବୁଣା ବୁଣିରେବି ପାରଙ୍ଗମ । ବାପା ତାକୁ ଠିକ୍ କରିଛନ୍ତି ବହୁ ଦିନରୁ ।

: ସୁ-ଗୃହିଣୀ ପତ୍ନୀର ଆଉ ଅଧିକ ସାର୍ଟିଫିକେଟ କ'ଣ ଦରକାର ? କାଗଜ ସାର୍ଟିଫିକେଟରେ ମୂଲ୍ୟ କ'ଣ ଥାଏ ? ଖାଲି ମନ ବୁଝିବା କଥା । ପ୍ରକୃତରେ ଶିକ୍ଷାହିଁ ଖାଲି କାମରେ । ପୁସ୍ତକଗତ ବିଦ୍ୟା କ'ଣ ଜ୍ଞାନର ମାପ କାଠି ? ତୁମ ଦୃଷ୍ଟିଭଙ୍ଗୀକୁ ମୁଁ



Digitized by PPRACHIN, SOA

ତାରିଫ କରୁଛି ମଦନ । ତୁମ ପିତାମାତାଙ୍କ ମତାନୁଯାୟୀ ସାଥୀ ପସନ୍ଦ କରିଛ ତମକୁ ଧନ୍ୟବାଦ ଦେଉଛି । ପିତାମାତାଙ୍କୁ ଖୁସି କରଇବା ସୁ-ପୁତ୍ରର ଧର୍ମ ଆଉ କର୍ତ୍ତବ୍ୟ ।

: ସାର୍, ଆଉ ଗୋଟିଏ ପରାମର୍ଶ ପାଇଁ ଆସିଥିଲି ।

: କ'ଣ ?

: ଶ୍ୱଶୁର ଘରର ଆଉ କେହି ନାହାନ୍ତି । ତେଣୁ ସେମାନେ ମୋତେ ଘର ଜୁଆଇଁ କରିବେ । ତାଙ୍କ ଜମିବାଡ଼ି, ଘର ସମ୍ପତ୍ତି ଆଦି ଆମ ଦୁହିଁଙ୍କ ନାମରେ ଦାନପତ୍ର କରିବେ । ଦଲିଲ ହେବ, ଅଦାଲତରେ ରେଜେଷ୍ଟ୍ରୀ ହେବ । ଆଇନ୍, ଅଦାଲତ କଥା । ଆପଣ ଏ କ୍ଷେତ୍ରରେ ଠିକ୍ ପରାମର୍ଶ ଦେଇ ପାରିବେ ।

: ଭଲ କଥା । ବିବାହ ପରେ ଯେ କୌଣସି ଦିନ ଆସିଲେ ବ୍ୟବସ୍ଥା କରିଦେବା । ଖୁବ୍ ମାମୁଲି କଥା । ଦିନଟେ ଲାଗିବ । ଦାତା ଏବଂ ଗ୍ରହୀତା ଉଭୟେ ଆସିବେ । ମୋହରିରକୁ କହି ରଖୁଛି । ତୁମ ସୌଭାଗ୍ୟବତୀ ସ୍ତ୍ରୀକୁ ସାଙ୍ଗରେ ଆଣିବ । ସେତିକିବେଳେ ତାକୁ ଦେଖି ଦେବି । ତୁମେ ଭାଗ୍ୟବାନ ମଦନ । ଆଶୀର୍ବାଦ କରୁଛି ତୁମେ ସୁଖୀ ହୁଅ । ଉତ୍ତରୋତ୍ତର ଉନ୍ନତି ହେଉ ତୁମର ।

: ଆପଣଙ୍କ ଆଶୀର୍ବାଦ, ସାହାଯ୍ୟ, ସହାନୁଭୂତି ଭୁଲି ପାରିବି ନାହିଁ, କେବେ ଅସ୍ୱୀକାର କରି ପାରିବି ନାହିଁ । ଜୀବନ ସାରା ମୁଁ ଆପଣଙ୍କ ନିକଟରେ ଋଣି, କୃତଜ୍ଞ ସାର୍ ।

: ମୁଁ କି ଉପକାର ତୁମର ବା କରିଛି ?

: ଆପଣ ସେଦିନ ସୁପାରିଶ ନ କରିଥିଲେ ମୁଁ ଚାକିରୀ ପାଇ ନ ଥାନ୍ତି । ବେକାର ହୋଇ ବୁଲୁଥାନ୍ତି ।



Digitized by PPRACHIN, SOA

: ମୋ ସୁପାରିଶ ଯଥେଷ୍ଟ ନୁହେଁ । ତୁମର ଯୋଗ୍ୟତା ଥିଲା । ତୁମପରି ସଚ୍ଚୋଟ, ତାଲିମପ୍ରାପ୍ତ, ଯୋଗ୍ୟ ଯୁବକକୁ ଉପେକ୍ଷା କରି କମ୍ ଯୋଗ୍ୟତା ସମ୍ପନ୍ନ ପ୍ରାର୍ଥୀକୁ ନିଯୁକ୍ତି ଦେବା ଅନ୍ୟାୟ, ଅନୁଚିତ ଥିଲା ମୋ ପକ୍ଷରେ । ମୁଁ ଅଧିକ କିଛି କରି ନାହିଁ । ନ୍ୟାୟକୁ ଆଖିରେ ରଖି ଉଚିତ କାମ କରିଥିଲି । ତୁମର ସଚ୍ଚୋଟ ଗୁଣରେ ମୁଁ ମୁଗ୍ଧ ହୋଇଥିଲି । ତା' ଛଡ଼ା ଈଶ୍ୱରଙ୍କ ଇଚ୍ଛାହିଁ ସବୁର ଊର୍ଦ୍ଧ୍ୱରେ ! ତୁମର ସେଦିନର କଥା କ'ଣ ମନେ ନାହିଁ ?

ମଦନ ମଥାନତ କଲା । ମନେ ପଡ଼ିଗଲା ସେ ଦିନର ସେହି ଛୋଟ ଘଟଣାଟି । କଟକ ସହର ଗଳି– ଜନ ଗହଳି ବିଶେଷ ନଥିଲା । ସୂର୍ଯ୍ୟାତୀତ ସମୟ । କଟକଚଣ୍ଡି ଆଡୁ ମଦନ ସାଇକଲ ଧରି ଫେରୁଥିଲା ଛାତ୍ରାବାସକୁ । ବଙ୍କାଡଙ୍କା ଗଳି ରାସ୍ତାରେ ସାଇକଲର ସର୍ପିଳ ଗତି ପଦଯାତ୍ରୀ, ରିକ୍ସାବାଲାକୁ ଅତିକ୍ରମ କରି ଆଗକୁ ମାଡୁଥିଲା । ହଠାତ୍ ତା'ର ଗତିରୋଧ ହେଲା– ଆଗରେ କୌଣସି କାରଣରୁ ଭିଡ଼ । ଅଣଓସାରିଆ ରାସ୍ତାରେ ଯାନବାହନ ଗୁଡ଼ିକ ମୁହାଁମୁହିଁ ହୋଇଥିଲେ । କେହି କାହାକୁ ବାଟ ଛାଡ଼ିବେନି ବୋଲି ଗାଡ଼ିଚାଳକମାନଙ୍କ ଜିଦ୍ । ସେମାନଙ୍କ ମଧ୍ୟରେ ତେଢା ତେଢି, ତର୍କ ବିତର୍କ, ବାକ୍‌ବିତଣ୍ଡା ଏବଂ କଳିତକରାଳ । ଏତ ସହର ରାସ୍ତାର ନିତିଦିନିଆ କଥା । ସାଇକଲରୁ ଓହ୍ଲାଇ କିଛି ସମୟ ଛିଡ଼ା ହୋଇ ରହିଲା ମଦନ । ମୋଡ଼ ଭଙ୍ଗି ଅନ୍ୟରାସ୍ତା ଧରୁଥିଲା, ଦୃଷ୍ଟି ପଡ଼ିଲା ରାସ୍ତାକଡ଼ର ଖିଲିପାନ କ୍ୟାବିନ୍ ମୂଳର ବସ୍ତୁଟିଏ ପ୍ରତି । ସାଉଁଟି ନେଲା । ସୁନ୍ଦର ଚମଡ଼ା ହାତ ବ୍ୟାଗ୍‌ଟିଏ ।

ଖୋଲିବ ? ସାହସ କଲାନି ।

ବୋମା ନୁହେଁ ତ ? ଭୟକଲା ।

ପୋଲିସକୁ ଦେବ ? ମନକୁ ପାଇଲାନି ।

ଆଲୁଅକୁ ଗଲା, ଦେଖିଲା । ବ୍ୟାଗ୍‌ର ସ୍ୱତ୍ୱାଧିକାରୀଙ୍କ ନାମ ଏବଂ ଠିକଣା ଲିଖିତ । ଅପହୃତ ହୋଇ ଯାଇଛି ? ଚିନ୍ତାକଲା । ସହରର ନାମଜାଦା ବ୍ୟକ୍ତିଙ୍କର । କିଏ ନଜାଣେ ତାଙ୍କୁ ? ସାମାଜିକ ପ୍ରତିଷ୍ଠା



Digitized by PPRACHIN, SOA

ଯାହା ଥାଉ ନା କାହିଁକି, ସେ ଜଣେ ନିଷ୍ଠାଜାପୀ, ସମାଜସେବୀ । ଅନ୍ତଦିନ ତଳେ ସେ ତ କଲେଜର ବାର୍ଷିକୋତ୍ସବରେ ମୁଖ୍ୟ ଅତିଥି ଭାବେ ସମ୍ମାନିତ କରିଥିଲେ । ବଡ଼ ଅମାୟିକ ତାଙ୍କର ବ୍ୟବହାର, ମୁହଁରେ ବଚନାମୃତ । ଅବସରପ୍ରାପ୍ତ ବିଗ୍ୱର ପତି ସେ । ଲୋକପ୍ରିୟ ଏବଂ ଦୟାଳୁ । ତାଙ୍କ ବ୍ୟାଗ୍‌ଟି ବାଟରେ ଖସି ପଡ଼ିଛି ବୋଧହୁଏ । ମଦନ ମୁହୂର୍ତ୍ତେ ଆଉ ଡେରି କରି ନଥିଲା ।

ଅଭୟାନନ୍ଦ ବଡ଼ ଚିନ୍ତିତ ଥିଲେ । ସେଇ କ୍ଷୁଦ୍ର ବ୍ୟାଗ୍‌ଟିରେ ଅନେକ ଗୁରୁତ୍ୱପୂର୍ଣ୍ଣ ଦଲିଲ ଥିଲା– ସଂକ୍ଷିପ୍ତ ଉଇଲ ଏବଂ କେତେ ଗୁଡ଼ିଏ ନୋଟ ବଣ୍ଡିଲ । ବ୍ୟାଙ୍କରୁ ଟଙ୍କା ଉଠାଇ ଫେରୁଥିଲେ । ବାଟରେ କେଉଁଠି ଛାଡ଼ି ଦେଲେ ବା କିଏ ନେଇଗଲା ମନେ ପଡୁନାହିଁ । ନିଜ ଅସାବଧାନତାକୁ ଧିକ୍‌କାରୁଥିଲେ । ବୁଢା ହେଲେ ବୋଧହୁଏ ଧୀଶକ୍ତି, ସ୍ମରଣଶକ୍ତି କମିଯାଏ; କାର୍ଯ୍ୟରେ ଏପରି ଶିଥିଳତା ଆସେ । ପସ୍ତେଇ ହେଉଥିଲେ ମନେ ମନେ । ସୁଶୀଳାଙ୍କୁ ପ୍ରକାଶ କରିବାକୁ ସାହସ କରୁନଥିଲେ–ବିରକ୍ତ ହେବେ । ବିଗ୍ୱରପତିଙ୍କ ପୁଣି ଅବିଗ୍ୱର କାମ, ଅବହେଳା, ଦାୟିତ୍ୱହୀନତା ! ନା, ଅପେକ୍ଷା କରଯାଉ । ଖବର କାଗଜରେ ଛାପିବେ, ରେଡ଼ିଓରେ ପ୍ରକାଶ କରିବେ– କୌଣସି ହୃଦୟବାନ ବ୍ୟକ୍ତି ଯଦି ପାଇଥାନ୍ତି ... । ସନ୍ତୋଟଧନ ଘ୍ୱେର ଗର୍ଭରେ ଲୀନ ହେବାର ନୁହେଁ । ଦେଖାଯାଉ । ଏମିତିବି ହୁଏ । ଦୁର୍ଯୋଗକୁ ହାତ କାହାର ଅଛି ?

ସୌଭଗ୍ୟକୁ ସୁଶୀଳା ଘରେ ନଥିଲେ । ଅଭୟାନନ୍ଦଙ୍କ ମୁହଁ ଦେଖି ମନୋଭବ ଜାଣି ପାରନ୍ତି । ଖୋଳି ଉଖାରି କଥାଟି ଆଦାୟ କରି ଦେଇଥାନ୍ତେ । ସୁଶୀଳାଙ୍କୁ କୌଣସି କଥା ଗୋପନ ରଖିବା ତାଙ୍କ ପକ୍ଷେ ସମ୍ଭବ ହୁଏନି । ପେଟର ସବୁକଥା ସଙ୍ଗେସଙ୍ଗେ ବାନ୍ତି କରି ପକାନ୍ତି ଯେତେ ଗୁରୁତର ଘଟଣା ହେଉ ପଛକେ । ଏପରିକି ଦୋଷୀକୁ ଦଣ୍ଡାଦେଶ ଦେଲା ବେଳେ ସୁଶୀଳାଙ୍କ ପରାମର୍ଶ ନେଉଥିଲେ । ତାଙ୍କର ନୀତି-ଦୋଷୀ ପଛେ ଖଲାସ ପାଉ, ନିର୍ଦ୍ଦୋଷୀ କେବେ ଦଣ୍ଡ ନପାଉ । ଏହି ନ୍ୟାୟ ନୀତିଟି ତାଙ୍କ ଜୀବନ ମନ୍ତ୍ର ବୋଲି ସେ ଧରି ନେଇଥିଲେ ।



Digitized by PPRACHIN, SOA

ସୁଶ୍ରୀ, ସୁମନ୍ତ ଯୁବକଟିଏ ଘରେ ପ୍ରବେଶ କଲା । ହାତରେ ତାଙ୍କ ହଜିଥିବା ବ୍ୟାଗ୍‌ଟି । ଆଶ୍ଚର୍ଯ୍ୟ ଏବଂ ଆନନ୍ଦରେ ଅଧୀର ହୋଇ ପଡ଼ିଥିଲେ ଅଭୟାନନ୍ଦ । ତାଙ୍କ ଆତ୍ମବିଶ୍ୱାସ ବୃଦ୍ଧି ପାଇ ଯାଇଥିଲା । ବହୁ ପ୍ରଶଂସା କରିଥିଲେ ମଦନର ସଚ୍ଚୋଟ ଗୁଣକୁ । ପୁଲକିତ ହୋଇ ପୁରସ୍କାର ଘୋଷଣା କରିଥିଲେ ଏକହଜାର ଟଙ୍କା ।

: ନା, ସାର୍‌ ମୋର ଆର୍ଥିକ ପୁରସ୍କାର ଆବଶ୍ୟକ ନାହିଁ । ମୁଁ କେବଳ ଜଣେ ଛାତ୍ରର ନାଗରିକ କର୍ତ୍ତବ୍ୟ କରିଛି । ଆପଣଙ୍କ ହୃତ ଦ୍ରବ୍ୟଟି ଫେରସ୍ତ ଦେବା ଯେ କୌଣସି ନୀତିବାନ ନାଗରିକର କର୍ତ୍ତବ୍ୟ । ଏଥିରେ ମୋର ବାହାଦୂରୀ କ'ଣ ଅଛି ସାର୍ ? ଆପଣଙ୍କ ଶୁଭାଶୀର୍ବାଦ ମୋର ଶ୍ରେଷ୍ଠ ପୁରସ୍କାର ।

ଯୁବକର ସମ୍ଭାଷଣ ଏବଂ କର୍ତ୍ତବ୍ୟ ପରାୟଣତାରେ ଅଭୟାନନ୍ଦ ସନ୍ତୁଷ୍ଟ ହୋଇ ଆଶୀର୍ବାଦ କରିଥିଲେ । ସୁବିଧା ଅସୁବିଧାରେ, ଅଭୟାନନ୍ଦଙ୍କ ପିତୃତୁଲ୍ୟ ହୃଦୟ ସର୍ବଦା ତା ପାଇଁ ଉନ୍ମୁକ୍ତ ବୋଲି ଅଭୟାନନ୍ଦ ସ୍ନେହସିକ୍ତ କଣ୍ଠରେ କହିଥିଲେ ।

ବୈଷୟିକ ଶିକ୍ଷାଲାଭ ପରେ ମଦନ ଚାକିରୀ ଅନ୍ବେଷଣରେ ଥିଲା । ବଡ଼ ଭାଇ ଦୁଇଜଣ ଗାଁ କୃଷିକ୍ଷେତ୍ରରେ ନିୟୋଜିତ ଥିଲେ । ଚାକିରୀ ଥିଲା ମଦନର ଏକମାତ୍ର ଲକ୍ଷ୍ୟ, ଆଭିମୁଖ୍ୟ । ହେଲେ ଏତେ ଚଞ୍ଚଳ ଚାକିରୀ ବା ମିଳୁଛି କେଉଁଠି ? କେବଳ ଶିକ୍ଷା ଏବଂ ଯୋଗ୍ୟତା ଆଜିକାଲି ନିଯୁକ୍ତିର ନିୟମ ନୁହେଁ, ବଂଶାଭିଜାତ୍ୟ, ପଇଠେଲା ଏବଂ ପ୍ରିୟାପ୍ରୀତି ତୋଷଣ ଏବେ ଏଥିରେ ଏକ ଆବଶ୍ୟକତା ହୋଇ ଗଲଣି । ମଦନର କିଏ ଅଛି ଏ କ୍ଷେତ୍ରରେ ସାହାଯ୍ୟ କରିବାକୁ ?

ଦୈବାତ୍ ସେଦିନ ଅଭୟାନନ୍ଦ ନିଯୁକ୍ତି ବୋର୍ଡର ସଭ୍ୟ ଥିଲେ । ଗ୍ରାମ୍ୟ କୃଷିଶିଳ୍ପ ଉନ୍ନୟନର ସେ ଉପଦେଷ୍ଟା । ଏକଥା ଆଗରୁ ଜାଣିଥିଲେ ମଧ୍ୟ ମଦନ କେବେ ଅଭୟାନନ୍ଦଙ୍କୁ ନିଜ ଅଭିପ୍ରାୟ ପ୍ରକାଶ କରି ନଥିଲା । ଇଣ୍ଟରଭ୍ୟୁ ବୋର୍ଡର ନିଯୁକ୍ତି ଆସନରେ ବସି ବଡ଼ ଆଶ୍ଚର୍ଯ୍ୟ ହୋଇଥିଲେ



Digitized by PPRACHIN, SOA

ଅଭୟାନନ୍ଦ । କେବେହେଲେ ମଦନ ତାଙ୍କୁ କହି ନଥିଲା । ଖୁବ୍ ନୀତିବାଦୀ ଆତ୍ମନିର୍ଭରଶୀଳ ପିଲଟିଏ । ତାଙ୍କର ହୃଦୟ ତରଳି ଯାଇଥିଲା, ମନରେ ଦୟା ଜାତ ହୋଇଥିଲା । ଏଭଳି ଏକ ସୁଯୋଗରେ ମଦନକୁ ମଦଦ୍ କରିଥିଲେ । ଅତୀତର ଋଣ ପରିଶୋଧ କରିଥିଲେ । ତାକୁ ସର୍ବୋଚ୍ଚ ନମ୍ବର ଦେଇ ନିଯୁକ୍ତିପତ୍ରର ଶୀର୍ଷସ୍ଥାନ ଦେଇଥିଲେ ।

ଆଜି ମଦନ ଆସିଛି ଶୁଭ ସମ୍ବାଦ ଧରି । ବିନୀତ ମୁହଁରେ ମୁଠାଏ ହସ । ପୁଣି ବାର୍ତ୍ତାଳାପ ଗଲୁ ରହିଲା ।

: ଚାକିରୀ କେମିତି ଲାଗୁଛି ? କାମ କିପରି ?

: ଭଲ । ଉପରିସ୍ଥ ଅଫିସରମାନେ ମୋ ଉପରେ ଖୁବ ସନ୍ତୁଷ୍ଟ ସାର । ଗାଁରେ ମୋର ଜନ୍ମ । ଗ୍ରାମ୍ୟ ସମସ୍ୟାଗୁଡ଼ିକ ମୁଁ ଭଲ ଭାବେ ବୁଝି ପାରିଛି । ଆମ ନିଗମର ଯୋଜନାଗୁଡ଼ିକ କୃଷିକ୍ଷେତ୍ରରେ ବେଶ୍ କାର୍ଯ୍ୟକାରୀ କରି ହେବ । ଗ୍ରାମ୍ୟ ଜନମଙ୍ଗଳ ଯୋଜନା ଗୁଡ଼ିକରେ ଅନେକ ଅର୍ଥ ବାଟମାରଣା ହୋଇଯାଏ । ନୁହେଁ ସାର୍ ?

: ମନେ ପଡୁଛି ସେଦିନ ଇଣ୍ଟରଭ୍ୟୁରେ ଏଇ ବାଟମାରଣା କଥା ଆମର ଆଲୋଚ୍ୟ ବିଷୟ ହୋଇଥିଲା ? ତମ ନିର୍ଭୀକତାକୁ ମୁଁ ପସନ୍ଦ କରିଥିଲି । ଚାକିରୀ ଜୀବନ ତୁମର କୁସୁମିତ ହେଉ । ଦେଶର ଉନ୍ନତି, ଜାତିର ଭବିଷ୍ୟତ ନିର୍ଭର କରେ ଗ୍ରାମ୍ୟ ଜୀବନର ଉତ୍‌ଥାନ ଉପରେ । ତୁମମାନଙ୍କ ପରି ନିଃସ୍ୱାର୍ଥପର ଯୁବକମାନଙ୍କ ସେବା ଆଜି ଆମ ଦେଶ ଆବଶ୍ୟକ କରୁଛି । ଉନ୍ନତିର ଆହ୍ୱାନକୁ ଗ୍ରହଣ କଲେ ପ୍ରଗତି ଅବଶ୍ୟମ୍ଭାବୀ । ନିଷ୍ଠା, ନମ୍ରତା, କର୍ମସହିଷ୍ଣୁତା, ସଚ୍ଚୋଟତାହିଁ ସକଳ ଉନ୍ନତିର ଲକ୍ଷଣ । ସୁଖୀ ହୁଅ ମଦନ, ସୁଖୀ ହୁଅ । ମୁଁ କଲ୍ୟାଣ କରୁଛି ।



Digitized by PPRACHIN, SOA

ଅଭୟାନନ୍ଦଙ୍କ ଉପଦେଶଗୁଡ଼ିକ ମଦନ ଦେବବାଣୀ ଭବେ ଗ୍ରହଣ କରିଥାଏ । ତାଙ୍କ ପ୍ରତି ଥାଏ ଆନ୍ତରିକ ଭକ୍ତି ଏବଂ ଶ୍ରଦ୍ଧା । ତାଙ୍କ ଚରଣ ସ୍ପର୍ଶକରି ବିଦାୟ ନେଇ ମଦନ ।

ସୁସଜ୍ଜିତ ବୈଠକଖାନାର ଟେବୁଲ ଉପରେ ବିବାହ ନିମନ୍ତ୍ରଣ ପତ୍ରଟି ପଡ଼ିରହିଥିଲା । ଶ୍ରାବଣୀ ଆଖିରେ ପଡ଼ିଲା । ଖେଳିଗଲା ସର୍ବାଙ୍ଗରେ ଅତୁଳ ସ୍ମୃତିର ତରଙ୍ଗ, ପୁନର୍ଜୀବିତ ହୋଇ ଉଠିଲା ଶାଶୁ ଘରର ଦୃଶ୍ୟ, ବିବାହ ବେଳର ଘଟଣା । କେତେ ପ୍ରମୋଦମୟ ଆଉ ପ୍ରୀତିପଦ ସେ କେତୋଟି ଦିନର ସ୍ମୃତି ! ସ୍ୱର୍ଗବାସୀ ସ୍ୱାମୀ ପ୍ରତି ଢାଳିଲା ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଏବଂ ପରେ ପରେ ପୁଣି ମନ ଭିତରେ ଜାଗିଁ ଉଠିଲା ପରବର୍ତ୍ତୀ ଜଘନ୍ୟ ଘଟଣାଗୁଡ଼ିକ, ଘନାନ୍ଧକାରର ଛାୟାଭଳି । କେତେ ଭୀତିପ୍ରଦ ଆଉ ମର୍ମାନ୍ତିକ ସେ ଅନୁଭୂତି ଗୁଡ଼ିକ ? ଅନେକ ସମୟରେ ମାନସପଟରେ ଚେଇଁ ଉଠେ ବାଳିକା ଟିକିନୀର ଚିତ୍ର– ଚା'ର ହସକୁଡୀ ମୁହଁ, ତା ଟିକି ନଣନ୍ଦର ଆତିଥ୍ୟ, ଆଗ୍ରହ ବ୍ୟବହାର ଏବଂ ସ୍ନେହାନୁରକ୍ତି । ସୁଦିନରେ, ଦୁର୍ଦ୍ଦିନରେ ସେହିଁ ଥିଲା ସ୍ନେହ ରକ୍ଷୁଣୀ, ସମ୍ବେଦନଶୀଳା ଏବଂ ନୂଆବୋଉର ସଚ୍ଚା ସମର୍ଥକ । ଶ୍ରାବଣୀର ମନେ ପଡ଼ିଲା ଶାଶୁଘରୁ ବହିଷ୍କାର ହେବା ଘଟଣାଟି । ଏଇ ଟିକିନୀ ବହୁ ବିକଳ ହୋଇ ମୁଣ୍ଡ ପିଟି କାନ୍ଦିଥିଲା, ପ୍ରାଣମୂର୍ଚ୍ଛା ଚେଷ୍ଟା କରିଥିଲା ସମସ୍ତଙ୍କୁ ବୁଝାଇବା ପାଇଁ । କେଡ଼େ ହୃଦୟବତୀ ଝିଅଟି ସେ !

ଶ୍ରାବଣୀ ଆଖି ପୋଛିଲା । ନଣନ୍ଦ ଟିକିନୀର ମଙ୍ଗଳ ମନାସିଲା । ତା'ର ବାହାଘର ହେଉଛି । ସେ ଯିବ ବରଘର, ସଂସାର କରିବ । ଏଇକଥା ଲେଖାଅଛି ନିମନ୍ତ୍ରଣ ପତ୍ରଟିରେ । ସୁନ୍ଦର ଯୁବକଟି ତା ବର । ଆହା, ଟିକିଏ ଆଗରୁ ହେଲେ ଜାଣି ପାରିଥାନ୍ତା ! ଭଲ କରି ଆଖି ପୂରେଇ ଆଉ ଥରେ ଦେଖି ନେଇ ଥାନ୍ତା ଟିକିନୀର ବରକୁ । ଆଖି ଆଗରେ ଉଭାସିତ ହେଲା ଟିକିନୀର ବିବାହ ବେଳର ମୁଖଶ୍ରୀ– କୁନି କପାଳର କୁଙ୍କୁମ, ଚନ୍ଦନର ସରୁ କାରୁକାର୍ଯ୍ୟ; ହଳଦୀର ସୂକ୍ଷ୍ମ ବିନ୍ଦୁ, ଆଖିର କଜ୍ଜଳ ରେଖା; ସିନ୍ଥି, ସିନ୍ଦୂର ସ୍ୱର୍ଣ୍ଣଟୀକା ଏବଂ କର୍ଣ୍ଣାଳଙ୍କାର ।



Digitized by PPRACHIN, SOA

ଟିକିନୀ ସୁଖୀ ହେଉ । ତାର ହାତକାତ ବଳୁହେଉ । ସତୀ ସିନ୍ଦୂର ତା ସିମନ୍ତରେ ସଦା ପ୍ରଜ୍ଜ୍ୱଳିତ ହେଉଥାଉ, ହେଉ ସେ କାଳଜୟୀ । ହେଉ ସେ ସୁପତ୍ନୀ, ସୌଭାଗ୍ୟବତୀ, ଲଭୁ ସେ ଦାମ୍ପତ୍ୟ ସୁଖ । ସ୍ପର୍ଶ ନକରୁ କେବେ ତାକୁ ଅଶାନ୍ତିର ଅଗ୍ନି; ନଛୁଉଁ କେବେ ତାକୁ ଦୁର୍ଦ୍ଦିନର ଦୁଃଖ, ନ ଲଗୁ କେବେ ତାକୁ କଳଙ୍କର କାଳିମା । ସ୍ୱାମୀ ଭକ୍ତି, ପତି ପ୍ରୀତିରେ ସଂସାର ତା'ର ହସି ଉଠୁ । ସ୍ନେହମୟୀ ଭଉଜର ଅନ୍ତରରୁ ବର୍ଷିଯାଉଥିଲା ଏଇମିତି ଅସରନ୍ତି ଆଶୀର୍ବାଦ, ହୃଦୟରୁ ଝରୁଥିଲା କଲ୍ୟାଣର ଧାର । ଇଚ୍ଛା ହେଉଥିଲା ବାବୁଙ୍କୁ ପଚାରି ଯୁବକ ସମ୍ବନ୍ଧରେ ଅଧିକ କିଛି ବୁଝିବାକୁ । ପୁଣି ନିଜକୁ ତାଗିଦ୍ କରିଦେଇ, ଇଚ୍ଛାକୁ ଦମନକଲା ଦୃଢ଼ଭାବେ । କଟଂକିତ ଅତୀତକୁ ସେ କବର ଦେଇ ସାରିଛି । ବର୍ତ୍ତମାନ ଅଜ୍ଞାତବାସିନୀ ।



କଳା ମଚ ମଚ ଅନ୍ଧକାର ରାତି । ଚତୁର୍ ମାସିଆ ତୋଫାନରେ ବିଜୁଳି ଖୁଣ୍ଟ ଉପାଡ଼ି ପଡ଼ିବାରୁ ବିଦ୍ୟୁତ୍ ସଂଯୋଗ ବିଚ୍ଛିନ୍ନ ହୋଇଯାଇ ଥାଏ । ସମଗ୍ର ସହର ତମସାଚ୍ଛନ୍ନ । ପାଗ ଖରାପ ଯୋଗୁଁ ସନ୍ଧ୍ୟାପ୍ରହରୁ ସହରର ଉପକଣ୍ଠ ଅଞ୍ଚଳରେ ଜନାଗମନ ଶିଥିଳ ଥିଲା । ଆକାଶକୁ ଢାଙ୍କି ରହିଥିଲା କଳା ମେଘର ଗାଢ ଆସ୍ତରଣ । ଘଡ଼ଘଡ଼ି ବିଜୁଳି ସହ ଟୋପାଏ ଟୋପାଏ ବର୍ଷାବିନ୍ଦୁରେ ଘୋଷିତ ହେଉଥିଲା ନିଶାକାଳର ବିକ୍ଷତ ନିର୍ଜନତା ।

ବାହାର ହତା ଭିତରେ ଡ଼ାହାଳ କୁକୁରଟା ପହରା ଦେଉଥିଲା । ପ୍ରଚଣ୍ଡ ଶବ୍ଦଟିଏ ରୁଦ୍ଧଦ୍ୱାର ଅତିକ୍ରମ କରି କାନକୁ ଶୁଣାଗଲା । ଶ୍ରାବଣୀ ଆଖିକୁ ଛାଇନିଦ ଲାଗି ଆସୁଥିଲା । ଘଡ଼ଘଡ଼ି ଶବ୍ଦ ନା ତୋପଧ୍ୱନି ! ସେ ଆଖି ଖୋଲିଲା । ବିଛଣାରେ ପଡ଼ିରହି କାନ ଡେରିଲା, କୁକୁରର ସ୍ୱର ଆଉ ଶୁଭୁ ନଥିଲା । କ'ଣ ହେଲା କୁକୁରର ?



Digitized by PPRACHIN, SOA

ସାହସ ଅଣ୍ଟୁ ନଥିଲା କବାଟ ଖୋଲି ବାହାରକୁ ଯିବାପାଇଁ । ବାବୁ ମା' ନାହାନ୍ତି । ଏକ ମାସ ହେବ ତୀର୍ଥାଟନରେ ଉତ୍ତର ଭାରତ ଯାଇଛନ୍ତି । ହିସାବ ଅନୁସାରେ ଆଜି ଫେରିବା କଥା । ଗତି ଶେଷ ବେଳକୁ ପହଞ୍ଚି ପାରନ୍ତି । ଘରେ କେବଳ ସେ ଏବଂ ଅମର । ଅମର କିଛିଦିନ ପାଇଁ ଛୁଟିରେ ଆସିଥିଲା । କାଲି ଫେରିଯିବ ବାପା ବୋଉଙ୍କୁ ଦେଖିସାରି । ଶୟନ କୋଠରୀର ପଲଙ୍କ ଉପରେ ଶୋଇଥିଲା ଅମର । ତଳେ ସପପାରି ଶୋଇଛି ଶ୍ରାବଣୀ ଅମରର ଜଗୁଆଳୀ ଭଳି । ଏମିତି ବାବୁ ମା' ନଥିଲେ ସେ ଅମରକୁ ଜଗି ଶୁଏ । ଅମର ଗାଢ ନିଦରେ ଶୋଇଥିଲାବେଳେ ତା' ମୁଣ୍ଡରେ ହାତ ବୁଲାଇ କପାଳରେ ଅସଂଖ୍ୟ ଚୁମା ଦେଇ ସେ ତୃପ୍ତି ପାଏ । ଖୁବ୍ ନିକଟରେ ଅମରକୁ ତୃଷ୍ଣ ଆଖିରେ ଦେଖି ରହେ ।

ଶ୍ରାବଣୀ ତିନିଦିନ ହେଲା ଜ୍ୱରକ୍ରାନ୍ତ ଥିଲା । ଦେହମୁଣ୍ଡ ଦରଜ ଧରିଛି, ଘୋଳେଇ ବିନ୍ଧି ହେଉଛି, ମୁଣ୍ଡ ଉପରକୁ ଟେକି ହେଉନି । ମୁଣ୍ଡବ୍ୟଥା ଏମିତି ମଝିରେ ମଝିରେ ଉତ୍କଟ ହୋଇ ଉଠେ ଯେ ଯନ୍ତ୍ରଣା ଅସହ୍ୟ ହୁଏ, ଏପରିକି ବେକରେ ଦଉଡ଼ି ଦେବାକୁ ଇଚ୍ଛା ହୁଏ । ପ୍ରକୋପ ପ୍ରଶମିତ ହୁଏ ବିନା ଔଷଧରେ । ସ୍ୱାସ୍ଥ୍ୟ ଉପରେ ଏମିତି ସେ ଅତ୍ୟାଚାର କରିଥାଏ । ଔଷଧ ପ୍ରତି ବୀତସ୍ପୃହା । ଔଷଧ କ'ଣ ଦରକାର ? ଦେହର ବା ତା'ର ଆଉ କ'ଣ ପ୍ରୟୋଜନ ?

କବାଟରେ ପ୍ରଚଣ୍ଡ ଶବ୍ଦାଘାତ । ଦରଜାରେ ଖୁଟ୍‌କିନା ଶବ୍ଦ ହେଲେ ତା' ସତର୍କ କାନ ଟେଇଁ ଉଠେ । ମନଟା ଭୟଭୀତ ହୋଇ ଉଠେ । ଦେହ ଥରେ, ଛାତି ଧଡ଼ଧଡ଼ କରେ । ଅତୀତରେ ଅନେକ ଥର କବାଟାଘାତର ପରିଣାମ ସେ ଭୋଗିଛି । ତେଣୁ କବାଟ ଶବ୍ଦକୁ ତା'ର ପ୍ରାଣେ ଭୟ ।

କବାଟ ଶବ୍ଦ ବେଳକୁ ବେଳ ଜୋର ହେଲଣି, ପ୍ରବଳରୁ ପ୍ରବଳତର ।

କିଏ ?



Digitized by PPRACHIN, SOA

ବାବୁ ମା' ହୋଇଥିଲେ ସବୁ ଘରରେ ଡ଼ାକି ଥାନ୍ତେ– ସାବି, ସାବି, ଅମ୍ମୁ, ଅମ୍ମୁ । କିଏ ତେବେ ? ଅସମ୍ଭବ ଭୟରେ ଗୋଡ଼ ହାତ କାକର ହୋଇଗଲା । ଶରୀର ନିଶ୍ଚଳପ୍ରାୟ ।

ଉଠି କବାଟ ଖୋଲିବାକୁ ଶ୍ରାବଣୀର ସାହସ ଅଣ୍ଟୁ ନଥାଏ । ବଡ଼ ବିପଦର ସୂଚନା । ଛାତିରେ କମ୍ପନ । ମଶାରିଝୁଲା ଖଟବିଛଣା ଉପରକୁ ଉଠିଯାଇ ଅମରକୁ ଭଲ ଭବେ ଚଦରରେ ଘୋଡ଼େଇ ଦେଲା ତାକୁ ସୁରକ୍ଷିତ ରଖିବା ଉଦ୍ଦେଶ୍ୟରେ । ନିଜେ ତାକୁ କୋଳକରି ଶୋଇ ରହିଲା । ସେ ମଧ୍ୟ ନିଜେ ଚଦରବୃତ୍ତ । ଚୋର ଆସୁ, ଖଣ୍ଡ ଆସୁ, ତାକୁ କେହି ସ୍ପର୍ଶ ନ କରନ୍ତୁ, ଅମରକୁ କେହିଁ ଦୃଷ୍ଟି ନ କରନ୍ତୁ । ଏଘରୁ ଚୋର ସବୁ ନେଇଯାଉ ପଛେ ତା ଧନ ନିରପଦ ଥାଉ ।

ବାହାରୁ ଶକ୍ତ ଧକ୍କା ଖାଇ ଦ୍ୱାର କବାଟ ଧଡ଼୍ଧାଡ଼୍ ଖୋଲିଗଲା । ଦୀର୍ଘକାୟ ଲୋକ କେତୋଟି ଘର ଭିତରକୁ ପଶି ଆସିଲେ । ଦେହରେ ସମ୍ପୂର୍ଣ୍ଣ କଳା ପୋଷାକ । ଅନ୍ଧାର ଯୋଗୁଁ ସେମାନଙ୍କ ଚେହେରା ଠଉରେଇ ହେଉ ନଥିଲା । ଏମାନେ କୁଖ୍ୟାତ ଡ଼ାକୁଦଳ ନିଶ୍ଚୟ । କାକୁସ୍ଥ ହୋଇ ଶ୍ରାବଣୀ ଜଡ଼ ପିଣ୍ଡଟିଏ ଭଳି ଖଟ ଉପରେ ପଡ଼ି ରହିଲା । ମୁହଁକୁ ଘୋଡ଼ାଇ ରଖିଥିଲା ସମ୍ପୂର୍ଣ୍ଣ ଭବେ । ପ୍ରତି ମୁହୂର୍ତ୍ତରେ ବିପତ୍ତି ଗଣୁଥିଲା । ଜୀବନର ସବୁଠାରୁ ସଙ୍କଟପୂର୍ଣ୍ଣ ବେଳ । ଟିକିଏ ସ୍ୱର ଶବ୍ଦ କଲେ ସର୍ବନାଶ ହୋଇଯିବ । ନେଉ, ଚୋର ସବୁ ନେଇଯାଉ । ତା' ଜୀବନ ପଛେ ଚାଲି ଯାଉ, କିନ୍ତୁ ଅମୁର କିଛି କ୍ଷତି ନହେଉ । ହେ ଭଗବାନ, ଯନ୍ତ୍ରଣାକ୍ଲିଷ୍ଟ ବୈଧବ୍ୟ ଜୀବନରେ ପୁଣି ଏ କି ଅତ୍ୟାଚାର ? ଏତେ କଷ୍ଟ ଦେଇ ମନ ବୁଝିଲା ନାହିଁ ଯେ ପୁଣି ଦୁଃଖ ଦେବାକୁ ବାକୀ ଅଛି ! କାହିଁକି ତୁମର ଦୁଃଖୀ ପ୍ରତି ଏଡ଼େ ଅବିଚାର !

ଚୋରମାନେ କ'ଣ ସବୁ ଖୋଜା ଖୋଜି ଆରମ୍ଭ କରିଦେଲେ । ଏ ଘରେ ରହିଲା କେବଳ ଜଣେ । ଅନ୍ୟମାନେ ଅନ୍ୟ କୋଠରୀକୁ ଚାଲିଗଲେ ଧନରତ୍ନର ଗୁପ୍ତସ୍ଥାନ ନିରୂପଣ କରିବା ପାଇଁ । ଲୁଣ୍ଠନ ଉଦ୍ଦେଶ୍ୟରେ ଘରସାରା ଚାଲିଥିଲା ଭଙ୍ଗାରୁଜା, ଖୋଳାତଡ଼ା । ଅନ୍ୟ ଘରଟିର ଲୌହ ସିନ୍ଦୁକ ଉପରେ ସେମାନେ ଆକ୍ରମଣ ଚଳାଇ ଥିଲେ ।



Digitized by PPRACHIN, SOA

ଏ ଘରେ ଥିଲ ଲୌହ ଆଲମାରୀ, ଲୁହା ଚେଷ୍ଟ୍ ଟି କାନ୍ଥ ଭିତରେ ସୁଦୃଢ଼, ସୁରକ୍ଷିତ । ମଠ ମନ୍ଦିରର ସବୁ ସୁନାଚକ ତା' ଭିତରେ ଥିଲ । ଏ କୋଠରୀଟି ଥିଲ ସ୍ୱୟଂ ସର୍ଦ୍ଦାରର କାର୍ଯ୍ୟକ୍ଷେତ୍ର । ଇସାରା, ଆଦେଶ ନ ପାଇଲ ପର୍ଯ୍ୟନ୍ତ ଦଳର ଅନ୍ୟମାନଙ୍କ ପ୍ରତି ନିଷେଧାଜ୍ଞା ଜାରିଥିଲ । ସର୍ଦ୍ଦାରର ନିଷେଧାଦେଶ ଲଙ୍ଘନ କଲେ କଠୋର ଶାସ୍ତି– ହୁଏତ ମୃତ୍ୟୁ ।

ଟର୍ଚ୍ଚର ଆଲୁଅ ଘରସାରା ଚନ୍ନ ଚନ୍ନ କରି ବୁଲି ଆସିଲ । ସର୍ଦ୍ଦାର ଖୋଜୁଥିଲ ଗୋପନୀୟ ସ୍ଥାନର ଚାବିକାଠି । ନ ପାଇବାରୁ ବିରକ୍ତ ହୋଇ ଉଠିଲ । ମଶାରୀକୁ ଖଣ୍ଡ ଖଣ୍ଡ କରି ଫିଙ୍ଗି ଦେଲ । ଶ୍ରାବଣୀ କିଛି ନ ଜାଣିଲ ପରି ଘୁଙ୍ଗୁଡ଼ି ମାରିବାକୁ ଚେଷ୍ଟାକଲ । ସର୍ଦ୍ଦାର କର୍କଶ ସ୍ୱରରେ ନିର୍ଦ୍ଦେଶ ଦେଲ– କହ ଧନ କେଉଁଠି ଅଛି ? ଟ୍ରେଜେରୀ ଚାବି ଶୀଘ୍ର ଦେ ମୋତେ ।

ନ ଶୁଣିଲ ଢଙ୍ଗରେ ପୂର୍ବବତ୍ ମୁହଁକୁ ଘୋଡାଇ ଗାଢ ନିଦ୍ରାର ଅଭିନୟ କଲ ଶ୍ରାବଣୀ ।

ପୁଣି ଚଢ଼ାଗଳାରେ ସେଇ ରୁକ୍ଷସ୍ୱର । ଏଥର ଆଉ ରକ୍ଷାନାହିଁ, ବର୍ତ୍ତିବାର ଉପାୟ ନାହିଁ । ମୁଣ୍ଡ ଉପରେ ମହାକାଳ ।

ଆହୁରି ବିରକ୍ତ ଏବଂ ଅଶାନ୍ତ ହୋଇ ଉଠିଲ ସର୍ଦ୍ଦାର ।

: ଭଲ ଗତି ଯଦି ଅଛି ଚୁପ୍ ଚାପ ଚାବି ଦେଇଦେ, ଠିକ୍ ଠିକ୍ କହି ଦେ ଧନ କେଉଁଠି ଅଛି ? ନହିଲେ ଦେଖିବୁ ସ୍ୱର୍ଗଦ୍ୱାର ... ।

ଦୁର୍ଦ୍ଦାନ୍ତ ଦସ୍ୟୁପତିର ପିସ୍ତଲ ମୁନ ଶ୍ରାବଣୀର ଚଦର ଢଙ୍କା ମୁଣ୍ଡକୁ ସ୍ପର୍ଶ କରିଥିଲ । ଆଉ ଏଥର ଗତି ନାହିଁ । ମନରେ ମୃତ୍ୟୁର ଭୟ । ପାଟି ଖୋଲିବାକୁ ହେବ । ଜ୍ୱରର ପ୍ରକୋପରେ ପାଟି ଅଠା ଧରିଥିଲ, ତାକୁ ଦଳର ଉପସ୍ଥିତି ତା' କଣ୍ଠକୁ ଆହୁରି ଶୁଷ୍କ କରିଦେଲ ।

ବିଭଙ୍ଗ ଏବଂ ଥରିଲ କଣ୍ଠରେ କହିଲ ଶ୍ରାବଣୀ– ବିଧବା ସ୍ତ୍ରୀ ମୁଁ, ମୋତେ ଛୁଁ ନାରେ ପାପୀ । ସତୀ ନାରୀ ମୁଁ, ସ୍ପର୍ଶକଲେ ପୋଡ଼ି ମରିବୁରେ ପାଷାଣ୍ଡ ।



Digitized by PPRACHIN, SOA

: କେଉଁଠି ଘବି ଅଛି ଜଲଦି ଦେଇ ଦେ ? ଏତେ ବକ୍ ବକ୍ ହେବା ଦରକାର ନାହିଁ । ଦେଉଛୁ ନା ଦେଖିବୁ ଏଇନେ ?

: ଏ ଘର ଏକ ମନ୍ଦିର । ଦେବତା ଯାଇଛନ୍ତି ତୀର୍ଥ ଭ୍ରମଣରେ ପୁଣ୍ୟ ଅର୍ଜିବାକୁ । ତୁ ଆସିଛୁ ଦେବତା ଘର ଲୁଣ୍ଠନ କରି ପାପ ଅର୍ଜିବାକୁ ? କ'ଣ ଭଲ ପାଉଛୁ ପରଧନ ଲୁଣ୍ଠନ କରିବାରେ ? କାହିଁକି ଏ ଅପକର୍ମ କରୁଛୁ ? କାହା ପାଇଁ ଚୋରି କରୁଛୁରେ ପାପିଷ୍ଠ ? ପାପ ଆର୍ଜି ମଲବେଳେ କ'ଣ ମୁଣ୍ଡେଇ ନେବୁ ?

କର୍କଶ ସ୍ୱରରେ କହିଲ ତାକୁ : ହୁଃ । ନୀତିବାଣୀ ଶୁଣିବାକୁ ମୋର ସମୟ ନାହିଁ । ଯେଉଁମାନେ ମନ୍ଦିରରେ ଅନ୍ୟାୟ ଅର୍ଥ, ସୁନା ଠୁଳ କରିଛନ୍ତି, ଦୁଃଖୀ ଦରିଦ୍ରଙ୍କୁ ଶୋଷଣ କରି ସୁବର୍ଣ୍ଣ ସଂସାର ତୋଳିଛନ୍ତି, ସେମାନେ ସବୁଠୁଁ ବଡ଼ ଚୋର । ଡାକୁ ସଂଗ୍ରାମ ସିଂ କେବଳ ସେଇମାନଙ୍କଠୁଁ ଅର୍ଥ ନିଏ, ସେମାନଙ୍କ ପାପାର୍ଜିତ ଅର୍ଥ ଲୁଣ୍ଠନ କରେ ... ଜାଣୁ ?

: ଏ ଘରର ମାଲିକ ଜଣେ ଦେବତା, ଧର୍ମାବତାର । ତୁ ତାକୁ ନ ଜାଣି ପାପ କରୁଛୁ ।

: ପାପ ପୁଣ୍ୟର ନୀତିଶିକ୍ଷା ଦେଉଛୁ ସଂଗ୍ରାମ ସିଂକୁ ? କିଛି ମୁଁ ଶୁଣିବାକୁ ଚାହେଁ ନାହିଁ, ମୋର ଆଉ ବେଳ ନାହିଁ । ଭଲ ଗତି ଯଦି ଅଛି, ଜଲଦି ଘବି ବଢେଇ ଦେ । ନୋହିଲେ ଦେଖିବୁ ଖପୁରୀ ଭିତରେ ଗୁଳିଟା ପଶିଲେ କେମିତି ଲାଗିବ । ମରିବାକୁ ଭୟ ଲାଗୁଛି କି ତୋତେ ?

: ମାରି ଦେ । ମଲେ ମୁଁ ମୁକ୍ତି ପାଇବି । ଚିରଦୁଃଖିନୀ ମୁଁ ସମାଜ ମୋତେ ବାସନ୍ଦ କରିଛି, ମୋ ଚରିତ୍ରରେ କଳଙ୍କ ବୋଳିଛି । ଭଗବାନ ମୋ ପ୍ରତି ନିର୍ଦ୍ଦୟ ହୋଇଛନ୍ତି । ମୋ ସ୍ୱାମୀକୁ ଛଡ଼ାଇ ନେଇଛନ୍ତି । ମାରି ଦେ ମୋତେ । ମୃତ୍ୟୁରେ



Digitized by PPRACHIN, SOA

ମୋର ମୁକ୍ତି ! ହେଲେ ଏ ପୋଡ଼ା ପ୍ରାଣଟା ମରୁଛି କେଉଁଠି ? ସତ କହୁଛିରେ ପାପିଷ୍ଠ, ମାଲିକ ମୋତେ ଚାବି ଦେଇ ନାହାନ୍ତି । ମୁଁ ଏ ଘରର ଚାକରାଣୀ ମାତ୍ର । ମୋ ପାଖରେ କିଛି ନାହିଁ । ଅଛି କେବଳ ମୋ ସ୍ୱାମୀର ମୁଦିଟି । ସେଇ ମୁଦିଟିହିଁ ମୋର ସ୍ମୃତି । ତାକୁ ନେଇ କି ଲାଭ ପାଇବୁ ? ହେଲେ ତୁ ଘଙ୍ଗିରୁଳି ଯାହା ନେଉଛୁ ନେଇ ଯା, କିନ୍ତୁ ସ୍ପର୍ଶ କରନା ମୋ ଦେହକୁ, ସତୀର ରକ୍ତକୁ ଅପବିତ୍ର କରନା ।

: ଭାରି ବଢ଼ି କଥା କହୁଛୁ ତ ! ମୋତେ ପୁରାଣ ପଢ଼ଉଛୁ ? ଉଠ୍‌ବେ ଏଥର ... । ଅତ୍ୟନ୍ତ କ୍ରୋଧରେ ଶ୍ରାବଣୀ ମୁହଁରୁ ଚଦରଟିକୁ ଟାଣି ଫିଙ୍ଗି ଦେଇ ଦୁରମ୍ରା ଦୁର୍ବୃତ୍ତ । ଟର୍ଚ୍ଚର ଆଲୁଅ ପଡ଼ିଲା ନିସ୍ତେଜ ମୁହଁଟି ଉପରେ । ଶ୍ରାବଣୀର ଆଖି ବୁଜି ରହିଥିଲା ।

ଦେବକାନ୍ତ ସ୍ତମ୍ଭୀଭୂତ ହୋଇପଡ଼ିଲା । ତା' ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ତା' ସମ୍ମୁଖରେ ଏକ ଅପୂର୍ବ, ଆଶାତୀତ ଏବଂ ଅଲୌକିକ ଘଟଣା । ଆଖି ଯାହାକୁ ଦେଖୁଛି, ତାହା ସ୍ୱପ୍ନ ନା ସତ୍ୟ ସେ ଠିକ୍ କରି ପାରିଲା ନାହିଁ । ନିଜ ଆଖିକୁ ବିଶ୍ୱାସ କରି ପାରିଲା ନାହିଁ । ଏହା କ'ଣ କେବେ ସମ୍ଭବ ? ଦୀର୍ଘ ଦଶବର୍ଷ ଅନ୍ୱେଷଣର ଫଳକ ହଠାତ୍ ଉପସ୍ଥିତ ଏକ ଅଭାବିତ ଏବଂ ଅଭୂତପୂର୍ବ ପରିସ୍ଥିତିରେ !

ଅତି ଉଚ୍ଚସ୍ୱରରେ ଚିତ୍କାର କରି ଉଠିଲା– ଶ୍ରାବଣୀ !

ଅବାଞ୍ଛିତ ପିସ୍ତଲ ଏବଂ ଟର୍ଚ୍ଚକୁ ସଙ୍ଗେ ସଙ୍ଗେ ଫିଙ୍ଗିଦେଇ ଶ୍ରାବଣୀର ଅଶ୍ରୁସିକ୍ତ ଗଣ୍ଡଦେଶକୁ ଆଉଁସି ପାଣ୍ଡୁର କପାଳରେ ଆଙ୍କିଦେଲା ଅସଂଖ୍ୟ, ଅଗଣିତ ଚୁମ୍ବନ ରେଖା । ସମ୍ପୂର୍ଣ୍ଣ ରୂପେ ସେ ଲେଟି ପଡ଼ିଲା ଶ୍ରାବଣୀ ଉପରେ ।

ଅନେକ ଦିନର ଆଶା ଆଜି ଏକ ଆଶ୍ଚର୍ଯ୍ୟ ପରିସ୍ଥିତିରେ ଧରା ଦେଇଛି । ଯୁବ ଜୀବନର ଅନେକ ଉତ୍‌ଥାନ ପତନ ପରେ ସେ ଆଜି ସ୍ୱର୍ଗୀୟ ସୁଖ ଅନୁଭବ କରୁଛି । ଈଶ୍ୱରଙ୍କ ଅପାର କରୁଣାକୁ ଉପଲବ୍ଧି କରି ଆଖିରୁ ଝରିପଡୁଛି ଟୋପା ଟୋପା ଲୁହ ।



Digitized by PPRACHIN, SOA

ଚମକି ପଡ଼ିଲା, ଶ୍ରାବଣୀ ଦେହର ଚାଟି ଖଇ ଭଳି ଫୁଟୁଛି । ପ୍ରଚଣ୍ଡ ଜ୍ୱର । କ'ଣ କରଯାଇ ପାରେ ? ତା'ର ବୁଦ୍ଧି ବାଉଳି ଖାଇଲା । ଆଖିକୁ ଅନ୍ଧାର ଦିଶିଲା । କ'ଣ କରିବ ନ କରିବ କିଛି ସ୍ଥିର କରି ପାରୁନଥିଲା । ଭାବିଲା– ଉଠେଇ ନେଇ ଯିବ ହାସପାତାଳକୁ ତୁରନ୍ତ ଚିକିତ୍ସା ପାଇଁ ?

ଶ୍ରାବଣୀର ନିଷ୍ପ୍ରାଣ ଦେହରେ ଅପୂର୍ବ ପୁଲକର ସ୍ପନ୍ଦନ ଖେଳିଗଲା । ଅନ୍ଧ ଆଖିରେ ଯେମିତି କିଏ ବୋଳି ଦେଉଛି ଆଲୋକର ଅଞ୍ଜନ । କାହାର ଅମୃତ ଡାକ ସେ ଶୁଣୁଛି ଆଜି ? କାହାର କୋମଳ ସ୍ପର୍ଶ ତା' ଶିଥିଳ ଚର୍ମକୁ ପ୍ରାଣବନ୍ତ କରୁଛି ? ଶରୀର ସାରା ଅନୁଭବ କରୁଛି ସଞ୍ଜୀବନୀ ମନ୍ତ୍ରର ପ୍ରଲେପ । ସ୍ୱାମୀ ତା'ର ବଞ୍ଚିଛନ୍ତି– ଏକଥା ସେ ମନରୁ ସମ୍ପୂର୍ଣ୍ଣ ଭାବେ ଲିଭେଇ ଦେଇଥିଲା । ପିଛିଲା ଜୀବନର ପାଣିଚିଆ ସ୍ମୃତି ଶ୍ରଦ୍ଧାର ସ୍ମାରକୀ, ପ୍ରୀତିର ପ୍ରତୀକ ଭଳି ମନଭିତରେ ବେଳେବେଳେ ଚେଇଁ ଉଠୁଥିଲା । ଅସମ୍ଭବ ହେଲେ ମଧ୍ୟ ପ୍ରକୃତ ସତ୍ୟ ଆପେ ଆପେ ଭାସିଆସି ଉପସ୍ଥିତ ହୋଇଛି । ତା' ଜୀବନ ତୃଷାର ଜଳ ଆଜି ତା' ବକ୍ଷୋଜ ଉପରେ । ଅଧିକ ଜୋରରେ ସ୍ୱାମୀକୁ ଘୋପି ଧରିଲା । ସ୍ୱପ୍ନ ନା ସତ୍ୟ ? ଆଖି ପରିଷ୍କାର କରି ସ୍ୱାମୀଙ୍କୁ ଦେଖିଲା । ସତ୍ୟ ଉପଲବ୍ଧି କଲା । ଆଜିର ଅକଳ୍ପିତ ଘଟଣାରେ ସ୍ୱପ୍ନର ଛଟା ନାହିଁ । ଅତୀତରେ କେତେଥର ସ୍ୱାମୀଙ୍କୁ ସ୍ୱପ୍ନ ଦେଖିଛି, ନିଦ ଭାଙ୍ଗିଗଲା ପରେ ସ୍ୱପ୍ନ ଭାଜି ଯାଇଛି, ସ୍ୱପ୍ନଭଗ୍ନ ପ୍ରାଣ ବାସ୍ତବର ରୁକ୍ଷତାରେ ସନ୍ତାପିତ ହୋଇଛି । ଆଜି ସ୍ୱପ୍ନ ନୁହେଁ ମଧୁର ବାସ୍ତବ । ସ୍ୱାମୀ ତା' ବହୁବର୍ଷ ପ୍ରତୀକ୍ଷାର ପ୍ରାପ୍ତି, ତା' ବହୁ ତିତିକ୍ଷାର ଫଳ । ଅନୁଭବ କରୁଥିଲା ସ୍ୱାମୀ ସ୍ୱର୍ଗଧାମ ଛାଡ଼ି ଧରାଧାମକୁ ଅବତୀର୍ଣ୍ଣ କରିଛନ୍ତି ସତୀର ମାନରକ୍ଷା ପାଇଁ । ମିଳନର ରାଗିଣୀ ଗୁଂଜରିତ ହୋଇ ଉଠୁଥିଲା ।

ଉଚ୍ଚ ସ୍ୱରରେ ବିହ୍ୱଳିତ ହୋଇ କହି ଉଠିଲା– ବାବୁ, ମା' କେଉଁଠି ଅଛ ? ମୋତେ ସିନ୍ଦୁର, ଶଙ୍ଖା ଦିଅ । ମୋ ସ୍ୱାମୀ ବଞ୍ଚିଛନ୍ତି । ଶୁଣ ହେ ଗାଁ ଲୋକେ, ଶୁଣ ହେ ସଂସାର ବାସୀଏଁ, ଶୁଣ ସମସ୍ତେ, ଶ୍ରାବଣୀ ଅଲକ୍ଷଣୀ ନୁହେଁ, ସେ ସତୀ, ସାବିତ୍ରୀ, ଅଇସ୍ତଲକ୍ଷଣୀ । ତା'ର ହାତ-



Digitized by PPRACHIN, SOA

କାଚ ବଳୁ । ତମେ ସିନା ମୋ ସ୍ୱାମୀକୁ ମଶାଣିରେ ଥୋଇଥିଲ, ଚକ୍ରାନ୍ତ କରି ମୋ ମୁଣ୍ଡରୁ ସିନ୍ଦୂର ପୋଛିଥିଲ, ମୋତେ କଳଙ୍କିତ, କଣ୍ଟକିତ କରିଥିଲ, ହେଲେ ଏଥର ଭଲକରି ଆଖି ଖୋଲି ଦେଖ, କାନ ଖୋଲି ଶୁଣ– ଶ୍ରାବଣୀ ସଧବା, ଶ୍ରାବଣୀ ସତୀ, ଶ୍ରାବଣୀ ସୀତା । ତା ସ୍ୱାମୀ ଗ୍ୱେର, ଡାକୁ, ଖଣ୍ଡ, ଖୁଣୀ ହେଲେ ମଧ୍ୟ ସେ ତା'ର ସ୍ୱାମୀ ; ତା ଦେବତା ; ଇହକାଳ ପରକାଳର ଦେବତା, ତା' ହୃଦୟର ରଜା । ତା' ଦେବତା କୋଳରେ ମୁଣ୍ଡ ଦେଇ ସେ ମରିବ, ଅହ୍ୟ ଡ଼େଙ୍ଗୁ ବାଜିବ, ସେ ସ୍ୱର୍ଗପୁର ଯିବ । ସେ ଏଥର ଆନନ୍ଦରେ ଆଖି ବୁଜିବ । ତା'ର ସ୍ୱପ୍ନ ସଫଳ ହୋଇଛି, ଅଭିଳାଷ ପୂର୍ଣ୍ଣ ହୋଇଛି । ଅଭିଳାଷ ଆଉ ତା' ପାଇଁ ଯନ୍ତ୍ରଣା ନୁହେଁ । ଏଥର ସେ ପୂର୍ଣ୍ଣ ଶାନ୍ତି ଫେରି ପାଇଛି ।

ପାଗଳିଙ୍କ ଭଳି ପ୍ରଳାପ କରି ଗ୍ୱଲିଥିଲା ଶ୍ରାବଣୀ । ଆଖିରେ ତା'ର ଆନନ୍ଦର ଲୋତକ ଧାର ।

ଦେବକାନ୍ତ ଅନୁଭବ କରିଥିଲା ଶ୍ରାବଣୀର ଅଖଣ୍ଡ ପାତିବ୍ରତ୍ୟ । ଚଉଠି ରାତିରେ ଶ୍ରାବଣୀ ହାତରେ ପିନ୍ଧାଇ ଦେଇଥିବା ମୁଦିଟି ଏ ପର୍ଯ୍ୟନ୍ତ ଠିକ୍ ସେଇପରି ଅକ୍ଷୁଣ୍ଣ ରହିଛି, ସେଥିରେ ଦେବକାନ୍ତ ନାଁଟି ଉଜ୍ଜଳ ରହିଛି । ସେ ତାକୁ ଆଉ ସନ୍ଦେହ କରିବାର ଅବକାଶ ନାହିଁ । ବହୁବର୍ଷ ଗତ ହୋଇଥିଲେ ମଧ୍ୟ ତା ମନ ମନ୍ଦିରରେ ସ୍ୱାମୀ ସଦାପୂଜିତ । ସତରେ ନିଷ୍ଠା ଥିଲେ ପାହାଡ଼ ବି ତରଳି ଯାଏ । ଶତ ନିର୍ଯ୍ୟାତନା ସତ୍ତ୍ୱେ, ଘଟଣାର ଘୂର୍ଣ୍ଣିବାୟୁରେ ଶତଚ ଦଳିତ ହୋଇ ମଧ୍ୟ ସେ ଯେ ବଞ୍ଚି ପାରିଛି, ସତୀର ପବିତ୍ରତା ରକ୍ଷାକରି ପାରିଛି, ଏହା ସବୁଠାରୁ ପରମାଶ୍ଚର୍ଯ୍ୟ ଘଟଣା ; ତା' ସଞ୍ଚିତ ପୁଣ୍ୟର ଫଳ, ତା' ତପସ୍ୟାର ଶ୍ରେଷ୍ଠ ସଫଳତା ।

ପାଚିଶୁଣି ଅମରର ନିଦ ଭାଙ୍ଗିଗଲା । ଚିହିରି ଉଠିଲା– ଆୟା, ଆୟା ।

ତା' ମୁଣ୍ଡରେ ହାତ ବୁଲେଇ ସ୍ନେହ ବିଗଳିତ କଣ୍ଠରେ ଶ୍ରାବଣୀ କହିଲା– ଉଠ ଅମୁ, ଦେଖ କିଏ ଏଠି ଛିଡ଼ା ହୋଇଛନ୍ତି ! କହୁଥିଲ ନା, ମୋ ପାଇଁ କାଚ କିଣିଦେବ ବୋଲି । ମୁଁ ମନା କରିଥିଲି । ଏଥର



Digitized by PPRACHIN, SOA

କିନ୍ତୁ କହୁଛି ଆୟା ପାଇଁ କାଚ କିଣିବ । ଆୟା ବିଧବା ନୁହେଁ । ସେ ସଧବା । ଘଟଣା ଚକ୍ରରେ ତା' ସତୀ ସିନ୍ଦୂର ଲିଭିଥିଲା । ଦୁନିଆ ଆଗରେ ଆଜି ମିଛ ଧରା ପଡ଼ିଛି । ସତ୍ୟର ଜୟ ହୋଇଛି । ସଂସାରରୁ କ'ଣ ଧର୍ମ କେବେ ଲୋପ ପାଏ ?

ଅମର କିଛି ବୁଝି ପାରୁ ନଥିଲା । କ'ଣ ସବୁ ଆଶ୍ଚର୍ଯ୍ୟ ଘଟଣା ଅନ୍ଧାର ଭିତରେ ଘଟି ଯାଇଥିଲା । ଆୟା କ'ଣ ଏମିତି ବିଜିବିଜିଲାଉଛି ? ଏ କଳା ପୋଷାକଧାରୀ ବିରାଟକାୟ ଲୋକ ଜଣକ କିଏ ? ଚେହେରା ନୃଶଂସ ଦିଶୁଛି । କିଏ ଏ ଲୋକଟି ଏତେ ରାତିରେ ?

ଶ୍ରାବଣୀର ଶପଥ ମନେ ପଡ଼ିଲା । ଠାକୁର ଛୁଇଁ ପ୍ରତିଜ୍ଞା କରିଥିଲା ସେ କେବେ କହିବ ନାହିଁ ଯେ ଅମର ତା' ପୁଅ । କିନ୍ତୁ ସେ ଯେ ସ୍ୱାମୀର ପୁଅ, ତାହା ପ୍ରକାଶ କଲେ ଶପଥ ଲଘନ ହେବନାହିଁ । ସତ୍ୟ ପ୍ରକାଶ ପଥରେ କୌଣସି ପ୍ରତିଜ୍ଞା ପ୍ରତିବନ୍ଧକ ହୋଇ ନପାରେ । ସ୍ୱାମୀଙ୍କୁ ଲକ୍ଷ୍ୟକରି କହିଲା– ଦେଖି ପାରୁଛ ତମ ଅମରକୁ ? ସେ ତୁମର ପୁଅ । ବାପର ସତ୍ ପୁତ୍ର ।

ଅମରକୁ କହିଲା– ସେ ତୁମର ପ୍ରକୃତ ପିତା । ତୁମେ ତାଙ୍କୁ ପ୍ରଣାମ କର । ତୁମ ବାବା ବୋଉ ତୁମର ପାଳିତ ପିତାମାତା, ଧର୍ମ ଦେବତା ।

ଅମର ନୀରବ ରହିଲା । ବୁଝିବାରେ ଗଣ୍ଡଗୋଳ ଧରୁଥିଲା । ଏସବୁ ସତ ଘଟଣା ନା ନାଟକର ଏକ ଦୃଶ୍ୟ ? ଅବାକ୍ ହୋଇ ଗ୍ରହିଁ ରହିଥିଲା କେବଳ ।

ଅମରକୁ ଭଲ ଭାବେ ଦେଖୁଥିଲା ଦେବକାନ୍ତ । କେଡ଼େ ସୁନ୍ଦର, ଗୋଲ୍‌ଗାଲ୍ ବଳିଷ୍ଠ ବାଳକଟିଏ ! ତା'ର ପୁଅ ସେ । ତା' ରକ୍ତର ଫଳକଟିଏ । ରକ୍ତର ସମ୍ପର୍କକୁ କିଏ କ'ଣ ଏଡ଼ାଇ ଦେଇ ପାରିବ ? ଅସ୍ୱୀକାର କରିପାରିବ ? ଦେହ ଏବଂ ରକ୍ତ ଏକ ଏବଂ ଅଭିନ୍ନ ; ଠିକ୍ ଲୁହା ଏବଂ ଲୌହ ଚୁମ୍ବକ ଭଳି ସେମାନଙ୍କର ସମ୍ପର୍କ । ଦେବକାନ୍ତ



Digitized by PPRACHIN, SOA

ମନକୁ ଟାଣିନେଇ, ସନ୍ତାନ-ସମ୍ପର୍କ ଆକର୍ଷଣ କରିନେଲା ଠିକ୍ ଚୁମ୍ବକ ଭଳି । ଦୁଇହାତ ବଢାଇ ଅମରକୁ ଟାଣିନେଇ କୋଳ ଭିତରକୁ, ଓଠରୁ ଓଳାଡ଼ି ଦେଇ ପିତୃସ୍ନେହର ଚୁମ୍ବନମାଳା । ଦେବକାନ୍ତ ନିଜକୁ ଅପଦାର୍ଥ ମଣୁଥିଲା, ନିଜ ଅପାଙ୍କ୍ତେୟତା ସ୍ୱୀକାର କରୁଥିଲା । ସୁସନ୍ତାନର ଅଯୋଗ୍ୟ ପିତା– ଡାକୁ, ଗୁଣ୍ଡା, ବଦମାସ୍ ଅପରାଧୀ ଏବଂ ଅସାମାଜିକ । କେଡ଼େ ଛୋଟ ସେ ? ଆଇନ୍ ତାକୁ କ୍ଷମା ଦେବନି, ସମାଜ ତାକୁ ସ୍ଥାନ ଦେବନି । ସେ ଘୃଣ୍ୟ । ବନ୍ଦୀଶାଳା ହିଁ ତା'ର ସ୍ଥାନ । ସେଠି ସେ ତା' ଇହଜନ୍ମର କଲପାପକୁ ଲିଭାଇବ, ପ୍ରାୟଶ୍ଚିତ କରିବ । ଅଭିଳାଷ ତା'ର ପୂର୍ଣ୍ଣ ହୋଇଛି । ବନ୍ଦୀଶାଳାକୁ ଆଉ ଭୟ ନାହିଁ, ବରଂ ଏଥର ତା'ର ପୁଣ୍ୟତୀର୍ଥ ।

ଏତେବେଳଯାଏଁ ସର୍ଦ୍ଦାର କ'ଣ କରୁଛି ? ଅନ୍ୟ କୋଠରୀ ଗୁଡ଼ିକରେ ତଲାସୀ ଶେଷକରି ସହଚର, ସହକାରୀ ଡକାୟତମାନେ ଏଘର ଭିତରକୁ ପଶିଆସିଲେ ଯମଦୂତ ଭଳି । ଟର୍ଚ୍ଚ ଲାଇଟ ଆଲୁଅରେ ସବୁ ଦୃଶ୍ୟ ହେଲା । ସେମାନେ ଚେଷ୍ଟ ହୋଇଗଲେ । ସେମାନଙ୍କ ଆଖି ବିସ୍ଫାରିତ ହେଲା । ସର୍ଦ୍ଦାର କୋଳରେ କୁଣ୍ଢେଇ ଧରିଛି ଶୁକ୍ଳବସ୍ତ୍ରା ମଧ୍ୟବୟସୀ ବିଧବା ଜଣକୁ ? ତା' ଗାଲରେ ଦେଉଛି ଅଗଣିତ ଚୁମ୍ବନ ଲେପ ! ଏକ ଆଚମ୍ବିତ କଥା !

ସର୍ଦ୍ଦାରର ମୁଣ୍ଡ ବିଗିଡ଼ି ଯାଇଛି ନିଶ୍ଚୟ । ଅନ୍ୟମାନଙ୍କ ଉପରେ ନୀତିନିୟମ, ଶୃଙ୍ଖଳା ଜାରି କରୁଛି । ମଦ୍ୟପାନ, ବେଶ୍ୟାନୁଗମନ, ନାରୀ ଧର୍ଷଣ ଆଦି ଆମୋଦ ପ୍ରମୋଦରେ ନିଷ୍ଠୁର ନିଷେଧାଜ୍ଞା ଜାରି କରିଛି । ଘୋଷିତ ନିୟମାବଳୀର ବ୍ୟତିକ୍ରମ ହେଲେ ମୃତ୍ୟୁଦଣ୍ଡ ଜାହିର କରିଛି । କିନ୍ତୁ ସେ ନିଜେ ? ସେ ନିଜେ ହିଁ ଏସବୁର ବ୍ୟତିକ୍ରମ ! ସର୍ଦ୍ଦାରର ଆଜି ବିପରୀତ କାର୍ଯ୍ୟ । ଦଳର ମୁଖ୍ୟ ହେଲେବି କ'ଣ ତାକୁ ନିୟମ ଲାଗୁ ନୁହେଁ ? ତା'ର ଭିତିରି ରୂପ ଆଜି ଧରାପଡ଼ିଛି । ଆଜି ପର୍ଯ୍ୟନ୍ତ ବୁଡ଼ି ବୁଡ଼ି ପାଣି ପିଉଥିଲା, ଅନ୍ୟକୁ ଭକୁଆ ବନାଇଥିଲା ।

କିଛିମାସ ହେବ ଦଳର ଅଧସ୍ତନ ମହଲରେ ଅଶାନ୍ତିର ଗୁଞ୍ଜରଣ ଖେଳୁଥିଲା, ମନରେ ଅନ୍ତର୍ବିଦ୍ରୋହର ସ୍ୱର ସର୍ଦ୍ଦାରର ପ୍ରତାପରେ



Digitized by PPRACHIN, SOA

ସ୍ତପିହୋଇଥିଲ । ସର୍ଦ୍ଦାର ଆଜି ପାଗଳ ହୋଇ ଯାଇଛି । ପାଗଳର ନିର୍ଦ୍ଦେଶ ମାନିବା ମାନେ ମରଣକୁ ବରଣ କରିବା । ଡାକୁ ଦଳର ପୁଣି ନୀତିନିୟମ, ଶୃଙ୍ଖଳା କ'ଣ ? ଏସବୁ ପାଗଳ ସର୍ଦ୍ଦାରର ଖେଳ, ପ୍ରଲାପ । ସର୍ଦ୍ଦାରର ମସ୍ତିଷ୍କ ବିକୃତି ଘଟିଛି । ଶୀଘ୍ର ତାକୁ ଟାଣି ଆଣ । ସ୍ୱାର୍ଥପର ସର୍ଦ୍ଦାରକୁ ସମୁଚିତ ଶିକ୍ଷା ଆବଶ୍ୟକ ।

ସମସ୍ତେ ତାକୁ ଘେରି ଯାଇଥିଲେ ।

ସର୍ଦ୍ଦାର ଦେବକାନ୍ତ ଅନୁନୟ ହୋଇ କହିଲ– ଭାଇମାନେ, ଆଜି ମୁଁ ସବୁ ଫେରି ପାଇଛି । ମୁଁ ଡ଼ାକୁ ସଗ୍ରାମ ସିଂ ନୁହେଁ, ମୁଁ ଦେବକାନ୍ତ ବଡ଼ଜେନା । ମୁଁ ଆଉ ସେଭଳି ଡ଼କାୟତି କରିବି ନାହିଁ । ମୋତେ ଆଉ କିଛି ପଗ୍ଭର ନାହିଁ । ତମେ ସମସ୍ତେ ଏଠୁ ଗ୍ଭଲିଯାଅ । ଦୂର ହୋଇଯାଅ ମୋ ଆଖି ଆଗରୁ । ମୁଁ ଆଉ ତୁମ ସର୍ଦ୍ଦାର ନୁହେଁ ।

ଦଳର ଉପମୁଖ୍ୟ ଉଦ୍ଧତ ହୋଇ ଉଠିଲ– ସର୍ଦ୍ଦାର ଆମକୁ ନୀତିବାକ୍ୟ ଶୁଣାଇ ନିଜେ ଯୁବତୀକୁ ଧରି ଉପଭୋଗ କରୁଛି । ବଡ଼ ସ୍ୱାର୍ଥପର ସେ । ଲୁଣ୍ଠିତ ଦ୍ରବ୍ୟ ଉପରେ ସମସ୍ତଙ୍କର ସମାନ ଅଧିକାର ଅଛି । ସେ କାହିଁକି ଏକା ଭୋଗ କରିବ ? ଉଠେଇ ଆଣ ସେ ବିଧବା-ବେଶୀ ସ୍ତ୍ରୀ ଲୋକକୁ । ଆଉ ଡେ଼ରି କାହିଁକି ? ଡାକୁମାନେ ଶ୍ରାବଣୀ ଆଡକୁ ମାଡି ଆସିଲେ ।

ଦେବକାନ୍ତ ଗର୍ଜି ଉଠିଲ ସିଂହ ଭଳି । କାହାର ଏତେ ସାହସ ସର୍ଦ୍ଦାର ମୁହଁରେ ଜବାବ ଦେବାକୁ ? ତମ ସମସ୍ତଙ୍କୁ ମୁହୂର୍ତ୍ତକ ମଧ୍ୟରେ ଶେଷ କରିଦେବି । ଭଲ ଗତି ଯଦି ଅଛି ଏଠୁ ଶୀଘ୍ର ପଳାଅ । କହୁଛି ପଳ ପଳାଅ ! ସର୍ଦ୍ଦାରର ଆଦେଶ ।

ପାଗଳ ସର୍ଦ୍ଦାରର ରଣାହ୍ୱାନ ! ମୁକାବିଲା ହୋଇଯିବା ଉଚିତ ! ପାଗଳ ପାଲରେ ପଡ଼ିଲେ ସମସ୍ତେ ଧରା ପଡ଼ିବା, ମାମୁଁ ଘର ଦେଖିବା ।

ଦେବକାନ୍ତ ଗୋଡ଼ ପାଖରୁ ପିସ୍ତଲଟି ଉଠାଇବାକୁ ନଇଁ ପଡ଼ିଲ ବେଳେ ଉପମୁଖ୍ୟ ତା' ଉପରକୁ ଲମ୍ଫ ଦେଲ । ସେମାନେ ତଳେ



Digitized by PPRACHIN, SOA

ଅନ୍ଧାରରେ ଗଡ଼ାଗଡ଼ି ଏବଂ ଧସ୍ତା ଧସ୍ତି ଲଗିଲେ । ଅନ୍ୟମାନେ ସାହସ ନକରି ଦୂରକୁ ଗ୍ଲଲିଗଲେ । ଇତ୍ୟବସରରେ ସ୍ୱାମୀଙ୍କୁ ରକ୍ଷା କରିବା ପାଇଁ ଶ୍ରାବଣୀ ଧାଇଁ ଯାଇଥିଲା । ଅନ୍ଧାର ଭିତରେ ଦୁଇଟି ଗୁଳିର ବିସ୍ଫୋରଣ ଘଟିଥିଲା । ଶ୍ରାବଣୀ ଆହତ ହୋଇ ତଳେ ପଡ଼ିଯାଇଥିଲା । ତାକୁ ସାଉଁଟି ନେଇ ଦେବକାନ୍ତ କୋଳରେ ଥୋଇ ଅଶ୍ରୁପାତ କଲା । ଅମର କାବୁଯ ହୋଇ ଖଟ ତଳେ ପଶି ଯାଇଥିଲା । ତା' ପରେ ସବୁ ଶୁନ୍‌ଶାନ୍ ।



ପୂର୍ବାକାଶ ଫର୍ଚ୍ଚା ଦିଶିଲା । ତାରାମାନେ ନିଷ୍ପ୍ରଭ ଦିଶିଲେ । ଗତି ପାହି ଆସୁଥିଲା । ତୀର୍ଥ ଭ୍ରମଣରୁ ଫେରି ଅଭୟାନନ୍ଦ ଏବଂ ସ୍ୱର୍ଣ୍ଣାଭା ଘରେ ପହଞ୍ଚିଲେ । କିନ୍ତୁ ଏ କ'ଣ ? ଗେଟ୍ ମେଲା ଅଛି ? ଏ ଅସମୟରେ କାହିଁକି ? ପୁଣି ଦେଖନ୍ତି, ଡ୍ରାଇଭ ଆଲ୍‌ସେସିଆନଟି ମରି ପଡ଼ିଛି । ଛାତିରେ ଛନକା ପଶିଲା ଉଭୟେ ସ୍ୱାମୀ ସ୍ତ୍ରୀ କୁକୁର ପାଖକୁ ଦୌଡ଼ିଗଲେ । ଭଲ ଭାବେ ନିରୀକ୍ଷଣ କରି ଦେଖିଲେ । କୁକୁର ଛାତିରେ ଗୁଳିବିଦ୍ଧ । କିଛି ଗୋଟାଏ ଅଶୁଭ ଘଟଣା ଘଟିଛି ନିଶ୍ଚୟ । ଭୟାକ୍ରାନ୍ତ ମନରେ ଗୃହ ଭିତରକୁ ସାବଧାନ ହୋଇ ପ୍ରବେଶ କଲେ ।

: ସାବି, ସାବି, ଅମର୍, ଅମର, କୁଆଡ଼େ ସବୁ ଗଲ ? ଉଠି ନାହଁ କି, ଗତି ପାହିଲାଣି ଯେ ! କୁକୁରକୁ କିଏ ମାରିଛି ? କବାଟ ଗୁଡ଼ିକ ଖୋଲା ଅଛି କାହିଁକି ?

ନେତ୍ର ବୁଲି ଆସିଲା ଘର ସାରା । ଖଣ୍ଡ ପ୍ରଳୟର ଦୃଶ୍ୟ । ଆସବାବପତ୍ର ଗୁଡ଼ିକ ଛିନ୍ ଛତର ହୋଇ ଏଠିସେଠି ପଡ଼ିଛି । କୌଣସି ଦୁର୍ଦ୍ଧର ଡ଼କାୟତର କାଣ୍ଡ ନିଶ୍ଚୟ । ଘରଟା ଗୋଟେ ଭଣକ୍ଷେତ୍ର ପରି ଦିଶୁଛି ।



Digitized by PPRACHIN, SOA

: ବାପ ଅମର, ଅମର, ସାବି, ସାବି ? ଆର୍ତ୍ତସ୍ୱରରେ ଡ଼ାକିଲେ ସେମାନେ । ନିଦରୁ ଉଠି ଅମର ଆଖି ମଳିମଳି ଦୌଡ଼ି ଆସିଲା ବୋଉ କୋଳକୁ । ସେମାନେ ତାକୁ କୋଳକରି ବୋକ ଦେଲେ । ଅମର କିଛି କହି ନପାରି କାନ୍ଦି ଉଠିଲା କେବଳ ।

ସେମାନେ ଆସ୍ତେ ପ୍ରବେଶ କଲେ ଶୟନ କକ୍ଷକୁ । ଅକଳ୍ପିତ ଦୃଶ୍ୟଟି ଦେଖି ଆଖି ଓଲଟି ଗଲା ପରି ଲାଗିଲା ସେମାନଙ୍କର । ପଛକୁ ପାହୁଣ୍ଡେ ଘୁଞ୍ଚି ଆସିଲେ । ଏକି ନାହିଁ ନଥିବା ଦୃଶ୍ୟ ! ଶ୍ରାବଣୀ ଶୋଇଛି ଜଣେ କଳା ପୋଷାକଧାରୀ ବୟସ୍କ ମଣିଷ କୋଳରେ ! କିଏରେ ଦୁର୍ଗମା ମୋ ଘରେ ?

: କିଏ ତୁ ? ଅଭୟାନନ୍ଦଙ୍କର ଭୟ ମିଶ୍ରିତ ଦମ୍ଭ । ସୁଶୀଳା ଭୟରେ କଣ୍ଠାପାଣି । ପିସ୍ତଲଟିଏ ତଳେ ପଡ଼ିଛି । ଡକାୟତ ସଙ୍ଗେ ମୁହାଁମୁହିଁ । ବଡ଼ ଦୁର୍ଯୋଗର କଥା । ତା' ହାବୁଡ଼ରେ ପଡ଼ିଛନ୍ତି ଆଜି ।

ସମ୍ମୁଖରେ ଯମରୂପୀ ଦସ୍ୟୁ-ଦାନବ । ନୃଶଂସତାର ସଇତାନ ସିଏ । ପାଟି ଖନି ବାଜିଲା ସେମାନଙ୍କର ।

ଏ କ'ଣ କରୁଛି ମଣିଷଟା !

ଅଭୟାନନ୍ଦଙ୍କ ଗୋଡ଼ ତଳେ ପଡ଼ି କ୍ଷମାଭିକ୍ଷା କରୁଛି । କହୁଛି ଧର୍ମାବତାର, ମୁଁ ଡାକୁ, ଖ୍ୱେର, ସୈତାନ । ଜୀବନରେ ବହୁ ଅପକର୍ମ କରିଛି । ସାଙ୍ଘାତିକ ଖ୍ୱେରି ଘଟଣା ଘଟେଇଛି । ସରକାର ମୋତେ ଧରିବାକୁ ଚେଷ୍ଟା କରି ବିଫଳ ହୋଇଛନ୍ତି । ଅର୍ଥ ଘୋଷଣା ମଧ୍ୟ କରିଛନ୍ତି । ପରିଶେଷରେ ଆତ୍ମ ସମର୍ପଣ କରିବାକୁ ରେଡ଼ିଓ, ସମ୍ବାଦପତ୍ର ମାଧ୍ୟମରେ ଘୋଷଣା କରିଛନ୍ତି ଏବଂ କ୍ଷମା ପ୍ରଦାନ କରିବାକୁ ପ୍ରତିଶ୍ରୁତି ଦେଇଛନ୍ତି ମଧ୍ୟ । ମୁଁ ସେଇ ନରାଧମ ଦସ୍ୟୁ ନାୟକ ସଗ୍ରାମ ସିଂ— ଯାହା ନାମ ଶୁଣି



Digitized by PPRACHIN, SOA

ଧନାଢ୍ୟ ବ୍ୟକ୍ତିମାନେ ସନ୍ତ୍ରସ୍ତ ହୁଅନ୍ତି । ହେଲେହେଁ ଧର୍ମ ଦେବତା, ମୁଁ ଅକାରଣରେ କୌଣସି ନରସଂହାର କରିନାହିଁ । ଡକାୟତି ମୋର ପ୍ରକୃତି ବା ପ୍ରବୃତ୍ତି ନଥିଲା, ପରିସ୍ଥିତି ମୋତେ ଡକାୟତ ଭାବେ ସଜାଇଛି, ବାଧ୍ୟ ହୋଇ ମୁଁ ବନ୍ଧୁକ ଧରିଛି । ମୋ ଜୀବନର ଇତିହାସ ଏକ ସରଳ ଧନ୍ଦାନ୍ୱେଷଣୀ ବେକାର ଶିକ୍ଷିତ ଯୁବକର କଳଙ୍କିତ ଅଧ୍ୟାୟ । ସମୟର ଘୂର୍ଣ୍ଣନ ଏବଂ ଅନ୍ୟାୟର ଅତ୍ୟାଚାରରେ ମୁଁ ପ୍ରତିଶୋଧପରାୟଣ ହୋଇ ଉଠିଥିଲି । ହେଲେ ଯେଉଁଥିପାଇଁ ମୋର ଦୁର୍ଗତି, ଦୁରବସ୍ଥା, ଆଜି ମୁଁ ଅତି ଆଶ୍ଚର୍ଯ୍ୟଜନକ ଭାବେ ମୋ ହଜିଲା ବସ୍ତୁକୁ ପାଇଛି । ଦୀର୍ଘ ଦଶବର୍ଷର ଆକ୍ରୋଶ ଅଭିଯାନ ଅତି ଆଶାତୀତ ରୂପେ ସଫଳତାର ସହିତ ସମାପ୍ତ ହୋଇଛି । ମୋ ପ୍ରାଣ ପ୍ରିୟାକୁ ମୁଁ ଆଜି ପାଇଛି । ହେ ଦୟାପତି, ମୋ ପ୍ରିୟାର ଜୀବନ ସଙ୍କଟାପନ୍ନ । ମୋତେ ସେ ରକ୍ଷା କରିବାକୁ ଯାଇ ମୋରି ଲୋକଙ୍କ ଦ୍ୱାରା ଗୁଳିବିଦ୍ଧ ହୋଇଛି । ପ୍ରବଳ ରକ୍ତସ୍ରାବ ହେଉଛି । ସେ ଚେତାଶୂନ୍ୟା, ସଂଜ୍ଞାହୀନା । ହେ ମହାପୁରୁଷ ; ମୋତେ ଦଣ୍ଡଦିଅ, ମୋତେ କଠୋର ଶାସ୍ତି ଦିଅ, ମୋତେ ଶୂଳି ଦିଅ, ମୋତେ ଫାଶୀ ଖୁଣ୍ଟରେ ଝୁଲାଅ, ହେଲେ ମୋ ପ୍ରିୟତମାକୁ ବଞ୍ଚାଅ । ସେ ସତୀ, ସାଧ୍ୱୀ, ସାବିତ୍ରୀ । ଜୀବନରେ ସେ ସହ୍ୟ କରିଛି ଅକଥନୀୟ ଯନ୍ତ୍ରଣା, ଅବର୍ଣ୍ଣନୀୟ ବେଦନା । ବଞ୍ଚାଅ ପ୍ରଭୁ ତାକୁ, ବଞ୍ଚାଅ, ଦୟାକର ... ।

ଅଭୟାନନ୍ଦଙ୍କ ମନକୁ ଆଚ୍ଛନ୍ନ କରିଛି– ଭାରତ ଭୂଖଣ୍ଡର ଉତ୍ତର ପୂର୍ବାଞ୍ଚଳରେ ସୃଷ୍ଟି ହୋଇଥିବା ଆତଙ୍କରାଜ ଘଟଣା ଆଉ ଆଇନ ଶୃଙ୍ଖଳାର ଅଧଃପତନ କଥା । କ୍ରମଶଃ ଆତଙ୍କ ବ୍ୟାପିଛି ଦିଗ ଦିଗନ୍ତକୁ, ଘଞ୍ଚ ଅରଣ୍ୟରେ ମଣିଷ ଖିଆ ମହାବଳ ମାତିଲା ଭଳି । ଧନୀକମାନଙ୍କ ଧନଜୀବନ ବିପର୍ଯ୍ୟସ୍ତ ହେବାକୁ ଲାଗିଛି ବେଳକୁ ବେଳ । ସମାଜପତି ଉଚ୍ଚାସନ ବ୍ୟକ୍ତି, ବ୍ୟବସାୟୀ ଗୋଷ୍ଠୀ, ଯେଉଁମାନେକି ଅନ୍ୟାୟର ଅର୍ଥ ପାହାଡ଼ ଉପରେ ସୁଦୃଢ଼ ଅଟ୍ଟାଳିକା ନିର୍ମାଣ କରିଛନ୍ତି, ସେମାନେ ଏବେ



Digitized by PPRACHIN, SOA

ପ୍ରବଳ ପ୍ରମାଦ ଗଣୁଛନ୍ତି । ଦୁର୍ନୀତିର ଦୁର୍ଗପତିମାନେ ଜୀବନକୁ ପ୍ରତି ମୁହୂର୍ତ୍ତରେ ବିପଦାପନ୍ନ ମନେ କରୁଛନ୍ତି । ଦସ୍ୟୁ ଦମନ ପାଇଁ ସରକାରୀ କଳର ସକଳ ଚେଷ୍ଟା ବ୍ୟର୍ଥ, ବିଫଳ ହୋଇଛି । ସମ୍ବାଦପତ୍ର ଓ ବିରୋଧୀ ଦଳ ସବୁ ଗର୍ଜି ଗର୍ଜି ଥକିଲେଣି । ସରକାରଙ୍କ ସାର୍ବଭୌମତ୍ୱ ଉପରେ ଅନାସ୍ଥା, ଅବିଶ୍ୱାସ ଜନ୍ମିଲାଣି । କିଏ ମତ ଦିଏ— ନକ୍ସଲପନ୍ଥୀମାନେ ସଂଗୋପନରେ ବିଦ୍ରୋହ କରି ଉଠିଛନ୍ତି । ଆଉ ବା କିଏ କହେ— ସରକାରଙ୍କୁ ଗାଦିଚ୍ୟୁତ କରିବାପାଇଁ ଏକ ସଂଗଠିତ, ସମାନ୍ତରାଳ ଦସ୍ୟୁଦଳ ଗଠିତ ହୋଇଛି, ଯାହାର କାର୍ଯ୍ୟକଳାପ ଅତି ଅଦ୍ଭୁତ ଏବଂ ଆଶ୍ଚର୍ଯ୍ୟଜନକ । ପୋଲିସ ଫଉଜ, ଗୋଇନ୍ଦା ବିଭାଗ ପରୋକ୍ଷରେ ନିଜ ବ୍ୟର୍ଥତା ସ୍ୱୀକାର କରିଛନ୍ତି । କେଉଁଠି ଲୁଚିଛପି ଭଦ୍ରବେଶରେ ଚୋରମାନେ ରହୁଛନ୍ତି, ପୋଲିସ ଆଖିରେ ଧୂଳିଦେଇ ବଡ଼ ବଡ଼ ଡ଼କାୟତି କରୁଛନ୍ତି, କେହି ତା'ର ଟେର ପାଉନାହାନ୍ତି । ବ୍ୟାଙ୍କ ଲୁଟି, ଟ୍ରେନ୍, ବସ୍, ଟ୍ରକ୍ ଡକାୟତି ଏକ ନୀତିଦିନିଆ ଘଟଣା ହୋଇଛି । ଛଦ୍ମବେଶୀ ଚୋରମାନଙ୍କ ଉତ୍ପାତ, ଦୌରାତ୍ମ୍ୟ ଏବଂ ପ୍ରାଦୁର୍ଭାବ ବୃଦ୍ଧି ପାଉଛି ବେଳକୁ ବେଳ । ଯେଉଁମାନେ ନିର୍ମଳ ଶାସନ ନାମରେ ଦୁର୍ନୀତିକୁ ଆବୋରି ବସିଛନ୍ତି, ସେମାନଙ୍କ ଉପରେ ସଶସ୍ତ୍ର ଚଢ଼ଉ ଲଗିରହିଛି ଖୁବ୍ ଦକ୍ଷ ଏବଂ କୌଶଳର ସହିତ । ଜନତାର ଏଥିପାଇଁ ତ୍ରାହି ତ୍ରାହି ଡ଼ାକ । ଏପରି ସଂଗଠିତ, ଯୋଜନାବଦ୍ଧ ଏବଂ ଚତୁର ଚୌରବୃତ୍ତି ସମସ୍ତଙ୍କୁ କରିଛି ହତଚକିତ, ଆତଙ୍କଗ୍ରସ୍ତ । ମନେହୁଏ, ସମ୍ପତି ଆଇନକୁ ଅଚଳ କରିବା ପାଇଁ ଚତୁର ଚୋରମାନଙ୍କର ଏକ ସଂଗୋପିତ ସଂଗ୍ରାମ ମୁଣ୍ଡ ଟେକିଛି । କର୍ତ୍ତୃପକ୍ଷ ଏଥିପାଇଁ ଚିନ୍ତିତ, ବ୍ୟଥିତ ଏବଂ ଭୟକ୍ରାନ୍ତ । ଏପରିକି ଡାକୁମାନଙ୍କୁ ଜୀବିତ ବା ମୃତ ଆକାରରେ ଧରାଇ ଦେଲେ ଲକ୍ଷାଧିକ ଅର୍ଥ ପୁରସ୍କାର ଘୋଷଣା କରିଛନ୍ତି । ଏବେ ସ୍ୱଇଚ୍ଛାରେ ସେମାନେ ଆତ୍ମସମର୍ପଣ କଲେ କ୍ଷମା ଦିଆଯିବ ବୋଲି ସରକାରଙ୍କ ମୁହଁରେ ପ୍ରଚାରିତ । ତଥାପି ଅବସ୍ଥାର କୌଣସି ଉନ୍ନତି ଲକ୍ଷ୍ୟ କରାଯାଇ ନାହିଁ ।

ଅଭୟାନନ୍ଦଙ୍କର ମନେ ପଡୁଛି, ଅଳ୍ପଦିନ ତଳେ ସମ୍ବାଦ ପତ୍ରରେ ପଢ଼ିଥିଲେ ଏକ କିମ୍ଭୁତ ଡକାୟତିର ଘଟଣା । ନିଶାକାଳ । ଜାତୀୟ



Digitized by PPRACHIN, SOA

ରାଜପଥର ଜଙ୍ଗଲ ପରିବେଷ୍ଟିତ ଏକ ନିର୍ଜନସ୍ଥଳୀ । ଏଠି ଡାକୁ ଦଳର ଡେରା ପଡ଼ିଥିଲା । କାଠମାଣ୍ଡୁରୁ ଗୋଟିଏ ଯାତ୍ରୀବାହୀ ବସ୍ ଯାତ୍ରା କରୁଥିଲା ପାଟଣା ଅଭିମୁଖେ । ବସ୍‌ରେ ଅନେକ ପଣ୍ୟଦ୍ରବ୍ୟ, ହେରୋଇନ୍ ଚରସ ଆଦି ବହୁମୂଲ୍ୟର ମାଦକଦ୍ରବ୍ୟ ସହିତ ସୁନାର ଚୋରା ଚାଲାଣ ହେଉଥିବା ଘଟଣା ଖବର ମିଳିଥିଲା । ବସଟିକୁ ପିଛା କରିଥିଲା ଡାକୁ ଦଳର ଅନୁଧାବନକାରୀ ଯାନ । ନିର୍ଦ୍ଦିଷ୍ଟ ସ୍ଥାନରେ ଓସ୍ତାଦ୍ ଗାଡ଼ି ରଖିବାକୁ ଆଦେଶ ଦେଲା । ବିପଜ୍ଜନକ ସ୍ଥାନ । କାଳି ଅନ୍ଧାର ଚତୁର୍ଦ୍ଦିଗକୁ ଢାଙ୍କି ରଖିଛି । ଠାଏ ଠାଏ ବର୍ଷା । ନିର୍ଦ୍ଦେଶକୁ ଅମାନ୍ୟ କରି ଗାଡ଼ି ଚାଳକ ଗାଡ଼ି ଛୁଟେଇଲା ଦ୍ରୁତଗତିରେ । ଗ୍ରେନେଡ୍‌ର ଗୁଳିଚାଳନାରେ ଗାଡ଼ିର ଚକକୁ ଅକାମୀ କରି ଦିଆଗଲା । ଦଳପତିର ନିର୍ଦ୍ଦେଶ ମତେ ଗାଡ଼ି ଠେଲା ହୋଇ ପଶିଲା ରାସ୍ତାଧାର ଜଙ୍ଗଲର ଅନ୍ଧାରିଆ ସ୍ଥାନକୁ । ଭିତରେ ପଶିଲେ ମାରଣାସ୍ତ୍ରଧାରୀ ଦୁର୍ଦ୍ଦାନ୍ତ ଦସ୍ୟୁଗୁଡ଼ିଏ । ଯାତ୍ରୀମାନେ ଭୟରେ ଥରହର । ମରଣକୁ କାହାର ନାହିଁ ଡର ? ଦୀର୍ଘ ସମୟ ପର୍ଯ୍ୟନ୍ତ ତଲ୍ଲାସୀ ଚାଲିଲା । ତନ୍ନ ତନ୍ନ କରି ଖୋଜା ଚାଲିଲା ସବୁ ସ୍ଥାନକୁ । ଖୋଜଗଲା ପ୍ରତି ଟ୍ରଙ୍କ୍, ସୁଟକେଶ୍, ବ୍ୟାଗ୍, ବେଡ଼ିଂ । କ'ଣ ଏମାନେ ଖୋଜୁଛନ୍ତି ? କ'ଣ ଏମାନଙ୍କର ଉଦ୍ଦେଶ୍ୟ ? କିଛି ଜଣା ପଡ଼ୁନି । ଓସ୍ତାଦ୍ ଏଥର ବିରକ୍ତ ହେଲା ନିଜ ଦଳ ଉପରେ । ଆଉଥରେ ଖୋଜିଲେ । ବିଫଳ ହେଲେ । ସର୍ଦ୍ଦାର ବିରକ୍ତ ହେଲା ଗୁପ୍ତ ସମ୍ବାଦ-ଦାତା ଉପରେ । ଭୁଲ ତଥ୍ୟ ଯୋଗାଇ ଏମାନଙ୍କୁ ବିଭ୍ରାନ୍ତ କରିଛି । ଅକାରଣେ ନିରୀହ ଯାତ୍ରୀମାନଙ୍କୁ ହଇରାଣ କରିଛନ୍ତି । ଦଳପତି ନିଃସଙ୍କୋଚରେ ଘୋଷଣା କଲା– ଇଏମାନେ ଆମର ଖବର ଭ୍ରମାତ୍ମକ ଥିଲା । ଏକ ଭୁଲ ସମ୍ବାଦକୁ ଭିତ୍ତିକରି ଆମେ ଆପଣମାନଙ୍କୁ ହଇରାଣ କରିଛୁ । ଆମେ ଦୁଃଖିତ । କ୍ଷମା କରିବେ । ଏମିତି ବି ବେଳେବେଳେ ହୋଇଯାଏ ।

ଦସ୍ୟୁମାନେ ଲାଗିପଡ଼ି ବସଟିକୁ ଠିକ୍ କରିଥିଲେ ଏବଂ ଯଥା ରାସ୍ତାରେ ପୁଣି ନିର୍ଭୟ, ନିର୍ବିଘ୍ନରେ ବସ୍ ଗତି କରିଥିଲା, ଅବଶ୍ୟ ବିଳମ୍ବରେ । ଯାତ୍ରୀମାନେ ଦସ୍ୟୁଦଳକୁ ବହୁ ପ୍ରଶଂସା କରିଥିଲେ । କୌଣସି ଜନଜୀବନ



Digitized by PPRACHIN, SOA

ହାନି ଘଟି ନଥିଲା । କାଣି କଉଡ଼ିଟିଏ ମଧ୍ୟ ଅପହୃତ ହୋଇ ନଥିଲା, ବରଂ ଦଳର ଦଳପତି ଦୁଃଖ ପ୍ରକାଶ କରିଥିଲା । ଚୋରକୁ ଜନ ତୁଣ୍ଡରେ ଏକ ଅଭିନବ ଘଟଣା ନୁହେଁ କି ? ସମ୍ବାଦପତ୍ର ଗୁଡ଼ିକ ମଧ୍ୟ ଦସ୍ୟୁ ଦଳର ହୃଦୟକୁ ସାଧୁବାଦ ଜଣାଇ ଥିଲେ ।

ଅଭୟାନନ୍ଦ ଚିନ୍ତା କରୁଛନ୍ତି । କିଏ ସେ ହୃଦୟବାନ ଡାକୁ ? ଏ ଲୋକଟି ଛଡ଼ା ଆଉ କିଏ ହୋଇପାରେ ? ମୁଖମଣ୍ଡଳର ଭଙ୍ଗୀରୁ ତା' ହୃଦୟର ଭଷା ପଢ଼ି ହେଉଛି । ସେ ଆଜି ଏକ ନାଟକୀୟ ପରିସ୍ଥିତିରେ ନିଜେ ଆସି ଧରା ଦେଇଛି, ଆତ୍ମସମର୍ପଣ କରିଛି । ତାକୁ କ'ଣ କ୍ଷମା ଦେବାପାଇଁ ଆଇନ୍‌ରେ କିଛି ବ୍ୟବସ୍ଥା ନାହିଁ ?

ଅମର କହିଲା– ବାବା, ବାବା, ଆୟା କହୁଥିଲେ ଏ ଲୋକ ଜଣକ କୁଆଡ଼େ ମୋର ବାପା । ଜଣେ ଦୁଷ୍ଟ ଦସ୍ୟୁ କ'ଣ ମୋର ବାପା ହୋଇପାରେ ? କାଲି ଚୋରମାନେ ଆମ ଘରେ ପଶି ଭଙ୍ଗାରୁଜା କରୁଥିଲେ । ଏ ଘରକୁ ଗୁଣ୍ଡାଗୁଡ଼ାକ ପଶି ଆସି ଆୟା ଉପରେ ଆକ୍ରମଣ କରି ବସିଲେ । ଏ ଲୋକଟା ସେମାନଙ୍କ ସଙ୍ଗେ ଲଢେଇ କଲା । ମୁଁ ଡ଼ରରେ ଖଟତଳେ ପଶିଗଲି । ଅନ୍ଧାରରେ ମୋତେ ଆଉ କିଛି ଦିଶିଲା ନାହିଁ । ପିସ୍ତଲ ଶବ୍ଦ ଶୁଣି ଆହୁରି ଡ଼ରିଗଲି । ଆଖି ବନ୍ଦ କରି ଶୋଇ ରହିଲି । ବାବା, ଆୟା କେଡ଼େ ଭଲ ! ତାକୁ ବଞ୍ଚାଅନା !

ଦେବକାନ୍ତ ଶୋକାତୁର ହୋଇ ବିନୟାବନତ ଢଙ୍ଗରେ ଅଭୟାନନ୍ଦଙ୍କ ପାଦସ୍ପର୍ଶ କଲା– ନିଜକୁ ସମର୍ପଣ କରିଥିଲା ଜଣେ କ୍ଷମା ପ୍ରାର୍ଥୀ ଭବେ । ଶ୍ରାବଣୀର ପ୍ରାଣରକ୍ଷା ପାଇଁ ପ୍ରାର୍ଥନା କରୁଥିଲା– ସ୍ନପୁରୁଷଙ୍କର ଚରଣ ତଳେ ଜଣେ ଦୁଷ୍ଟ, ଦୁରାଗ୍ରହର ଅନ୍ତିମ ମିନତି ।

ଅବସରପ୍ରାପ୍ତ ବିଚାରପତି ଅଭୟାନନ୍ଦଙ୍କ ଜୀବନକାଳରେ ଏହା ସବୁଠୁଁ ଆଶ୍ଚର୍ଯ୍ୟ ଘଟଣା । ଅତୀତରେ ଅଦାଲତର ଆସନରେ ବସି ପରୋକ୍ଷ ତଥ୍ୟ ଉପରେ ନିର୍ଭର କରି ଅନେକ ଗୁରୁତ୍ୱପୂର୍ଣ୍ଣ ରାୟ ଦେଇ



Digitized by PPRACHIN, SOA

ଅଦାଲତ ଇତିହାସରେ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲେ । ଆଜି କିନ୍ତୁ ତାଙ୍କ ହୃଦୟର ବିଗ୍ରହଳୟରେ ଏକ ଅଭିନବ ଘଟଣା ଉପସ୍ଥାପିତ, ଯାହାର ପ୍ରତ୍ୟକ୍ଷଦର୍ଶୀ ହେଉଛନ୍ତି ସେ ନିଜେ !

ଅଭୟାନନ୍ଦ ଟିକିଏ ଚିନ୍ତାଶୀଳ ହୋଇ ଅମରକୁ ନିର୍ଦ୍ଦେଶ କରି କୋମଳ ସ୍ୱରରେ କହିଲେ– ବାବୁ ଅମର, ଆୟା ସତ କହୁଛି । ସେ ତୋର ପ୍ରକୃତ ଜନ୍ମଦାତ୍ରୀ-ମା' । ତୋ ବୋଉ ହେଉଛନ୍ତି ପାଳନକର୍ତ୍ତ୍ରୀ ମାତା । ଏ ବ୍ୟକ୍ତି ଜଣକ ହେଉଛନ୍ତି ତୋର ପ୍ରକୃତ ପିତା । ମୁଁ ତୋର ବାବୁ–ବାପା । ତୋର ଏବେ ଦୁଇ ବାପା ଏବଂ ଦୁଇ ବୋଉ । ଭଗବାନ ଶ୍ରୀକୃଷ୍ଣଙ୍କର ସେମିତି ଦୁଇଜଣ ବାପା, ଦୁଇଜଣ ମା' ପରା ଥିଲେ ? ତୁ ତ ଆମର ସେଇ ନନ୍ଦଦୁଲାଳ, ବାଳଗୋପାଳ ! ତୁ ସେମାନଙ୍କୁ ପ୍ରଣାମ କର ।

ଅମର ବିକଳ ହୋଇ ଦଉଡ଼ି ଗଲା ଆୟା ପାଖକୁ । ଆଉଁସିଦେଲା ତା ମୁଣ୍ଡର ଅଲଗ, ଆଲୁଳାୟିତ କେଶକୁ । ବ୍ୟସ୍ତ ଗଳାରେ କହିଲା– ବାବା, ବାବା, ବୋଉ, ବୋଉ; ଆୟାଙ୍କ କାନ୍ଧରୁ କେତେ ରକ୍ତ ଝରୁଛି ! ଲୁଗା ପଟା ସବୁ ରକ୍ତରେ ଓଦା ହୋଇଗଲାଣି । ଆୟା ଶୋଇ ପଡ଼ିଛନ୍ତି । ସେ ଆଖି ଖୋଲୁ ନାହାନ୍ତି । ସେ କ'ଣ ଆଉ ଆଖି ଖୋଲିବେନି ?

ଅମର କାନ୍ଦି ଉଠିଲା ।

ଆଖି ସଫାକରି ସୁଶୀଳା ବିବ୍ରତ ଗଳାରେ କହିଲେ– ଆଉ ଡ଼େରି କରୁଛ କାହିଁକି ? ସାବିକୁ ଏଥର ଡାକ୍ତରଖାନାକୁ ଉଠାଅ । ଫୋନ୍ କର ଡାକ୍ତର ମନୋରଂଜନକୁ । ଡ଼େରି କଲେ ସାବି ଆଉ ଜୀବନ ଫେରି ପାଇବ ନାହିଁ । ଆହା କେଡ଼େ ହୀନିମାନୀ ଜୀବନ ତା'ର !

ଫୋନ୍ ଲାଇନ୍ ଅଚଳ ଥିଲା । ସେମାନେ ସମସ୍ତେ ବାହାରି ପଡ଼ିଲେ ହାସପାତାଳ ଅଭିମୁଖେ । ଏତିକି ବେଳକୁ ରିକ୍‌ସାରୁ ଓହ୍ଲାଇଲେ କେତେ ଜଣ ବ୍ୟକ୍ତି– ସେମାନେ ମଦନ ମୋହନ, ସାଙ୍ଗରେ ତା'ର



Digitized by PPRACHIN, SOA

ନବବିବାହିତା ପନ୍ନୀ ଟିକିନୀ ଓ ଟିକିନୀର ବାପା, ବୋଉ । ପୂର୍ବ କଥାମତେ ସେମାନେ ଆସିଛନ୍ତି–ଜମିବାଡ଼ି ହସ୍ତାନ୍ତର ଦଲିଲ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ।

: ନମସ୍କାର ସାର୍ । ଆମେମାନେ ଆସିଛୁ । ସେ ମୋ ସ୍ତ୍ରୀ ଟିକିବାଳା ।

: ପ୍ରଣାମ । –ଟିକିନୀ ଅଭୟାନନ୍ଦଙ୍କ ଶ୍ରୀଚରଣ ଛୁଇଁ ପ୍ରଣାମ କରିଥିଲା ।

ଅଭୟାନନ୍ଦ ବିବ୍ରତ ଅବସ୍ଥାରେ ଥିଲେ । ସଂଲଗ୍ନ ଗ୍ୟାରେଜରୁ ଗାଡ଼ି ବାହାର କରିବା ଅବସରରେ ସେ କହିଲେ - ମଦନ ମୁଁ ବଡ଼ ବ୍ୟସ୍ତ ଅଛି । ଯଦି ଅସୁବିଧା ନ ହୁଏ, କିଛିଦିନ ପରେ ଆସିଲେ ଭଲ ହୁଅନ୍ତା ।

: ହେଉ ସାର୍ ।

ଏମାନେ ଫେରି ଆସୁଥିଲେ । ଦୃଷ୍ଟି ପଡ଼ିଲା ଦେବକାନ୍ତ ଉପରେ । ଚେତାଶୂନ୍ୟା ଶ୍ରାବଣୀକୁ ଦୁଇ ହାତରେ ଟେକି ଧରି କାର୍ ଭିତରେ ଭର୍ତ୍ତିକରୁଥିଲା । ସୁଶୀଳା ଏବଂ ଅମର ସହଯୋଗ କରୁଥିଲେ ।

ଆନନ୍ଦାତିଶଯ୍ୟରେ ଏମାନେ ଏକ ସ୍ୱରରେ ଉଚ୍ଚାରଣ କରି ଉଠିଲେ– ହେଇଟି ଆମ ଦେବ, ଆମ ଦେବ, ଆମ ସାବି, ଆମ ଭଇ, ଆମ ନୂଆବୋଉ !

କ୍ଷଣିକ ପାଇଁ ଚତୁର୍ଦ୍ଦିଗରେ ଖେଳିଗଲା ଆନନ୍ଦୋଲ୍ଲାସ ଏବଂ ପର ମୁହୂର୍ତ୍ତରେ ବ୍ୟାପିଗଲା ବିଷାଦର ଛାୟା । ଶ୍ରାବଣୀର ସଙ୍କଟାପନ୍ନ ଅବସ୍ଥା ମିଳନ ମୂଖର ମୁହୂର୍ତ୍ତଟିକୁ ବିପର୍ଯ୍ୟସ୍ତ କରିଦେଲା । ଦେବକାନ୍ତ ଜୀବନରେ ଆଜି ଅନେକ ଗୁଡ଼ିଏ କଳ୍ପନାବହିର୍ଭୂତ ଘଟଣା ଘଟି ଯାଉଛି ତା' ଆଖି ଆଗେ ଆଗେ । ସେ ଥିଲା ସମ୍ପୂର୍ଣ୍ଣ ନୀରବ, ନିସ୍ପନ୍ଦ ଏବଂ ଅନୁତପ୍ତ । ତା'ର ପିତାମାତା ମଧ୍ୟ ସମପରିମାଣରେ ନିଜ ଦୁଷ୍କୃତି ଏବଂ ଦୁଷ୍କର୍ମ ପାଇଁ ଥିଲେ ପଶ୍ଚାତ୍ତାପ । ବିଚଳିତ ଚିତ୍ତରେ ସେମାନେ ଧାଇଁ ଯାଇଥିଲେ ବୋହୂ ପାଖକୁ । ଦେବବୋଉ ଆଉଁସି ଦେଉଥିଲା ତା' ସରଳା ବୋହୂର



Digitized by PPRACHIN, SOA

ହତଶ୍ରୀ ମୁହଁଟିକୁ । କେତେ ଅନ୍ୟାୟ, ଅତ୍ୟାଚାର କରି ନାହାନ୍ତି ଏଇ ସରଳମନା ବୋହୂଟି ଉପରେ ! ସେ ସବୁର କ'ଣ ଆଉ କ୍ଷମା ନାହିଁ ? ସତେ କ'ଣ ସେ ସୁଦିନ ଆଉ ଫେରି ଆସିବ ?

ଏ ଠି ଆଉ ଚିନ୍ତା କରିବାର ବେଳ ନଥିଲା । ମୃତ୍ୟୁମୁଖୀ ବୋହୂର ଆଶୁ ଚିକିତ୍ସା ଆବଶ୍ୟକ ଥିଲା । ଆଶଙ୍କା ଏବଂ ଉଦ୍‌ବେଗ ସମସ୍ତଙ୍କୁ ଗ୍ରାସ କରିଥିଲା ।

ଶ୍ରାବଣୀ ଡାକ୍ତରଖାନାର ଅସ୍ତ୍ରୋପଚାର ଗୃହରେ ଚିକିତ୍ସିତ ହେଉଥିଲା ବେଳେ ଏମାନେ ସମସ୍ତେ ସମବେତ ଭାବେ ଈଶ୍ୱରଙ୍କୁ ଅନ୍ତରର କରୁଣ ନିବେଦନ ଜଣାଉ ଥିଲେ । ସଞ୍ଜ୍ଞାହୀନା ସ୍ତ୍ରୀର ରକ୍ତ ଶୂନ୍ୟତା ପୂରଣ କରିବା ପାଇଁ ଦେବକାନ୍ତ ନିଜ ଦେହରୁ ରକ୍ତ ଦେଇ ଚାଲିଥିଲା ଏବଂ ଲୁହ ଢାଳି କହୁଥିଲା– ମୋ ଦେହରୁ ସବୁ ରକ୍ତ ନିଃଶେଷ କରିଦିଅ, ମୋ ସ୍ତ୍ରୀକୁ ବଞ୍ଚାଅ, ମୋ ଶ୍ରାବଣୀକୁ ରକ୍ଷାକର, ମୋ ଜୀବନ ସାଥୀକୁ ଜୀବନ ଦିଅ ... ।

ଡାକ୍ତରମାନଙ୍କ ପ୍ରଗାଢ ଉଦ୍ୟମ ଫଳରେ ଶ୍ରାବଣୀ ଆସ୍ତେ ଆସ୍ତେ ଆଖି ଖୋଲିଲା । ଚାରିପାଖେ ଘେରି ରହିଥିଲେ ପରିବାରବର୍ଗ ଏବଂ ବନ୍ଧୁପରିଜନ । ବିଛଣାରେ ଶୋଇ ରହି ଗୁରୁଜନମାନଙ୍କୁ ଶ୍ରାବଣୀ ହାତଟେକି ପ୍ରଣାମ କଲା ।

ସମସ୍ତଙ୍କ ମୁହଁରେ ହସର ତରଙ୍ଗ ଖେଳିଗଲା । ସୁଶୀଳା ଶ୍ରାବଣୀ ହାତରେ ସୁନାଚୁଡ଼ି ପିନ୍ଧାଇ ଦେଉଥିଲେ । ଦେବବୋଉ ବୋହୂର ମଥାରେ ସିନ୍ଦୂର ବିନ୍ଦୁଟିଏ ଆଦରରେ ଆଙ୍କି ଦେଉଥିଲେ । ଧ୍ୱସ୍ତ ସଂସାରଟି ପୁନଃନିର୍ମିତ ହୋଇ ଉଠୁଥିଲା– ସତରେ ଅବା ସୁଖ, ଶାନ୍ତି ଏବଂ ଶ୍ରଦ୍ଧାର ସଂସାରଟିଏ !

ପୋଲିସ ଉପସ୍ଥିତ ହୋଇ ଯାଇଥିଲା । ଦେବକାନ୍ତ ହାତରେ ହାତକଡ଼ି ଲାଗିଲା ବେଳେ ଅଭୟାନନ୍ଦ ଅଭୟବାଣୀ ଶୁଣାଇ କହିଥିଲେ–



Digitized by PPRACHIN, SOA

ତାକୁ ମୁକୁଳେଇବାର ଦାୟିତ୍ୱ ଆଇନଙ୍କ ଅଭୟାନନ୍ଦର । ଆଇନ୍ କେବଳ ଦୁଷ୍ଟକୁ ଦଣ୍ଡ ଦିଏନି, ଦୁଷ୍ଟକୁ ସୁଧାରିବାର ଦାୟିତ୍ୱ ମଧ୍ୟ ଆଇନ୍‌ର । ଆଇନ୍‌ର ଏହି ମହାନ୍ ଉଦ୍ଦେଶ୍ୟକୁ ଉନ୍ମୋଚନ କରିବାର ଦାୟିତ୍ୱ ଆମ ସମସ୍ତଙ୍କର ... ।

ଦେବକାନ୍ତ ମନରେ ଆଉ ଜେଲ୍‌ଯନ୍ତ୍ରଣାର ଅଙ୍କୁଶ ନାହିଁ । ନାହିଁ ପାର୍ଥିବ କାମନାର ବୁଭୁକ୍ଷା ; ଜାଗରିତ ହେଉଛି କେବଳ ଦେବୋତ୍ତମ ଦୀକ୍ଷା, ଅନେକ ଆତ୍ମଚର୍ଯ୍ୟା ଓ ସଂସାର ଶିକ୍ଷା । ସେ ଆଉ ଦୁର୍ଦ୍ଦାନ୍ତ ଦସ୍ୟୁ ନୁହିଁ, ସୁମଣିଷ ଦେବକାନ୍ତ । ସ୍ୱଭାବ ପରିବର୍ତ୍ତନହିଁ ଇତିହାସର ଇତିବୃତ୍ତି । ରୂପାନ୍ତରୀକରଣ ଆବର୍ତ୍ତନର ଅନ୍ତଃସ୍ୱର । ନରରୁ ନାରାୟଣ ଲାଭ, ଶବରୁ ଶିବପ୍ରାପ୍ତି ହେଉଛି ହିନ୍ଦୁ ଚିନ୍ତାଚେତନାର ମହାନ୍ ଦର୍ଶନ । ମାୟା ଜଗତର ମହୁଆ ନିଶାରୁ ଦୂରରେ ରହି କଏଦୀ କଠିନ ହୃଦୟରେ ମାନବିକ ମନ୍ତ୍ର ତୋଳିବା ତା' ପାଇଁ ଏକ ଅନ୍ତରଙ୍ଗ ଅନୁସନ୍ଧାନ, ଦେବଦତ୍ତର ସୁଯୋଗ । ବିଷ ସିନ୍ଧୁରେ ବିନ୍ଦୁଏ ପୀୟୁଷ ଢାଳି ପାରିଲେ ସାର୍ଥକ ହେବ ତା' ପରିଶିଷ୍ଟ ଜୀବନ । ସାଧୁ ସନ୍ନ୍ୟାସୀମାନେ ତ ସବୁବେଳେ ସଂସାରକୁ ଶୁଚିର ସନ୍ଦେଶ ଦେଇଥାନ୍ତି !

ଶ୍ରାବଣୀ ଆକାଶଟି ବେଶ୍ ତୋଫା ଦିଶୁଥିଲା ଠିକ୍ ଫଗୁଣର ଫଗୁବୋଳା ଚନ୍ଦ୍ରାକାଶ ଭଳି । ମନେ ହେଉଥିଲା, ଭିଜା ମାଟିର ଗନ୍ଧବାଗି ଲୋଗ୍‌କୋରୁ ହୋଇ ପଡିରହିଥିବା କେଉଁ ପୁରୁଣା ଅମଳର ମଣିଷ ଭିତରେ ଗୋଟାଏ ନୂଆ ସ୍ପନ୍ଦନ ସୃଷ୍ଟି ହେବାକୁ ଯାଉଛି— ଯାହା କିଛି ଗୋଟେ ନୂତନତା ଆଣି ଦେବ ଆମ ସମସ୍ତଙ୍କୁ । ଦେବବୋଉର ପୁନର୍ଗଠିତ ସୁଖ, ଶାନ୍ତି ଓ ଶ୍ରଦ୍ଧାର ସଂସାରଟି ସ୍ୱାଗତ କରୁଥିଲା ଏହି ନୂତନତାକୁ ।





Digitized by PPRACHIN, SOA

## ସ୍ରଷ୍ଟା ଓ ସୃଷ୍ଟି ସଂପର୍କରେ .... .....

ଉତ୍ତର-ଅଶୀର ଓଡ଼ିଆ ଗଳ୍ପ ଓ ଉପନ୍ୟାସ କ୍ଷେତ୍ରରେ କଥାକାର ଶ୍ରୀରାଧାମୋହନ ( ରାଧାମୋହନ ମହାପାତ୍ର ) ଏକ ଉଲ୍ଲେଖନୀୟ ପ୍ରତିଭା ଭାବେ ପାଠକପାଠିକା ତଥା ଆଲୋଚକମାନଙ୍କ ସ୍ମରଣ ପଥରେ ଉଦ୍‌ଭାସିତ ହୋଇ ଉଠନ୍ତି । ବହୁ ଗଳ୍ପର ରଚୟିତା ତଥା ସାତୋଟି ଉପନ୍ୟାସର ସ୍ରଷ୍ଟା ହିସାବରେ ଏଯାବତ୍ ସେ ପରିଚିତ । ତାଙ୍କ ଔପନ୍ୟାସିକ ଜୀବନର 'ପ୍ରଥମ ପ୍ରଭାତ' ପ୍ରଭାତର ଅରୁଣିମାରେ ଯେତିକି ରଞ୍ଜିତ, ମଧ୍ୟାହ୍ନ ସୂର୍ଯ୍ୟର ତେଜୋଦୀପ୍ତ ମୟୂଖ ନିମନ୍ତେ ସେତିକି ପ୍ରତୀକ୍ଷାରତ ଥିବାର ମନେ ହୁଏ । ପୁଣି ଏ ପ୍ରତୀକ୍ଷାର କ୍ଳାନ୍ତି ଅପସାରିତ ହୋଇଯାଏ ଉଜ୍ଜ୍ୱଳ ଦିବାଲୋକ ସମ ସତ୍ୟ ସନ୍ଧାନୀ ଆତ୍ମାଟିଏ ଖୋଜି ବସିଲେ ବେଳେ ... ତାଙ୍କର ପରବର୍ତ୍ତୀ ଉପନ୍ୟାସ 'ସତ୍ୟମ୍ ଏବ' ଭିତରେ । ଜୟ-ପରାଜୟ, ସୌଭାଗ୍ୟ-ଦୁର୍ଭାଗ୍ୟ, ଆଶା-ନିରାଶାର ଏକ ତ୍ରିଛକି ରାସ୍ତାରେ ଦଣ୍ଡାୟମାନ ସ୍ରଷ୍ଟା-ପ୍ରାଣ ପୁଣି ଉଦ୍‌ବେଳିତ ହୋଇଉଠେ କିଛିଟା ଅନ୍ତର୍ବୋଧ ଭିତରେ ... ନୂଆ କିଛି ସର୍ଜନା କରିବାର କାମନା ବାସନାକୁ ଚରିତାର୍ଥ କରିବା ଉଦ୍ଦେଶ୍ୟରେ ! ସାଧନାରେ ଅଟଳ ସେହି ସ୍ରଷ୍ଟା-ମାନସର ଆଦ୍ୟ କଳିକା ପୁଣି ବିକଶିତ କୃଷ୍ଣଚୂଡ଼ାର ରଙ୍ଗୀନ ଝଲକ ସୃଷ୍ଟିକରେ– ଯାହାର ପ୍ରତିଛବି ହେଉଛି ତାଙ୍କର ଏଇ ସୁଦୀର୍ଘ ଉପନ୍ୟାସ 'ଝରେ ଶ୍ରାବଣ ଝୁରେ ଫଗୁଣ' । ଜୀବନର ଚଲା ପଥରେ ଏଇ ଔପନ୍ୟାସିକଙ୍କ ସହ ମୋର ପରିଚୟ ପ୍ରାୟ ଗୋଟିଏ ଦଶନ୍ଧିର । ମୋର ନିଜସ୍ୱ ଅନୁଭୂତିରୁ ମୁଁ ଏତିକି ଅନୁଭବ କରିଛି ଯେ ରାଧାମୋହନ ବାବୁ ଜଣେ ନିରଳସ ସାହିତ୍ୟ-ସାଧକ, ଯିଏକି ଜୀବନର ସକଳ ଜଞ୍ଜାଳ, ହା ହୁତାଶ, ଅଭାବ, ଅଶାନ୍ତି ଭିତରେହିଁ କାହାଣୀ ସୃଷ୍ଟିକୁ ନିଜର ଅନ୍ତରଙ୍ଗ ବନ୍ଧୁ ଭାବେ ବାଛି ନେଇଛନ୍ତି । କାହାଣୀ ପଢ଼ନ୍ତି; କାହାଣୀ ଲେଖନ୍ତି, କାହାଣୀ ଶୁଣାନ୍ତି । କାହାଣୀହିଁ ସତେ ଯେମିତି ତାଙ୍କର ଜୀବନ ! ଅନ୍ତଃହୀନ ତାଙ୍କର ଜିଜ୍ଞାସା– ଝଡ଼ଝଞ୍ଜା, ବିପ୍ଳବ, ସଂଘର୍ଷ ମଧ୍ୟରେ ଧରା ପୃଷ୍ଠରେ ଏକ ନୂତନ ସଂସାର ବା ପରିବର୍ତ୍ତନର ଅଭ୍ୟୁଦୟ ହେଉଥିଲେ, ନିଜ ଉପନ୍ୟାସ ଭିତରେ ସେମିତି କିଛି ନୂତନ ପରିବର୍ତ୍ତନର ଛବି ଆଙ୍କିବା ପାଇଁ ସେ ସତତ ବ୍ୟାକୁଳ ମନେ ହୁଅନ୍ତି । ପୂର୍ବରୁ ପ୍ରକାଶିତ ଏକ ବତିଶ ପୃଷ୍ଠାର ଗଳ୍ପକୁ ଘରିଶହ ପୃଷ୍ଠା ବିଶିଷ୍ଟ ଉପନ୍ୟାସର ରୂପ ଦେବା ମୂଳରେ ସ୍ରଷ୍ଟା-ମାନସର ଏଇ ବ୍ୟାକୁଳତାହିଁ ନିଶ୍ଚିତ ଭାବେ ନିହିତ, ତା' ହୋଇ ନଥିଲେ ଏ ସାରସ୍ୱତ ଉନ୍ମାଦନା

Digitized by PPRACHIN, SOA

ରଙ୍ଗକୁ ତରେଇ ଦେଇ, ଭାବନାକୁ ଗଜୁରି ଦେଇ ଆଉ ମନକୁ ଟିକିଏ ଭଖାରି ଦେଇ ଶିଥିଳ କ୍ଷତବିକ୍ଷତ କରି ଦେଇଥାନ୍ତା ସିନା ! ଏତେ ବାଟ ଛୁଟା ଉଠାଇ ଆସିପାରି ନଥାନ୍ତେ । ସ୍ରଷ୍ଟା ମାନସର ଏଇ ଅସମ୍ଭବ ଧୈର୍ଯ୍ୟ, ଏଇ ଏକାଗ୍ରତାକୁ ମୁଁ ବଧାଇ ଜଣାଉଛି । ବାସ୍ତବିକ୍ ସେ ଉଗାନପାଦ !

ଉପନ୍ୟାସକୁ ଯଦି ଗତିଶୀଳ ଜୀବନ-ନଦୀର ବହମାନ ସ୍ରୋତ ବୋଲି ଗ୍ରହଣ କରଯାଏ, ତେବେ ଔପନ୍ୟାସିକ ରାଧାମୋହନଙ୍କ 'ଝରେ ଶ୍ରାବଣ ଝୁରେ ଫଗୁଣ' ସେହି ସ୍ରୋତରେ ଭସମାନ ସ୍ବର୍ଣ୍ଣ ବୋଇତଟିଏ—ଯାହାକି ଅଜସ୍ର ପ୍ରାଣ ପ୍ରାଚୁର୍ଯ୍ୟରେହିଁ ପରିପୂର୍ଣ୍ଣ ! ଏକ ଦୁର୍ଘଟଣାର କାହାଣୀ ଆଉ ସେଇ ଦୁର୍ଘଟଣା ଜନିତ ଗ୍ଲାନି ଭିତରେ ଉପନ୍ୟାସର ଅର୍ଦ୍ଧେକ ଅଂଶ ଗତିମୁଖର, ବାକି ଅର୍ଦ୍ଧେକ ଅଂଶ ସେହି ଗ୍ଲାନି ଭିତର ଦେଇ ଶାନ୍ତି ଓ ସ୍ଥିରର ଆବାହନୀ ଶୁଣାଇବାରେ ସତତ ତତ୍ପର ! ଘଟଣା ଯୋଡ଼ିବାରେ, ଘଟଣା ମୋଡ଼ିବାରେ ସିଦ୍ଧହସ୍ତ ସେ । ତାଙ୍କ ବାକ୍ ଚାତୁରୀ, ବର୍ଣ୍ଣନା ନୈପୁଣ୍ୟ ଏହାକୁ ଏଭଳି କଳାତ୍ମକ ବିଭବ ପ୍ରଦାନ କରିଛିଯେ, ଏହାର ଗତି ଲମ୍ବି ଯାଇଛି ଦିଗନ୍ତରୁ ଦିଗନ୍ତକୁ, ସୀମାରୁ ସୀମାହୀନ ପରିବେଶକୁ ! ଯେତେ କହିଲେବି କଥା ସରିଯାଏନି; ଠିକ ସମୁଦ୍ରର ଜଳ ଯେମିତି ଶୁଖି ଯାଏନି, ନଈ ବାଲିକୁ ଗଣିହେଲେ ଯେମିତି ଶେଷ କରି ହୁଏନି । ଏ କଥାର ଭିଡ଼ ପୁଣି ଏତେ ବେଶୀ ଯେ ମଣିଷ କହି କହି ବେଦମ୍ ହୋଇଯାଏ, ତଥାପି ସରେନା । ଦ୍ରୌପଦୀର ଶାଢ଼ୀ ଭଳି ଏହା ଅସରା । ଲମ୍ବିଯାଏ ... ମଣିଷର ଦୁଃଶାସନୀ ମନ ଖୋଜି ବୁଲେ, ଜିଜ୍ଞାସାର ଅନଳରେ ଦଗ୍‌ଧୀଭୂତ ହୋଇଯାଏ, ଅଜଣା କୌତୁହଳ ଭିତରେ ନିମଜ୍ଜିତ ହୋଇଯାଏ, ତଥାପି ତାହା ଅସୀମ ହୋଇ ରହିଯାଏ । ରାଧାମୋହନ ବାବୁ ତାଙ୍କର ଏହି ଉପନ୍ୟାସଟି ଭିତରେ ଯେଉଁ କାହାଣୀର ଅବତାରଣା କରିବସିଛନ୍ତି, ତାହା ପାଠକକୁ ଅନୁରୂପ କୌତୁହଳ ଭିତରେ ନେଇ ଛାଡ଼ିଦିଏ । ମନେହୁଏ ଆହୁରି ଯେମିତି ଶେଷକୁ କିଛି ବାକି ହୋଇ ରହିଗଲା । ଏଇଠାରେହିଁ ସ୍ରଷ୍ଟା ଜୀବନର ସାର୍ଥକତା ନିହିତ । ଏଭଳି ଏକ ବିଶାଳକାୟ ଉପନ୍ୟାସ ରଚନା କରିବା ଦିଗରେ ତ୍ୟାଗ ତାଙ୍କର ଅସୀମ, ଶ୍ରମ ଅତୁଳନୀୟ । ଆଉ ନିଚ୍ଛକ ଧୈର୍ଯ୍ୟର ପାହାଡ଼ଟିଏ ... ମୁଁ ଏହା ଅନୁଭବ କରିଛି । କିଛି ଗୋଟାଏ ବିରାଟ କାମ କରି ବସିଛି— ଏ ଦମ୍ଭ ବା ଗର୍ବ ଟିକିଏହେଲେ ତାଙ୍କର ନାହିଁ । ନିଉଟନଙ୍କ ଉକ୍ତିରେ କହିଲେ, ଏବେବି ସେ ଜ୍ଞାନ-ସମୁଦ୍ରର ବେଳାଭୂମିରୁ କେତେଖଣ୍ଡ ଉପଳ ମାତ୍ର ସଂଗ୍ରହ କରିଛନ୍ତି । ଏଇ ଭାବନା, ଏଇ ମନ ତାଙ୍କର । ସାଧନା କ୍ଷେତ୍ରରେ ସେ ଖୁବ୍ ବିନମ୍ର, ବିଶ୍ୱସ୍ତ ।

Digitized by PPRACHIN, SOA

ଜଣେ ସାରସ୍ୱତ ଶିଳ୍ପୀ ହିସାବରେ ରାଧାମୋହନ ବାବୁ ନିଶ୍ଚିତ ଭାବେ ଏକ ମର୍ଯ୍ୟାଦାପୂର୍ଣ୍ଣ ଆସନର ଅଧିକାରୀ । ନିତ୍ୟ ସାଧନାରତ ଏହି ସ୍ରଷ୍ଟା ଅବିସମ୍ବାଦିତ ଭାବେ ଏକ ପ୍ରଗତିବାଦୀ ଚେତନାର ପ୍ରତିଭୂ, ଜଣେ ମାନବବାଦୀ ସଚେତନ ଶିଳ୍ପୀ, ଜଣେ ବୈପ୍ଲବିକ ଚିନ୍ତକ ... ଯିଏକି ନିଜର ବହୁଧା ବିଭକ୍ତ ସୃଷ୍ଟି-ମନନ ଭିତରେ ସାଂପ୍ରତିକ ପରିସ୍ଥିତି, ପରିବେଶ ଏବଂ ଆଭିମୁଖ୍ୟକୁ ଉର୍ଦ୍ଧ୍ୱାୟିତ କରି ତା'ର ଆତ୍ମିକ ସ୍ପନ୍ଦନର ବଜ୍ର ନିର୍ଘୋଷ ଶୁଣାଇବାରେ ସତତ ଚେଷ୍ଟିତ ତଥା ଶାନ୍ତି-ମୁକ୍ତି-ପ୍ରଗତି, ସତ୍ୟ ଓ ମାନବିକତାର ଜୟଗାନରେ ଚିର ମୁଖର ଆଉ ଚିର ବିଭୋର । ଜୀବନର ମମତ୍ୱବୋଧ ସହିତ ଜୀବନ ସଂଗ୍ରାମର ଚିତ୍ର ପ୍ରଦର୍ଶନ କରିବାରେ ତାଙ୍କର ସୃଷ୍ଟି-ବଳୟ ସୁଦୀର୍ଘ ବିସ୍ତାରିତ ।

... ଶ୍ରାବଣ ଝରି ଯାଉଛି । ଝରା ଶ୍ରାବଣର ସ୍ମୃତିକୁ ରୋମନ୍ଥନ କରି ଝୁରୁଛି ଫଗୁଣ ... କୋଇଲି କଣ୍ଠରେ ଶୁଣୁଛି ହଜିଲା ଅତୀତର ବିରହ ବିଧୁର ସଂଗୀତ ... ଆମ୍ର କଷିର କ୍ଷୀରରେ ଲେଖୁଛି ବେଦନା ଦଗ୍ଧ ହୃଦୟର ଅଶ୍ରୁଲିପି ... ବିବାହିତ ଦାମ୍ପତ୍ୟ ଜୀବନର ଅସ୍ତମାରୀ ସୁଖ ସ୍ୱପ୍ନ ନେଇ ସରଳା ପଲ୍ଲୀବାଳା ଉପନ୍ୟାସ ନାୟିକା ଶ୍ରାବଣୀ ଶାଶୁଘରେ ପାଦ ଦେଇଥିଲା । ଜଣେ ଶିକ୍ଷିତ ବେକାର ଯୁବକର ହାତଧରି ମଧ୍ୟ ମନରେ ନଥିଲା ଦୁଃଖ, ନଥିଲା ଅବଶୋଷ । ଜୀବନ-ଆକାଶରେ ମେଘର ମହ୍ଲାର ଦେଖି ନାଚି ଉଠିଥିଲା ତା'ର ମୟୂରୀ-ମନ । ସ୍ୱାମୀ-ଦେବତାଙ୍କର ଚାକିରୀ ନିର୍ବାଚନ ନିମନ୍ତେ କଲିକତା ଗମନ କାଳରେ ରକ୍ଷଣଶୀଳ ପରିବାରର ବେଷ୍ଟନୀ ମଧ୍ୟରୁ କିଛିଦିନ ମୁକ୍ତହୋଇ ଜୀବନକୁ ଉପଭୋଗ କରିବାର ସ୍ୱପ୍ନ ସେ ଦେଖୁଛି, ମାତ୍ର ବିଧିର ବିଡମ୍ବନା ଭିତରେ ରେଳଯାତ୍ରା କାଳରେ ସାମାନ୍ୟ ଅସାବଧାନତାରୁ ସ୍ୱାମୀ-ସ୍ତ୍ରୀ ପରସ୍ପର ଠାରୁ ଦୂରେଇ ଯାଇଛନ୍ତି । ଉପନ୍ୟାସର ଏଇ ପରିପ୍ରେକ୍ଷୀରେ ଔପନ୍ୟାସିକ ମହାଶୟ ପାଠକର ଆବେଗ ଓ ଅନୁସନ୍ଧିତ୍ସାକୁ ଯଥେଷ୍ଟ ମାତ୍ରାରେ ବଢାଇ ଦେଇଛନ୍ତି । ଜୀବନର ଘୂର୍ଣ୍ଣିବାତ୍ୟା ଭିତରେ ଅସହାୟ ଶ୍ରାବଣୀକୁ ଯେପରି ଛାଡ଼ି ଦେଇଛନ୍ତି, ତା'ର ନିର୍ଯ୍ୟାତୀତ କରୁଣ ଜୀବନର ଅନ୍ତିମ ପରିଣତିକୁ ଉଦ୍‌ବେଗର ସହିତ ଲକ୍ଷ୍ୟ କରିବା ପାଇଁ ପାଠକକୁ ସେହିଭଳି ଖୋରାକ ମଧ୍ୟ ଯୋଗାଇ ଦେଇଛନ୍ତି । ଆଶ୍ଚର୍ଯ୍ୟ ଯେ, ଉପନ୍ୟାସ ପଠନ କାଳରେ ପାଠକ ଚିତ୍ତ କ୍ଳାନ୍ତିରେ ଅଳସେଇ ପଡ଼ିବା, ଆଖି ଘୁମେଇ ଆସିବା ପରିବର୍ତ୍ତେ ବରଂ ଏକ ଲୟରେ ଅପୂର୍ବ

Digitized by PPRACHIN, SOA

ଆବେଗତା ଭିତରେ ଅନ୍ତିମ ପରିଣତିକୁ ଲକ୍ଷ୍ୟ କରିବସେ । ଘଟଣା ଓ କାହାଣୀର ସୁନ୍ଦର ଉପସ୍ଥାପନା, ମନୋଜ୍ଞ ପରିବେଶ ଓ ଶବ୍ଦ ଯୋଜନା, ଭାଷା ଶୈଳୀ ଓ ଚରିତ୍ର ଚିତ୍ରଣରେ ଅପୂର୍ବ କଳା କୁଶଳତା ଓ ଦକ୍ଷତା, ଆଦର୍ଶ ମୂଲ୍ୟବୋଧର ସୂଚନା, ଗଭୀର ମନସ୍ତତ୍ତ୍ୱ, ଜୀବନ ଦର୍ଶନ, ସର୍ବୋପରି ଔପନ୍ୟାସିକଙ୍କର ବହୁ ଶାସ୍ତ୍ର ଦର୍ଶିତା ତଥା ସମୟ ସଚେତନତାହିଁ ଉପନ୍ୟାସଟିକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରିବାରେ ସମର୍ଥ ହୋଇ-ପାରିଛି । ନାୟିକା ଶ୍ରାବଣୀ ପାଇଁ ସ୍ରଷ୍ଟା-ହୃଦୟର ଅସୀମ ମମତା ଆଉ ସହାନୁଭୂତିର ପଟାନ୍ତର ନାହିଁ । ଜୀବନର ଘାତ ପ୍ରତିଘାତ ଭିତରେ ଗତିଶୀଳା ଏଇ ଅସହାୟା ନାରୀ ଚରିତ୍ରଟିକୁ ଜୀବନ-ସଂଗ୍ରାମରେ ଲଢୁଆ ସୈନିକ ଭାବେ ଉପସ୍ଥାପିତ କରି ତାକୁ ବିଜୟିନୀ କରିବାର ଚେଷ୍ଟା ବଳବତ୍ତର ହୋଇ ଉଠିଛି । ମେଘ ଦଲଦଲ ଶ୍ରାବଣୀର ଜୀବନାକାଶ ପୁଣି ଫର୍ଚ୍ଚା ଦିଶିଛି– ଠିକ୍ ଫଗୁଣର ଚନ୍ଦ୍ରିକା ଚର୍ଚ୍ଚିତ ଉଜ୍ଜ୍ୱଳ ଆକାଶ ଭଳି । ମିଳନର କୋରସ୍ ଭିତରେ ହସ ଖୁସିର ସଂସାରଟି ପୁଣି ମୁଖରିତ ହୋଇ ଉଠିଛି । ଉପନ୍ୟାସର ନାମକରଣ ଏ ଦୃଷ୍ଟିରୁ ବେଶ୍ ତାତ୍ପର୍ଯ୍ୟ ପୂର୍ଣ୍ଣ । ରାଧାମୋହନଙ୍କ ଶିଳ୍ପୀ-ହସ୍ତର କୁଶଳୀ ତୂଳିକା ଉପନ୍ୟାସଟିକୁ ଯଥେଷ୍ଟ ମାତ୍ରାରେ ଅଭିଜାତ ସଂପନ୍ନ କରି ଛିଡ଼ା କରାଇଛି—ଯାହାର ଆବେଦନ ସୁଦୂର ପ୍ରସାରୀ ! ଜଣେ ସ୍ରଷ୍ଟା ଦ୍ରଷ୍ଟାର ଭୂମିକାରେ ଅବତୀର୍ଣ୍ଣ ନହେଲେ ତା'ର ସୃଷ୍ଟି କେବେ କାଳଜୟୀ ଗୌରବର ଅଧିକାରୀ ହୋଇପାରେନା । ସ୍ରଷ୍ଟା ରାଧାମୋହନ ସେ ଦୃଷ୍ଟିରୁ ଅନୁରୂପ ଗୌରବର ଅଧିକାରୀ ।

ଆର୍ଯ୍ୟ ସଭ୍ୟତାର ଆଲୋକିତ ସକାଳ ଠାରୁ ଆଧୁନିକ ସଭ୍ୟତାର ଉଜ୍ଜ୍ୱଳ ମଧ୍ୟାହ୍ନ ପର୍ଯ୍ୟନ୍ତ ଯେତେ ଯାହା ପରିବର୍ତ୍ତନ ଘଟିଲେବି ସ୍ରଷ୍ଟାର ଶାଶ୍ୱତ ମର୍ଯ୍ୟାଦା କେବେ କ୍ଷୁଣ୍ଣ ହୋଇନାହିଁ । ତା'ର ଦୁର୍ବାର ଗତିକୁ କେହି କେବେ ଅବରୋଧ କରି ପାରିନି କିମ୍ବା ତା'ର ଗୌରବ–ମୁକୁଟକୁ କେହି କେବେ ଭାଙ୍ଗି ଦେବାର ସାହସ କରିନି । କର୍ତ୍ତବ୍ୟର ସଫା ଅଇନାରେ ମୁହଁ ଦେଖି ଚାଲିଛନ୍ତି ସମସ୍ତେ ଗୋଟିଏ ବାଟରେ ... 'ତମ ସୋ ମା ଜ୍ୟୋତିର୍ଗମୟ' ... 'ଚରୈବେତି ... ଚରୈବେତି' ... ଆସିବା ବେଳେ ଯେଉଁମାନେ ଶୂନ୍ୟ ହସ୍ତରେ ଆସିଛନ୍ତି, ଫେରିଲା ବେଳେ ବରଂ ସେମାନଙ୍କର ସାମର୍ଥ୍ୟ ଅଧିକ ହୋଇଛି । ସ୍ରଷ୍ଟା ରାଧାମୋହନଙ୍କର ସାରସ୍ୱତ-ସାମର୍ଥ୍ୟ ଉତ୍ତରୋତ୍ତର ବୃଦ୍ଧିପ୍ରାପ୍ତ ହେଉ, ତାଙ୍କର ଚଲାପଥ କୁସୁମିତ ହେଉ, ତାଙ୍କ ସାଧନା ଅତୁଟ, ଅବ୍ୟାହତ ରହିଥାଉ, ଇଚ୍ଛାମୟଙ୍କ ନିକଟରେ ଏତିକି କାମନା ।

ଜୟଦେବକସବା, ବାଲେଶ୍ୱର । — **ଶ୍ରୀ ବୈକୁଣ୍ଠନାଥ ଶତପଥୀ**

ତା ୨–୩–୮୮ ରିଖ — ସଂପାଦକ-'ସାକ୍ଷର'

Digitized by PPRACHIN, SOA